॥ ଓଁ କ୍ଲୀଁ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ ॥

# ଶ୍ରୀବୃନ୍ଦାବନଧାମ ମାହାତ୍ମ୍ୟମ୍

ପ୍ରଥମ ଭାଗ:
ଶ୍ରୀବୃନ୍ଦାବନଧାମ ମାହାତ୍ମ୍ୟମ୍

ଦ୍ୱିତୀୟ ଭାଗ:
ଶ୍ରୀମଦଭାଗବତ ମାହାତ୍ମ୍ୟମ୍
(ସ୍କନ୍ଦ ପୁରାଣ ବୈଷ୍ଣବ ଖଣ୍ଡେ)

ଲେଖକ
ଅପଣ୍ଡିତ ଦାମୋଦର ବଳୀୟାରସିଂହ

# ଶ୍ରୀବୃନ୍ଦାବନଧାମ ମାହାତ୍ମ୍ୟମ୍

ଅପଣ୍ଡିତ ଶ୍ରୀ ଦାମୋଦର ବଳୀୟାରସିଂହ

ପ୍ରଥମ ସଂସ୍କରଣ: ନବକଳେବର ଶ୍ରୀ ବାହୁଡ଼ା ଯାତ୍ରା ୨୦୧୫
ବିକ୍ରମ ସମ୍ୱତ୍- ୨୦୭୨

ପ୍ରକାଶିକା:
ଶ୍ରୀମତୀ କଳ୍ପନା ବଳୀୟାରସିଂହ
ନୀଳକଣ୍ଠନଗର ବ୍ରିଟ୍ କଲୋନି
ଷ୍ଟେଜ-୨, ଶ୍ୟାମ କୁଞ୍ଜମ୍
ବ୍ରହ୍ମପୁର (ଗଂଜାମ ଜିଲ୍ଲା)
ମୋବାଇଲ: ୯୪୩୭୧୦୯୧୨୦

ଅକ୍ଷର ସଜ୍ଜା: ଶ୍ରୀ ସନ୍ତୋଷ ପଟ୍ଟନାୟକ
ପ୍ରଚ୍ଛଦ: କମ୍ପ୍ୟୁଟର ସଲ୍ୟୁସନ୍

ମୁଦ୍ରଣ: ମନମୋହନ ଟ୍ରେଡ଼ର୍ସ
ବାଲାଜୀପେଣ୍ଠ ଲେନ୍, ବ୍ରହ୍ମପୁର
ମୋ. : ୯୮୬୧୧୬୭୬୦୮

ମୂଲ୍ୟ: ଦୁଇଶହ ଟଙ୍କା

# ଉତ୍ସର୍ଗ

ଯେଉଁ ଠାକୁରଙ୍କ ମୁଖ୍ୟ ଦେଉଳର ଛାଇ ଭୂଇଁରେ ପଡ଼େନା, ଯାହାଙ୍କ ଦେଉଳର ପତିତ ବାନା କେବଳ ଉତ୍ତର ଦିଗକୁ ମୁହଁକରି ଉଡ଼େ (ପବନର ବେଗ ଯେଉଁ ଦିଗକୁ ହେଲେ ମଧ୍ୟ), ଯାହାଙ୍କ ଦେଉଳର ନୀଳଚକ୍ର ସହରର ଯେ କୌଣସି ସ୍ଥାନରୁ ଚାହିଁଲେ ମଧ୍ୟ ଗୋଲାକାର ଦିଶେ, ଯାହାଙ୍କ ରୋଷେଇ ଶାଳର ଅଗ୍ନି ଆଦୌ ଲିଭି ନଥାଏ, ଯାହାଙ୍କ ରୋଷେଇ ଲାଗି ବ୍ୟବହୃତ ଜଳ ଯୋଗାଉଥିବା ଗଙ୍ଗା-ଯମୁନା କୂପ ଆଦୌ ଶୁଖି ନଥାଏ, ଯାହାଙ୍କ ଦେଉଳ ଉପରେ କୌଣସି ଚଢ଼େଇ ଉଡ଼ି ପାରନ୍ତି ନାହିଁ, ଯାହାଙ୍କର ଦ୍ୱାପର ଯୁଗରେ ଲୀଳା ଶ୍ରୀବୃନ୍ଦାବନରେ ହୁଏ, କଳିଯୁଗର ଲୀଳା ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ପୁରୀରେ ହୁଏ, ଏବଂ ଯେଉଁ ଠାକୁର କଳିଯୁଗରେ ହସ୍ତପଦ ଲୁଚେଇ ବସନ୍ତି କିନ୍ତୁ ଅନ୍ୟ ତିନିଯୁଗରେ ଦଧି(ଖିଆ) ବାମନ ରୂପରେ ବିରାଜମାନ କରନ୍ତି ତାଙ୍କର (ବେଦାନ୍ତ ଜ୍ଞାନୀ ପାଇଁ ଅଦୃଶ୍ୟ ଓ ଭାଗବତ ଭକ୍ତ ପାଇଁ ଦୃଶ୍ୟମାନ) କରକମଳରେ ଅର୍ପଣ କରୁଛି ତାଙ୍କ ଶରଣାଗତ ଭକ୍ତମାନଙ୍କ ମଧ୍ୟରେ ପ୍ରଚାର ପ୍ରସାର ଦାୟିତ୍ୱ ସହିତ ।

ଅଧମ

ଲେଖକ

# ଭୂମିକା

ସାଧୁ, ସନ୍ଥ, ଋଷି ମୁନିଙ୍କର ଏ ଦେଶ ଭାରତବର୍ଷ । ବର୍ତ୍ତମାନ ପୃଥିବୀରେ ଦେଶମାନଙ୍କର ସଂଖ୍ୟା ୧୯୩ । ଆଜିର ଖଣ୍ଡିତ ଭାରତ ବର୍ଷରୁ ନେପାଳ, ଭୁଟାନ, ମିଆଁମାର, ପାକିସ୍ଥାନ, ବଙ୍ଗଳାଦେଶ, ଆଫଗାନିସ୍ଥାନ(କାନ୍ଦାହାର) ଓ ଶ୍ରୀଲଙ୍କା ଅଲଗା ହୋଇଯାଇଛନ୍ତି । ଇଣ୍ଟରନେଟ ଦେଖିଲେ ଜଣାଯାଏ ଭାରତ ବ୍ୟତୀତ ଅନ୍ୟ କୌଣସି ଦେଶ ବା ଧର୍ମ ସଂପ୍ରଦାୟର ଇତିହାସ ଖ୍ରୀ:ପୂ ୩୦୦୦ରୁ ପୁରୁଣା ନୁହେଁ । ଭାରତର ଇତିହାସ ବିଷୟରେ ସୂର୍ଯ୍ୟବଂଶର ଇତିହାସ(ରାମାୟଣ), ଚନ୍ଦ୍ରବଂଶର ଇତିହାସ(ମହାଭାରତ, ଭାଗବତ) କାହିଁ କେତେ ପ୍ରାଚୀନ ଏ କଥା ବୁଝିବା ମନୁଷ୍ୟ ସୀମିତ ମସ୍ତିଷ୍କର ବାହାରେ ।

ଯୋଗବାଦର ଭୂମି ଭାରତବର୍ଷରେ ଭୋଗବାଦର ଆକ୍ରମଣ ଆଜିକାଲିର ନୁହେଁ । ଇଂରେଜ, ମୋଗଲ, ମୁସଲମାନ ଶାସନର ବହୁ ପୂର୍ବରୁ ଏହା ଚାଲିଆସିଛି । ଆଜି ଅବଶ୍ୟ ଏହି ଆକ୍ରମଣର ନଖ, ଦାନ୍ତ, ହାତ, ହତିଆର ଯନ୍ତ୍ରଣା ଟିକିଏ ବେଶୀ ବଢ଼ିଯାଇଛି । ହୋସିଆର ଲୋକେ ଭୋଗବାଦରୁ ମୁକୁଳିବାକୁ ତ୍ରାହି ତ୍ରାହି ଡ଼ାକୁଛନ୍ତି । ଯେଉଁ ଓଡ଼ିଆ ଭାଇ ଭଉଣୀମାନେ ଭୋଗବାଦର ଶିକାର ହେବା ଫଳରେ ରାଜନୀତିର ମଙ୍ଗ ଧରି ଏମ୍.ଏଲ.ଏ, ଏମ୍.ପି, ମନ୍ତ୍ରୀ ହେବାକୁ କିମ୍ବା ପଦ୍ମଶ୍ରୀ, ପଦ୍ମଭୂଷଣ, ଭାରତ ରତ୍ନ କିମ୍ବା ନୋବେଲ ପୁରଷ୍କାର ଲାଗି ଲାଳାୟିତ ହେଉଛନ୍ତି କିମ୍ବା ଭାରତର ଲଳନାଗଣ ଅଳ୍ପ ପୋଷାକ ପିନ୍ଧି କ୍ୟାମେରା ଦର୍ଶକ ସାମନାକୁ ଆସି ଆଲବମ୍ କୁଇନ୍ ହେବାକୁ ବା ବିଉଟି ପାର୍‌ଲୋର ବାଟ ଦେଇ ରେଶମ ପୋଷାକ ପିନ୍ଧି ସାଧବ ବୋହୂ ହେବାକୁ ଚାହୁଁଛନ୍ତି ସେମାନଙ୍କ ଲାଗି ଏ ପୁସ୍ତକ ପଢ଼ିବା ଉଚିତ ନୁହେଁ । ଦୈବାତ୍ ଏହାକୁ ପଢ଼ି ପକାଇଲେ ସେମାନଙ୍କୁ ଆଉ ସଂସାର ଭୋଗର ସୁଖ ମିଳିବ ନାହିଁ । ସେମାନେ ଜନ୍ମ ଜନ୍ମାନ୍ତର ଲାଗି ଇନ୍ଦ୍ର, ଚନ୍ଦ୍ର, ଆଦି ଦେବତା ହେବା ସୁଖ ଲାଳସାରୁ ମଧ୍ୟ ବଞ୍ଚିତ ହୋଇପାରନ୍ତି । ବୃନ୍ଦାବନର ବ୍ରଜବାସୀ ସାଧୁ କିମ୍ବା ବୃନ୍ଦାବନ ରସିକ କୃଷ୍ଣଭକ୍ତର ଦର୍ଶନ, ସ୍ପର୍ଶ, ଆଶିର୍ବାଦରେ ସେଭଳି ଇଚ୍ଛାର ମୂଳ ଉତ୍ପାଟନ ହେବାର ସମ୍ଭାବନା ଅନେକ ବେଶୀ ।

ଏବେ ଭାରତ ବର୍ଷର ଯୋଗଭୂମିର ଗର୍ବ ଗୌରବ ଦ୍ରୁତ ଗତିରେ ମ୍ଲାନ ହୋଇ ଭୋଗ ଭୂମିର ମାନ୍ୟତା ଲାଗି ଧାବମାନ ହେଉଛି । ତଥାପି ଭାରତ ଭୂମିର ଆଧ୍ୟାତ୍ମିକତାର ପତାକା ଗଙ୍ଗା, ଯମୁନା, ଗୋଦାବରୀ ଇତ୍ୟାଦି ନଦୀ ଓ ହିମାଳୟ, ବିନ୍ଧ୍ୟ ଆଦି ପର୍ବତ ସହିତ ଚିତ୍ରକୂଟ ଅଯୋଧ୍ୟା, ମଥୁରା, ବୃନ୍ଦାବନ, ଦ୍ୱାରକା, ରାମେଶ୍ୱର, ପ୍ରୟାଗ, ବାରଣାସୀ ଆଦି ଅସଂଖ୍ୟ ତୀର୍ଥ କ୍ଷେତ୍ରରେ ଉଡ୍‌ଡ୍ଡୀୟମାନ । ସାତ ସାତ ଥର ବୃନ୍ଦାବନ ମଥୁରା ଦର୍ଶନ କରିବା ପରେ ସେଠାରେ ଅନେକ ଓଡ଼ିଆ ଦର୍ଶନାର୍ଥୀଙ୍କୁ ଦେଖି ମନେ ହେଲା ଯେ ଅନେକ ଦର୍ଶନୀୟ ସ୍ଥଳ ସେଠାରେ ବିଦ୍ୟମାନ । ସେ ସବୁର ମାହାତ୍ମ୍ୟ ବା ଲୀଳା ବିଷୟକ ଅନଭିଜ୍ଞତା ହେତୁ ଜଣେ ଭକ୍ତ ମାସ ମାସ ଧରି ସେଠାରେ ରହି ମଧ୍ୟ ଅଳ୍ପ କେଇଟି ଲୀଳାସ୍ଥଳୀ ଦର୍ଶନ କରି ସନ୍ତୁଷ୍ଟ ହୋଇ ଯାଉଅଛନ୍ତି ।

ବୃନ୍ଦାବନ ଧାମ ମାହାତ୍ମ୍ୟ ବିଷୟରେ ହିନ୍ଦୀ-ଇଂରେଜୀ ଭାଷାରେ ଅନେକ ପୁସ୍ତକ ଥିବା ବେଳେ ଓଡ଼ିଆ ଭାଷାରେ ଅଳ୍ପ କେଇଟି ସୀମିତ ସଂଖ୍ୟକ ପୁସ୍ତକ ମାତ୍ର ଉପଲବ୍ଧ । ସେଇ ଅଭାବକୁ ଦୂର କରିବା ନିମିତ୍ତ ଏହି ବୃନ୍ଦାବନ ଧାମ ମାହାତ୍ମ୍ୟ ପୁସ୍ତକଟି ଓଡ଼ିଆ ଭାଷାରେ ଏକ ଦୀପ ଶିଖା । ଅସଂଖ୍ୟ ଲୀଳାସ୍ଥଳୀ ମଧ୍ୟରୁ ବାଛି ବାଛି ୧୦୮ଟି ଲେଖା ପ୍ରକାଶ ହେବାକୁ ଯାଉଛି ଅତ୍ୟନ୍ତ ସଂକ୍ଷେପରେ । ତଥାପି ପ୍ରଶ୍ନ-ଉତ୍ତର ଶୈଳୀରେ ପାଞ୍ଚ, ଦଶଟି ଲେଖାଏଁ ଲୀଳାସ୍ଥଳୀ କିମ୍ବା ଲୀଳାକୁ ନାମ ଦ୍ୱାରା ସଂକେତ କରାଯାଉଛି । ଅନେକ ମନ୍ଦିର, ଅନେକ ଲୀଳାସ୍ଥଳୀ, ଯମୁନା ଘାଟ, ବନ ଉପବନ, ମହାପୁରୁଷଙ୍କ ସମାଧି, ମଠ ଇତ୍ୟାଦିର ବର୍ଣ୍ଣନ ଗ୍ରନ୍ଥର କଳେବର ବୃଦ୍ଧିକୁ ଦୃଷ୍ଟିରେ ରଖି ସେ ବିଷୟରେ କେବଳ ଏଥିରେ ଦିଗ୍‌ଦର୍ଶନ କରାଯାଇଛି ।

ଗ୍ରନ୍ଥର ଦ୍ୱିତୀୟ ଖଣ୍ଡରେ ବୃନ୍ଦାବନ ଧାମରେ ଶ୍ରୀମଦ୍‌ଭାଗବତ ମହାପୁରାଣ ସର୍ବପ୍ରଥମେ କିଏ, କେବେ, କାହିଁକି ପାରାୟଣ ଓ ପ୍ରବଚନ କରିଥିଲେ ତାହାକୁ ସ୍କନ୍ଦ ପୁରାଣରୁ ଉଦ୍ଧାର କରି ପ୍ରଶ୍ନୋତ୍ତର ଶୈଳୀରେ ଅତ୍ୟନ୍ତ ସଂକ୍ଷେପରେ ୧୦୮ ପ୍ରଶ୍ନ-ଉତ୍ତର ମାଧ୍ୟମରେ ପରିବେଷଣ କରାଯାଇଛି । ପାଠକମାନେ ଗ୍ରନ୍ଥରେ ଥିବା ଦୋଷ ତ୍ରୁଟି ଦେଖି ଲେଖକର ଦୃଷ୍ଟିକୁ ଆଣିଲେ ପରବର୍ତ୍ତୀ ସଂସ୍କରଣରେ ସେଗୁଡ଼ିକୁ ସୁଧାରି ନିଆଯାଇପାରିବ ।

ଗ୍ରନ୍ଥ ପରିପୂରଣ ଓ ପ୍ରକାଶରେ ନିରଳସ ଓ ଅକୁଣ୍ଠ ସହାୟତା କରିଥିବା ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ ଅବସ୍ଥାପିତ ସୁସାହିତ୍ୟିକ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ତ୍ରିପାଠୀଙ୍କୁ ଅନ୍ତରର କୃତଜ୍ଞତା ନ ଜଣାଇଲେ ଭୂମିକା ଲିଖନ ଅସଂପୂର୍ଣ୍ଣ ରହିଯିବ । ଲେଖାବେଳେ ତାଙ୍କର ପ୍ରେରଣା, ଛପାବେଳେ ଡ଼ି.ଟି.ପି. କେନ୍ଦ୍ରକୁ ବାରମ୍ବାର ଦୌଡ଼ିବା, ନିଜେ

କମ୍ପ୍ୟୁଟର ପାଖରେ ବସି ଘଣ୍ଟା ଘଣ୍ଟା ଧରି ଡ଼ି.ଟି.ପି. ସଂଶୋଧନ କରିବା, ପ୍ରଚ୍ଛଦପଟ ଛାପିବା, ଗ୍ରନ୍ଥକୁ ଇଣ୍ଟରନେଟ୍‌ରେ ଅପ୍‌ଲୋଡ୍ କରିବା ଇତ୍ୟାଦି ଶ୍ରେୟ ଲାଗି ସେ ସର୍ବଦା ଧନ୍ୟବାଦାର୍ହ ଓ ଶ୍ରୀରାଧା ଗୋବିନ୍ଦଙ୍କର ଅପାର କୃପାର ଜଣେ ସତ୍‌ପାତ୍ର ।

ପୁସ୍ତକଟି ପଢ଼ି କେହି ଜଣେ ହେଲେ ପାଠକଙ୍କର ବୃନ୍ଦାବନ ଦର୍ଶନର ଇଚ୍ଛା ହେଲେ କିମ୍ୱା ଦର୍ଶନ କରି ସାରି କିମ୍ୱା କରିବା ପୂର୍ବରୁ ବହିରୁ କିୟଦ ଅଂଶ ପଠନ ମନନ କରି ତୃପ୍ତ ହୋଇପାରିଲେ ଲେଖକର ଶ୍ରମ ସାର୍ଥକ ହେବ ।

ବିନୀତ୍

**ଲେଖକ**

# ସୂଚୀପତ୍ର

## ପ୍ରଥମ ଭାଗ

## (ଶ୍ରୀ ବୃନ୍ଦାବନ ଧାମ ମାହାତ୍ମ୍ୟମ୍)


| କ୍ର.ସଂ. | ବିଷୟ | ପୃଷ୍ଠା |
|---|---|---|
| | (କ) ଦ୍ୱାଦଶ ବନ | ୧୩ |
| ୧. | ଶ୍ରୀ ଭଦ୍ରବନ | - |
| ୨. | ଶ୍ରୀବନ ବା ବିଲ୍ୱବନ | - |
| ୩. | ଶ୍ରୀ ଲୌହ ବନ | - |
| ୪. | ଶ୍ରୀ ଭାଣ୍ଡୀର ବନ | - |
| ୫. | ଶ୍ରୀ ମହାବନ/ବୃହଦ୍ ବନ/ଗୋକୁଳ | - |
| ୬. | ଶ୍ରୀ ତାଳବନ | - |
| ୭. | ଶ୍ରୀ ଖଦିର ବନ ବା ଖାୟୋର୍ | - |
| ୮. | ଶ୍ରୀ ବେହୁଲା ବନ ବା ବଉଳା ଗାଈ ବନ | - |
| ୯. | ଶ୍ରୀ କୁମୁଦ ବନ | - |
| ୧୦. | ଶ୍ରୀକାମ୍ୟ ବନ | - |
| ୧୧. | ଶ୍ରୀ ମଧୁବନ | - |
| ୧୨. | ଶ୍ରୀ ବୃନ୍ଦାବନ | - |
| (ଖ) | ଦ୍ୱାଦଶ ଅତି ବିଖ୍ୟାତ ମନ୍ଦିର | ୪୧ |
| ୧. | ଶ୍ରୀରାଧା ଗୋବିନ୍ଦଜୀ ମନ୍ଦିର | - |
| ୨. | ଶ୍ରୀରାଧା-ମଦନ ମୋହନଜୀ ମନ୍ଦିର | - |
| ୩. | ଶ୍ରୀରାଧା-ଗୋପିନାଥଜୀ ମନ୍ଦିର | - |
| ୪. | ଶ୍ରୀରାଧା-ରମଣଜୀ ମନ୍ଦିର | - |
| ୫. | ଶ୍ରୀରାଧା-ଦାମୋଦରଜୀ ମନ୍ଦିର | - |
| ୬. | ଶ୍ରୀରାଧା-ଶ୍ୟାମସୁନ୍ଦରଜୀ ମନ୍ଦିର | - |
| ୭. | ଶ୍ରୀ ବାଙ୍କେବିହାରୀ/ଶ୍ରୀ ବିହାରୀଜୀ ମନ୍ଦିର | - |
| ୮. | ଶ୍ରୀଜୀ ବା ଶ୍ରୀ ରାଧାରାଣୀ ମନ୍ଦିର | - |
| ୯. | ଶ୍ରୀ ରଙ୍ଗଜୀ/ଶ୍ରୀ ରଙ୍ଗନାଥଜୀ ମନ୍ଦିର | - |
| ୧୦. | ଶ୍ରୀ ଗୋପୀଶ୍ୱର/ଶ୍ରୀ ଗୋପେଶ୍ୱରଜୀ ମନ୍ଦିର | - |
| ୧୧. | ଶ୍ରୀ ସାକ୍ଷୀ ଗୋପୀନାଥଜୀ/ ଶ୍ରୀ ସାକ୍ଷୀ ଗୋପାଳ ମନ୍ଦିର- | |
| ୧୨. | ଶ୍ରୀ ଜଗନ୍ନାଥଜୀ ମନ୍ଦିର | - |

(ଗ) ଦ୍ୱାଦଶ ଉପବନ ୬୭
୧. ଶ୍ରୀଗହ୍ୱର ବନ -
୨. ଶ୍ରୀ ସଂକେତ ବନ -
୩. ଶ୍ରୀ ଟେର କଦମ୍ବ ବନ -
୪. ଶ୍ରୀ ଛତ୍ରବନ -
୫. ଶ୍ରୀ ଭୀମରାଓ ବନ -
୬. ଶ୍ରୀ ମାଠ ବନ -
୭. ଶ୍ରୀ କୋକିଳା ବନ -
୮. ଶ୍ରୀ ଅଟଳ ବିହାରୀ ବନ -
୯. ଶ୍ରୀବସ୍ତ୍ର ବନ -
୧୦. ଶ୍ରୀରାଧା ବନ/ଶ୍ରୀ ରାଧାବାଗ -
୧୧. ଶ୍ରୀ ସେବାକୁଞ୍ଜ/ଶ୍ରୀ ନିକୁଞ୍ଜ ବନ -
୧୨. ଶ୍ରୀ ନିଧୁବନ/ଶ୍ରୀ ନିଧିବନ -
(ଘ) ଦ୍ୱାଦଶ ଯମୁନା ଘାଟ ୭୯
୧. ଶ୍ରୀରାମ ଘାଟ -
୨. ଶ୍ରୀ ଗୋପୀଘାଟ -
୩. ଶ୍ରୀ ଚୀରଘାଟ/ବସ୍ତ୍ର ହରଣ ଘାଟ -
୪. ଶ୍ରୀ ଅକ୍ରୂର ଘାଟ/ବ୍ରହ୍ମହ୍ରଦ -
୫. ଶ୍ରୀ ନନ୍ଦ ଘାଟ -
୬. ଶ୍ରୀ ବିଶ୍ରାମ ଘାଟ -
୭. ଶ୍ରୀ ବ୍ରହ୍ମାଣ୍ଡ ଘାଟ -
୮. ଶ୍ରୀ ଚିନ୍ତାହରଣ ଘାଟ -
୯. ଶ୍ରୀ କାଳୀୟ ଦଳନ ଘାଟ/କାଳୀ ଦହ -
୧୦. ଶ୍ରୀ ପ୍ରସ୍କନ୍ଦନ ଘାଟ ଓ ଇମଲି ତାଲା -
୧୧. ଶ୍ରୀ ଶୃଙ୍ଗାର ଘାଟ ଓ ଶ୍ରୀ ଗୋବିନ୍ଦ ଘାଟ -
୧୨. ଶ୍ରୀ କେଶୀ ଘାଟ ଓ ପାନି ଘାଟ -
(ଙ) ଦ୍ୱାଦଶ କୁଣ୍ଡ ୯୧
୧. ଶ୍ରୀରାଧାକୁଣ୍ଡ- ଶ୍ୟାମକୁଣ୍ଡ -
୨. ଶ୍ରୀ ଲଳିତା କୁଣ୍ଡ -
୩. ଶ୍ରୀ ମାଲ୍ୟହାରୀ କୁଣ୍ଡ -

୪.  ଶ୍ରୀ ନାରଦ କୁଣ୍ଡ  -
୫.  ଶ୍ରୀ ଗୋଆଲ କୁଣ୍ଡ  -
୬.  ଶ୍ରୀ ବ୍ରହ୍ମ କୁଣ୍ଡ  -
୭.  ଶ୍ରୀ ଦାବାନଳ କୁଣ୍ଡ  -
୮.  ଶ୍ରୀ ଗୋବିନ୍ଦ କୁଣ୍ଡ  -
୯.  ଶ୍ରୀ ଉଦ୍ଧବ କୁଣ୍ଡ  -
୧୦.  ଶ୍ରୀ ବିମଳା କୁଣ୍ଡ  -
୧୧.  ଶ୍ରୀ ଗୌରୀ କୁଣ୍ଡ  -
୧୨.  ଶ୍ରୀ ଧର୍ମ କୁଣ୍ଡ  -
(ଚ) ଦ୍ୱାଦଶ ସରୋବର  ୧୦୯
୧.  ଶ୍ରୀ କୁସୁମ ସରୋବର  -
୨.  ଶ୍ରୀ ଗଜରାଜ ସରୋବର  -
୩.  ଶ୍ରୀ ଦେହ ସରୋବର/ଦେହ କୁଣ୍ଡ  -
୪.  ଶ୍ରୀ ମାନସୀ ଗଙ୍ଗା ସରୋବର  -
୫.  ଶ୍ରୀ ଚନ୍ଦ୍ର ସରୋବର  -
୬.  ଶ୍ରୀମାନ ସରୋବର  -
୭.  ଶ୍ରୀପାବନ ସରୋବର  -
୮.  ଶ୍ରୀସୂର୍ଯ୍ୟ ସରୋବର  -
୯.  ଶ୍ରୀ ଶାନ୍ତନୁ ସରୋବର  -
୧୦.  ଶ୍ରୀ ଶେଷଶାୟୀ ସରୋବର/କ୍ଷୀର ସାଗର  -
୧୧.  ଶ୍ରୀ ଗୋପୀ ସରୋବର  -
୧୨.  ଶ୍ରୀ ପ୍ରେମ ସରୋବର  -
(ଛ) ଦ୍ୱାଦଶ ମହାପୁରୁଷ  ୧୨୪
୧.  ଜୟଦେବ ଗୋସ୍ୱାମୀ  -
୨.  ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ  -
୩.  ବିଶ୍ୱନାଥ ଚକ୍ରବର୍ତ୍ତୀ  -
୪.  ସିଦ୍ଧ କୃଷ୍ଣଦାସ ବାବାଜୀ  -
୫.  ଜଗନ୍ନାଥ ଦାସ ବାବାଜୀ  -
୬.  ଅଓ୍ୱଧ ଦାସ ବାବାଜୀ  -
୭.  ମାଧବ ଦାସ ବାବାଜୀ  -
୮.  ନିତ୍ୟାନନ୍ଦ ଦାସ ବାବାଜୀ  -

୯.  ହରି ବାବାଜୀ  -
୧୦.  ଗୌରାଙ୍ଗ ଦାସ ବାବାଜୀ  -
୧୧.  ହିତସନ୍ଥ ଦାସ ବାବାଜୀ  -
୧୨.  ରାଧାରମଣ ଦାସ ବାବାଜୀ  -

**(ଜ) ଦ୍ୱାଦଶ ଲୀଳାସ୍ଥଳୀ କଥା  ୧୭୪**

୧.  ଶ୍ରୀଧାମ ପରିକ୍ରମା ଲୀଳା  -
୨.  ଶ୍ରୀବୃନ୍ଦାବତୀ ଲୀଳା  -
୩.  ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟ  -
୪.  ଶ୍ରୀ ମାଧବେନ୍ଦ୍ର ପୁରୀ  -
୫.  ଶ୍ରୀ ବଲ୍ଲଭ ଆଚାର୍ଯ୍ୟ  -
୬.  ଶ୍ରୀ ତୁଳସୀ ଦାସ ଗୋସ୍ୱାମୀ  -
୭.  ଶ୍ରୀ ଭକ୍ତ ସାଲବେଗ  -
୮.  ଶ୍ରୀରାମକୃଷ୍ଣ ପରମହଂସ  -
୯.  ଶ୍ରୀ ଗଓ୍ୱାଁରିଆ ବାବା  -
୧୦.  ଶ୍ରୀସ୍ୱାମୀ ବିବେକାନନ୍ଦ  -
୧୧.  ଶ୍ରୀ ଯୋଗାନନ୍ଦ ପରମହଂସ  -
୧୨.  ଶ୍ରୀ କୃପାଳଜୀ ମହାରାଜ  -

**(ଝ) ଦ୍ୱାଦଶ ମହାପୁରୁଷ ସମାଧି  ୨୧୩**

୧.  ବିଲ୍ୱମଙ୍ଗଳ ଠାକୁର
୨.  ପ୍ରବୋଧାନନ୍ଦ ସରସ୍ୱତୀ
୩.  ଭକ୍ତ ସୂରଦାସ
୪.  ସ୍ୱାମୀ ହରି ଦାସ
୫.  ରସ ଖାନ୍
୬.  ବଳଦେବ ବିଦ୍ୟାଭୂଷଣ
୭.  ଲାଲ ବାବୁ
୮.  କୃଷ୍ଣଦାସ ବାବାଜୀ(ରଣ ବାଡ଼ି)
୯.  ଓଡ଼ିଆ ବାବା
୧୦.  ନିମ କରୋଲି ବାବା
୧୧.  ଏ.ସି ଭକ୍ତିବେଦାନ୍ତ ସ୍ୱାମୀ
୧୨.  ଅଖଣ୍ଡଆନନ୍ଦ ସରସ୍ୱତୀ

## ଦ୍ୱିତୀୟ ଭାଗ

## ଶ୍ରୀମଦ୍ଭାଗବତ ମାହାତ୍ମ୍ୟମ୍(ସ୍କନ୍ଦପୁରାଣ-ବୈଷ୍ଣବ ଖଣ୍ଡେ)


| | | |
|---|---|---|
| ୧. | ପ୍ରଥମ ଅଧ୍ୟାୟ | ୨୪୦ |
| ୨. | ଦ୍ୱିତୀୟ ଅଧ୍ୟାୟ | ୨୫୫ |
| ୩. | ତୃତୀୟ ଅଧ୍ୟାୟ | ୨୬୫ |
| ୪. | ଚତୁର୍ଥ ଅଧ୍ୟାୟ | ୨୮୩ |
| ୫. | ପରିଶିଷ୍ଟ | ୩୦୦ |

ଓଁ ନମୋ ଭଗବତେ ବାସୁଦେବାୟ

# ପ୍ରଥମ ଭାଗ

## ଶ୍ରୀବୃନ୍ଦାବନ ଧାମ ମାହାତ୍ମ୍ୟମ୍

## (କ) ଦ୍ୱାଦଶ ବନ

### ୧. ଶ୍ରୀଭଦ୍ରବନ

ପ୍ରଶ୍ନ-୧. ସ୍ୱନାମ ଧନ୍ୟ ଓଡ଼ିଆ ଶ୍ରୀଜଗନ୍ନାଥ ଭକ୍ତ ଶ୍ରୀସାଲବେଗ ଗାଇଥିଲେ **ଯେ ଜୀବନରେ ଥିବି ଯଦି ଯିବି ବୃନ୍ଦାବନ । ଦର୍ଶନ କରିବି ଯାଇ ଶ୍ରୀମଧୁସୂଦନ ।** ଏଠାରେ ସଂକେତ କରାଯାଇଥିବା ବୃନ୍ଦାବନ ଶବ୍ଦ କଅଣ ଉତ୍ତର ପ୍ରଦେଶ ସ୍ଥିତ ମଥୁରା ରେଳଷ୍ଟେସନ ନିକଟସ୍ଥ ବୃନ୍ଦାବନ ସହରକୁ ବୁଝାଏ କି ?

**ଭଦ୍ର ଶ୍ରୀ ଲୌହ ଭାଣ୍ଡୀର ମହା ତାଳ ଖଦିରକାଃ ।**
**ବହୁଳା କୁମୁଦଂ କାମ୍ୟଂ ମଧୁ ବୃନ୍ଦାବନଂ ତଥା ॥**
**ଦ୍ୱାଦଶ-ଏତାନି-ଅରଣ୍ୟାନି କାଳିନ୍ଦ୍ୟାଃ ସପ୍ତ ପଶ୍ଚିମେ ।**
**ପୂର୍ବେ ପଞ୍ଚ ବନଂ ପ୍ରୋକ୍ତଂ ତତ୍ର-ଅସ୍ତି ଗୁହ୍ୟଂ ଉତ୍ତମମ୍ ॥**

ଉ. ବିଲ୍‌କୁଲ ନୁହେଁ । ଏଠାରେ ବରଂ ତେରଶହ ଗ୍ରାମ ବିଶିଷ୍ଟ ବ୍ରଜ ଚୌରାଶି କୋଶ, ସମଗ୍ର ବ୍ରଜମଣ୍ଡଳ, ବ୍ରଜଧାମକୁ ସଂକେତ କରାଯାଇଛି ଯାହା ଦ୍ୱାଦଶ ବନ ଓ ଦ୍ୱାଦଶ ଉପବନ ସମୂହକୁ ବୁଝାଏ ଯାହା ମଧ୍ୟରେ ପରମ ଗୋପନୀୟ ବନ ବୃନ୍ଦାବନ(ତତ୍ର-ଅସ୍ତି ଗୂହ୍ୟଂ ଉତ୍ତମମ୍)ମଧ ବିରାଜମାନ କରିଛନ୍ତି ।

ଶ୍ରୀମଦ୍ଭାଗବତ ମହାପୁରାଣରେ ଯେଭଳି ପ୍ରଥମ ଠାରୁ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଛନ୍ତି ଦ୍ୱାଦଶ ସ୍କନ୍ଧ ବର୍ଣ୍ଣିତ ଆଶ୍ରୟ ଲକ୍ଷଣକୁ କେବଳ ବୁଝାଇଦେବା ଲାଗି(ଦଶମସ୍ୟ ବିଶୁଦ୍ଧି-ଅର୍ଥଂ ନବାନାଂ ଇହ ଲକ୍ଷଣମ୍) । ଠିକ୍ ସେହି ନ୍ୟାୟରେ ଦ୍ୱାଦଶ ବନ ବା ଚତୁର୍ବିଂଶ ବନ ଉପବନ ମଧ୍ୟରେ ଶ୍ରେଷ୍ଠ ବନ ବୃନ୍ଦାବନର ମାହାତ୍ମ୍ୟ ପ୍ରକଟ ଲାଗି ଅନ୍ୟ ବନ ଉପବନମାନଙ୍କର ବର୍ଣ୍ଣନାର ବ୍ୟବସ୍ଥା ଖଞ୍ଜାଯାଇଛି ।

ଉଗ୍ରସେନଙ୍କ ପୁତ୍ର ଦାନବରାଜ କଂସଙ୍କ ବୈଷ୍ଣବ ପୀଡ଼ନ ଅତ୍ୟାଚାରରେ ବ୍ୟଥିତ ହୋଇ ଧରଣୀମାତା ବ୍ରହ୍ମାଦି ଦେବଗଣଙ୍କ ସହିତ କ୍ଷୀର ସାଗରରେ ପୁରୁଷ ସୂକ୍ତ ଦ୍ୱାରା ସ୍ତୁତି ପ୍ରାର୍ଥନା କଲେ । ଫଳରେ ଭଗବାନ କୃଷ୍ଣ ଖୁବ୍ ଶୀଘ୍ର ଅବତାର ନେବାର ସୂଚନା ପ୍ରଦାନ କଲେ । ଯୋଗମାୟା ଓ ସୃଷ୍ଟି କର୍ତ୍ତା ବ୍ରହ୍ମାଜୀଙ୍କୁ ଏଥିପାଇଁ ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଲେ । ଶ୍ରୀରାଧା ରାଣୀ କିନ୍ତୁ ପ୍ରଥମେ ପୃଥିବୀକୁ ଆସିବାକୁ ଅମଙ୍ଗ ହୋଇ କହିଥିଲେ: –

**ଯତ୍ର ବୃନ୍ଦାବନ ନାସ୍ତି ନ ଯତ୍ର ଯମୁନା ନଦୀ ।**
**ଯତ୍ର ଗୋବର୍ଦ୍ଧନ ନାସ୍ତି ତତ୍ର ମେ ନ ମନଃ ସୁଖମ୍ ।।(ଗର୍ଗ ସଂହିତା)**

ସୁତରାଂ ଭଗବାନ ଶ୍ରୀକୃଷ୍ଣ ଚିନ୍ମୟ ନିତ୍ୟ ଗୋଲୋକ ଧାମରୁ ୨୪ବନ ସମନ୍ୱିତ ବ୍ରଜମଣ୍ଡଳ, ଯମୁନା ନଦୀ, ଗୋବର୍ଦ୍ଧନ ପର୍ବତ, ଗୋପୀ, ଗୋପାଳ, ଅଷ୍ଟ ମହାସଖୀ ସମେତ ଶ୍ରୀରାଧାରାଣୀଙ୍କୁ ଭୌତିକ ଧରାଧାମକୁ ପ୍ରେରଣ କରିବା ବ୍ୟବସ୍ଥା କରିଦେଲେ ।

ଦ୍ୱାଦଶ ମୁଖ୍ୟ ବନ ମଧ୍ୟରେ ପ୍ରଥମ ବନ ଭଦ୍ର ବନ ଅଟେ ।

**ଭଦ୍ରାୟ ଭଦ୍ରରୂପାୟ ସଦା କଲ୍ୟାଣ ବର୍ଦ୍ଧନେ ।**
**ଅମଙ୍ଗଳ ଛିଦେ ତସ୍ମୈ ନମୋ ଭଦ୍ରବନାୟ ଚ ।।(ଭବିଷ୍ୟୋତ୍ତର ପୁ)**

ଯେହେତୁ ଏହି ଚିନ୍ମୟ ଭଦ୍ରବନ ସକଳ ଜୀବଗଣଙ୍କ କଲ୍ୟାଣକାରୀ ଓ ଅମଙ୍ଗଳ ହରଣକାରୀ ସେ କେବଳ ଜୀବ ହୃଦୟରେ କୃଷ୍ଣପ୍ରେମର ଉଦ୍ରେକ କରିବାରେ ମୁଖ୍ୟ ଭୂମିକା ନିଅନ୍ତି । ସୁତରାଂ ସର୍ବପ୍ରଥମେ ସାଧକ ତାଙ୍କୁ ନମସ୍କାର କରିଛନ୍ତି । କୃଷ୍ଣ ବଳରାମଙ୍କର ଏହି ବନ ଲୀଳା ଖେଳ, ଗୋଚାରଣ, ମଲ୍ଲକୁସ୍ତି ଲାଗି ସମସ୍ତ ବନ୍ଦୋବସ୍ତ ବ୍ରହ୍ମାଜୀ ଯୋଗମାୟାଙ୍କ ନିର୍ଦ୍ଦେଶରେ କରିଥିଲେ । ମହାତ୍ମାମାନେ ପୁଣି ଅନେକ କାରଣ ଦର୍ଶାନ୍ତି ଏହାର ନାମ କରଣ ସଂପର୍କରେ । କଂସ ବଧ ପରେ ଦେବକୀ ବସୁଦେବ ନିଜ କୁଳ ପୁରୋହିତ ଗର୍ଗ ଆଚାର୍ଯ୍ୟଙ୍କୁ ଡ଼କାଇ ଏହି ବନରେ ଦୁଇ ଭାଇଙ୍କର କେଶ ମୁଣ୍ଡନ ସଂସ୍କାର କରାଇଥିଲେ । ସେ ଏଣିକି ନଟଖଟ ପଣିଆ ଛାଡ଼ି ଭଦ୍ର ବ୍ୟବହାର କରନ୍ତୁ ଏହି ଆଶା ଥିଲା ତାଙ୍କର । ଯେତେବେଳେ ରାଜାଘର ସନ୍ତାନ, ଯୁବତୀ ମାନଙ୍କ ବସ୍ତ୍ର ହରଣ, ଘରେ ଘରେ ପଶି ସର ଲବଣି ଚୋରୀ, ଯମୁନା କୂଳରେ ଯୁବତୀ ନାରୀଙ୍କ କାନି ଟାଣିବା, ଟେକାମାରି କଳସି ଭାଙ୍ଗିବା ସ୍ୱଭାବ ଏଣିକି ତାଙ୍କ ପକ୍ଷରେ ଶୋଭନୀୟ ନୁହେଁ । ଏହି ମୁଣ୍ଡନ ସଂସ୍କାର ପରେ ବସୁଦେବଜୀ ଉଜ୍ଜୟିନୀ

ସ୍ଥିତ ସନ୍ଦିପନୀ ଆଶ୍ରମକୁ ବୈଦିକ ଶିକ୍ଷା ପ୍ରାପ୍ତି ଲାଗି କୃଷ୍ଣ ବଳରାମଙ୍କୁ ପ୍ରେରଣ କରିଛନ୍ତି । ଅତଏବ ଏହି ଭଦ୍ର ବନ ଯୋଗୁ ଠାକୁରଜୀଙ୍କ ଜୀବନ ନୂଆ ମୋଡ଼ ନେଇଛି । ତେଣୁ ଏ ବନର ମନ୍ଦିରରେ ତାଙ୍କ ନାମ ରଖାଯାଇଛି ଶ୍ରୀଭଦ୍ରବନ ବିହାରୀ ।

ବୃନ୍ଦାବନ କିମ୍ବା ମଥୁରାରୁ ଏଠାକୁ ଯିବାକୁ ହେଲେ ଗାଡ଼ି, କିମ୍ବା ଟେମ୍ପୋଟିଏ କରି ଶ୍ରୀଯମୁନା ନଦୀ ପାର ହୋଇ ପୂର୍ବ ତଟକୁ ଯିବାକୁ ହେବ । ନନ୍ଦଘାଟଠାରୁ ଏହିବନ ୩କି.ମି. ଦୂର ।

**୨. ଶ୍ରୀବନ ବା ବିଲ୍ୱବନ**

ପ୍ରଶ୍ନ-୨. ସଂସ୍କୃତ ଭାଷାରେ ବେଲ ଓ ନଡ଼ିଆକୁ ଶ୍ରୀଫଳ କୁହାଯାଏ । ଶ୍ରୀଫଳ ଅର୍ଥ ଶ୍ରେଷ୍ଠ ଫଳ । ଗୋପାଳ ଗୋପୀନାଥଙ୍କ ଲୀଳାରେ ଗୋପାଳମାନେ ଥରେ ପାଚିଲା ଫଳ ଆସ୍ୱାଦନ କରିବାକୁ ଇଛା କରିଥିଲେ । ଏହି ବେଲବନ ସେମାନଙ୍କ ଇଚ୍ଛା ପୂରଣ କରିଥିବାରୁ ଏ ବନର ଏପରି ନାମକରଣ ହୋଇଥିଲା ।

ପୁଣି ଶ୍ରୀ ଶବ୍ଦର ଅର୍ଥ ବୈକୁଣ୍ଠ ବିହାରୀ ମହାବିଷ୍ଣୁଙ୍କର ବକ୍ଷ ବିହାରିଣୀ ମହାଲକ୍ଷ୍ମୀଙ୍କୁ ମଧ୍ୟ ବୁଝାଏ । ଯମୁନା ନଦୀର ପୂର୍ବ ତଟରେ ମହାଲକ୍ଷ୍ମୀଙ୍କର ଏକ ଭବ୍ୟ ମନ୍ଦିର ଏବେ ମଧ୍ୟ ବିଦ୍ୟମାନ । ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ବ୍ରଜମଣ୍ଡଳ ଦର୍ଶନରେ ଆସିବା ବେଳେ ଏଠାରେ କିଛି ସମୟ ଧ୍ୟାନ ମଗ୍ନ ହୋଇଥିଲେ । ଶ୍ରୀମଦ୍ଭାଗବତ ମହାପୁରାଣରେ ଏହି ମହାଲକ୍ଷ୍ମୀଙ୍କ ବିଷୟରେ କେଉଁଠାରେ କିଭଳି ବର୍ଣ୍ଣନା କରାଯାଇଛି ?

**ଜୟତିତେଽଧିକଂ ଜନ୍ମନା ବ୍ରଜଃ ଶ୍ରୟତ ଇନ୍ଦିରା ଶଶ୍ୱତ୍ ଅତ୍ର ହି ।**
**ଦୟିତ ଦୃଶ୍ୟତାଂ ଦିକ୍ଷୁ ତାବକାଃ ତ୍ୱୟି ଧୃତାଽସବଃ ତ୍ୱାଂ ବିଚିନ୍ୱତେ ।।୧।।**

ଉ. ବୃନ୍ଦାବନରେ ମହାରାସ ବେଳେ ଶ୍ରୀକୃଷ୍ଣ ହଠାତ୍ ଅଲକ୍ଷିତ ହୋଇଗଲେ । ପ୍ରିୟତମଙ୍କ ବିରହରେ ଗୋପୀମାନେ ବ୍ୟାକୁଳରେ ଗାନ କରି କହିଲେ, ''ହେ ପ୍ରିୟତମ(ଦୟିତ), ଦେଖନ୍ତୁ(ଦୃଶ୍ୟତାଂ), ଆମେ ଗୋପାଳୁଣୀମାନେ ଆପଣଙ୍କର ସଂପୂର୍ଣ୍ଣ ଆଶ୍ରିତା ଓ ଶରଣାଗତ । ଆପଣଙ୍କ ଲାଗି ଆମେ ଜୀବନ ଧାରଣ କରିଛୁ(ତ୍ୱୟି ଧୃତାଽସବଃ) । ଆମେ ଆପଣଙ୍କୁ ଖୋଜୁଛୁ(ତ୍ୱାଂ ବିଚିନ୍ୱତେ) । ଏହି ବ୍ରଜଧାମ ଆପଣଙ୍କ ପ୍ରାକଟ୍ୟ ହେତୁ(ତେ ଜନ୍ମନା) ଧନ୍ୟ ହୋଇଛି(ଜୟତି ଅଧିକଂ) । ସର୍ବୋପରି ମହାବିଷ୍ଣୁଙ୍କ ଚରଣ ସେବା ତ୍ୟାଗ କରି ଜଗତବନ୍ଦ୍ୟା ସ୍ୱୟଂ ମହାଲକ୍ଷ୍ମୀ (ଇନ୍ଦିରା) ଏଠାର ଶ୍ରୀବନ ବା ବିଲ୍ୱବନରେ ଅନେକ କାଳ ଧରି ତପସ୍ୟା କରିବାରେ ଲାଗିଛନ୍ତି ।

ବ୍ରଜଧାମ ସ୍ଥିତ ସକଳ କୃଷ୍ଣଭକ୍ତଙ୍କର ଖାଦ୍ୟ, ବସ୍ତ୍ର, ଅଳଙ୍କାର, ବାସଭୂମି ଇତ୍ୟାଦି ଦରକାର ଠାରୁ ଅଧିକ ମାତ୍ରାରେ ବନ୍ଦୋବସ୍ତ କରି ନିତ୍ୟ ନିରନ୍ତର ବୈଷ୍ଣବ ସେବା କରି ସେଇ ମହାଲକ୍ଷ୍ମୀ ଏବେ ମଧ ତପସ୍ୟାରତ ଅଛନ୍ତି । ତଥାପି ତାଙ୍କୁ ମହାରାସରେ ଏଥରକ ମଧ ପ୍ରବେଶ ଅଧିକାର ବା ସୁଯୋଗ ମିଳିପାରିନି । ଆମେମାନେ ସକଳ ଶ୍ରୀହୀନା, ଶ୍ରୀଅକ୍ଷର ବିବର୍ଜିତା, ଟିପ ମଡ଼ାଇବା ଗୋପାଳୁଣୀ ଦଳେ ମାତ୍ର । ଆମର କୋଟି ଯୁଗର ସାଇତା ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ଏଇ ଚାରି ଚିଜକୁ ଆପଣଙ୍କୁ ସମର୍ପଣ କରି ଆପଣଙ୍କ ଠାରେ ଶରଣ ପଶିଛୁ । ଆମକୁ ନିରାଶ ନକରି କୃପା କରନ୍ତୁ ।'' ଏହିଭଳି ଅଠରଜଣ ଗୋପୀ ଅଠରଶ୍ଳୋକରେ କାକୁତି ମିନତି କରି ଗୋବିନ୍ଦଙ୍କୁ ପ୍ରସନ୍ନ କରି ତାଙ୍କ ପ୍ରେମ ପ୍ରାପ୍ତି ହୋଇଥିଲେ । ଦେଖାଯାଉ ମହାଲକ୍ଷ୍ମୀ ତାଙ୍କ ତପସ୍ୟାରେ ସେଇ ଚାରି ଚିଜକୁ ସଂପୂର୍ଣ୍ଣ ସମର୍ପଣ କରି ଅମୂଲ୍ୟ କୃଷ୍ଣପ୍ରେମ କେବେ ପ୍ରାପ୍ତ କରିବେ । ତେବେ ଯାଇ ଏହି ଶ୍ରୀବନ ବା ବିଲ୍ୱବନ ଧନ୍ୟାତିଧନ୍ୟ ବୋଲାଇବ ।

ବୃନ୍ଦାବନର କେଶୀଘାଟରୁ ଡ଼ଙ୍ଗା ଯୋଗେ ୯କି.ମି. କିମ୍ବା ଟେମ୍ପୋ ଦ୍ୱାରା ଯମୁନା ପାର ହୋଇ ୧୨କି.ମି. ଦୂରରେ ଥିବା ମହାଲକ୍ଷ୍ମୀଙ୍କର ଏହି ମନ୍ଦିରକୁ ଯାଇ ହୁଏ । ଏଠାରେ ପୂଜିତ ଠାକୁରଙ୍କ ନାମ ଶ୍ରୀବନ ବିହାରୀ ।

### ୩. ଶ୍ରୀଲୌହ ବନ

ପ୍ରଶ୍ନ-୩. ଶ୍ରୀଯମୁନା ନଦୀର ପୂର୍ବ ତଟରେ ଏହି ଲୌହବନ ଅବସ୍ଥାନ କରିଛନ୍ତି । ମଥୁରାରୁ ୭କି.ମି. ଓ ଶ୍ରୀବୃନ୍ଦାବନର ପାନିଗାଓଁ ଠାରୁ ୮କି.ମି. ଦୂରରେ ଏ ବନ । ଦ୍ୱାପର ଯୁଗରେ ଲୌହଜଙ୍ଘ ନାମକ ଏକ ଅବୈଷ୍ଣବ ଅସୁର ଏ ବନକୁ କବ୍‌ଜା କରି ରଖିଥିଲା । ଭଗବାନ ଶ୍ରୀକୃଷ୍ଣ ତାକୁ ଉଦ୍ଧାର କରି (ପ୍ରାଣ ନାଶ କରି) ଗୋପୀଗୋପାଳଙ୍କ ଲାଗି ଏହି ବନରେ ଲୀଳା ଖେଳାର ବ୍ୟବସ୍ଥା କରିଥିଲେ । ପ୍ରଚୁର ଗୋଚାରଣ ସାମଗ୍ରୀ ଥିବା ଭୂମି ମିଳିଗଲା ଗୋଧନ ପଲଙ୍କୁ ମନ ଖୁସିରେ ଠାକୁରଜୀଙ୍କ ସାନ୍ନିଧ ପ୍ରାପ୍ତି ଲାଗି । ଘଟଣାର ସ୍ମାରକୀ ସ୍ୱରୂପ ସେଠାରେ ଏବେ ଲୋହାସୁର ପାହାଡ଼ ଗୁମ୍ଫା ଏବେ ବି ବିଦ୍ୟମାନ । ଲୀଳାଟିର ସ୍ମୃତିଚାରଣ ଲାଗି ମଥୁରାର ରାଜା ବଜ୍ରନାଭ ସେଠାରେ ଶ୍ରୀ ଗୋପୀନାଥ ଦେବ୍‌ଙ୍କ ନାମରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରାଇଥିଲେ ।

ବୃନ୍ଦାବନର ଶ୍ରୀକୃଷ୍ଣ ଲୀଳାର ଏକ ଅବିସ୍ମରଣୀୟ ଲୀଳା ହେଉଛି ବୁଡ଼ା ନାଉରୀ ଲୀଳା ବା ନାବକେଳି ଲୀଳା । ସେହି ଘଟଣାଟି ଘଟିଥିଲା ଏହି ପବିତ୍ର

ଲୌହବନରେ । ଗୋପୀଗଣଙ୍କ ସହିତ ଶ୍ରୀରାଧାରାଣୀ ଦୁଧ, ଦହି, ସର ବିକ୍ରୀ କରିବାକୁ ଥରେ ଯମୁନା ନଦୀ ପାରହେବାକୁ ଦରକାର ପଡ଼ିଲା । ଠାକୁରଜୀ ତ ବଡ଼ ହଟିଆ ନାଗର । ଯୋଗମାୟାଙ୍କୁ ସ୍ମରଣ କରନ୍ତେ ଲୀଳାର ସବୁ ବନ୍ଦୋବସ୍ତ ସେ କରିଦେଲେ । ଯମୁନା କୂଳରେ ଦଦରା ନାବଟିଏ ଦୃଶ୍ୟମାନ ହେଲା । କିଶୋର କୃଷ୍ଣ ଏବେ ପାକଲା ଦାଢ଼ି ସାଉଁଳି ସାଉଁଳି ନାଉରୀ ବେଶରେ ଡ଼ଙ୍ଗା ବାହିଲେ । ମୁଣ୍ଡରେ ଠେକା ହାତରେ ଲମ୍ବ ବାଉଁଶର କାତ ବାଡ଼ି । ଦୁଇ ନୟନରେ ଲେଞ୍ଜରା ବହୁଛି । ଗୋପୀମାନେ ଦେଖିଲେ ସେଇ ଗୋଟିକ ମାତ୍ର ନାଆ ଯମୁନାରେ ଅଛି । ଯିବାରେ ଡ଼େରି ହେଲେ ଦୁଧ ଦହି ନଷ୍ଟ ହୋଇଯାଇପାରେ । ତରବର ହୋଇ ଗୋପୀମାନେ ଡ଼ାକ ଛାଡ଼ିଲେ ବୁଢ଼ା ନାଉରୀଙ୍କୁ ଗେଲବସରରେ ଭାଇ ବୋଲି ସମ୍ବୋଧନ କରି । ଅନୁରୋଧ କଲେ ଚଞ୍ଚଳ ତାଙ୍କ ଡ଼ଙ୍ଗାରେ ଯମୁନା ନଦୀ ପାର କରିଦେବାକୁ । ସେତେବେଳେ ଟଙ୍କା ପଇସାକୁ ସ୍ୱର୍ଣ୍ଣମୁଦ୍ରା କିମ୍ବା କଉଡ଼ି କୁହାଯାଉଥିଲା । ନାଉରୀ ବିଚରା କୂଳରେ ଡ଼ଙ୍ଗା ଖଟେଇଲେ । ଗୋପୀମାନେ ତରବର ହୋଇ ଡ଼ଙ୍ଗାରେ ବସିଗଲେ । ନାଉରୀକୁ ନାଆ ବୁହାଇବାକୁ ବାରମ୍ବରେ ଅନୁରୋଧ କଲେ । ନାଆ ତଳେ କେତେକ ଜଳା ଥାଏ । ଜଳାମାନ ଦେଇ ନଦୀ ଜଳ ଡ଼ଙ୍ଗାରେ ପଶୁଥାଏ । ନାଆ ନଦୀ ମଝିରେ ପହଞ୍ଚି ଯାଆନ୍ତେ ଠାକୁରଜୀ ଗୋପୀମାନଙ୍କୁ କଉଡ଼ି ମାଗିଲେ । ଗୋପୀମାନେ ଦେଖିଲେ ଡ଼ଙ୍ଗା ବାହାରେ  ଜଳ ପୁଣି ଭିତରେ ବି ଜଳ । କାଠୁଆ ଧରି ସେମାନେ ଭିତର ଜଳକୁ ବାହାରକୁ ଫିଙ୍ଗିବାରେ ଲାଗିଲେ । କାହାରି ପାଖରେ କାଣି କଉଡ଼ିଟିଏ ମଧ୍ୟ ନାହିଁ । ଫେରିବା ବେଳକୁ ଦେବେ ବୋଲି ନାଉରୀଙ୍କୁ ପ୍ରତିଶ୍ରୁତି ଦେଲେ । ନାଉରୀ କି ଛାଡ଼ିବା ଲୋକ ? କହିଲେ, ‘‘ହେ ଗୋପ ବାଳିକେ, ତୁମେ ମନେ ମନେ ଆଉ ନିଜକୁ ଚତୁରୀ ଭାବ ନାହିଁ । ପାଖରେ ଯଦି କଉଡ଼ି ନାହିଁ ତେବେ ଡ଼ଙ୍ଗାରୁ ଓହ୍ଲାଇ ନଦୀକୁ ଡ଼େଇଁ ପହଁରି ପଳାଅ ।’’ ଗୋପୀମାନେ ଅତି ବ୍ୟାକୁଳ ହୋଇ କିଛି ଉପାୟ ବତାଇବାକୁ କହିଲେ । ନାଉରୀ ବେଶୀ ଭଗବାନ ଏକ ଅଦ୍ଭୁତ ସର୍ତ୍ତ ବାଢ଼ିଲେ । ଜଣକୁ ବନ୍ଧା ରଖି ଅନ୍ୟମାନେ ଯାଇପାରନ୍ତି । ଦୁଧ ଦହି ବିକି ଫେରିବା ବେଳେ କଉଡ଼ି ଦେଇ ତାଙ୍କୁ ମୁକୁଳେଇ ନେଇ ପାରନ୍ତି । ଲଳିତା, ବିଶାଖା, ତୁଙ୍ଗବିଦ୍ୟା ଓ ରଙ୍ଗଦେବୀ ଆଦି ସଖୀମାନେ କେହି କିନ୍ତୁ ରହିବାକୁ ରାଜି ହେଲେନି । ତାଙ୍କ ଘରେ ଭାରି କାଇଦା କଟକଣା । ଏଣେ ଏକୁଟିଆ ଗୋଟେ ମରଦ ପୁଅ ପାଖରେ ରହିବାକୁ ପଡ଼ିବ । ବଡ଼ ଅଡୁଆ କଥା । ଶେଷରେ ସମସ୍ତେ ଶ୍ରୀମତୀଙ୍କୁ ଆଙ୍ଗୁଠି ଦେଖେଇ

ଦେଲେ । ହେଇ ଏଇ ରହିବେ । ଯାଙ୍କର ନିନ୍ଦା, ଅପବାଦକୁ ଡ଼ର ନାହିଁ । ଏ ତ ଲାଜ ସରମ ସବୁ ପୋଡ଼ି ଖାଇଛନ୍ତି । ଯାଙ୍କୁ ହିଁ ରଖ । ଆମକୁ ଜଲଦି ନଦୀ ପାର କରେଇ ଦିଅ । ଶ୍ରୀମତୀ ଓ ଠାକୁରଜୀ ଦୁହେଁ ଯାକ ତ ସେଇଆ ଚାହୁଁଥିଲେ । ମୁରୁକି ହସି ଦୁହେଁ ହଁ ଭରିଦେଲେ ।

ସଙ୍ଗେ ସଙ୍ଗେ ଯୋଗମାୟା ପହଞ୍ଚି ସେହି ଲୀଳା ସ୍ଥଳୀରେ କୁଞ୍ଜବନ ପ୍ରକଟ କରିଦେଲେ । ଶୁଆ, ଶାରୀ, କୁଞ୍ଜ, ଲତା, ଫୁଲ ଫଳରେ କୁଞ୍ଜ ସଜା ହୋଇଗଲା । ଝାଞ୍ଜ, ମର୍ଦ୍ଦଳ, କରତାଳ ଆଦି ବାଜା ବାଜିଲା । ମଧୁର ସଙ୍ଗୀତର ମୂର୍ଚ୍ଛନା ପ୍ରକଟିତ ହେଲା । ଦୋଳିରେ ଠାକୁର ଠାକୁରାଣୀଙ୍କୁ ବସାଇ ଗୋପୀଗଣ ଝୁଲା ଝୁଲାଇଲେ । ଆରତୀ ଉତାରିଲେ । ସୁମଧୁର ସ୍ୱରରେ ସେତେବେଳେ ହୁଳହୁଳି ସହିତ ଗୋପାଙ୍ଗନାମାନେ କ'ଣ ଗାଇଲେ ?

**ଝୁଲାଅ ଗୋ କିଶୋରୀ କାହ୍ନା ।**
**ଝୁଲାଅ ଗୋ କିଶୋରୀ କାହ୍ନା ।**
**କିଶୋର କିଶୋରୀ ବୋଲି କୁଞ୍ଜେ ଉଡୁ ବାନା ।**
**ଝୁଲାଅ ଗୋ କିଶୋରୀ କାହ୍ନା ॥**

ଏହିପରି ନୌକା ବିହାର ଲୀଳାରେ ଶ୍ରୀଲୌହବନ ଭବିଷ୍ୟତ କୃଷ୍ଣଭକ୍ତଗଣଙ୍କ ଲାଗି ସାକ୍ଷୀ ହୋଇ ରହିଗଲେ । ଏହି ବନ ମଧ୍ୟରେ ଅବସ୍ଥିତ ରାଇ କିଶୋରୀଙ୍କ ପ୍ରକଟ ସ୍ଥାନ । ନାମ ତାର ଆଜିର ମଥୁରା ନିକଟସ୍ଥ ରାଓଲ (ରାଧା-ବୋଲ) । ଦ୍ୱାପର ଯୁଗରେ ଏହା ଏକ ସ୍ୱତନ୍ତ୍ର ଜନବସତି ଥିଲା । ଏହାର ରାଜା ବୃଷଭାନୁ ଓ ରାଣୀ କୀର୍ତ୍ତିଦା ଥିଲେ ବୋଲି ଗର୍ଗ ସଂହିତା ଗ୍ରନ୍ଥରେ ଉଲ୍ଲେଖ ଅଛି । ବର୍ତ୍ତମାନ ରାଓଲରେ ଏକ ସୁନ୍ଦର ମନ୍ଦିର ଗଢ଼ି ଉଠିଛି । ପୁରାତନ ବସ୍ତିରେ ବୃଷଭାନୁ ରାଜାଙ୍କର ବାସ ଭବନର ଭଗ୍ନାବଶେଷ ଦେଖିବାକୁ ମିଳେ ।

ଏହି ଲୌହବନ ଦର୍ଶନରେ ଯିବାକୁ ହେଲେ ଶ୍ରୀଯମୁନା ନଦୀ ପାରହୋଇ ୭କି.ମି. ଦୂର ପୂର୍ବ ତଟକୁ ଯିବାକୁ ହେବ । ଏ ବନରେ ଆରାଧ୍ୟ ଦେବ ଶ୍ରୀଲୌହବନ ବିହାରୀ । ତାଙ୍କୁ ଦୁଇ ହାତରେ ପ୍ରଣାମ ।

**୪. ଶ୍ରୀଭାଣ୍ଡୀର ବନ**

ପ୍ରଶ୍ନ-୪. ନଅ ଶହ ବର୍ଷ ତଳର ଓଡ଼ିଶାର ସଂସ୍କୃତ ସାହିତ୍ୟର ମହାକବି

ଶ୍ରୀଜୟଦେବ ଗୋସ୍ୱାମୀ ତାଙ୍କର ଶେଷ ଜୀବନ ବୃନ୍ଦାବନ ଧାମରେ ବ୍ୟତୀତ କରିଥିଲେ । ସେହି ଅମର କବି ଶ୍ରୀଜୟଦେବଙ୍କୀ ଗର୍ଗ ସଂହିତାର କଥାବସ୍ତୁର ଆଧାରରେ ତାଙ୍କର ଅମର କାବ୍ୟ ଗୀତଗୋବିନ୍ଦ ରଚନା କରିଥିଲେ । ଯାହାର ବିଷୟ ବସ୍ତୁ ଅତ୍ୟନ୍ତ ଗୋପନୀୟ । ଅନେକ କୃଷ୍ଣଭକ୍ତଙ୍କୁ ଏକଥା ଏବେ ବି ସଂପୂର୍ଣ୍ଣ ଅଜଣା ଯେ ଶ୍ରୀରାଧା କୃଷ୍ଣ ସତରେ ବିବାହିତ ଦମ୍ପତ୍ତି ବୋଲି । ତାଙ୍କର ଗୁପ୍ତ ବିବାହର ମୁକ ସାକ୍ଷୀ ଯେଉଁ ବନ ତାର ନାମ ଏହି ଭାଣ୍ଡୀର ବନ । ଏ ବିଷୟରେ କବି ଜୟଦେବ ଗୋସ୍ୱାମୀ କଅଣ ଉଲ୍ଲେଖ କରିଛନ୍ତି ଗୀତଗୋବିନ୍ଦ କାବ୍ୟର ପ୍ରଥମ ସର୍ଗର ପ୍ରଥମ ଶ୍ଳୋକରେ ମଙ୍ଗଳାଚରଣ କରିବା ଉଦ୍ଦେଶ୍ୟରେ ?

**ମେଘୈଃ ମେଦୁରଂ ବନଭୁବଃ ଶ୍ୟାମାଃ ତମାଳ ଦ୍ରୁମୈଃ**
**ନକ୍ତଂ ଭୀରୁଃ ଅୟଂ ତ୍ୱଂ ଏବ ତତ୍ ଇମଂ ରାଧେ ଗୃହଂ ପ୍ରାପୟ ।**
**ଇତ୍ଥଂ ନନ୍ଦ ନିଦେଶିତଃ ଚଳିତୟୋଃ ପ୍ରତି ଅଧ୍ୱ କୁଞ୍ଜଦ୍ରୁମଂ**
**ରାଧା ମାଧବୟୋଃ ଜୟନ୍ତି ଯମୁନା କୂଳେ ରହଃ କେଳୟଃ ॥**

ଉ. ସ୍ଥାନ ନନ୍ଦ ଗୋକୁଳ । ଠାକୁରଜୀଙ୍କ ବାଲ୍ୟତ ବୟସ । କେତେବେଳେ ଠୁକୁର ଠୁକୁର ଚାଲୁଛନ୍ତି ତ ପୁଣି କେତେବେଳେ କାଖରେ କିମ୍ବା କାନ୍ଧରେ । ନନ୍ଦ ମହାରାଜା ଗେହ୍ଲାପୁଅକୁ ଧରି ଗୋଗୋଷ୍ଠରେ ଥାଆନ୍ତି । ଯୋଗମାୟାଙ୍କ ନିର୍ଦ୍ଦେଶରେ ଅସମୟରେ କଳାହାଣ୍ଡିଆ ମେଘ ମାଡ଼ି ଆସିଲା । ମୁହଁକୁ ମୁହଁ ଦିଶିଲାନି । ନନ୍ଦ ରାଜା ଏବେ କରିବେ କିସ ? ଶରଣ ପଶିଲେ ତାଙ୍କର ଇଷ୍ଟ ଶାଳଗ୍ରାମ ନାରାୟଣଙ୍କ ଚରଣ କମଳରେ । ପ୍ରଭୁ ମୋ ବାଳକକୁ ଏବେ ବିପଦ । ଯୋଗମାୟାଙ୍କ ଇଛା ଅନୁସାରେ ହଠାତ୍ ମହାକାଶରେ ମହାପ୍ରକାଶ ସହିତ ଆବିର୍ଭୂତ ହେଲେ ବୃଷଭାନୁ ନନ୍ଦିନୀ ଶ୍ରୀରାଧା ଠାକୁରାଣୀ । ମନରେ ଅଶେଷ ସାହସ ବାନ୍ଧି ରାଜା ନନ୍ଦ କହିଲେ, ''ହେ ରାଧେ, ସନ୍ଧ୍ୟା ସମୟ ବେଶୀ କଥା କଅଣ କହିବି ? ଏବେ ଅସମୟରେ ରାତ୍ରି(ନକ୍ତଂ) ସମୟ ହୋଇଗଲାଣି । କେଉଁଠି ଆସି ଏ କଳା ହାଣ୍ଡିଆ(ମେଦୁରଂ) ବଉଦମାନେ ଘେରି ଗଲେଣି ଚତୁର୍ଦ୍ଦିଗରୁ । ଆକାଶରେ କିଟି କିଟି ଅନ୍ଧାର । ଶ୍ୟାମ ତମାଳ ଲତା କୁଞ୍ଜମାନ ଦ୍ୱାରା ଘେରା ଏ ସମଗ୍ର ବନଭୂମି କଳା ବଉଦର କଳା ଚାଦରରେ ଘୋଡ଼େଇ ହେଇ ଗଲାଣି । ପ୍ରବଳ ଭୟଙ୍କର ରାତ୍ରୀ ସମୟ ଉପସ୍ଥିତ । ଏ ମୋର ଦୁଧ ମୁହାଁ କଅଁଳ ବାଳକ ଅତ୍ୟନ୍ତ ଡରୁଆ ପିଲାଟିଏ । ମୁଁ ଗର୍ଗ ଆଚାର୍ଯ୍ୟଙ୍କ ଠାରୁ ଶ୍ରବଣ କରିଛି ତୁମେ କୁଆଡ଼େ ଗୋଲୋକ ଧାମର ମହାରାଣୀ ମହାଶକ୍ତି ମୟି, ସଙ୍କଟତାରିଣୀ, ପରମ

ଆନନ୍ଦ ଦାୟିନୀ, ଅଭୟ ଦାୟିନୀ, ଜଗଦମ୍ବା ଅଟ । ଅତଏବ ମୋର ବିନମ୍ର ନିବେଦନ ସ୍ୱୀକାର କରି ଏ ପିଲା ବକଟେକୁ ଟିକିଏ ନିରାପଦରେ ଘରେ ପହୁଞ୍ଚାଇ ଦିଅ(ଗୃହଂ ପ୍ରାପୟ) ।'' ନିଜ ଭକ୍ତ ନନ୍ଦରାଜାଙ୍କ ଏଭଳି ନିର୍ଦ୍ଦେଶକୁ ପାଥେୟ କରି ରାଧା ମାଧବ ଦୁହେଁ ଗୃହକୁ ଯିବା ବାଟରେ ସେହି କାଳରେ ଯୋଗମାୟାଙ୍କ ପ୍ରକଟିତ ଅଲୌକିକ ଲତା, ପତ୍ର, ଫୁଲ ଫଳ ଭରା କୁଞ୍ଜ ଅତ୍ୟନ୍ତ ରହସ୍ୟମୟ ଗୁପ୍ତ କୁଞ୍ଜ ମଧ୍ୟରେ ପ୍ରବେଶ କରିଗଲେ । ବାସ୍ତବରେ ତାହା ଥିଲା ଏକ ଦିବ୍ୟ ବିବାହ ବେଦିକା । ସଙ୍ଗେ ସଙ୍ଗେ ସେଠାରେ ପ୍ରକଟ ହେଲେ ସଂସାର ସୃଷ୍ଟିକର୍ତ୍ତା ଚତୁର୍ମୁଖୀ ବ୍ରହ୍ମାଜୀ । ସେ ନିଜେ ପୁରୋହିତ, ନିଜେ କନ୍ୟାପିତା ଓ ନିଜେ ବରପିତା । ସେ ହିଁ ଶଙ୍ଖୁଆ, ନାପିତ, ନାପିତୁଣୀ, ମାଲୁଣୀ ସବୁ କିଛି ସେହି । ବର କନ୍ୟା ରୂପେ ଶ୍ରୀଗୋବିନ୍ଦ ଓ ଶ୍ରୀରାଧା ଦୁହେଁ ବେଦୀରେ ବସିଗଲେ । ବିବାହର ଶୁଭାରମ୍ଭ ହେଲା । ସଙ୍ଗେ ସଙ୍ଗେ ବେଦମନ୍ତ୍ର ଉଚ୍ଚାରଣ କଲେ ବ୍ରହ୍ମଦେବ । ହରିବୋଲ, ହୁଳହୁଳିରେ ଉଚ୍ଛୁଳି ପଡ଼ିଲା ଏହି ଭାଣ୍ଡୀର ବନସ୍ଥିତ ପ୍ରକାଣ୍ଡ ଦିବ୍ୟ ଭାଣ୍ଡୀର ବୃକ୍ଷତଳ । ବିବାହ, ଭୋଜି, କନ୍ୟା ବିଦା ପର୍ବ ସବୁ ସୁରୁଖୁରୁରେ ସାରି ପୁରୋହିତ ମହାଶୟ ତରବରରେ ବିଦାୟ ନେଲେ ।

ବର୍ତ୍ତମାନ ସେହି ଭାଣ୍ଡୀର ବନରେ ଭାଣ୍ଡୀର ବଟ ନିକଟରେ ସୁନ୍ଦର ରାଧାକୃଷ୍ଣ ମନ୍ଦିରଟିଏ ମୁଣ୍ଡଟେକି ଠିଆ ହୋଇଛନ୍ତି । ସେଥିରେ ଏହି ପୁରୋହିତ ମହାଶୟ ବ୍ରହ୍ମାଜୀଙ୍କ ବିଗ୍ରହ ସାକ୍ଷୀ ଦେଉଛନ୍ତି ଯେ ରାଧାକୃଷ୍ଣଙ୍କ ବିବାହ ସବୁ ସତ ସତିକା କଥା । ଆଦୌ ମିଛ ନୁହେଁ । ଗର୍ଗ ଆଚାର୍ଯ୍ୟଙ୍କ ଗ୍ରନ୍ଥ, ଜୟଦେବଙ୍କ ଗୀତ ଗୋବିନ୍ଦ ସବୁ ସତ୍ୟ ଓ ତଥ୍ୟ ମଧ୍ୟ । ଅସଲି କୃଷ୍ଣ ଭକ୍ତଙ୍କୁ ଜଣା ରାଧାକୃଷ୍ଣ ବିବାହିତ ଦମ୍ପତି ।

ସେହି ଭାଣ୍ଡୀର ବନରେ ବେଣୁକୂପ, ବଳଦେବ ମନ୍ଦିର ସହିତ ସୁନ୍ଦର ବଂଶୀବଟ ମଧ୍ୟ ଏବେ ଦର୍ଶନୀୟ । ସେହି ମନ୍ଦିର ପରିକ୍ରମା ଓ ବଟବୃକ୍ଷ ପରିକ୍ରମା କରି ଭକ୍ତଗଣ ପରମ ଆନନ୍ଦ ପ୍ରାପ୍ତ ହେବା ପ୍ରାର୍ଥନୀୟ । ଏହି ବନ ଯମୁନା ନଦୀର ପୂର୍ବ ତଟରେ ଭଦ୍ରବନ ନିକଟରେ । ବୃନ୍ଦାବନରୁ ଏଠାକୁ ଯିବାକୁ ହେଲେ ଟେମ୍ପୋଟିଏ ନେଇ ଯାଇହେବ । ଠାକୁର ଠାକୁରାଣୀ ଭାଣ୍ଡୀର ବଟ ମୂଳରେ ଶ୍ରୀଭାଣ୍ଡୀର ବନବିହାରୀ ନାମରେ ବ୍ରହ୍ମାଜୀଙ୍କ ସହିତ ସେବିତ ହେଉଛନ୍ତି । ନନ୍ଦଗ୍ରାମଠାରୁ ଏହା ୭କି.ମି. ଦୂର ଅଟେ ।

**୫. ମହାବନ/ବୃହଦ୍ ବନ/ପ୍ରାଚୀନ ଗୋକୁଳ/ଗୋକୁଳ**

ପ୍ରଶ୍ନ-୫. ଉପରୋକ୍ତ ନାମକରଣ ଦେଖି ମନେ ହୁଏ ଯେ ଶ୍ରୀକୃଷ୍ଣ ଲୀଳାର

କିଛି ବିଶେଷ ବିଶେଷ ବା ଖାସ୍ ଲୀଳା ଅଭିନୀତ ହୋଇଥିବାରୁ କିମ୍ବା ବନ ବୃହତ୍ ଆକାର ବୋଲି ଏଭଳି ନାମକରଣ ହୋଇଛି । ଦୁଇ କଥା ଯାକ ହୁଏତ ଠିକ୍ । ଠାକୁରଜୀଙ୍କ ୧୨୫ବର୍ଷର ଲୀଳା ମଧ୍ୟରୁ ପ୍ରଥମ ପାଞ୍ଚ ବର୍ଷର ଲୀଳା ଏହି ଗୋକୁଳ ଧାମରେ ହୋଇଛି । ଏଠାରେ ଏପରି କିଛି ଲୀଳା ହୋଇଛି ଯାହା ବୈକୁଣ୍ଠ, ମହାବୈକୁଣ୍ଠ କିମ୍ବା ନିତ୍ୟ ଗୋଲକଧାମରେ ଦେଖିବାକୁ ମିଳେ ନାହିଁ । ଯଥା ଭଗବାନଙ୍କର ଜନ୍ମ ଲୀଳା, ବଡ଼ ସିଙ୍ଗାର ବେଶ, ଗୁରୁଣ୍ଡି ଗୋପାଳବେଶ, କ୍ଷୁଧା ତୃଷାରେ ଆର୍ତ୍ତ ହୋଇ କ୍ରନ୍ଦନ କରିବା, ଭକ୍ତ ହାତରୁ କାନମୋଡ଼ା ଖାଇବା, ମୃଦ୍ ଭକ୍ଷଣ, ଭକ୍ତ ହାତରେ ଛାଟିଆ ଦେଖି ଆଖିରୁ ଲୁହ ଗଡ଼ାଇବା, ଗାଈ ବାଛୁରୀଙ୍କୁ ବାନ୍ଧିବା ପଘାରେ ନିଜେ ବନ୍ଧାଯିବା (ଉଦୁଖଳ ବନ୍ଧନ) ଲୀଳା ସେମାନଙ୍କ ମଧ୍ୟରେ ଅନ୍ୟତମ ।

ମହାବନର ଏସବୁ ଲୀଳାସ୍ଥଳୀ ବ୍ରଜମଣ୍ଡଳ ପରିକ୍ରମା ସମୟରେ ଭକ୍ତମାନଙ୍କୁ ନତମସ୍ତକ କରାନ୍ତି, ଭାବ ବିହ୍ୱଳ କରାଇ ଅଶ୍ରୁପାତ ପର୍ଯ୍ୟନ୍ତ କରାଇବାରେ ଆଜି ମଧ୍ୟ ସମର୍ଥ । ତନ୍ମଧ୍ୟରୁ ଅନେକ ଲୀଳା ସ୍ମରଣ ଲାଗି ଏଠାରେ ଅନେକ ମନ୍ଦିର ମାନ ନିର୍ମିତ ହୋଇସାରିଲେଣି । ଲୀଳା ତ ଲୀଳା ପୂତନା ମୋକ୍ଷଣ ଲୀଳା । ଶ୍ରୀକୃଷ୍ଣ ଅବତାରର ସର୍ବୋଚ୍ଚ ଅଲୌକିକ ଭକ୍ତ ବତ୍ସଳତାର ପ୍ରମାଣ ବିଷୟରେ ଭଗବାନ ବ୍ୟାସଦେବ ଭାଗବତ ଗ୍ରନ୍ଥରେ କିଛି ବିଶେଷ ଉଲ୍ଲେଖ କରିଛନ୍ତି କି ?

**ଅହୋ ବକୀ ଯଂ ସ୍ତନ କାଳକୂଟଂ**
**ଜିଘାଂସୟା ପାୟୟତ୍ ଅପି-ଅସାଧ୍ୱୀ ।**
**ଲେଭେ ଗତିଂ ଧାତ୍ରୀ-ଉଚିତାଂ ତତୋଽନ୍ୟଂ**
**କଂ ବା ଦୟାଲୁଂ ଶରଣଂ ବ୍ରଜେମ ॥ ଭା.୩-୨-୨୩॥**

ଉ. ନିଶ୍ଚୟ କରିଛନ୍ତି । ଭକ୍ତି ଶାସ୍ତ୍ର କହନ୍ତି ମହାପୁରୁଷମାନଙ୍କ ଠାରେ ୫୦ଗୁଣ ଥାଏ । ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କଠାରେ ୫୫ଗୁଣ ଓ ମହାବିଷ୍ଣୁ ନାରାୟଣ ଲୀଳାରେ ୬୦ଟି ଗୁଣ ଦୃଶ୍ୟମାନ ହୁଏ । ଗୋଲୋକ ବିହାରୀ ଶ୍ରୀକୃଷ୍ଣ କିନ୍ତୁ ଅଧିକ ୪ଟି ବିଶେଷ ଗୁଣର ଅଧିକାରୀ । ୧. ରୂପ ମାଧୁରୀ, ୨. ପ୍ରେମ ମାଧୁରୀ, ୩. ମୁରଲୀ ମାଧୁରୀ ଓ ୪.ବାଲଲୀଳା ମାଧୁରୀ । ବ୍ୟାସଦେବଙ୍କ ପୁତ୍ର ଶ୍ରୀ ଶୁକଦେବଙ୍କର ଅସଂପ୍ରଜ୍ଞାତ ସମାଧି ବା ନିର୍ବିକଳ୍ପ ସମାଧି ଭାଙ୍ଗିଗଲା ଶ୍ରୀକୃଷ୍ଣଙ୍କର ପ୍ରଥମ ତିନିଗୁଣର ବର୍ଣ୍ଣନା ଶ୍ରବଣ କରୁ କରୁ । ଚତୁର୍ଥ ଶ୍ଳୋକରେ ଏହି ଭକ୍ତ ବତ୍ସଳତା ଗୁଣ ଶ୍ରବଣ କରି ତପସ୍ୟା, ସମାଧି

ଅବସ୍ଥାକୁ ଜଳାଞ୍ଜଳି ଦେଇ ଦୌଡ଼ି ଆସିଲେ ପିତାଶ୍ରୀ ବ୍ୟାସଦେବଙ୍କ ଆଶ୍ରମକୁ ଶ୍ରୀମଦ୍ଭାଗବତଙ୍କର ଶ୍ରୀକୃଷ୍ଣ ଲୀଳାଶ୍ରବଣର ରସ ଆସ୍ୱାଦନ ଲାଗି । ଏହି ଶ୍ଲୋକଟିର ମର୍ମ ସେ ବୁଝିଲେ, ''ଆହା, କି ଆଶ୍ଚର୍ଯ୍ୟର କଥା । ବକାସୁର ଭଉଣୀ ଶ୍ରୀକୃଷ୍ଣଙ୍କୁ ଶିଶୁ ଅବସ୍ଥାରେ କପଟରେ ସ୍ତନ୍ୟରେ ବିଷ ବୋଳି ମାରିବାକୁ ଆସିଥିଲା । ଭଗବାନ ତାକୁ ଶତ୍ରୁ ବିବେଚନା ନକରି ଧାତ୍ରୀ ବା ମାତା ବୋଲି ଜ୍ଞାନ କଲେ । ତାର ପ୍ରାଣ ହରଣ କରି ତାକୁ ନିତ୍ୟ ଗୋଲୋକଧାମ ପଠାଇଦେଲେ । ଅତଏବ ତାଙ୍କ ଭଳି ଦୟାଳୁ ଆଉ କେହି ସଂସାରରେ ମିଳିବା ଅସମ୍ଭବ । ସୁତରାଂ ତାଙ୍କୁ ଆଶ୍ରୟ କରିବା ହିଁ ପ୍ରତ୍ୟେକ ସଂସାରୀ ଜୀବ ପକ୍ଷେ ପରମ ଶ୍ରେୟ ଅଟେ ।''

ଏହି ମହାବନ ଗୋକୁଳ ଆଜି ଏକ ଅତି ଉଚ୍ଚ ମାଟି କୁଦରୂପେ ଦୃଶ୍ୟମାନ ହେଉଚି । ଦିନେ ଯେଉଁଠାରେ ଭଗବାନଙ୍କ ପିତା ମାତା ନନ୍ଦ ଯଶୋଦାଙ୍କର ରାଜମହଲ(ହବେଲୀ) ଥିଲା । ଅନେକ ଦାସ ଦାସୀ ତାଙ୍କ ସେବାରେ ନିଯୁକ୍ତ ଥିଲେ । ଉପନନ୍ଦ, ଅଭିନନ୍ଦ, ନନ୍ଦ, ସନ୍ନନ୍ଦ ଓ ନନ୍ଦନ ଇତ୍ୟାଦି ପାଞ୍ଚଭାଇ ସପରିବାର କୃଷ୍ଣ ଜନ୍ମଲୀଳା ପାଳନ କରି ନିଜ ନିଜ ଜୀବନ ଧନ୍ୟ କରିଥିଲେ । ଆମ୍ଭେମାନେ ଏବେ ନନ୍ଦଙ୍କ ଟିଲାର ଭଗ୍ନାବଶେଷ ଦେଖି ସ୍ମରଣ କରିପାରୁ ତାଙ୍କର ଜନ୍ମସ୍ଥାନ, ପୂତନା ଉଦ୍ଧାର ସ୍ଥଳ, ବ୍ରହ୍ମାଣ୍ଡ ଘାଟ(ମୃଦ୍ ଭକ୍ଷଣ ସମୟରେ ମାତା ଯଶୋଦାଙ୍କୁ ଶ୍ରୀମୁଖ ଗହ୍ୱରରେ ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ କରାଇବା ସ୍ଥାନ), ଚିନ୍ତାହରଣ ଘାଟ, ଦେବ ଦେବ ମହାଦେବଙ୍କ ବାଳ କୃଷ୍ଣ ଦର୍ଶନ ଲାଳସା ଚରିତାର୍ଥ ନିମିତ୍ତ ଅପେକ୍ଷା କରିଥିବା ସ୍ଥଳୀ, ତୃଣାବର୍ତ୍ତ ଉଦ୍ଧାର ସ୍ଥାନ, ଶକଟ ଭଞ୍ଜନ ସ୍ଥାନ, ଦଧି ମନ୍ଥନ ସ୍ଥଳ, ନନ୍ଦ ବାବାଙ୍କ ବିଶାଳ ଗୋଶାଳା ଚିହ୍ନିତ ସ୍ଥାନ, କର୍ଣ୍ଣବେଧ ସ୍ଥାନ, ଉଦୁଖଳ ବନ୍ଧନ ଓ ଯାମଳାର୍ଜୁନ ଉଦ୍ଧାର ଇତ୍ୟାଦି ଅନେକ ଅନେକ ପବିତ୍ର ସ୍ଥାନ ।

ସର୍ବୋପରି ଅକ୍ରୂରଜୀ ମଥୁରାରୁ ଗୋକୁଳ ଯିବା ବାଟରେ ଠାକୁରଙ୍କ ଚରଣ ଚିହ୍ନ ଦର୍ଶନ ସ୍ଥାନ(ଅକ୍ରୂର ତୀର୍ଥ) ଏବଂ ବୃନ୍ଦାବନ ଗୋଚାରଣ ଲୀଳାରେ ମଥୁରା ନଗରୀର କର୍ମକାଣ୍ଡୀ ବ୍ରାହ୍ମଣମାନଙ୍କ ଯଜ୍ଞସ୍ଥଳୀ ସହିତ ସେମାନଙ୍କ ପତ୍ନୀମାନଙ୍କ ଦ୍ୱାରା କୃଷ୍ଣ ବଳରାମଙ୍କୁ ଭୋଜନ ପରଶିବା ସ୍ଥଳ(ଭୋଜନଥାଳୀ ବା ଭାତରୋଲ) ରମଣ ରେତି ଆଶ୍ରମ ଏବଂ ରସ ଖାଁ ସମାଧି ଏ ସବୁ ସେହି ପବିତ୍ର ମହାବନ ଲୀଳାସ୍ଥଳୀ ରୂପେ ଚିହ୍ନିତ ଓ ସ୍ୱୀକୃତ । ମଥୁରାଠାରୁ ୧୩କିମି. ଦୂରରେ ଅବସ୍ଥିତ ଶ୍ରୀଯମୁନା ନଦୀ ପୋଲ ପାର ହୋଇ (ଟେମ୍ପୋଟିଏ କରି) ଶ୍ରୀଗୋକୁଳ ବନ ଓ ଶ୍ରୀଗୋକୁଳ ବନ

ବିହାରୀଙ୍କୁ ଦର୍ଶନ କରି ଅଣ୍ଟି ପତେଇ ପ୍ରେମଭିକ୍ଷା ମାଗିବାକୁ ପଡ଼େ ।

**୬. ଶ୍ରୀତାଲ ବନ:**

ପ୍ରଶ୍ନ-୬. ମଥୁରା ସହରର ଅତି ନିକଟରେ ମଧୁବନ । ଏହି ମଧୁବନକୁ ଲାଗି ରହିଛି ଆକାରରେ ସ୍ୱଳ୍ପ ଆୟତନ ବିଶିଷ୍ଟ ଶ୍ରୀତାଳବନ । ମହାବନ ଗୋକୁଳରେ ଠାକୁରଜୀଙ୍କ ଦିବ୍ୟ ବାଳ ଲୀଳା ଜନ୍ମଠାରୁ ପାଞ୍ଚବର୍ଷ ବୟସ ଯାଏଁ ଚାଲିଥିଲା । ଛଅ ବର୍ଷ ବୟସ ଆରମ୍ଭରେ କୃଷ୍ଣ ବଳରାମ ବତ୍ସପାଳ ରୂପେ ନିଯୁକ୍ତି ପାଇଲେ । ସେମାନେ ଧେନୁ ପଲଙ୍କ ପଛେ ପଛେ ବାଛୁରୀମାନଙ୍କୁ ଧରି ବନରୁ ବନାନ୍ତର ଯାଇପାରିବେ ବୋଲି ନନ୍ଦ ମହାରାଜା ଶୁଣାଇଦେଲେ । ଅନେକ ଗୋପାଳ ବାଳକଙ୍କୁ ସାଙ୍ଗରେ ଧରି ମସ୍ତକରେ ଟିକି ଠେକା ଓ ଅଣ୍ଟାରେ ମୁରଲୀଟିଏ ଖୋସି ଆରମ୍ଭ କଲେ ବତ୍ସପାଳ ଲୀଳା । ଶ୍ରୀବଳରାମଜୀ ତାଙ୍କ ବଡ଼ି ଗାର୍ଡ଼ ବା ସିକ୍ୟୁରିଟି ବ୍ୟବସ୍ଥା ତଦାରଖକାରୀ । କାରଣ ଠାକୁରଜୀ ଚାଲିଲା ଶଗଡ଼ରେ ହାତ ମାରିବା ବାଲା । ଦିନେ ଅତି ହୋସିଆରରେ ସମସ୍ତେ ପହଞ୍ଚିଲେ ତାଳବନରେ । ସେତେବେଳକୁ ନନ୍ଦ ମହାରାଜା ଗୋକୁଳ ତ୍ୟାଗକରି ନନ୍ଦଗାଓଁ ପର୍ବତରେ ଡ଼େରା ପକାଇଲେଣି । ରାଜା ବୃଷଭାନୁ ମଧ୍ୟ ରାଓଲ ତ୍ୟାଗ କରି ବର୍ଷାଣ । ପର୍ବତ ଉପରେ ରାଜପ୍ରସାଦ ନିର୍ମାଣ କରିସାରିଥାନ୍ତି । ବଡ଼ ଠାକୁର ଶ୍ରୀ ବଳରାମ ଯେ ବାଳଗୋପାଳଙ୍କୁ ସୁରକ୍ଷା ଦେବାରେ ସଂପୂର୍ଣ୍ଣ ସମର୍ଥ ଏହା ପ୍ରମାଣ କରିବାକୁ ସେଦିନ ସେ କି ଲୀଳା କଲେ ?

**ରାମ ରାମ ମହାବାହୋ କୃଷ୍ଣ ଦୁଷ୍ଟ ନିବର୍ହଣ ।**
**ଇତୋଽବିଦୂରେ ସମୁହତ୍ ବନଂ ତାଳ-ଅଳି ସଂକୁଳମ୍ ॥୨୨॥**

ଉ. ଗୋପାଳ ବାଳକ ଦେଖିଲେ ଅଳ୍ପ ଦୂରରେ ପାଚିଲା ତାଳ ଫଳ ଭରା ସୁନ୍ଦର ତାଳବନକୁ । ରସମୟ ତାଳ ଫଳର ନାମ କହୁ କହୁ ଗୋପାଳମାନଙ୍କର ପାଟିରୁ ଲାଳ ବୋହି ପଡୁଥାଏ । ସେମାନେ କିନ୍ତୁ ଶୁଣିଥାନ୍ତି ସେ ବନରେ ଗଧ ରୂପ ଧାରଣ କରି ଅସୁରଟିଏ ସପରିବାର ବାସ କରୁଛି । ସେ ସେହି ପାଚିଲା ତାଳ ଫଳରେ କାଉ କୋଇଲିକୁ ମଧ୍ୟ ଭାଗ ଦେଉନାହିଁ । କେହି ମନୁଷ୍ୟ ସେଠାକୁ ଭୁଲରେ ଚାଲିଗଲେ ସେ ସେହି ମନୁଷ୍ୟମାନଙ୍କୁ ଜୀବନରେ ମାରି ଦେଉଛି । ସେମାନଙ୍କ ହାଡ଼ ମାଂସ ମଧ୍ୟ ଖାଇଯାଉଛି । ଏକଥା ଶୁଣୁ ଶୁଣୁ ବଳରାମଜୀ ଶ୍ରୀକୃଷ୍ଣଙ୍କୁ ପଛକୁ ଠେଲିଦେଇ ଆଗେ ଆଗେ ଧାଇଁଗଲେ ସେ ତାଳବନକୁ । ପଛେ ପଛେ ଶ୍ରୀକୃଷ୍ଣ ପହଞ୍ଚିଲେ ଅନ୍ୟାନ୍ୟ ସାଥି

ଗୋପାଳ ବାଳକମାନଙ୍କୁ ସଙ୍ଗରେ ଧରି । ବଳରାମ ପ୍ରଥମେ ନିଜ ବଳ ପ୍ରୟୋଗ କରି ତାଳ ଗଛମାନଙ୍କୁ ଜୋରରେ ହଲାଇ ଦେଲେ । ଭୁଷ୍ ଭୁଷ୍, ଦୁଲ୍‌ଦୁଲ୍ ଶବ୍ଦ କରି ଅନେକ ପାଚିଲା ତାଳ ଭୂଇଁରେ ପଡ଼ିଗଲା । ସେ ଶବ୍ଦଶୁଣି ଧେନୁକ ଅସୁର ଧାଇଁ ଆସିଲା । ନିଜ ପଛ ଦୁଇଗୋଡ଼ ଛାଟି ବଳରାମଜୀଙ୍କ ବକ୍ଷ ଉପରେ ଲାତ ମାରିଲା ।

ଏବେ ବଡ଼ ଠାକୁର ତାଙ୍କ ଟ୍ରମ୍ପକାର୍ଡ଼ ବାହାର କଲେ । ଦୌଡ଼ି ଯାଇ ଅସୁରର ଦୁଇ ପଛ ଗୋଡ଼କୁ କୌଶଳରେ ଧରି ପକାଇଲେ । ଉପରକୁ ଟେକି ଦୁଇ ହାତରେ ଧରି ଚକ୍ରବାତ ପରି ବୁଲାଇ ବୁଲାଇ ଏକ ତାଳଗଛ ମୂଳରେ ପିଟି ଦେଲେ । ପୁଣି ଉପରକୁ ଫିଙ୍ଗି ଦେଲେ । ଅସୁର ପୈତୃକ ପ୍ରାଣଟି ହରାଇ ବସିଲା । ଅସୁରର ମୃତ୍ୟୁ ପରେ ତାର ଶରୀର ବିଶାଳ ଆକାର ଧାରଣ କଲା । ଅନେକ ତାଳ ବୃକ୍ଷ ସେଇ ଆଘାତରେ ଧରାଶାୟୀ ହେଲେ । ପାଚିଲା ତାଳ ଫଳରେ ଭରିଗଲା ସେ ସମଗ୍ର ବନଟି । ଇତି ଅବସରରେ ଅନ୍ୟାନ୍ୟ ଅସୁରମାନଙ୍କୁ ମାରି ପିଟି ଘଉଡ଼ାଇ ଦେଲେ ଶ୍ରୀବଳରାମ । ସେହିଦିନରୁ ଅସୁର ଉତ୍ପାତ ଶୂନ୍ୟ ହେଲା ତାଳବନ । କୃଷ୍ଣ ବଳରାମ ଦୁହେଁ ଗୋପାଳବାଳକମାନଙ୍କ ସହିତ ମହା ଆନନ୍ଦରେ ତାଳଫଳ ସେବନ କଲେ ।

ମହାତ୍ମାମାନଙ୍କ ମତରେ ଏହି ଧେନୁକ ମଧ୍ୟ ପୂର୍ବେ ଅସୁର କୁଳରେ ଜନ୍ମିଥିଲେ ଦାନବୀର ବଳିରାଜାଙ୍କ ପୁତ୍ର ରୂପରେ । ଥରେ ସେ ଗନ୍ଧମାର୍ଦ୍ଦନ ପର୍ବତରେ ଅନେକ ସ୍ୱର୍ଗ ଲଳନାଙ୍କ ସହିତ ନିର୍ଲ୍ଲଜ ଭାବରେ ବିଷୟ ଭୋଗ କରୁଥିଲେ । ସୌଭାଗ୍ୟକୁ ଦୁର୍ବାସା ଋଷିଙ୍କ ହାବୁଡ଼ରେ ପଡ଼ି ଅଭିଶାପ ଛଳରେ କୃପାପ୍ରାପ୍ତ ହେଲେ । ବର୍ତ୍ତମାନ ଶ୍ରୀକୃଷ୍ଣ ଲୀଳାରେ ଅଂଶଗ୍ରହଣ କରି ସେ ଶାପମୁକ୍ତ ହେବା ସହିତ ବୈକୁଣ୍ଠ ମୁକ୍ତି ପ୍ରାପ୍ତ ହେଲେ ।

ଶ୍ରୀମଦ୍‌ଭାଗବତଙ୍କର ପଞ୍ଚଦଶ ଅଧ୍ୟାୟରେ କର୍ମଯୋଗର ତାତ୍ପର୍ଯ୍ୟ ବା ରହସ୍ୟକୁ ଶ୍ରୀକୃଷ୍ଣଙ୍କ ଲୀଳା ମାଧ୍ୟମରେ ଅଭିନୟ ସାହାଯ୍ୟରେ ଖୋଲି ଦିଆଯାଇଛି । ଜୀବ ତାଳବନ ଧେନୁକ ଅସୁର ଭଳି କର୍ମଫଳ ସବୁକୁ କବଜା କରି କାହାକୁ ନ ଦେଇ ନିଜେ କେବଳ ଭୋଗକଲେ ସେ କଦାପି ଋଣବନ୍ଧନରୁ ମୁକ୍ତ ହୋଇପାରେ ନା କି ଆତ୍ମଜ୍ଞାନ ପ୍ରାପ୍ତ ହୋଇପାରେନା । ଅତଏବ ସାଧୁ ସଙ୍ଗ ତାକୁ କାହୁଁ ମିଳିବ ? ହରି ଭକ୍ତି ସେ ବା କରିବ କେମିତି ? ଅସମ୍ଭବ ମନେହୁଏ ଏ ଦୁଇକଥା ତା ଜୀବନରେ । ସୁତରାଂ ଏ ଲୀଳାରେ ଠାକୁରଙ୍କ ଆଦେଶ ଜୀବ କର୍ମଫଳକୁ ଶେୟାର କରୁ ବା ଅନ୍ୟମାନଙ୍କୁ ଭାଗୀଦାର ବନାଉ ।

ଏ ତାଳବନ ଆତୟନରେ ହୋଇପାରେ କ୍ଷୁଦ୍ର । ତାର ପ୍ରଚାରିତ ଜୀବନ ଦର୍ଶନ କିନ୍ତୁ ଅତି ମହତ୍ । ବାସ୍ତବରେ ଏ ଦ୍ୱାଦଶ ବନ ଓ ଦ୍ୱାଦଶ ଉପବନ ମାନଙ୍କର ଦୀର୍ଘ-ପ୍ରସ୍ଥ ଜାଣିବା ପାଇଁ କେଉଁଠି ହେଲେ ପ୍ରାଚୀର ବନ୍ଧା ଯାଇନାହିଁ କିମ୍ବା ପଥର ପୋତା ଯାଇନାହିଁ । ଠାକୁରଜୀଙ୍କର ଭିନ୍ନ ଭିନ୍ନ ରସମୟ ଲୀଳା ବୁଝିବା ନିମିତ୍ତ ଲୀଳା ଭୂମିର ଏଭଳି ନାମକରଣ ସବୁ କରାଯାଇଛି ।

ଶ୍ରୀଯମୁନା ନଦୀର ପଶ୍ଚିମ ତଟରେ ଏହି ତାଳବନ ମଥୁରା ସହରର ଅତି ନିକଟରେ (୪କିମି ଦୂର) ଅବସ୍ଥିତ । ସେବିତ ବିଗ୍ରହଙ୍କର ନାମ ଶ୍ରୀ ତାଳବନ ବିହାରୀ । ମଜା କଥା ହେଲା ଏଠାରେ ସେହି ମନ୍ଦିରରେ ଶ୍ରୀବଳରାମଙ୍କ ସହିତ ମାଆ ରେବତୀ ମଧ୍ୟ ସେବା ପୂଜା ପାଉଛନ୍ତି ।

**୭. ଶ୍ରୀ ଖଦିର ବନ ବା ଖାୟୋର:**

ପ୍ରଶ୍ନ-୭. ଦ୍ୱାଦଶ ବନ ମଧ୍ୟରେ ଶ୍ରୀଯମୁନାଙ୍କ ପଶ୍ଚିମ ତଟର ଦ୍ୱିତୀୟ ବନ ଏହି ଶ୍ରୀଖଦିରକା ବନ ବା ଶ୍ରୀଖଦିର ବନ । ନନ୍ଦଗ୍ରାମ ଠାରୁ ଏହା ମାତ୍ର ପାଞ୍ଚ କି.ମି. ଦୂର । ଗୋପୀ ଗୋପୀନାଥଙ୍କ ଲୀଳାରେ ଭଙ୍ଗା ପାନ ଏବଂ ସୁପାରି ଅର୍ପଣ ଏକ ମର୍ଯ୍ୟାଦାପୂର୍ଣ୍ଣ ସେବା । ଲୀଳାରେ ତୁଳସୀ ଯୋଗାଇବା ଲାଗି ବୃନ୍ଦାବନ, ବେଲ ଯୋଗାଇବା ପାଇଁ ବିଲ୍ୱବନ ଓ ତାଳ ଫଳ ଯୋଗାଇବା ଲାଗି ତାଳବନର ବ୍ୟବସ୍ଥା ହୋଇଥିଲା । ସେହିଭଳି ଖଦିର ବା ଖଇର ଯୋଗାଇବାକୁ ଏ ବନର ମହତ୍ତ୍ୱ ଯେତିକି, ଏଠାରେ ଅନୁଷ୍ଠିତ ହୋଇଥିବା ବଡ଼ିଆ ବଡ଼ିଆ ଲୀଳା ସେତିକି ହୃଦୟସ୍ପର୍ଶୀ ଓ ଭକ୍ତ ହୃଦୟରେ ପ୍ରେମ ଉତ୍ପାଦକ ମନେ ହୁଏ ।

କଂସ ପ୍ରେରିତ ଅଘାସୁର ଓ ପୁତନାର ଭାଇ ବକାସୁର ଏ ବନରେ ଆସି ଉତ୍ପାତ କରିଥିଲେ । ଦିନେ ବତ୍ସାଚାରଣ ସମୟରେ ଟିକି ଠାକୁରଜୀଙ୍କୁ ସେହି ମହାକାୟ ବକ ଅସୁର ଗିଳିବାକୁ ଚେଷ୍ଟା କରିଥିଲା । ଭଗବାନଙ୍କ ବେକ ପାଖରୁ ଆଉ ତଳକୁ ଢ଼ୋକି ନପାରି ନିମ୍ନରେ ବାନ୍ତି କରି ପକାଇଲା । ଶ୍ରୀକୃଷ୍ଣ ଅବଲୀଳା କ୍ରମେ ତାର ଲମ୍ବା ଥଣ୍ଟର ଦୁଇ ପାଖକୁ ଦୁଇ କରକମଳରେ ଧରି ଚିରି ଦୁଇ ଫାଳ କରିଦେଇଥିଲେ । ଅସୁର ବିଚରା ନିଷ୍ପ୍ରାଣ ସିନା ହେଲା କିନ୍ତୁ ବୈକୁଣ୍ଠ ଗମନ କଲା ସମସ୍ତଙ୍କ ସାମନାରେ । ତତ୍ତ୍ୱ ଦୃଷ୍ଟିରେ ବକ ଥଣ୍ଟ ହେଉଛି ମନୁଷ୍ୟର ଲୋଭର ପ୍ରତୀକ । ସାଧକ ଧନ ସମ୍ପତ୍ତି ଭୋଗ ଆଦିର ଲୋଭ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ଭଗବାନଙ୍କ ଶରଣ ପଶିଲେ ନିଶ୍ଚୟ ଉଦ୍ଧାର ହୋଇପାରିବ । ବକାସୁର ଉଦ୍ଧାର ଲୀଳା ଏହି ମହାନ ଶିକ୍ଷାର ସଂକେତ ।

ଏକଦା ଏହି ବନରେ ଗୋପୀଗୋପାଳଙ୍କ କୁଞ୍ଜ ଲୀଳା ଚାଲିଥାଏ । ଶ୍ରୀମତୀ ଭଗବାନଙ୍କୁ ଅନୁରୋଧ କଲେ ଟିକିଏ ଲକ୍ଷ୍ମୀ ନାରାୟଣ ଲୀଳା ଦର୍ଶନ କରିବାକୁ । ସଙ୍ଗେ ସଙ୍ଗେ ଏକ ଶେଷଶାୟୀ ସରୋବର ସେଠାରେ ପ୍ରକଟ କରିଦେଲେ ଠାକୁରଙ୍କର ଲୀଳାଶକ୍ତି ଶ୍ରୀଯୋଗମାୟା । ଠାକୁରଜୀ ଶେଷ ନାଗଙ୍କ ଉପରେ ଶୟନ କଲେ । ମା'ରାଧା ରାଣୀ ମହାଲକ୍ଷ୍ମୀବେଶ ଧରି ଭଗବାନ ନାରାୟଣଙ୍କର ଚରଣ ସେବାରେ ଲାଗିଗଲେ । ଗୋପୀ ଗୋପାଳମାନେ ହରିବୋଲ ହୁଳହୁଳି ଦେଇ ତାଳି ମାରି ଲୀଳା ଆନନ୍ଦ ଉପଭୋଗ କଲେ । ଏବେ ସେହି ବନରେ ବିରାଜିତ ଶେଷଶାୟୀଙ୍କ ମନ୍ଦିର ଓ ସରୋବର ସାକ୍ଷୀ ରୂପରେ କୃଷ୍ଣଭକ୍ତମାନଙ୍କର ଅବଶ୍ୟ ଦର୍ଶନୀୟ ।

ଏ ଖଦିର ବନର ସବୁଠାରୁ ଆନନ୍ଦ ଦାୟକ ଲୀଳା ହେଲା ଠାକୁରଜୀଙ୍କର ମୁରଲୀ ମାଧୁରୀ ଲୀଳା ପ୍ରଦର୍ଶନ । ମୁରଲୀଧାରୀଙ୍କର ମୁରଲୀ କି ରଙ୍ଗ ଢ଼ଙ୍ଗ ଦେଖାଇ ଗୋପୀ ଗୋପାଳ ସମାଜଙ୍କ ସହିତ ପଶୁପକ୍ଷୀ, ବୃକ୍ଷଲତା ଓ ମାଟି ପଥର ସହିତ ଯମୁନା ନଦୀର ଜଳସ୍ରୋତ ସମସ୍ତଙ୍କୁ କୃଷ୍ଣ ପ୍ରେମାନନ୍ଦରେ ପ୍ରମୋଦିତ କରିପାରିଲେ ?

**ପାଷାଣ ତରଳଂ ପଶୁ ନ କବଳଂ ଶୁଷ୍କଃ ତରୁ ପଲ୍ଲବମ୍ ।**
**ଯମୁନା ସ୍ଥକିତଂ ତଥା ଜଳଚରଂ ମୌନଂ ଭଜତେ କୋକିଳମ୍ ॥**
**ନିସ୍ତବ୍ଧ ପବନଂ ବିଧୌ ନ ଗମନଂ ଧ୍ୟାନାଗତ ମୁନିନା ।**
**ଉଚ୍ଛନ୍ନ ବ୍ରଜ କୁଳେ ବ୍ରଜକାମିନୀ ଶ୍ରୁତ୍ୱା ତୁ ବଂଶୀ ସ୍ୱନମ୍ ॥**

ଉ. ଦିବ୍ୟ ମୁରଲୀର ଅଲୌକିକ ସ୍ୱର ଓ ସ୍ପନ୍ଦନରେ ଚଳମାନ ଅଚଳ ଓ ଅଚଳମାନେ ଚଳ ହୋଇଗଲେ । ଜଡ଼ମାନେ ଚେତନ ଓ ଚେତନମାନେ ଜଡ଼ ହୋଇଗଲେ । ବଂଶ ଧ୍ୱନି ଶୁଭୁଥିବା ଜୀବ, ଜନ୍ତୁ, ମନୁଷ୍ୟମାନଙ୍କ ପାଦ ତଳର ପାଷାଣ ତରଳି ଗଲା । ଗାଈ, ମହିଷି, ହରିଣ, ସମ୍ବର ଆଦି ପଶୁମାନେ ଚାରା ଚରି ନ ପାରି ବଂଶୀ ସ୍ୱନ ଶ୍ରବଣ ଲାଗି କାନ ଡ଼େରିଲେ । ବଣର ଶୁଷ୍କ ତରୁମାନେ ପତ୍ର, ଫୁଲ, ଫଳରେ ଲଦି ହୋଇପଡ଼ିଲେ । ଯମୁନା ନଦୀ ସ୍ରୋତର ବିପରୀତ ଦିଗରେ ଉଜାଣି ବହିଲା । ସୁନ୍ଦର, ମଧୁର ରାବ କରୁଥିବା ପକ୍ଷୀମାନେ ନୀରବ ହେଲେ । ବହୁଥିବା ଚଳମାନ ପବନ ବହିବା ବନ୍ଦ କରିଦେଲା ଓ ଚନ୍ଦ୍ର (ବିଧୌ) ଦେବତା ଆକାଶରେ ଗମନ କରିବାରେ ଅସମର୍ଥ ହେଲେ । କାନ ପାରିଲେ ମୁରଲୀ ଧ୍ୱନିର ମଧୁରିମା ଆସ୍ୱାଦନ କରିବା ନିମିତ୍ତ । ଗିରି, କନ୍ଦରାରେ ଧ୍ୟାନରତ ମୁନିମାନେ ସେ

ବେଣୁର ସୂକ୍ଷ୍ମ ସ୍ପନ୍ଦନରେ ଧ୍ୟାନ ଭାଙ୍ଗି କାନ ପାତିଲେ ବ୍ରହ୍ମାନନ୍ଦଙ୍କୁ ଭୁଲିଯାଇ । ସର୍ବୋପରି ବ୍ରଜାଙ୍ଗନାମାନେ ମୁରଲୀ ସ୍ୱନରେ ତନ, ମନ, ବୁଦ୍ଧି ଜ୍ଞାନ ହରାଇ ବସିଲେ । ସେମାନେ ସମସ୍ତେ ଚିତ୍ର ପ୍ରତିମାପ୍ରାୟ ପ୍ରତୀତ ହେଲେ । ଏ କଥାର ସାକ୍ଷୀ ଦେବା ପାଇଁ ସେଠାରେ ଚରଣ ପାହାଡ଼ି କୃଷ୍ଣଭକ୍ତ ଓ କୃଷ୍ଣଙ୍କ ଚରଣ ଚିହ୍ନ ଏବେ ବି ଆମକୁ ଦେଖାଉଅଛନ୍ତି । ସେଠାରେ ଉଜାନୀ ବା ଉଜାଣୀ ବୋଲି ଏକ ଗ୍ରାମ ଆମର ଦୃଷ୍ଟି ଗୋଚର ହୁଏ ଯାହାକି ଶ୍ରୀଯମୁନା ନଦୀଙ୍କର ସ୍ରୋତର ଓଲଟ ବହିଥିବାର ସୂଚନା ଦିଏ ।

ଏହି ବନରେ ଶ୍ରୀଯମୁନାଜୀଙ୍କର ଅତି ପ୍ରସିଦ୍ଧ ଶ୍ରୀ ବଳରାମ ଘାଟ ବା ରାମ ଘାଟ ଦର୍ଶନୀୟ । ଏଠାରେ ବଳଦେବଜୀ ଅନେକ ଗୋପୀମାନଙ୍କୁ ଧରି ଚୈତ୍ର-ବୈଶାଖ ଦୁଇମାସ ଧରି ପବିତ୍ର ରସ ବିତରଣ ବା ରାସକ୍ରୀଡ଼ା କରିଥିଲେ । ବାରୁଣୀ ପାନ କରି ମତ୍ତ ହୋଇଥିଲେ । ଶ୍ରୀ ଯମୁନାଙ୍କୁ ମଧ୍ୟ ରାସକ୍ରୀଡ଼ା ଲାଗି ଆହ୍ୱାନ କରିଥିଲେ । ଯମୁନା ବଡ଼ ଠାକୁରଙ୍କ ଉନ୍ମତ୍ତ ଅବସ୍ଥା ଭୟରେ ନ ଆସିବାରୁ ସେ ତାଙ୍କର ତୀକ୍ଷ୍ଣ ଲଙ୍ଗଳ ମୁନରେ ଯମୁନା ନଦୀଙ୍କୁ ଆକର୍ଷଣ କରିଥିଲେ । ଶେଷରେ ଯମୁନା ମାତା ଶରଣ ପଶି କ୍ଷମା ଭିକ୍ଷା କରିଥିଲେ । ସେ ସ୍ଥାନଟି ଏବେ ମଧ୍ୟ ବକ୍ର ଦେଖାଯିବା କୃଷ୍ଣ ଭକ୍ତମାନେ ଲକ୍ଷ୍ୟ କରି ବଳରାମଙ୍କ ରାସ ଲୀଳା ଶ୍ରବଣ ସ୍ମରଣ କରି ହାତ ଯୋଡ଼ି ପ୍ରଣାମ କରନ୍ତି । ନାମ ତାର ରାମଘାଟ ରଖାଯାଇଛି ।

ବନ ମଧ୍ୟସ୍ଥିତ ଏକ ମହାନ ବଟ ବୃକ୍ଷ (ଭାଗବତ ବର୍ଣ୍ଣିତ ଭାଣ୍ଡୀର ବଟ) ପ୍ରଳମ୍ବାସୁର ଉଦ୍ଧାର ଲୀଳା ମନେ ପକାଇଥାଏ । କଂସ ପ୍ରେରିତ ପ୍ରଳମ୍ବ ଅସୁରକୁ ବଳରାମଜୀ ଏହି ସ୍ଥଳରେ ଖେଳରେ ଖେଳରେ ବଧ କରିଥିଲେ ।

ପୁଣି ଏହି ବନରେ ଦାବାନଳ କୁଣ୍ଡ ସ୍ଥଳୀ ଦର୍ଶନରେ ଭକ୍ତ ସ୍ମରଣ କରେ ମୁଞ୍ଜ ଅଟବୀରେ କୃଷ୍ଣ ଭଗବାନଙ୍କର ଅଗ୍ନି ଆତ୍ମସାତ ଲୀଳା କଥା । ଅଳ୍ପ ଦୂରରେ ସେହି ଯମୁନା କୂଳରେ ଅବସ୍ଥିତ ମା'କାତ୍ୟାୟିନୀ ଦେବୀଙ୍କ ମନ୍ଦିର । ଏହି ସ୍ଥାନରେ ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ପତି ରୂପରେ ପ୍ରାପ୍ତ ହେବାକୁ କାର୍ତ୍ତିକ ବ୍ରତ ପାଳନ କରିଥିବାର ବର୍ଣ୍ଣନା ଭାଗବତରେ ମିଳେ । ଏବେ ଯମୁନାର ଏହି ଘାଟର ନାମ ଗୋପୀଘାଟ । ପୁଣି ଅଦୂରରେ ଦର୍ଶନ ମିଳେ ବସ୍ତ୍ରହରଣ ଘାଟ ବା ଚୀରଘାଟ । ଗୋପୀମାନଙ୍କର ଦେହଭାବ ଦୂର କରାଇ ଆତ୍ମଭାବ ଜାଗ୍ରତ କରାଇଥିଲେ ଏହି ପବିତ୍ର ଯମୁନା ଘାଟ ।

ପରେ ପରେ ଦର୍ଶନ କରିବାକୁ ହୁଏ ଯମୁନାଙ୍କର ନନ୍ଦଘାଟ । ଏକାଦଶୀ ବ୍ରତ ଉପବାସ ପରେ ଅସମୟରେ ଯମୁନା ସ୍ନାନ କଲେ ଭଗବାନଙ୍କ ପିତା ନନ୍ଦରାଜା ।

ବରୁଣଙ୍କ ଅନୁଚର ଗଣ ବାନ୍ଧିନେଲେ ନନ୍ଦଙ୍କୁ ବରୁଣପୁରକୁ । ଭଗବାନ ତାଙ୍କୁ ଉଦ୍ଧାର କରିଥିବା ସ୍ଥାନଟି ଆଜିର ନନ୍ଦଘାଟ ନାମରେ ପ୍ରସିଦ୍ଧ । ଦର୍ଶନ କରିବାକୁ ହୁଏ ନନ୍ଦ, ଯଶୋଦା, କୃଷ୍ଣ ଓ ବଳରାମଜୀଙ୍କ ସେବିତ ଭବ୍ୟ ମନ୍ଦିରଟିଏ । ଅନେକ ଉଚ୍ଚ ପାହାଚ ଚଢ଼ି ପାଖରେ ଦେଖନ୍ତୁ ଶ୍ରୀଜୀବ ଗୋସ୍ୱାମୀ ପାଦଙ୍କ ଲୁଚିଥିବା ଗୁମ୍ଫା । ଶ୍ରୀରୂପ ଗୋସ୍ୱାମୀଙ୍କ ଅତିପ୍ରିୟ ଶିଷ୍ୟ ଶ୍ରୀଜୀବ ଗୋସ୍ୱାମୀ ଜ୍ଞାନୀମାନଙ୍କୁ ତର୍କ କରି ହରାଇଥିବାରୁ ଆଶ୍ରମରୁ ବହିଷ୍କୃତ ହୋଇଥିଲେ । ସେ ଏହି ସ୍ଥାନରେ ଗୁମ୍ଫା ମଧ୍ୟରେ ଅନେକ ଦିନ ଯାଏ ଲୁଚି ରହିଥିଲେ ।

ସମଗ୍ର ବୃନ୍ଦାବନ ଧାମରେ ଏହି ବନର ସବୁଠାରୁ ମଜାଦାର ଲୀଳା ହେଲା ବ୍ରହ୍ମ ବିମୋହନ ଲୀଳା । ସୃଷ୍ଟିକର୍ତ୍ତା ବ୍ରହ୍ମା ପରୀକ୍ଷା କରିବାକୁ ଆସିଲେ ଶ୍ରୀକୃଷ୍ଣଙ୍କୁ ସେ ସତ ସତିକା ଭଗବାନ କି ନାହିଁ । ସେ ଗୋପାଳ ବାଳକ ଓ ଗୋବତ୍ସାଙ୍କୁ ଏହି ସ୍ଥାନରୁ ଚୋରାଇ କମଣ୍ଡଳୁରେ ପୁରାଇ ବ୍ରହ୍ମଲୋକକୁ ନେଇଗଲେ । ପରେ ଜାଣିଲେ ତାଙ୍କର ନିଜର ପରୀକ୍ଷା ହୋଇସାରିଛି । ସେ ଶ୍ରୀକୃଷ୍ଣଙ୍କ ରାଇଜର ଜଣେ ସାମାନ୍ୟ ପ୍ରଜା ମାତ୍ର । ଚାରି ମୁକୁଟ ଠାକୁରଜୀଙ୍କ ପାଦରେ ଛୁଆଁଇ ଶରଣ ପଶିବା ସ୍ଥାନ ଏହି ଖଦିର ବନ । ସ୍ଥାନର ନାମ ପରଖମ (ପରୀକ୍ଷା) ଏବଂ ଚଉମୁହାଁ । ଆଜି ଏଠାକାର ଶ୍ରୀବ୍ରହ୍ମାଜୀଙ୍କ ମନ୍ଦିର ଏହି ଘଟଣାର ସାକ୍ଷୀ ଦେଉଛନ୍ତି । ଏହି ଖଦିର ବନକୁ ଥରେ ଅଘାସୁର(ପାପ-ଅସୁର) ସର୍ପରୂପ ଧରି ଆସିଥିଲେ କଂସ ପ୍ରେରିତ ହୋଇ । ତାଙ୍କ ବଧ ବା ଉଦ୍ଧାର ସ୍ଥଳୀ ଆଜି ସର୍ପୌଲି, ପସୋଲି ବା ସର୍ପସ୍ଥଳୀ ନାମରେ ଜଣାଶୁଣା ।

ଏତଦ୍ ବ୍ୟତୀତ ଏହି ପବିତ୍ର ଖଦିର ବନ ଆଜି ଧନ୍ୟ ବୋଲାଉଛି ବିଖ୍ୟାତ ଅଷ୍ଟାବକ୍ର ମୁନି, ଦେବରାଜ ଇନ୍ଦ୍ରଙ୍କର ଏବଂ ମହାନ ସିଦ୍ଧ ତପସ୍ୱୀ ସୌଭରି ମୁନିଙ୍କ ତପସ୍ଥଳୀ ଓ ଆଶ୍ରମଙ୍କୁ ନିଜ ମଧ୍ୟରେ ସ୍ଥାନ ଦେଇଥିବାରୁ । ଅଷ୍ଟାବକ୍ର ମୁନିଙ୍କ ତପସ୍ଥଳୀ ଆଠସ । ଇନ୍ଦ୍ର(ଶକ୍ର)ଙ୍କ ତପସ୍ଥଳୀ ଶକ୍ରୋୟା ଓ ସୌଭରୀଙ୍କ ସୁବର୍ଣ୍ଣ ନିର୍ମିତ ପଚାଶ ପତ୍ନୀଙ୍କ ମହଲ(ହବେଲି) ସୋନାରଖ ନାମରେ ଆଜି ପରିଚିତ ହେଉଛନ୍ତି । ଛତ୍ରବନ୍ ବା ଛତା ଛକଠାରୁ ବର୍ଷାଣା ଯିବା ରାସ୍ତାରେ ୪କି.ମି ଦୂରରେ ଏହି ଖଦିର ବନ ଅବସ୍ଥିତ ।

**୮. ଶ୍ରୀ ବେହୁଲା ବନ ଶ୍ରୀବେହୁଲାବନ ବା ଶ୍ରୀ ବଉଳା ଗାଈ ବନ:**

ପ୍ରଶ୍ନ-୮. ଭଗବାନ ବିଷ୍ଣୁଙ୍କର ପତ୍ନୀ ମହାଲକ୍ଷ୍ମୀଙ୍କର ଏକ ଭବ୍ୟ ନାମ ବେହୁଲା ଅଟେ । ମଥୁରା ସହରଠାରୁ ୮କି.ମି. ଦୂରରୁ ଆରମ୍ଭ ହୁଏ ଏହି ଦିବ୍ୟବନ ।

ପୁଣି ଲମ୍ବିଯାଏ ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ଗିରି ଗୋବର୍ଦ୍ଧନ, ନିମ ଗ୍ରାମ, ଶ୍ରୀଆଦି ବଦ୍ରୀନାଥ, ଡୀଗ(ଦୀର୍ଘପୁର) ଏବଂ ଖୋହ ପର୍ଯ୍ୟନ୍ତ । ସତ୍ୟଯୁଗ ସମୟର କାହାଣୀ । ସତ୍ୟ ଆଧାରରେ ସୃଷ୍ଟି ଚାଲୁଥାଏ । ସେତେବେଳେ ପଶୁ, ପକ୍ଷୀ, ବୃକ୍ଷ ଲତାଙ୍କ ସହିତ ମନୁଷ୍ୟ ଓ ଦେବତାମାନେ ନିଜ ନିଜ ଭାଷା ସଂକେତରେ କଥାବାର୍ତ୍ତା କରିପାରନ୍ତି ।

ବେହୁଲା ବନରେ ବାଟୀ ନାମକ ଗ୍ରାମରେ ବହୁଲା ଗାଈ ମନ୍ଦିର ଅବସ୍ଥିତ । ଏଠାରେ ଶ୍ରୀ ବହୁଳାବନ ବିହାରୀ, ଶ୍ରୀରାଧାଙ୍କ ସହିତ ଏକ ବାଘ ଓ ଗାଈ ବାଛୁରୀଙ୍କ ମୂର୍ତ୍ତି ସତ୍ୟଯୁଗର ଏକ ଅଦ୍ଭୁତ ଘଟଣାର ସାକ୍ଷ୍ୟ ପ୍ରଦାନ କରୁଛନ୍ତି । ଜଣେ ବ୍ରାହ୍ମଣ ତାଙ୍କ ଗାଈର ନାମ ବହୁଳା ରଖିଥିଲେ । ତାର କଅଁଳା ବାଛୁରୀଟିଏ ଥାଏ । ସେ ଗାଈ ଦିନେ ଏହି ବଣରେ ଘାସ ଚରିବାବେଳେ ବାଘ ହାବୁଡ଼ରେ ପଡ଼ିଲା । ବାଘ କ୍ଷୁଧାର୍ତ୍ତଥିବାରୁ ଗାଈକୁ ଆକ୍ରମଣ କଲା । ଗାଈଟି ବ୍ୟାକୁଳ ହୋଇ ଭଗବାନଙ୍କୁ ସ୍ମରଣ କଲା । ସହଜେ ଏହା ବୃନ୍ଦାବନ ବିହାରୀଙ୍କ ନିତ୍ୟ ବିହାରସ୍ଥଳ । ଗାଈଟି ବାଘକୁ ଜଣାକଲା ଯେ ତାର ବାଛୁରୀ ମଧ୍ୟ କ୍ଷୁଧାର୍ତ୍ତ । ତାକୁ ମହଲତ ମିଳୁ କିଛି ସମୟ । ସେ ମାଲିକଙ୍କ ଘରକୁ ଯିବ । ବାଛୁରୀକୁ ଦୁଧ ପେଇ ଫେରି ଆସିବ । ତାପରେ ତାକୁ ବାଘ ଖାଉ । ବାଘ ସତ୍ୟ ମନେ କଲା ବହୁଳାର ପ୍ରତିଶ୍ରୁତିକୁ । ବହୁଳା ଗାଈ ଘରକୁ ଗଲା । ନିଜ ବାଛୁରୀକୁ ଦୁଧ ପିଆଇଲା । ସେ ବାଛୁରୀକୁ କହିଲା ତାର ଜୀବନର ଶେଷ ଥର ଦୁଧ ପିଇ ସାରିଲେ ସେ ସ୍ୱୟଂ ବାଘର ଆହାର ହେବ । ଏ କଥା ଶୁଣି ବାଛୁରୀ ଦୁଧ ଖାଇବାକୁ ଅମଙ୍ଗ ହେଲା । ନିଜେ ବାଘର ଆହାର ହେବାକୁ ବାହାରିଲା । ସେ ଦୁହିଁଙ୍କର କଥାବାର୍ତ୍ତା ଶୁଣି ସେମାନଙ୍କ ମାଲିକ ବ୍ରାହ୍ମଣଙ୍କ ହୃଦୟ କରୁଣାରେ ବିଗଳିତ ହୋଇଗଲା । ସେ ମଧ୍ୟ ସେ ଦୁହିଁଙ୍କ ସହିତ ବେହୁଲା ବନର ବାଘ ପାଖକୁ ଗଲେ । ଉଦ୍ଦେଶ୍ୟ ଏଭଳି ସତ୍ୟରେ ଚଳୁଥିବା ପଶୁମାନଙ୍କ ଜୀବନ ନିଜ ଜୀବନ ବଦଳରେ ରକ୍ଷା କରିବେ । ସେ ଗୃହସ୍ଥ ଧର୍ମ ପାଳନ କରିବେ । ନିଜେ ବରଂ ବାଘର ଭୋଜନ ହେବେ । ଭାଗ୍ୟର ବିଡ଼ମ୍ବନା ବାଘ ସବୁ ଶୁଣି ସେମାନଙ୍କୁ ସମସ୍ତଙ୍କୁ ଛାଡ଼ିଦେଲା । ନିଜେ ବରଂ କ୍ଷୁଧାର୍ତ୍ତ ହୋଇ ମରଣ ମୁଖରେ ପଡ଼ିବାକୁ ପସନ୍ଦ କଲା । ବାସ୍ତବରେ ବାଘ କିନ୍ତୁ ବାଘ ନଥିଲା କି ସେ ଗାଈ, ବାଛୁରୀ, ବ୍ରାହ୍ମଣ କେହି ଭୌତିକ ପ୍ରାଣୀ ନଥିଲେ । ସେ ଦିବ୍ୟ ବେହୁଲା ବନର ଛତ୍ରେ ଛତ୍ରେ ପତ୍ରେ ପତ୍ରେ ବିଦ୍ୟମାନ ଶ୍ରୀକୃଷ୍ଣ ଓ ଶ୍ରୀରାଧା ବୃନ୍ଦାବନବାସୀଙ୍କୁ ସତ୍ୟର ଶିକ୍ଷା ଦେବାକୁ ଲୀଳା ଅଭିନୟ କରୁଥିଲେ । ଏବେ ସେଠାରେ ବହୁଳା କୁଣ୍ଡ, ଶ୍ରୀ ବହୁଳା ବନ ବିହାରୀଜୀଙ୍କ ମନ୍ଦିର ଦର୍ଶନୀୟ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ବେହୁଲା ବନରେ ଅନୁଷ୍ଠିତ ମୁଖ୍ୟ ଲୀଳାମାନଙ୍କର ଆଧାର ଅଟନ୍ତି ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ମାନସୀ ଗଙ୍ଗା, ହରିଦେଓ ଜୀ ମନ୍ଦିର, ଗୋଆଲକୁଣ୍ଡ, ଗୋବିନ୍ଦ କୁଣ୍ଡ, ଅପସରାକୁଣ୍ଡ, ଐରାବତ କୁଣ୍ଡ, ଚକଳେଶ୍ୱର ମହାଦେବ, ସନାତନ ଗୋସ୍ୱାମୀଙ୍କ ଭଜନ କୁଟୀର ଏବଂ ଶ୍ରୀଗିରିରାଜ ଗୋବର୍ଦ୍ଧନ ପର୍ବତ । ବେହୁଲା ବନର ମୁଖ୍ୟ ଆକର୍ଷଣ ଶ୍ରୀଗିରିରାଜ ଗୋବର୍ଦ୍ଧନ ବୋଲି ସର୍ବଭକ୍ତଜନ ସ୍ୱୀକୃତ । ଗୋପୀ ଗୋପାଳମାନଙ୍କୁ ଇନ୍ଦ୍ରକୋପରୁ ରକ୍ଷା କରିବାକୁ ଭଗବାନ ଏହି ଗିରିରାଜଙ୍କୁ ହସ୍ତରେ ଛତାଟିଏ ଭଳି ଧାରଣ କରିଥିଲେ । ଶ୍ରୀନନ୍ଦ ରାଜା କୃଷ୍ଣଙ୍କ ବୋଲରେ ପଡ଼ି ଦେବରାଜ ଇନ୍ଦ୍ରଙ୍କ ପୂଜା ନକରିବା କାରଣ କିସ ?

**କର୍ମଣା ଜାୟତେ ଜନ୍ତୁଃ କର୍ମଣା-ଏବ ବିଲୀୟତେ ।**
**ସୁଖଂ ଦୁଃଖଂ ଭୟଂ କ୍ଷେମଂ କର୍ମଣା-ଏବ-ଅଭିପଦ୍ୟତେ ॥୧୩॥**

ଉ. ସେତେବେଳେ ଭଗବାନ କୃଷ୍ଣ ଦେଖିଲେ ଇନ୍ଦ୍ର ଅହଂକାରୀ ହୋଇ ନିଜକୁ ବର୍ଷା କରିବା ନ କରିବା ନିଷ୍ପତ୍ତିର ମାଲିକ ମାନି ବସିଲେଣି । ଜଣେ ଦେବତାଙ୍କୁ ପରମେଶ୍ୱର ଭାବି ପୂଜା କରିବା ଜୀବ ପକ୍ଷେ ମଧ୍ୟ ଅପରାଧ ଅଟେ । ସୁତରାଂ ଭାଗବତରେ ମାତ୍ର ଅଠରଟି ଶ୍ଳୋକରେ ଅଠର ଅଧ୍ୟାୟ ଗୀତାବର୍ଣ୍ଣିତ କର୍ମଯୋଗ ରହସ୍ୟ ନିଜ ପିତା ନନ୍ଦଙ୍କୁ ବୁଝାଇଛନ୍ତି । ଠାକୁରଜୀ କହିଲେ, ''ପିତାଜୀ, ଜୀବ ନିଜ ପୂର୍ବକୃତ କର୍ମ ଫଳ ଭୋଗିବାକୁ ଜନ୍ମ (ଜାୟତେ) ହୁଏ । ପ୍ରାରବ୍ଧ କର୍ମ ଶେଷରେ ମରେ (ବିଲୀୟତେ) ମଧ୍ୟ । ଶୁଭ ଅଶୁଭ କର୍ମର ଫଳ ରୂପେ ପୁଣ୍ୟ ପାପ ଉଭୟକୁ ସେ ଭୋଗ କରେ । ପାପ କର୍ମ ହେତୁ ଜୀବନ କାଳରେ ଭୟ କରେ ପୁଣି ଭଗବତ ଅର୍ପିତ କର୍ମ କରିଥିଲେ(କ୍ଷେମ) ଆତ୍ମୋଦ୍ଧାର ମଧ୍ୟ କରିପାରେ । ଯଦି କୌଣସି ଦେବତା(କଳ୍ପିତ ଈଶ୍ୱର) କର୍ମଫଳ ଦେଉଥାନ୍ତି ତେବେ ମଧ୍ୟ ସେ ସେହି କର୍ମର କର୍ତ୍ତାକୁ ନିଶ୍ଚୟ ଦେଇଥାନ୍ତି, କିନ୍ତୁ କର୍ମ ନ କରିଥିବା ଲୋକକୁ ଅଯଥା ଦଣ୍ଡ ଦେଇନପାରନ୍ତି । ଅତଏବ ଇନ୍ଦ୍ର ଆଦି ଅହଂକାରୀ ଦେବତାଙ୍କୁ ପୂଜିବା ପରିବର୍ତ୍ତେ ଗୋ, ବ୍ରାହ୍ମଣ, ଗିରିରାଜ, ବୈଷ୍ଣବ ପୂଜା, ଦାନ, ଦକ୍ଷିଣା ଭୋଜନ ଆଦି ଦେଇ ସେମାନଙ୍କୁ ପ୍ରସନ୍ନ କରି ସ୍ୱୟଂ ନାରାୟଣଙ୍କୁ ପ୍ରସନ୍ନ କରାଯିବା ଜଣେ ଜୀବ ପକ୍ଷରେ ବିବେକର କଥା ।

ନନ୍ଦ, ଉପନନ୍ଦ ଆଦିଙ୍କ ମନକୁ କଥାଟି ବିଲକୁଲ ପସନ୍ଦ ହେଲା । ସେମାନେ ସେତେବେଳେ ଇନ୍ଦ୍ରପୂଜନ ବଦଳରେ ଶ୍ରୀଗୋବର୍ଦ୍ଧନଙ୍କୁ ପ୍ରସନ୍ନ କରିବାକୁ ଅନ୍ନକୂଟ ମହୋତ୍ସବ କରିଥିଲେ । ଏଥିରେ ଇନ୍ଦ୍ରଦେବତା ଅଯଥା କୋପ କଲେ କିନ୍ତୁ ସର୍ବଶକ୍ତିମାନ

(ଇନ୍ଦ୍ରଙ୍କର ମଧ୍ୟ ଇନ୍ଦ୍ର) ଠାକୁରଜୀ ସେମାନଙ୍କୁ ସ୍ୱହସ୍ତରେ ଏହି ଗିରିରାଜଙ୍କୁ ଧାରଣ କରି ନିଜ ଭକ୍ତବୃନ୍ଦଙ୍କୁ ରକ୍ଷା କରିଥିଲେ । ତାହାଦ୍ୱାରା ଇନ୍ଦ୍ରଙ୍କ ଗର୍ବ ଚୂର୍ଣ୍ଣ କରି ତାଙ୍କ ସ୍ୱଧର୍ମ ପାଳନ ଶିକ୍ଷା ଦେଇ ବାଟକୁ ଆଣିଥିଲେ ।

ଏଠାରେ ଶ୍ରୀଗୋବର୍ଦ୍ଧନ ପରିକ୍ରମା କରିବା ବେଳେ କୁସୁମ ସରୋବର, ନାରଦ କୁଣ୍ଡ, ଉଦ୍ଧବ କୁଣ୍ଡ, ଉଦ୍ଧବ ମନ୍ଦିର, ଓଡ଼ିଆ ମନ୍ଦିର ନିର୍ମାଣ ଶୈଳୀରେ ନିର୍ମିତ ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କ ମନ୍ଦିର ଓ ପୁରୀ ଦାସ ଗୋସ୍ୱାମୀଙ୍କ ସମାଧି ଦର୍ଶନୀୟ । ଶ୍ରୀ ଗିରିରାଜ ଗୋବର୍ଦ୍ଧନ ପର୍ବତ ପରିକ୍ରମା କରିବାବେଳେ ମାନସୀ ଗଙ୍ଗା, ପୁଛରିକା ଲୋଠା, ମୁଖାରବିନ୍ଦ ଏବଂ ଦାନଘାଟୀ ଇତ୍ୟାଦି ଅବଶ୍ୟ ଦର୍ଶନୀୟ । ଅଳ୍ପ ଦୂରରେ ନିମଗ୍ରାମଠାରେ ଜଗଦଗୁରୁ ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟଙ୍କ ସୁନ୍ଦର ମନ୍ଦିର ଓ ଆଶ୍ରମ ଅବସ୍ଥିତ । ସେଠାରୁ ଚଉଦ କି.ମି. ଦୂରରେ ଡୀଗ ନାମକ ତୀର୍ଥ ଦର୍ଶକମାନେ ଦେଖିପାରନ୍ତି ଯାହାକୁ ତ୍ରେତାଯୁଗର ଭକ୍ତଶ୍ରେଷ୍ଠ ଶ୍ରୀ ଲକ୍ଷ୍ମଣ ଲାଲ ସ୍ଥାପନ କରିଥିଲେ ।

**୯. ଶ୍ରୀ କୁମୁଦ ବନ:**

ପ୍ରଶ୍ନ-୯. ମଥୁରା ଧାମର ପାଖେ ପାଖେ ମଧୁବନ ଓ ତାଳବନ ଉଭୟକୁ ଲାଗି ଏହି କୁମୁଦବନ ବିଦ୍ୟମାନ । ସଂସ୍କୃତରେ କୁ ଅର୍ଥ ପୃଥିବୀ ଓ ମୁଦ ଅର୍ଥ ଆନନ୍ଦ । ଅତଏବ ଯେଉଁ ବନଭୂମି ଖଣ୍ଡିକ ସୃଷ୍ଟିର ସର୍ବେଶ୍ୱର ଓ ତାଙ୍କ ଅଗଣିତ ଭକ୍ତଗଣଙ୍କୁ ଆନନ୍ଦ ପ୍ରଦାନ କରିବାରେ ସଦା ତତ୍ପର ସେହି ବନ ହିଁ କୁମୁଦବନ ।

ଚକ୍ରବର୍ତ୍ତୀ ସମ୍ରାଟ୍ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ସମସ୍ତଙ୍କ ସାମନାରେ ଚେଦିରାଜ୍ୟର ରାଜା ଶିଶୁପାଳ ନିଜ କୃତ କୃଷ୍ଣ ଅପରାଧର ଫଳ ସ୍ୱରୂପ ମୁକ୍ତି ଲାଭ କଲେ । ସ୍ୱୟଂ ଯୁଧିଷ୍ଠିର ଏହା ଦେଖି ଆଚମ୍ବିତ ହୋଇଥିଲେ । କୃଷ୍ଣ ଜନ୍ମର ଏହା ଏକ ମୁଖ୍ୟକାରଣ ଥିଲା କାରଣ ତିନି ଜନ୍ମରେ ଜୟ ବିଜୟଙ୍କର ଉଦ୍ଧାର ହେବା କଥା । ହରିଣ୍ୟାକ୍ଷ-ହିରଣ୍ୟକଶିପୁ, ରାବଣ-କୁମ୍ଭକର୍ଣ୍ଣ ଜନ୍ମ ପରେ ଏବେ ଶିଶୁପାଳ-ଦନ୍ତାବକ୍ର ଜନ୍ମ ପାଇଛନ୍ତି ସେମାନେ । ସୁତରାଂ ଦନ୍ତାବକ୍ର ଉଦ୍ଧାର ଲୀଳାଟି ଏହି ବନରେ ଅଭିନୀତ ହୋଇଥିବାରୁ କୁମୁଦବନ ନାମକରଣ ସାର୍ଥକତା କେଉଁଠି ରହିଲା ?

**ତତଃ ସୂକ୍ଷ୍ମତରଂ ଜ୍ୟୋତିଃ କୃଷ୍ଣଂ ଆବିଶତ ଅଦ୍ଭୁତମ୍ ।**
**ପଶ୍ୟତାଂ ସର୍ବଭୂତାନାଂ ଯଥା ଚୈଦ୍ୟ ବଧେ ନୃପ ।।୧୦।।**

ଉ. ରାଜସୂୟ ଯଜ୍ଞରେ ଉପସ୍ଥିତ ସମସ୍ତ ରାଜାମାନଙ୍କ ସମ୍ମୁଖରେ ଯେଉଁ ଭଳି ଶିଶୁପାଳ(ଚୈଦ୍ୟ ବଧେ)ଙ୍କ ଦେହରୁ ଦିବ୍ୟ ଜ୍ୟୋତି ଉତ୍ପନ୍ନ ହୋଇ ଶ୍ରୀକୃଷ୍ଣଙ୍କ

ଚିନ୍ମୟ ଦେହରେ ଲୀନ ହୋଇଥିଲା ଏବେ ଦନ୍ତାବକ୍ରଙ୍କ ଦେହରୁ ଉତ୍ପନ୍ନ ଜ୍ୟୋତି ମଧ୍ୟ ସେହିଠାରେ ବିଶ୍ରାମ ନେଲା । ଅତଏବ ଯେଉଁ କଠିନ କର୍ମଲାଗି ଧରାରାଣୀ ଏତେ ଶ୍ରମ କରି ବ୍ରହ୍ମା ଶଙ୍କରଙ୍କୁ ସାଥିରେ ଧରି କ୍ଷୀରସାଗର ଯାଇ ଶ୍ରୀକୃଷ୍ଣ ଅବତାର କରାଇଥିଲେ ସେ ଲକ୍ଷ୍ୟ ପୂରଣ ଦେଖି ଧରଣୀ ରାଣୀ(କୁ) ଆନନ୍ଦ(ମୁଦ) ପ୍ରାପ୍ତ ହୋଇଛନ୍ତି । ମଥୁରା ରାଜା ବଜ୍ରନାଭ ଏହି ବନରେ ଲୀଳାସ୍ଥଳୀର ନାମ ଦନ୍ତବକ୍ରହା ବା ଦତିହା ରଖିଛନ୍ତି । ଅନ୍ୟ କାହାରି କାହାରି ମତରେ ଏଠାରେ ପ୍ରଚୁର କୁମୁଦ(କଇଁଫୁଲ) ଭରା ସରୋବରଟିଏ ଥିଲା ଯାହା ଠାକୁରଜୀଙ୍କ ଲୀଳା ବିଳାସବେଳେ କାମରେ ଲାଗୁଥିଲା । ତେଣୁ ଏଭଳି କୁମୁଦ ବନ ବୋଲି ନାମିତ ହୋଇଛି ।

ପଦ୍ମପୁରାଣଙ୍କ ମତରେ ଗୋପୀଗୋପାଳମାନେ କୁରୁକ୍ଷେତ୍ର ଯଜ୍ଞଶେଷରେ ଶ୍ରୀକୃଷ୍ଣଙ୍କଠାରୁ ବିଦାୟ ନେଇ ନନ୍ଦଗ୍ରାମ, ବର୍ଷାଣା ଆସୁଥିଲେ । ଗୋପୀମାନେ ଫେରିବା ପଥରେ ଗୋପୀ ତାଲାବ ନାମକ ସ୍ଥାନରେ ସରୋବର ସ୍ନାନ କରିବାକୁ ଜଳରେ ପଶିଲେ । ସ୍ନାନ ପରେ, ଆଉ ଉପରକୁ କିନ୍ତୁ ଉଠିଲେ ନାହିଁ । ଗୋପୀମାନେ ସମସ୍ତେ ସ୍ୱଦେହରେ ଲୀଳା ପ୍ରବେଶ କରିଥିଲେ । ସେମାନଙ୍କ ଶରୀରର ଅବଶିଷ୍ଟ ଭୌତିକ ପଙ୍କକୁ ଏବେ ଗୋପୀ ଚନ୍ଦନ ରୂପେ ବୈଷ୍ଣବମାନେ ତିଳକ କରୁଛନ୍ତି । ନନ୍ଦ, ଉପନନ୍ଦ ଆଦି ଗୋପାଳମାନେ ଆଉ ନନ୍ଦଗାଁ ବରସାନା ଫେରି ନଥିଲେ । ଏହି ଦହିତା ପାଖରେ ଗୌରବାଇ ନାମକ ସ୍ଥାନରେ ଜଣେ ଜମିଦାର ସେମାନଙ୍କ ଉଚ୍ଛ୍ୱସିତ ସ୍ୱାଗତ ଜଣାଇ ଗୌରବପ୍ରଦାନ କରିଥିଲେ । ଶ୍ରୀକୃଷ୍ଣ ଦ୍ୱାରକା ଲୀଳାରେ ଶାଲ୍ୱବଧ କରି ମଥୁରା ପାଖରେ ପହଞ୍ଚି ଦନ୍ତାବକ୍ରକୁ ଦହିତାଠାରେ ବଧ କଲେ । ନନ୍ଦଗ୍ରାମ ଆସିବା ବାଟରେ ପିତାମାତାଙ୍କୁ ଭେଟିଲେ ଏହି ଗୌରବାଇଠାରେ । ବୈକୁଣ୍ଠରୁ ବିମାନ ଅଣାଇ ସେମାନଙ୍କୁ ନିଜ ନିଜ ଲୋକକୁ ପଠାଇଥିଲେ ।

ବୃନ୍ଦାବନ ସହରଠାରୁ ରାଧାକୁଣ୍ଡ ଯିବାବେଳେ ଜି.ଟି ରୋଡ଼କୁ ମିଶିବାକୁ ହୁଏ । ସେହି ଛକର ନାମ ଛଟିକରା । ତାହାର ଅନ୍ୟାନ୍ୟ ନାମଗୁଡ଼ିକ ହେଲା ଷଷ୍ଠୀଘରା, ଷଷ୍ଠୀକରା ବା ଷଟ୍ଠୀଘରା ଇତ୍ୟାଦି । ଭଗବାନଙ୍କ ଗୋକୁଳ ଲୀଳାବେଳେ ନନ୍ଦ ମହାରାଜା ଏହି ସ୍ଥାନରେ ଏକ ମହାନ ଷଷ୍ଠୀଘରା ଉତ୍ସବ ପାଳନ କରିଥିଲେ । ଠାକୁରଜୀଙ୍କ ବୟସ ମାତ୍ର ଏକୋଇଶ ଦିନ । ଶକଟ ତଳେ ଶିଶୁ ସନ୍ତାନକୁ ଶୋଇ ଦେଇ ଯଶୋଦାରାଣୀ ଅନ୍ୟ କାମରେ ବ୍ୟସ୍ତ ଥିଲେ । କଂସ ପ୍ରେରିତ ଶକଟାସୁର ଆସି ସେହି ଶକଟରେ ପ୍ରବେଶ କରିଥିଲା ଭଗବାନଙ୍କ ପ୍ରାଣ ନେବା ଲକ୍ଷ୍ୟରେ । ଲୀଳାମୟ

ପ୍ରଭୁ କିନ୍ତୁ ଲାତ ମାରି ଶକଟକୁ ଓଲଟାଇ ଛଅ ଟୁକୁଡ଼ା କରିଦେଲେ । ଅସୁରକୁ ଉଦ୍ଧାର ମଧ୍ୟ କଲେ । ସେଇ ଅନୁସାରେ ସ୍ଥାନର ନାମ ଏପରି ଛଟୀକରା ହୋଇଛି ।

ଛଟୀକରାଠାରୁ ୧କି.ମି. ଦୂରରେ ଶ୍ରୀଗରୁଡ଼ ଗୋବିନ୍ଦ ମନ୍ଦିର ଦର୍ଶନୀୟ । ଦିନେ କ୍ରୀଡ଼ାବେଳେ ଗୋପାଳମାନେ ଗୋବିନ୍ଦଙ୍କୁ ନାରାୟଣ ଲୀଳା ଦର୍ଶନ କରେଇବାକୁ କୌତୁକରେ ଅନୁରୋଧ କଲେ । ଶ୍ରୀକୃଷ୍ଣ ତାଙ୍କୁ ଗରୁଡ଼ ନଥାଇ ନାରାୟଣଲୀଳା ହେବା ଅସମ୍ଭବ ବୋଲି କହିଲେ । ତତ୍‌କ୍ଷଣାତ୍ ଖେଳସାଥି ସୁଦାମ ଗରୁଡ଼ ହୋଇଗଲେ । ଗୋବିନ୍ଦ କାହିଁ ଛାଡ଼ନ୍ତେ ? ସଙ୍ଗେ ସଙ୍ଗେ ଚତୁର୍ହସ୍ତ ଶ୍ରୀନାରାୟଣ ହୋଇ ତାଙ୍କ କାନ୍ଧରେ ବିରାଜମାନ କଲେ । ସମସ୍ତେ ତାଳିମାରି ହସି ହସି ଗଡ଼ିଗଲେ । ଆଜି ସେହି ସ୍ଥାନ ଶ୍ରୀ ଗରୁଡ଼ ଗୋବିନ୍ଦ । ଅନ୍ୟ କାହାରି ମତରେ ରାମ ଅବତାର କାଳରେ ଭଗବାନ ରାମ ନାଗ ଫାଶରେ ବନ୍ଧନରେ ଥିବାବେଳେ ନାରଦଜୀ ଗରୁଡ଼ଙ୍କୁ ପଠାଇ ନାଗଫାଶ ବନ୍ଧନରୁ ତାଙ୍କୁ ମୁକ୍ତ କଲେ । ଏ ଲୀଳାରେ ଗରୁଡ଼ ଆସି ତାଙ୍କୁ ଏହିଠାରେ ପୂର୍ଣ୍ଣତମ ପୁରୁଷୋତ୍ତମ ଭଗବାନ ରୂପରେ ଦର୍ଶନ କଲେ ଯେତେବେଳେ ସ୍ୱୟଂ ଗୋବିନ୍ଦ ତାଙ୍କ ସ୍କନ୍ଧ ଦେଶରେ ଆରୋହଣ କରି ଗରୁଡ଼ ଗୋବିନ୍ଦ ଲୀଳା ପ୍ରଦର୍ଶନ କଲେ । ସେହି କାରଣରୁ ଏ ଲୀଳା ସ୍ଥଳୀର ଏପରି ନାମ ରଖିଲେ ରାଜା ବଜ୍ରନାଭ ।

ଦିଲ୍ଲୀ-ଆଗ୍ରାରାସ୍ତା କଡ଼ରେ ମଥୁରାଠାରୁ ୫କି.ମି. ଦୂରରେ ଅବସ୍ଥିତ ସାତୋହା ଗ୍ରାମ । ଏହା ଏକ ଅତ୍ୟନ୍ତ ପବିତ୍ର ତୀର୍ଥ ସ୍ଥଳୀ । ଏଠାରେ ବିରାଜମାନ ସେଇ ଚନ୍ଦ୍ରବଂଶୀ ସ୍ୱନାମ ଧନ୍ୟ ରାଜା ଶାନ୍ତନୁଙ୍କର ତପସ୍ଥଳୀ । ଏବେ ସେ ସ୍ଥାନରେ ଶ୍ରୀଶାନ୍ତନୁ ବିହାରୀ ନାମରେ ଭଗବାନଙ୍କ ପୂଜା ଅର୍ଚ୍ଚନା ହୁଏ । ଚାରିପଟେ ଜଳ ଘେରା ସରୋବର ମଝିରେ ଦ୍ୱୀପ ଭଳି ମନେ ହୁଏ ସେହି ତପସ୍ଥଳୀ । ଭଗବାନ ନାରାୟଣଙ୍କୁ ତପସ୍ୟା ଦ୍ୱାରା ପ୍ରସନ୍ନ କରି ରାଜା ଭୀଷ୍ମନାମକ ପୁତ୍ର ପ୍ରାପ୍ତ ହୋଇଥିଲେ । ସେହି ଠାକୁରଙ୍କୁ ମଧ୍ୟ ସେବା ପୂଜା କରି କାଶୀ ବନାରସର ଏକ ବ୍ରାହ୍ମଣ ଦମ୍ପତି ବ୍ରଜମଣ୍ଡଳର ଜଣେ ଅତି ପ୍ରସିଦ୍ଧ ସନ୍ଥ ଅଖଣ୍ଡ ଆନନ୍ଦ ସରସ୍ୱତୀଙ୍କୁ ପୁତ୍ର ରୂପରେ ପ୍ରାପ୍ତ ହୋଇଥିଲେ । ତାଙ୍କର ଏକ ସୁନ୍ଦର ଆଶ୍ରମ ବୃନ୍ଦବାନର ମୋତିଝିଲ ଠାରେ ଦର୍ଶନୀୟ । ବୃନ୍ଦାବନର ଏହି ଆଶ୍ରମ ନିକଟରେ ଓଡ଼ିଆ ବାବାଙ୍କ ପ୍ରସିଦ୍ଧ ଶ୍ରୀକୃଷ୍ଣ ଆଶ୍ରମ ମଧ୍ୟ ଦର୍ଶନୀୟ । ମଥୁରା ସହରଠାରୁ ସାତୋହା ୯କି.ମି. ଦୂରରେ ଅବସ୍ଥିତ ।

**୧୦. ଶ୍ରୀ କାମ୍ୟ ବନ:**

ପ୍ରଶ୍ନ-୧୦. ବୃହତ ଆକାର ଦୃଷ୍ଟିରୁ ଓ ଶ୍ରୀକୃଷ୍ଣ ପ୍ରେମର ଗୋପନୀୟତା

ସହିତ ଉପଯୋଗିତା ଦୃଷ୍ଟିରୁ ବିଚାର କଲେ ଏହି କାମ୍ୟବନ ସର୍ବକାମ ଫଳପ୍ରଦ ବୋଲି କୁହାଯାଇ ଏହାଙ୍କର ସ୍ତୁତି କରାଯାଏ । ବାସ୍ତବତା ଦୃଷ୍ଟିରୁ କିନ୍ତୁ କୃଷ୍ଣ ଓ କୃଷ୍ଣ ପ୍ରେମ (ରାଧା) କାମନା ଉଭୟ ଅଭିଳାଷ ପୂରଣ କରିଥାନ୍ତି ଏହି ପବିତ୍ର ବନ ।

ଏକ ଅଂଶରେ ଏହି କାମ୍ୟ ବନ ନନ୍ଦୀଶ୍ୱର ପର୍ବତରେ ନନ୍ଦଗ୍ରାମ ଧାରଣ କରିଥିବା ବେଳେ ଅନ୍ୟ ଭାଗରେ ବର୍ଷାଣା ପର୍ବତ ଉପରେ ବୃଷଭାନୁରାଜାଙ୍କ ବାସସ୍ଥଳୀ ସହିତ ଶ୍ରୀରାଧାଙ୍କ ଶାଶୁଘର ଯାବଟଗ୍ରାମଙ୍କୁ ଧାରଣ କରି ଧନ୍ୟ ହୋଇଛନ୍ତି । ଆଉରଙ୍ଗଜେବଙ୍କ ବୃନ୍ଦାବନ ଧାମ ଆକ୍ରମଣ କାଳରେ ଜୟପୁର ରାଜା ବୃନ୍ଦାବନର ତିନି ପ୍ରସିଦ୍ଧ ଠାକୁର ଶ୍ରୀଗୋବିନ୍ଦ ଦେବ, ଶ୍ରୀ ମଦନମୋହନ, ଶ୍ରୀ ଗୋପୀନାଥଙ୍କ ସହିତ ଶ୍ରୀ ବୃନ୍ଦାବତୀ ଦେବୀଙ୍କୁ ଜୟପୁର ନେଉଥିଲେ । ସେତେବେଳେ କିଛି ଦିନ ଲାଗି ଏହି ଘଞ୍ଚ ଅରଣ୍ୟ (କାମ୍ୟବନ)ରେ ସେ ବିଗ୍ରହମାନଙ୍କୁ ସ୍ଥାପନ କରାଯାଇ ସେବା ପୂଜା କରାଯାଉଥିଲା । ପରେ ପ୍ରଥମ ତିନି ଠାକୁରଙ୍କ ବିଗ୍ରହଙ୍କୁ ସ୍ଥାନାନ୍ତର କରାଯାଇ ଏବେ ସେମାନଙ୍କର ପ୍ରତିଭୂମାନଙ୍କୁ ରଖାଯାଇ ସେଇ ସେଇ ମନ୍ଦିରରେ ପୂଜା କରାଯାଉଛି । ଶ୍ରୀବୃନ୍ଦାବତୀ ଦେବୀ କିନ୍ତୁ ବ୍ରଜବାହାରକୁ ଯିବାକୁ ମନା କରିବାରୁ ତାଙ୍କ ମୂଳ ବିଗ୍ରହ ଏହି କାମ୍ୟ ବନରେ ପୂଜା କରାଯାଉଛନ୍ତି । ଶ୍ରୀ ଗୋପୀନାଥଜୀ ଏହି ବନ୍ୟରେ ଥିବା ସମୟରେ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କ ପତ୍ନୀ ଶ୍ରୀ ଜାହ୍ନବା ଦେବୀ ତାଙ୍କୁ ଦର୍ଶନ କରିବାକୁ ବୃନ୍ଦାବନ ଆସିଥାନ୍ତି । ଶ୍ରୀବିଗ୍ରହ ବୃନ୍ଦାବନରୁ କାମ୍ୟବନକୁ ଯାଇଛନ୍ତି ଶୁଣି ସେ ଏହି ବନକୁ ଆସିଲେ । ଏତେ ଘଞ୍ଚ ଅରଣ୍ୟରେ ତାଙ୍କୁ ଛାଡ଼ିବାକୁ ଗୋସ୍ୱାମୀଗଣ ଅମଙ୍ଗ ହେଲେ । ଶ୍ରୀରୂପ ଗୋସ୍ୱାମୀ, ଶ୍ରୀ ସନାତନ ଗୋସ୍ୱାମୀ, ଶ୍ରୀ ଜୀବଗୋସ୍ୱାମୀ, ଶ୍ରୀ ଗୋପାଳ ଭଟ୍ଟ ଗୋସ୍ୱାମୀ ଆଦି ତାଙ୍କ ସାଙ୍ଗରେ ଆସି ଏଠାରେ ପହଞ୍ଚିଥିଲେ । ଶ୍ରୀ ଜାହ୍ନବା ଦେବୀ ସ୍ୱହସ୍ତରେ ପ୍ରସାଦ ପ୍ରସ୍ତୁତ କରି ଶ୍ରୀ ଗୋପୀନାଥଙ୍କୁ ଭୋଗ ଲଗାଇଲେ । ସନ୍ଧ୍ୟା ଆରତୀ ସମୟରେ ବିଗ୍ରହ ପରିକ୍ରମା ବେଳେ ଶ୍ରୀଗୋପୀନାଥ ଦେବ ତାଙ୍କ ପଣତ କାନି ଟାଣି ଧରିଲେ । ସେ ପଛକୁ ଫେରି ଚାହାନ୍ତେ ତାଙ୍କ ଭୌତିକ ଦେହକୁ ଶ୍ରୀ ଗୋପୀନାଥ ଦେବ ଟାଣି ନେଇ ନିଜ ବିଗ୍ରହରେ ଲୀନ କରିଦେଲେ । ସାକ୍ଷୀ ରହିଲେ ଜନସାଧାରଣଙ୍କ ସହିତ ଉପସ୍ଥିତ ଗୋସ୍ୱାମୀ ଗଣ ।

କାମ୍ୟବନ ଦର୍ଶନ ସମୟରେ ସେହି ଶ୍ରୀ ବୃନ୍ଦାବତୀଙ୍କୁ ଦର୍ଶନ କରି ତାଙ୍କରି ମନ୍ଦିରରେ ବିରାଜିତ ଶ୍ରୀଜଗନ୍ନାଥଙ୍କ ସହିତ ଗୌର ନିତାଇ ବିଗ୍ରହଙ୍କୁ ଦର୍ଶନ କରାଯାଇଥାଏ । ଏହି ବନରେ ଶ୍ରୀ ଅହଲ୍ୟା ମନ୍ଦିର, ଶ୍ରୀ ଅଗସ୍ତ୍ୟ ଋଷି ମନ୍ଦିର, ଶ୍ରୀ ଅନିରୁଦ୍ଧ ମନ୍ଦିର, ଶ୍ରୀ ବ୍ରଜଦେବୀ ମନ୍ଦିର, ଶ୍ରୀ ଯୋଗମାୟା ମନ୍ଦିର, ଶୀ ଗୋପୀଶ୍ୱର

ମନ୍ଦିର, ଶ୍ରୀ କାମେଶ୍ୱର ମନ୍ଦିର, ଶ୍ରୀ ଧର୍ମରାଜ ମନ୍ଦିର, ଶ୍ରୀ ଶାଳଗ୍ରାମ ମନ୍ଦିର, ଶ୍ରୀ ବିମଳାଦେବୀ ମନ୍ଦିର ଆଦି ପ୍ରସିଦ୍ଧ ଚୌରାଶୀ ମନ୍ଦିର ବିଦ୍ୟମାନ ।

ବ୍ରଜମଣ୍ଡଳର ପ୍ରସିଦ୍ଧ ତୀର୍ଥ ଶ୍ରୀ ବିମଳାକୁଣ୍ଡ ଏହି ବନ ମଧ୍ୟରେ ବିରାଜମାନ କରିଛନ୍ତି । ଯଶୋଦା କୁଣ୍ଡ, ଗୟାକୁଣ୍ଡ, ମନସ୍କାମନା କୁଣ୍ଡ, ସେତୁବନ୍ଧ କୁଣ୍ଡ, ପ୍ରୟାଗ କୁଣ୍ଡ, ପଞ୍ଚପାଣ୍ଡବ କୁଣ୍ଡ, ବିହ୍ୱଳ କୁଣ୍ଡ, ଗୋପୀକୁଣ୍ଡ ଇତ୍ୟାଦି ପବିତ୍ର ତୀର୍ଥମାନେ ନିଜ ନିଜ ଲୀଳା ପ୍ରକଟ କରାଇ ଆଜି ସଗୌରବେ ଏହି କାମ୍ୟ ବନରେ ମହିମା ମଣ୍ଡିତ ହୋଇଛନ୍ତି । ଅତି ପ୍ରସିଦ୍ଧ ମହାଭାରତର ଯକ୍ଷ ଯୁଧିଷ୍ଠିର ସମ୍ବାଦ ବା ପ୍ରଶ୍ନୋତ୍ତର ସ୍ଥଳୀ ମଧ୍ୟ ଏହି ବନର ଗାରିମା ବୃଦ୍ଧି କରିଛନ୍ତି ।

ଗୋପୀ ଗୋପାଳମାନଙ୍କ ସହିତ ଅନେକ ଲୀଳା ଲୁକ୍‌ଲୁକୀ କୁଣ୍ଡ, ଚରଣ ପାହାଡ଼ି, ସୁରଭୀ କୁଣ୍ଡ, ବ୍ୟୋମାସୁର ଗୁମ୍ଫା, ଭୋଜନଥାଳୀ, ଖିସଲାନି ଶିଳା ବା ପିଛିଲିନୀ ଶୀଳା, ଶ୍ରୀରାଧା କୃଷ୍ଣଙ୍କ ପ୍ରକଟ ଲୀଳାମାନଙ୍କର ଆଜି ମଧ୍ୟ ସାକ୍ଷୀ ଦିଅନ୍ତି । କୁଞ୍ଜଲୀଳା, ନିକୁଞ୍ଜଲୀଳା, ନିଭୃତ ନିକୁଞ୍ଜଲୀଳା ଆଦି ଅତ୍ୟନ୍ତ ଗୋପନୀୟ ଲୀଳାମାନ ସ୍ୱୟଂ ଯୋଗମାୟା ଏହି ରହସ୍ୟମୟ କାମ୍ୟ ବନରେ ଅନୁଷ୍ଠାନ କରନ୍ତି । ଏଠାରେ ଅଷ୍ଟକାଳୀୟ ବିଧି ବିଧାନରେ ଶ୍ରୀରାଧା ଗୋବିନ୍ଦଙ୍କର ସେବା କରାଯାଏ । କାମ୍ୟବନରେ ତପସ୍ୟା କରି କେବଳ ଶିବଙ୍କୁ କିମ୍ବା କୃଷ୍ଣଙ୍କୁ ପ୍ରସନ୍ନ କରିପାରିଲେ କ'ଣ ମନୋକାମନା ପୂରଣ କରିହୁଏ କି ?

**ଆସୀତ୍ ସତ୍ରାଜିତଃ ସୂର୍ଯ୍ୟୋ ଭକ୍ତସ୍ୟ ପରମ ସଖା ।**
**ପ୍ରୀତଃ ତସ୍ମୈ ମଣିଂ ପ୍ରାଦାତ୍ ସୂର୍ଯ୍ୟଃ ତୁଷ୍ଟଃ ସ୍ୟମନ୍ତକମ୍ ॥୨॥**

ଉ. ନା, ନା ସେକଥା ବିଲକୁଲ ଠିକ୍ ନୁହେଁ । ଏହି କାମ୍ୟବନର ସାଁତୋୟା ନାମକ ସ୍ଥାନରେ ସତ୍ୟଭାମାଙ୍କ ପିତା ସତ୍ରାଜିତ କଠୋର ତପସ୍ୟା କରିଥିଲେ । ସୂର୍ଯ୍ୟ ନାରାୟଣଙ୍କୁ ପ୍ରସନ୍ନ କରିଥିଲେ । ଶ୍ରୀ ସୂର୍ଯ୍ୟଦେବ ତାଙ୍କ ଭକ୍ତିରେ ଗଦ୍‌ଗଦ୍ ହୋଇ ତାଙ୍କୁ ସଖା ମାନି ନେଲେ(ପରମ ସଖା) । ଖୁସିରେ ସତ୍ରାଜିତଙ୍କୁ ମହାର୍ଘ ସ୍ୟମନ୍ତକ ମଣି ପ୍ରଦାନ କରିଥିଲେ(ପ୍ରାଦାତ୍) । ସେଭଳି ମଣିକୁ ରାଜକୋଷରେ ଜମା ଦେବାକୁ ଦ୍ୱାରକାଧୀଶ ଶ୍ରୀକୃଷ୍ଣ ପରାମର୍ଶ ଦେଇଥିଲେ । ଫଳରେ ଶ୍ରୀକୃଷ୍ଣଙ୍କର ଅପ୍ରସନ୍ନତା ପାଇଁ ସେହି ମଣି ତାଙ୍କ ମୃତ୍ୟୁର କାରଣ ହେଲା ।

ଏହି କାମ୍ୟବନରେ ସଂକେତ ବଟ, ପ୍ରେମ ସରୋବର ବିହ୍ୱଳ କୁଣ୍ଡ, ଶ୍ରୀ ସାନ୍ତୋୟା (ସତ୍ୟଭାମାଜୀଙ୍କ ପିତା ସତ୍ରାଜିତଙ୍କ ସୂର୍ଯ୍ୟପୂଜା ଓ ତପସ୍ୟାସ୍ଥଳ), ପାବନ

ସରୋବର, ଟେର କଦମ୍ବ, ଆଶେଶ୍ୱର ମହାଦେବ କୁଣ୍ଡ, ଶ୍ରୀ ସନାତନ ଗୋସ୍ୱାମୀ ଓ ଶ୍ରୀ ରୂପଗୋସ୍ୱାମୀ ପାଦ ଉଭୟଙ୍କର ଭଜନ କୁଟୀର ସ୍ଥଳୀ ଇତ୍ୟାଦି ଏଠାରେ ଦର୍ଶନୀୟ । ଏହି ବନର ଅନ୍ୟତମ ଆକର୍ଷଣ ହେଲା ଶ୍ରୀ ଉଦ୍ଧବ କିଆରି ଯେଉଁଠାରେ ଶ୍ରୀ ଉଦ୍ଧବଜୀ ଗୋପୀମାନଙ୍କୁ ଜ୍ଞାନ ଉପଦେଶ ଦେବା ପାଇଁ ଆସି ଦୀର୍ଘ ଦଶମାସ କାଳ ରହିଗଲେ । ଗଲାବେଳେ ଗୋପୀପ୍ରେମର ସ୍ୱାଦରେ ଜୁଡୁବୁଡୁ ହୋଇ ମଥୁରା ଫେରିଯାଇ ଶ୍ରୀ ରସିକ ରାଜ ଗୋପୀଜନବଲ୍ଲଭଙ୍କ ଆଗରେ ଗୋପୀପ୍ରେମର ମାହାତ୍ମ୍ୟ ବଖାଣିଥିଲେ । ଏହି ବନର ଯାବଟଠାରେ ଶ୍ରୀରାଧାରାଣୀଙ୍କ ଶାଶୁଘର ମନ୍ଦିର ଦର୍ଶନ କରି ଭକ୍ତ ପହଞ୍ଚେ କୋକିଳାବନରେ । ଏହି ବନରେ ଏବେ ପ୍ରସିଦ୍ଧି ଲାଭ କରିଛନ୍ତି, ଶ୍ରୀ ଶନିଦେବଙ୍କ ମନ୍ଦିର ସହିତ ସଂଲଗ୍ନ କୋକିଳବନ ବିହାରଜୀଙ୍କ ଭବ୍ୟ ମନ୍ଦିର । ଏବେ ବର୍ଷକୁ ବର୍ଷ ଶ୍ରୀ ଶିବଜୀ ମନ୍ଦିର, ଦୁର୍ଗାମନ୍ଦିର, ଗଣେଶଜୀଙ୍କ ମନ୍ଦିର ଆଦି ନିର୍ମିତ ହୋଇ ଏହି ବନର ଶୋଭାବର୍ଦ୍ଧନ କରିବାରେ ଲାଗିଛନ୍ତି । ଏହିବନ ବର୍ଷାଣାଠାରୁ ୧୩କି.ମି. ଦୂର ।

ଏହି ବନର ସୀମା କୋଶୀ ବା କୁଶସ୍ଥଳୀ ଯାହାକୁ ନନ୍ଦରାଜାଙ୍କର ରାଜ କୋଷ କୁହାଯାଏ । ଛତ୍ରବନ(ଛାତା), ଶ୍ରୀ ରଣବାଡ଼ୀ(କୃଷ୍ଣଦାସ ବାବାଜୀଙ୍କ ଆଶ୍ରମସ୍ଥଳ) ଉଦାବଳି(ନନ୍ଦ ରାଜାଙ୍କ ଭଣ୍ଡାର ଘର) ଓ ଶ୍ରୀମତୀ ଚନ୍ଦ୍ରାବଳୀଙ୍କ ବାସସ୍ଥାନ(କରେଲା) ପର୍ଯ୍ୟନ୍ତ ବିସ୍ତୃତ ହୋଇଛନ୍ତି ।

**୧୧. ଶ୍ରୀ ମଧୁବନ**

ପ୍ରଶ୍ନ-୧୧. ଆଧୁନିକ ମଥୁରା ଜିଲାର ମଥୁରା ସହର ଓ ଏହାର ପାଖାପାଖି ଅଞ୍ଚଳ ହିଁ ମଧୁବନ ଅଟେ । ଆଜିର ମଥୁରା ତ୍ରେତାଯୁଗରେ ମଧୁରା, ମଧୁପୁରୀ ନାମରେ ବିଖ୍ୟାତ ଥିଲା । ମଧୁ ନାମରେ ଏକ ଦୈତ୍ୟ ଏହି ପୁରୀ ନିର୍ମାଣ କରିଥିଲା । ତ୍ରେତାଯୁଗରେ ତାର ପୁତ୍ର ଲବଣାସୁରର ଅବୈଦିକ ଶାସନରେ ଅତିଷ୍ଠ ହୋଇ ଅଯୋଧ୍ୟା ରାଜା ଶ୍ରୀରାମ ଭାଇ ଶତ୍ରୁଘ୍ନଙ୍କୁ ପଠାଇ ତାକୁ ବଧ କଲେ । ଶ୍ରୀରାମଙ୍କ ଇଛାରେ ଶତ୍ରୁଘ୍ନ ମଥୁରାକୁ ନିଜ ରାଜ୍ୟର ରାଜଧାନୀ କରିଥିଲେ ।

ମଥୁରା ରାଜ୍ୟକୁ କାହିଁକି ବୈକୁଣ୍ଠଠାରୁ ମଧ୍ୟ ଶ୍ରେଷ୍ଠତର ବୋଲି କୁହାଯାଏ ?

**ଅହୋ ମଧୁପୁରୀ ଧନ୍ୟା ବୈକୁଣ୍ଠାତ୍ ଚ ଗରୀୟସୀ ।**
**ଦିନଂ ଏକଂ ନିବାସେନ ହରୌ ଭକ୍ତି ପ୍ରଜାୟତେ ।ପଦ୍ମପୁରାଣ ।**

ଉ. ଐଶ୍ୱର୍ଯ୍ୟର ଠାକୁର ଶ୍ରୀମନ୍ ଲକ୍ଷ୍ମୀନାରାୟଣଙ୍କ ପୁରକୁ ବୈକୁଣ୍ଠ କୁହାଯାଏ । ମାଧୁର୍ଯ୍ୟ ପ୍ରେମର ଠାକୁର ଶ୍ରୀକୃଷ୍ଣଙ୍କ ଲୋକ କିନ୍ତୁ ଗୋଲୋକ ନାମରେ ଖ୍ୟାତ । ବୈକୁଣ୍ଠ କିମ୍ବା ଗୋଲୋକ କେଉଁଠାରେ ହେଲେ ଠାକୁରଙ୍କର ଜନ୍ମଲୀଳା, ବାଳଲୀଳା ଇତ୍ୟାଦି ଅନୁଷ୍ଠିତ ହୁଏ ନାହିଁ । ସେମାନଙ୍କୁ ସେଇ ସେଇ ସେବାର ମଧୁରତା ଆସ୍ୱାଦନ କରିବା ଲାଗି ପବିତ୍ର ଭାରତଭୂମିର ଏହି ମଥୁରା ମଣ୍ଡଳକୁ ଆସିବାକୁ ପଡ଼ିଥାଏ । ଅନ୍ୟ କାରଣଟି ହେଲା ମଥୁରା ମଣ୍ଡଳର ଲୀଳାଧାମରେ ବାସ କଲେ ଭକ୍ତ ଭଗବାନଙ୍କ ନାମ ଗୁଣ ଆଦି କୀର୍ତ୍ତନ କରି ଦୁର୍ଲ୍ଲଭ ଶ୍ରୀକୃଷ୍ଣ ଭକ୍ତି ସାଧକ ହୃଦୟରେ ସହଜରେ ଉତ୍ପନ୍ନ ହୋଇପାରେ ଯାହା ଅନ୍ୟତ୍ର ହୋଇପାରେ ନାହିଁ । ସୁତରାଂ ମଥୁରା ଧାମର ମାହାତ୍ମ୍ୟ ଏଭଳି ବର୍ଣ୍ଣିତ ହୋଇଥାଏ । ଅଯୋଧ୍ୟା, ମଥୁରା, ମାୟା, କାଶୀ, କାଞ୍ଚି, ଅବନ୍ତିକା, ଦ୍ୱାରାବତୀ ଇତ୍ୟାଦି ସପ୍ତପୁରୀଙ୍କୁ ମୋକ୍ଷ ଦାୟିନୀ ବୋଲି କୁହାଯାଏ । ତେବେ ମଥୁରାପୁରୀର ଅନ୍ୟ କିଛି ବିଶେଷ ମାହାତ୍ମ୍ୟ ଅଛି କି ?

**ଅନ୍ୟେଷୁ ପୁଣ୍ୟ କ୍ଷେତ୍ରେଷୁ ମୁକ୍ତିଃ ଏବ ମହାଫଳମ୍ ।**
**ମୁକ୍ତୈଃ ପ୍ରାର୍ଥ୍ୟା ହରେଃ ଭକ୍ତିଃ ମଥୁରାୟାନ୍ତୁ ଲଭ୍ୟତେ । ପଦ୍ମପୁରାଣ ।**

ଉ. ନିଶ୍ଚୟ ଅଛି । ଅନ୍ୟ ଛଅ ପୁରୀ କେବଳ ମୋକ୍ଷ ବା ମୁକ୍ତି ଦେଇପାରିବେ । ସେମାନେ ମୁକ୍ତ ପୁରୁଷମାନଙ୍କୁ କିନ୍ତୁ ନିରାଶ କରିବେ କୃଷ୍ଣଭକ୍ତି ପ୍ରଦାନ କରିବାରେ ଅସମର୍ଥ ହୋଇ ଅଥଚ ମଥୁରା ଧାମଙ୍କ ସେବାରେ ସାଧକକୁ ଶ୍ରୀକୃଷ୍ଣ ପ୍ରେମ ସହିତ ମୁକ୍ତିରୁ ମୁକ୍ତି ବା ଜୀବନ୍ମୁକ୍ତି ପର୍ଯ୍ୟନ୍ତ ମିଳିଥାଏ ।

ମଥୁରା ଧାମର ଦୁଇ ପ୍ରସିଦ୍ଧ ମନ୍ଦିର ହେଲେ ଯମୁନାକୂଳର ବିଶ୍ରାମଘାଟ ନିକଟସ୍ଥ ଆଦି କେଶବ ମନ୍ଦିର ଓ ଶ୍ରୀକୃଷ୍ଣ ଜନ୍ମଭୂମି ମନ୍ଦିର । ଶ୍ରୀକୃଷ୍ଣଙ୍କର ଆବିର୍ଭାବ ସ୍ଥାନ କଂସ ରାଜାଙ୍କର ବନ୍ଦୀଘର ଥିଲା । ଏହି ସ୍ଥାନରେ ସେ ଶ୍ରୀ ନାରାୟଣ ରୂପରେ ଜନ୍ମ ହୋଇ ବସୁଦେବଙ୍କ ଦ୍ୱାରା ଶ୍ରୀଯମୁନା ନଦୀ ପାର ହୋଇ ଭାଦ୍ରବ ମାସର ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ତିଥିର ମଧ ରାତ୍ରୀରେ ଗୋକୁଳ ଗମନ କରିଥିଲେ । ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଉତ୍କଳରୁ ଆସି ମଥୁରାରେ ପହଞ୍ଚି ଶ୍ରୀକେଶବଦେବ ମନ୍ଦିରରେ ଭାବବିହ୍ୱଳ ହୋଇ ନାଚି ଉଠିଥିଲେ ।

ମଥୁରା ଧାମ ଚାରି ଦିଗରେ ଚାରି ଶିବ ମନ୍ଦିର କ୍ଷେତ୍ରପାଳ ରୂପରେ ବିରାଜିତ । ଧାମର ଉତ୍ତରରେ ଶ୍ରୀ ଗୋକର୍ଣ୍ଣେଶ୍ୱର, ପୂର୍ବରେ ଶ୍ରୀ ପିପଳେଶ୍ୱର, ଦକ୍ଷିଣରେ ଶ୍ରୀ ରଙ୍ଗେଶ୍ୱର ଓ ପଶ୍ଚିମରେ ଶ୍ରୀ ଭୂତେଶ୍ୱର ଶିବ ଅଛନ୍ତି । ବ୍ରଜମଣ୍ଡଳ ୮୪କୋଶ

ପରିକ୍ରମା କରିବା ବେଳେ ଶ୍ରୀ ଭୂତେଶ୍ୱର ମନ୍ଦିରରୁ ପଦଯାତ୍ରା ଆରମ୍ଭ ହୁଏ ଏବଂ ମାସ ଶେଷରେ ଏହିଠାରେ ହିଁ ସମାପ୍ତ ହୁଏ । କେଶବ ଦେବଙ୍କ ନିକଟରେ ଶ୍ରୀଯମୁନା ନଦୀଙ୍କର ବିଶ୍ରାମଘାଟ ଅବସ୍ଥିତ । ଏହାଙ୍କର ଉତ୍ତର ଦିଗରେ ଦ୍ୱାଦଶ ଘାଟ ଓ ଦକ୍ଷିଣ ଦିଗରେ ତାଙ୍କର କୃଷ୍ଣଲୀଳା ସମ୍ବନ୍ଧିତ ଅନ୍ୟ ଦ୍ୱାଦଶ ଘାଟ ବିରାଜମାନ କରିଛନ୍ତି ।

ମୁଖ୍ୟତଃ ଏହି ମଥୁରା ଧାମ ଯୁଗେ ଯୁଗେ ଅନେକ ଦେବୀ, ଦେବତା, ମାନବ, ଦାନବଙ୍କୁ ତପସ୍ୟା କରିବାକୁ ସ୍ଥାନ ଯୋଗାଇ ଦେଇଛନ୍ତି । ସତ୍ୟଯୁଗରେ ଶ୍ରୀ ନାରଦଜୀ ଧ୍ରୁବଙ୍କୁ ତପସ୍ୟା କରିବାକୁ ଏହି ମଥୁରାକୁ ବା ମଧୁବନକୁ ପଠାଇଥିଲେ । ଏ ସ୍ଥାନର ନାମ ଏବେ ମଥୁରା ନିକଟରେ ଧ୍ରୁବଟିଲା(ଏକ ବିଶାଳ ମାଟିକୁଦ) ନାମରେ ପ୍ରସିଦ୍ଧି ଲାଭ କରିଛି । ଅସୁର ରାଜା ବଳିଙ୍କ ତପସ୍ଥଳୀ ସୂର୍ଯ୍ୟ, ତୀର୍ଥ, ପୁଣି ସୂର୍ଯ୍ୟ ଦେବତାଙ୍କ ତପସ୍ଥଳୀ ବଟସ୍ୱାମୀ ତୀର୍ଥ, ଅସୁରରାଜ ରାବଣର ତପସ୍ଥଳୀ ରାବଣକୁଟୀ, ବ୍ରହ୍ମାଜୀଙ୍କ ତପସ୍ୟାସ୍ଥଳୀ ବ୍ରହ୍ମ ତୀର୍ଥ, ଚନ୍ଦ୍ରଦେବଙ୍କ ତପସ୍ୟାସ୍ଥଳୀ ସୋମତୀର୍ଥ, ରାଜା ଅମ୍ବରୀଷଙ୍କ ତପସ୍ଥଳୀ ଅମ୍ବରୀଷ ଟିଲା, ଗଣେଶଙ୍କ ତପସ୍ଥଳୀ ବିଘ୍ନରାଜ ତୀର୍ଥ, ଗୋକର୍ଣ୍ଣଙ୍କ ତପସ୍ଥଳୀ ଗୋକର୍ଣ୍ଣ ତୀର୍ଥ ଇତ୍ୟାଦି ଅଗଣିତ ତୀର୍ଥ ଏହି ଧାମ ସହିତ ନିଜକୁ ସଂଯୁକ୍ତ କରି ଶ୍ରୀକୃଷ୍ଣ ଭକ୍ତିର ମହିମା ଗାନ କରୁଛନ୍ତି ।

କଂସ ରାଜାଙ୍କ ରାଜଧାନୀ ଥିବା ହେତୁ ଏଠାରେ ଶ୍ରୀକୃଷ୍ଣ ବଳରାମଙ୍କ ସହିତ ଚାଣୁର, ମୁଷ୍ଟିକଙ୍କ ମଲ୍ଲଯୁଦ୍ଧ ହୋଇଥିଲା । ଏବେ ଏଠାରେ ଦୀର୍ଘବିଷ୍ଣୁ ମନ୍ଦିର ବିରାଜିତ ଅଛନ୍ତି । ମଧୁବନରେ ସୁଦାମା ମାଳୀଙ୍କ ସହିତ ଶ୍ରୀକୃଷ୍ଣଙ୍କ ଲୀଳା ସୁଦାମା ଗୃହକୁ ଦେଖି ମନେ ପଡ଼େ । ସେହିଭଳି ରଜକବଧ, ଧନୁଭଙ୍ଗ ସ୍ଥଳୀ, କୁବଳୟାପୀଡ଼ ବଧ ସ୍ଥାନ, କୁବ୍‌ଜା କୂପ, ଅକ୍ରୁରମନ୍ଦିର, ନାଗଟିଲା(ରାଜା ଜନ୍ମେଜୟଙ୍କ ସର୍ପ ଯଜ୍ଞସ୍ଥଳୀ, ଶ୍ରୀ ଶତ୍ରୁଘ୍ନ ମନ୍ଦିର, ଯୋଗମାୟା ମନ୍ଦିର(ଶ୍ରୀ ଭୂତେଶ୍ୱର ମନ୍ଦିର ବେଢ଼ା ମଧ୍ୟରେ), ପୋତରା କୁଣ୍ଡ, ଜ୍ଞାନ ବାପୀ, ଦୁର୍ବାସାମୁନିଙ୍କ ଆଶ୍ରମସ୍ଥଳୀ ଦର୍ଶନ କଲେ ଠାକୁରଜୀଙ୍କ ମଥୁରା ଲୀଳା ସ୍ମରଣ ହୁଏ । ଏହି ସବୁ ସ୍ମରଣୀୟ ସ୍ଥଳୀ ଦର୍ଶନ ଲାଗି ଦଶଦିନ ପନ୍ଦରଦିନ ବ୍ୟାପୀ ମଥୁରା ପରିକ୍ରମା କରିବାକୁ ପଡ଼ିଥାଏ । ବର୍ଷସାରା ପ୍ରାୟ ପ୍ରତ୍ୟେକ ମାସରେ କୌଣସି ନା କୌଣସି ପର୍ବପର୍ବାଣୀ, ଉତ୍ସବମାନ ଏହି ଧାମରେ ବହୁ ଆଡ଼ମ୍ବରରେ ପାଳିତ ହୋଇଥାଏ । ଶ୍ରୀ ମଥୁରା ଓ ଶ୍ରୀ ବୃନ୍ଦାବନ ମଧ୍ୟରେ ରେଳଗାଡ଼ିସେବା, ଟ୍ୟାକ୍‌ସି ସେବା, ବସସେବା ଆଦି ଉପଲବ୍ଧ । ଦୁଇ ସହର ମଧ୍ୟରେ ଦୂରତା ୧୩କି.ମି. ।

## ୧୨. ଶ୍ରୀ ବୃନ୍ଦାବନ

ପ୍ରଶ୍ନ-୧୨. ଚୋରାଶୀ କୋଶ ବ୍ରଜମଣ୍ଡଳ କହିଲେ ହରିଆନା, ରାଜସ୍ଥାନ, ଉତ୍ତର ପ୍ରଦେଶସ୍ଥିତ ୧୩୦୦ଗ୍ରାମ ସହିତ ବନ(ଦ୍ୱାଦଶ ବନ ଓ ଦ୍ୱାଦଶ ଉପବନ)କୁ ବୁଝାଏ । ତେବେ କାହିଁକି ଶ୍ରୀବୃନ୍ଦାବନଙ୍କୁ ଶ୍ରେଷ୍ଠ ବନ ବୋଲି କୁହାଯାଏ ?

**କେଶୀ ଘାଟସେଁ ଘାଟ ନହିଁ ବୃନ୍ଦାବନସେଁ ବନ ।**
**ନନ୍ଦ ଗାଉଁ ସେଁ ଗାଉଁ ନହିଁ କୃଷ୍ଣନାମସେଁ ନାମ ॥**

ଉ. ପବିତ୍ର ଭାରତବର୍ଷର ଚାରି ଧାମ, ସପ୍ତପୁରୀ, ଅଷ୍ଟ ବିନାୟକ, ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ, ଏକାବନ ବା ଚୌଷଠୀ ଶକ୍ତିପୀଠ ଆଦି ଦର୍ଶନ କରିସାରି ଶ୍ରୀଜଗନ୍ନାଥ ଦର୍ଶନ ପରେ ମନୁଷ୍ୟ ଜୀବନର ତୀର୍ଥଭ୍ରମଣର ପୂର୍ଣ୍ଣାହୂତି ହୁଏ । ଠିକ୍ ସେହି ନ୍ୟାୟରେ ବ୍ରଜଧାମରେ ଚବିଶ ବନ ଦର୍ଶନ ଇଛାର ଅନ୍ତିମ ବନ ଶ୍ରୀବୃନ୍ଦାବନ । କାରଣ ଏଠାରେ ଶ୍ରୀକୃଷ୍ଣଲୀଳା ସର୍ବୋଚ୍ଚ ମାଧୁର୍ଯ୍ୟପୂର୍ଣ୍ଣ ପ୍ରେମଦାନ ଲୀଳା(ମହାରାସ ଲୀଳା) ଅନୁଷ୍ଠିତ ହୋଇଥିଲା । ବାକି ସବୁ କେବଳ ଆନୁଷଙ୍ଗିକ ଲୀଳା ଯଥା ୧୪ବର୍ଷର ମଥୁରା ଲୀଳା ଓ ଦୀର୍ଘ ୧୦୦ବର୍ଷର ଦ୍ୱାରକାଲୀଳା । ସେ ସବୁ କେବଳ କର୍ମକାଣ୍ଡୀ ଓ ଜ୍ଞାନକାଣ୍ଡୀ ସାଧକମାନଙ୍କ ମନ ବୁଦ୍ଧିକୁ ଆକର୍ଷଣ କରି କୃଷ୍ଣପ୍ରେମର ସ୍ୱାଦ ଚଖାଇବାର ପ୍ରୟାସ ମାତ୍ର । ଅନେକ ଶ୍ରୀ ବୃନ୍ଦାବନ ବାସୀ ଓ ଶ୍ରୀବୃନ୍ଦାବନ ଯାତ୍ରୀମାନେ ଖାଲି ପାଦରେ ପ୍ରାୟ ପ୍ରତ୍ୟେକ ଏକାଦଶୀରେ ଉପବାସ କରି ବୃନ୍ଦାବନ ପରିକ୍ରମା କରୁଥିବା ଦେଖାଯାଏ ।

ଶ୍ରୀ ବୃନ୍ଦାବନରେ ପ୍ରକଟ ଲୀଳା ଓ ଅପ୍ରକଟ ଶ୍ରୀକୃଷ୍ଣ ଲୀଳା ଉଭୟ ସମୟରେ ଶ୍ରୀବୃନ୍ଦାବତୀ(ଶ୍ରୀରାଧା ବା ଯୋଗମାୟା) ବିଦ୍ୟମାନ ରହନ୍ତି । ତେଣୁ ବନର ନାମ ଶ୍ରୀବୃନ୍ଦାବନ ନାମ ରଖାଯାଇଛି । ସେଇ ବୃନ୍ଦାବତୀ ଦେବୀ ଏଠାରେ ବନଦେବୀ ବନର ପାଳନକର୍ତ୍ତୀ, ରକ୍ଷୟିତ୍ରୀ ପଦରେ ଅଧିଷ୍ଠିତା । ତାଙ୍କ ଦେଖରେଖରେ ଆଜି ଅଗଣିତ ଶ୍ରୀକୃଷ୍ଣ ଭକ୍ତ ନର, ବାନର ପଶୁ, ପକ୍ଷୀ, ବୃକ୍ଷ, ଲତା, ତରୁ, ତୃଣ, ଗୁଳ୍ମ, ଭୂମି, ଜଳ, ବାୟୁ, ଅଗ୍ନି ଓ ଆକାଶ ରୂପରେ ଜଡ଼ଚେତନ ଶରୀର ଧରି ଅନବଦ୍ୟ କୃଷ୍ଣପ୍ରେମ ଲୁଟିବାରେ ବ୍ୟସ୍ତ । ଆଜି ମଧ୍ୟ ନିଧୁବନ, ସେବାକୁଞ୍ଜରେ ଶ୍ରୀବୃନ୍ଦାବନେଶ୍ୱରୀ ଶ୍ରୀମତୀ ରାଧାରାଣୀ ସେଇ ପ୍ରେମଦାନ ଲୀଳା କରୁଛନ୍ତି ବୋଲି ଦୁଇ ବନସ୍ଥଳୀକୁ ପାଚେରୀ ଘେରାଇ ଦିଆଯାଇଛି । ରାତ୍ରୀ ନଅରୁ ପ୍ରାତଃ ଚାରିପର୍ଯ୍ୟନ୍ତ ଏହି ସେବାକୁଞ୍ଜ ଓ ନିଧୁବନର ଫାଟକ ଚାବି ପକାଇ କଡ଼ା ପହରା ଭିତରେ ରଖାଯାଉଛି । ଇଂରେଜ,

ବିଧର୍ମୀ ମୁସଲମାନ ଶାସନ କାଳରୁ ଉଭୟ ବନକୁ ଚାବି ପକାଇବା ବନ୍ଦୋବସ୍ତ କରାଯାଇଛି । କାରଣ ଅତୀତରେ ଯେତେଲୋକ ରାତ୍ରିକାଳରେ ଜାଣତରେ ବା ଅଜାଣତରେ ସେ ବନ ମଧ୍ୟରେ କେହି ପ୍ରବେଶ କରିଛନ୍ତି କିମ୍ବା ରହିଯାଇଛନ୍ତି ସେ ସମସ୍ତଙ୍କ ମୃତ ଶବ କେବଳ ସକାଳେ ମିଳିଛି ।

ପାଞ୍ଚଶହ ବର୍ଷ ପୂର୍ବେ କଳିଯୁଗର ପାବନ ଅବତାର ଶ୍ରୀ ଚୈତନ୍ୟ ମହାପ୍ରଭୁ ଏହି ବୃନ୍ଦାବନରେ ପହଞ୍ଚି ଅନେକ ଲୁପ୍ତ ତୀର୍ଥ ଉଦ୍ଧାର ନିଜେ କରିଥିଲେ । ଅନ୍ୟ କେତେକ ନିଜ ଅନୁଗତ ରାଗାନୁଗା ଭକ୍ତ ଶ୍ରୀରୂପ ଗୋସ୍ୱାମୀ, ଶ୍ରୀ ସନାତନ ଗୋସ୍ୱାମୀ, ଶ୍ରୀ ଗୋପାଳ ଭଟ୍ଟ ଗୋସ୍ୱାମୀ ଓ ଶ୍ରୀ ଜୀବଗୋସ୍ୱାମୀ ଇତ୍ୟାଦିଙ୍କ ଦ୍ୱାରା କରାଇଅଛନ୍ତି । ତତ୍‌କାଳୀନ ଜୟପୁର ରାଜା ମାନସିଂହଙ୍କ ଦ୍ୱାରା ନିର୍ମିତ ଶ୍ରୀଗୋବିନ୍ଦଜୀ ମନ୍ଦିର ନିର୍ମିତ ହୋଇଥିଲେ । ୧୬୭୦ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବଙ୍କ ଅମାନୁଷିକ ଆକ୍ରମଣ ଫଳରେ ଅନେକ ସୁନ୍ଦର ମନ୍ଦିର ଆଂଶିକ ବା ସଂପୂର୍ଣ୍ଣ ଧ୍ୱଂସ ପ୍ରାପ୍ତ ହୋଇଛନ୍ତି । ଅନେକ ଶ୍ରୀ ବିଗ୍ରହମାନ ଜୟପୁର, ନାଥଦ୍ୱାରା, କରୋଲି ଆଦି ଦୂର ଦୂରାନ୍ତ ସ୍ଥାନକୁ ଯିବାକୁ ବାଧ ହୋଇଛନ୍ତି । ପରେ ପରେ ସେଠାରେ ତାଙ୍କର ପ୍ରତିଭୂମାନେ ସ୍ଥାପିତ ହୋଇ ସେବା ପୂଜା ପାଉଛନ୍ତି ।

ବୃନ୍ଦାବନରେ ଏବେ ଶ୍ରୀ ଯମୁନା ନଦୀଙ୍କ ସହିତ ଅଷ୍ଟସଖୀ ମନ୍ଦିର, ଶ୍ରୀ ବାଙ୍କେବିହାରୀ ମନ୍ଦିର, ଶ୍ରୀ ରାଧାବଲ୍ଲଭଜୀ ମନ୍ଦିର, ଲାଲାବାବୁ ମନ୍ଦିର, ଶ୍ରୀରଙ୍ଗଜୀ ମନ୍ଦିର, ଶ୍ରୀ ଶାହାଜୀ ମନ୍ଦିର ଇତ୍ୟାଦି ଭକ୍ତ ଓ ଭଗବାନଙ୍କ ଦିବ୍ୟଲୀଳାର ପ୍ରାତଃସ୍ମରଣ କରାଉଛନ୍ତି । ବୃନ୍ଦାବନରେ କାଳୀୟଦମନ ଘାଟ, ଗୋବିନ୍ଦ ଘାଟ, ଚିରଘାଟ, ଇମଲିତାଲା ଘାଟ, ଶୃଙ୍ଗାର ଘାଟ, କେଶୀଘାଟ ସହିତ ଶ୍ରୀଜଗନ୍ନାଥ ଘାଟ ଇତ୍ୟାଦି ବୃନ୍ଦାବନ ଧାମର ଅପାର ମାହାତ୍ମ୍ୟ ପ୍ରକଟ କରୁଛନ୍ତି ।

ବୃନ୍ଦାବନର ପ୍ରସିଦ୍ଧି ତିନି ଶ୍ରୀବଟ ଯଥା ଶ୍ରୀବଂଶୀ ବଟ, ଶ୍ରୀ ଶୃଙ୍ଗାରଙ୍କ ଓ ଶ୍ରୀ ଅଦ୍ୱୈତ ବଟ ତ୍ରୟ କୃଷ୍ଣପ୍ରେମର ପତାକା ଧାରଣ କରି ଭକ୍ତଗଣଙ୍କୁ ପ୍ରେମାନନ୍ଦର ସଙ୍କେତ ଦେଉଛନ୍ତି । ଶ୍ରୀବନଖଣ୍ଡୀ ମହାଦେବ ଓ ଶ୍ରୀ ଗୋପେଶ୍ୱର ଶିବଙ୍କ ଆସ୍ଥାନ ବର୍ଷସାରା ଭଜନ, କୀର୍ତ୍ତନ, ଦର୍ଶନ, ସେବା ପୂଜାର ମାହାତ୍ମ୍ୟ ଘୋଷଣା କରୁଛନ୍ତି । ଅଗଣିତ ଗୋସ୍ୱାମୀ ମାନଙ୍କର ସମାଧିସ୍ଥଳ, ଅନେକ ବଜ୍ର ଭକ୍ତମାନଙ୍କ ଆଶ୍ରମ, ଗୋଶାଳା, ଧର୍ମଶାଳା ସହିତ ପ୍ରବଚନ ମଣ୍ଡପମାନଙ୍କୁ ବୃନ୍ଦାବନ ଧାମ ଅଭୟ ଆଶ୍ରୟ ପ୍ରଦାନ କରିଛନ୍ତି । ୨୦୧୨ ମସିହାରେ ପଞ୍ଚମ ମୂଳ ଜଗଦ୍‌ଗୁରୁ ଶ୍ରୀକୃପାଳଜୀ ମହାରାଜ-

ପ୍ରେମ ମନ୍ଦିର ନିର୍ମାଣ କରି ତାର ଶୁଭ ଉଦ୍‌ଘାଟନ କରିବା ଭକ୍ତିମାର୍ଗୀ ଲୋକମାନଙ୍କ ଲାଗି ରାଧା କୃଷ୍ଣପ୍ରେମ ଜଗତରେ ଏକ ଅବିସ୍ମରଣୀୟ ଓ ନିଶ୍ଚୟ ଦର୍ଶନୀୟ ଲୀଳାସ୍ଥଳୀ ।

## (ଖ) ଦ୍ୱାଦଶ ଅତିବିଖ୍ୟାତ ମନ୍ଦିର

### ୧. ଶ୍ରୀରାଧା-ଗୋବିନ୍ଦଜୀ ମନ୍ଦିର

ପ୍ରଶ୍ନ-୧୩. ଦ୍ୱାଦଶ ବନ, ଦ୍ୱାଦଶ ଉପବନ, ୮୪କ୍ରୋଶ ବ୍ୟାପୀ ବ୍ରଜଭୂମିକୁ ବ୍ରଜମଣ୍ଡଳ ବା ମତାନ୍ତରେ ମଥୁରା ମଣ୍ଡଳ କୁହାଯାଏ । ବିଂଶ ଶତାବ୍ଦୀ ଶେଷ ବେଳକୁ ଏଥିରେ ସାନ ବଡ଼ ୫,୦୦୦ମନ୍ଦିରରେ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ପରାତ୍ପର ପୂର୍ଣ୍ଣତମ ପୁରୁଷୋତ୍ତମ ଶ୍ରୀକୃଷ୍ଣ ହିଁ ପୂଜା ପାଉଛନ୍ତି । ତେବେ ଶ୍ରୀବୃନ୍ଦାବନ ଧାମର ସର୍ବଶ୍ରେଷ୍ଠ ଓ ସର୍ବପ୍ରାଚୀନ ବିଗ୍ରହଙ୍କର ମାନ୍ୟତା କାହାକୁ ଓ କାହିଁକି ମିଳିଛି ?

**ଅସୌ ଯୁଗ ଚତୁଷ୍ଟୟେଽପି ଶ୍ରୀମତ୍ ବୃନ୍ଦାବନ-ଅଧିପଃ ।**
**ପୂଜିତୋ ନନ୍ଦ ଗୋପ-ଆଦ୍ୟୈ କୃଷ୍ଣେନ-ଅପି ସୁପୂଜିତଃ ॥**

ଉ. ଆଧୁନିକ ବୃନ୍ଦାବନ ସହରର କେନ୍ଦ୍ରରେ ବସଷ୍ଟାଣ୍ଡ ନିକଟରେ ଶ୍ରୀଗୋବିନ୍ଦ ଦେବଜୀଙ୍କ ମନ୍ଦିର ଏହି ସମ୍ମାନପ୍ରାପ୍ତ । ଆଜକୁ ପ୍ରାୟ ପାଞ୍ଚ ଶହ ବର୍ଷ ତଳେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ଆଦେଶରେ ରୂପ ଗୋସ୍ୱାମୀ ପାଦ ମହାକାଳ କବଳିତ ଧ୍ୱଂସ ପ୍ରାପ୍ତ ଲୁପ୍ତପ୍ରାୟ ବ୍ରଜମଣ୍ଡଳକୁ ଆସିଥିଲେ । ଜୀର୍ଣ୍ଣୋଦ୍ଧାର ଲକ୍ଷ୍ୟରେ ସେ ବିଷାଦଗ୍ରସ୍ତ ହୋଇ ଯମୁନାନଦୀ କୂଳରେ ବସିଥିଲେ । ଏହି ସମୟରେ ଜଣେ ଗୋପାଳବାଳକ ତାଙ୍କୁ 'ଗୋମାଟିଲା' ନାମକ ଏକ ଧ୍ୱଂସ ମାଟି ସ୍ତୂପ ପାଖକୁ ଡ଼ାକି ନେଲେ । ମଧୁର କଣ୍ଠରେ କହିଲେ, ''ବାବା, ଦେଖନ୍ତୁ ଏହି ସ୍ଥାନରେ ପ୍ରତ୍ୟେକ ଦିନ ଗୋଟିଏ ଗାଈ ଆସି ଠିଆ ହୁଏ । ସ୍ୱତଃ ତାର ଥନରୁ ଦୁଧ ଝରି ମାଟିକୁ ଦୁଗ୍ଧ ଅଭିଷେକ କରେ । ସେ କାହିଁକି ଏପରି କରେ ଆପଣ ବିଚାର କରି ସାବଧାନ ସହକାରେ ଏହାର ରହସ୍ୟ ଉଦ୍‌ଘାଟନ କରନ୍ତୁ ।''

ଗୋପାଳବାଳକ ଅନ୍ତର୍ଦ୍ଧାନ ହୋଇଗଲା ପରେ ଗୋସ୍ୱାମୀପାଦ ଗଭୀର ଚିନ୍ତାମଗ୍ନ ହେଲେ । କୃଷ୍ଣାବତାର କାଳରେ ସେ ଶ୍ରୀରାଧାରାଣୀଙ୍କର ରୂପ ମଞ୍ଜରୀ ଦାସୀ ଥିଲେ । ଗୌରାଙ୍ଗ ଅବତାରରେ ରୂପ ଗୋସ୍ୱାମୀ ରୂପ ଧାରଣ କରିଥିବାରୁ ରହସ୍ୟଭେଦ କରିବାକୁ ତାକୁ ବେଶୀ ସମୟ ଲାଗିଲା ନାହିଁ । ପାଖ ଗାଁରୁ ଲୋକମାନଙ୍କୁ ଡ଼କାଇ କୋଡ଼ି କୋଦାଳ ଧରି ସେ ସ୍ଥାନ ଖୋଳି ଦ୍ୱାପର ଯୁଗର ଶ୍ରୀଗୋବିନ୍ଦ ଦେବଙ୍କ

ସୁନ୍ଦର ବିଗ୍ରହ ପ୍ରାପ୍ତ ହେଲେ । ଏହା ଶ୍ରୀକୃଷ୍ଣଙ୍କର ଅଣନାତି ବଜ୍ରନାଭଙ୍କ ବୃନ୍ଦାବନ ଧାମର ସେବିତ ବିଗ୍ରହ ବୋଲି ରହସ୍ୟ ପ୍ରକଟ କଲେ ।

ବିଗ୍ରହଙ୍କୁ ସ୍ନାନ, ମାର୍ଜନ, ଗଙ୍ଗାଜଳ, ଦୁଗ୍ଧ ଆଦି ପଞ୍ଚାମୃତ ଅଭିଷେକ କରାଯିବା ପରେ ଏକ କୁଟୀରରେ ଦିବ୍ୟ ସିଂହାସନ ଉପରେ ସ୍ଥାପନ କରାଗଲା । ରୀତିମତ ଉପାସନା, ଭଜନ କୀର୍ତ୍ତନରେ ଗଗନ ପବନ ମୁଖରିତ ହେଲା । ଏ ସଂବାଦ ଶ୍ରୀମନ ମହାପ୍ରଭୁ ଶ୍ରୀକ୍ଷେତ୍ରରେ ରାଧାକାନ୍ତ ମଠସ୍ଥିତ ଗମ୍ଭୀରାରେ ଥାଇ ଶ୍ରବଣ କଲେ । ପରମ ଆହ୍ଲାଦରେ ସ୍ୱପାର୍ଷଦମାନଙ୍କ ସହିତ ସେ ନୃତ୍ୟ କରିବାରେ ଲାଗିଲେ ।

ସେତେବେଳକୁ ମହାରାଜା ମାନସିଂହ ରାଜସ୍ଥାନ ଜୟପୁରର ରାଜା ପଦରେ ଥାଆନ୍ତି । ସେ ଏ ଖବର ପାଇ ଠାକୁରଙ୍କ ଲାଗି ସାତମହଲା ବିଶିଷ୍ଟ ଏକ ଭବ୍ୟ ସୁନ୍ଦର ଅତୁଳନୀୟ ନାନା ଭାସ୍କର୍ଯ୍ୟ ମଣ୍ଡିତ ମନ୍ଦିର ନିର୍ମାଣ କରିଦେଲେ । ବିଧିବଦ୍ଧ ଭାବରେ ବ୍ରଜମଣ୍ଡଳ ଗଗନରେ ରାଧା ମାଧବ ରୂପୀ ଧ୍ରୁବତାରାଙ୍କ ବିଜୟ ବାନା ସଗର୍ବରେ ଉଡ଼ିଲା । କେତେଦିନ ଗୋବିନ୍ଦଦେବ ଏକୁଟିଆ ରହନ୍ତେ । ସୁଦୂର ଦାକ୍ଷିଣାତ୍ୟରେ ଶ୍ରୀରାଧା ରାଣୀଙ୍କର ଏକ ଦିବ୍ୟ ବିଗ୍ରହ ବିଷୟରେ ତତ୍କାଳୀନ ପୁରୀ ଗଜପତି ପ୍ରତାପ ରୁଦ୍ରଦେବ ସ୍ୱପ୍ନାଦିଷ୍ଟ ହେଲେ । ତାଙ୍କୁ ନିଜ ରାଜ୍ୟ ଅଧୀନସ୍ଥ ଦାକ୍ଷିଣାତ୍ୟ ପ୍ରଦେଶରୁ ଅଣାଇ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରରେ କିଛିଦିନ ରଖିଥିଲେ । ପୁଣି ଦିନେ ସ୍ୱପ୍ନାଦେଶ ପାଇ ଗଦାଧର ପଣ୍ଡିତଙ୍କ ହସ୍ତରେ ତାଙ୍କୁ ପଠାଇ ଗୋବିନ୍ଦଦେବଙ୍କ ବାମ ଭାଗରେ ପ୍ରତିଷ୍ଠିତ କରାଇଥିଲେ ।

ମର୍ତ୍ତ୍ୟଲୋକରେ ଦୁଃଖ, ବିପଦରେ ସମସ୍ତେ ପଡ଼ନ୍ତି । ସ୍ୱ ସ୍ୱ ଲୀଳାରେ ଶ୍ରୀରାମ-ଶ୍ରୀକୃଷ୍ଣ-ଶ୍ରୀ ଗୌରାଙ୍ଗଙ୍କୁ ମଧ୍ୟ ନାନା ବିପଦର ସମ୍ମୁଖୀନ ହେବାକୁ ପଡ଼ିଛି । ଥରେ ସନ୍ଧ୍ୟାବେଳେ ଯବନ ରାଜା ଆଉରଙ୍ଗଜେବ ଏହି ସୁଉଚ୍ଚ ସାତ ମହଲା ମନ୍ଦିର ଉପରିସ୍ଥ ଘିଅ ଦୀପର ଆଲୋକ ଦର୍ଶନ କରି ଈର୍ଷାରେ ଜଳି ଉଠିଲେ । ପରଦିନ ସୈନ୍ୟ ସାମନ୍ତ ପଠାଇ ମନ୍ଦିର ଭାଙ୍ଗି ପକାଇଲେ । ମାତ୍ର ଜୟପୁରର ରାଜା ଏ ଖବର ଆଗରୁ ଜାଣିପାରି କୌଶଳକ୍ରମେ ତାଙ୍କ ଲୋକ ପଠାଇ ରାଧା ଗୋବିନ୍ଦ ବିଗ୍ରହ ଦ୍ୱୟଙ୍କୁ ଜୟପୁରକୁ ସ୍ଥାନାନ୍ତରିତ କରିଦେଲେ । ବର୍ତ୍ତମାନ ଏହି ମୂଳ ବିଗ୍ରହ ଦ୍ୱୟ ରାଜସ୍ଥାନର ଜୟପୁର ରାଜାଙ୍କ ରାଜପ୍ରାସାଦ ମଧ୍ୟସ୍ଥିତ ସୁନ୍ଦର ମନ୍ଦିରରେ ଅବସ୍ଥାପିତ ହୋଇ ପୂଜିତ ହେଉଛନ୍ତି ।

ବର୍ତ୍ତମାନ ବୃନ୍ଦାବନସ୍ଥିତ ଶ୍ରୀରାଧା ଗୋବିନ୍ଦଜୀଙ୍କ ସେଇ ସିଂହାସନରେ ଶ୍ରୀ ଗୌର-ନିତାଇ ବିଗ୍ରହ ପୂଜାପାଉଛନ୍ତି । ମନ୍ଦିରର ଉପର ଚାରି ମହଲା ଭାଙ୍ଗିଯିବା ବେଳକୁ ଶ୍ରୀହନୁମାନଜୀ ହସ୍ତକ୍ଷେପ କରନ୍ତେ ମନ୍ଦିର ଭଙ୍ଗାବନ୍ଦ ରହିଲା । ଦିଲ୍ଲୀ ଦରବାର କିଛି ଅତ୍ୟନ୍ତ ଅଶୁଭ ସମାଚାର ଓ ଅଶୁଭ ସଂକେତ ପାଇ ମନ୍ଦିର ଭଙ୍ଗା କାର୍ଯ୍ୟ ବନ୍ଦ କରିଦେଲେ । ବୃନ୍ଦାବନର ଅନ୍ୟାନ୍ୟ ମନ୍ଦିରମାନେ ମଧ୍ୟ ଧ୍ୱଂସ ମୁଖରୁ ବର୍ତ୍ତିଗଲେ । ଏହି ଲୀଳାକୁ ସ୍ମରଣ କରିବାକୁ ଏବେ ସେହି ମନ୍ଦିର ନିକଟରେ ଶ୍ରୀ ହନୁମାନଜୀଙ୍କ ମନ୍ଦିର ନିର୍ମିତ ହୋଇ ସେଠାରେ ହରିଭକ୍ତ ହନୁମାନଜୀଙ୍କ ବିଗ୍ରହ ପୂଜିତ ହେଉଛନ୍ତି । କାରଣ ହନୁମାନଜୀ ସେତେବେଳେ ମର୍କଟ ରୂପରେ ଦଳବଳ ଧରି ଧ୍ୱଂସକାରୀମାନଙ୍କୁ ପିଟି ପିଟି ରାମ୍ପୁଡ଼ି ବିଦାରି ତଳକୁ ଠେଲୁଥିଲେ । ସମସ୍ତଙ୍କୁ ଧରାଶାୟୀ କଲାପରେ ସେ ଯେଉଁ ସ୍ଥାନକୁ ଡ଼େଇଁ ଅଦୃଶ୍ୟ ହୋଇଗଲେ ସେଇ ସ୍ଥାନରେ ଏବେ ହନୁମାନଜୀଙ୍କର ମନ୍ଦିର ଦର୍ଶନୀୟ ।

**୨. ଶ୍ରୀରାଧା-ମଦନମୋହନଜୀ ମନ୍ଦିର**

ପ୍ରଶ୍ନ- ୧୪. ପରାଶର-ବିଶ୍ୱାମିତ୍ର, ଆଦି ମୁନିଋଷି ଇନ୍ଦ୍ର-ଚନ୍ଦ୍ର ଆଦି ଦେବ ଓ ଦାନବ ସମସ୍ତେ କାମଦେବ କନ୍ଦର୍ପଙ୍କ ଅଧୀନସ୍ଥ ଓ ତାଙ୍କ ପୀଡ଼ାରେ ସମସ୍ତେ ଅପଦସ୍ତ । ମନ୍ମଥ/କନ୍ଦର୍ପଙ୍କ ଏକନାମ ମଦନ । ମଦନଙ୍କୁ ଅପଦସ୍ତ କରିଥିବା ଗୋବିନ୍ଦଙ୍କୁ ମଦନ ମୋହନ କୁହାଯାଏ । ମଥୁରାରୁ ମହାରାଜା ବଜ୍ରନାଭ ଏହି ଦିବ୍ୟ ଲୀଳାକୁ ଜଣାଇବା ଲାଗି ଗୋବିନ୍ଦଙ୍କୁ କେଉଁ ରୂପରେ ବୃନ୍ଦାବନରେ ସ୍ଥାପନ କରିଥିଲେ ?

**ତାସାଂ ଆବିର୍ଭୁଃ ଶୌରି ସ୍ମୟମାନ ମୁଖ-ଅମ୍ବୁଜଃ ।**
**ପୀତାମ୍ବର ଧରଃ ସ୍ରକ୍‌ବୀ ସାକ୍ଷାତ୍ ମନ୍ମଥ ମନ୍ମଥଃ ॥୨॥**

ଉ. ଏହି ମନ୍ମଥ ପରାଜୟ ଲୀଳା ମହାରାସ ବେଳେ ଲୀଳାପୁରୁଷୋତ୍ତମ ଶ୍ରୀକୃଷ୍ଣ ବୃନ୍ଦାବନଧାମରେ ରମଣ ରେତିରେ ପ୍ରକଟ କରିଥିଲେ । ସେହି ସ୍ଥାନରେ ଶ୍ରୀରାଧା-ମଦନ ମୋହନ ମନ୍ଦିର ଏ ଦିବ୍ୟ ଲୀଳାର ବର୍ତ୍ତମାନର ମୂକସାକ୍ଷୀ । ଏ ବିଗ୍ରହ ଷଡ଼ଗୋସ୍ୱାମୀମାନଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀଳ ସନାତନ ଗୋସ୍ୱାମୀଙ୍କ ଦ୍ୱାରା ସେବିତ ହେଉଥିଲେ ।

ନଦିଆ ନବଦ୍ୱୀପର ଶାନ୍ତିପୁରରେ ପ୍ରକଟ ହୋଇଥିଲେ ଶ୍ରୀଳ ଅଦ୍ୱୈତ ପ୍ରଭୁ । ସେ ଗୋବର୍ଦ୍ଧନ, ବର୍ଷଣା, ନନ୍ଦଗ୍ରାମ ଗୋକୁଳ ଆଦି ସ୍ଥାନ ଦର୍ଶନ କରିସାରି ବୃନ୍ଦାବନ

ଆସିଥାନ୍ତି । ଶ୍ରୀ ଯମୁନା କୂଳରେ ଦ୍ୱାଦଶ ଆଦିତ୍ୟ ଟିଲା ନାମକ ଏକ ବିରାଟ ଧ୍ୱଂସସ୍ତୁପ ମଧ୍ୟରେ ଶ୍ରୀମଦନ ମୋହନଙ୍କ ବିଗ୍ରହ ଭୂଗର୍ଭରେ ପୋତି ହୋଇ ରହିଥିବା କଥା ସ୍ୱପ୍ନରେ ଜାଣିପାରିଲେ । ସେତେବେଳେକୁ ସେ ଆଦିତ୍ୟଟିଲା ପାଖରେ ''ଅଦ୍ୱୈତବଟ'' ନିକଟରେ ରହୁଥାଆନ୍ତି । ପରଦିନ ସେ ଲୋକ ସଂଗ୍ରହ କରି କୋଡ଼ି କୋଦାଳରେ ଭୂଖନନ କରି ଶ୍ରୀବିଗ୍ରହଙ୍କୁ ଉଦ୍ଧାରକଲେ । ଅଦ୍ୱୈତବଟ ନିକଟରେ ଏକ ଭଜନ କୁଟୀର ସ୍ଥାପନ କରି ତାଙ୍କ ସେବାପୂଜା ବ୍ୟବସ୍ଥା କରାଇଲେ ।

ମୁସଲମାନଙ୍କ ଆକ୍ରମଣ କାଳରେ ଅନ୍ୟ ଉପାୟ ନଦେଖି ସ୍ୱୟଂ ଶ୍ରୀ ବିଗ୍ରହ କ୍ଷୁଦ୍ର କଳେବର ଧାରଣ କରି ସେଇ ବଟମୂଳରେ ଭୂଇଁ ତଳେ ଆତ୍ମଗୋପନ କରିଗଲେ । ବିପଦ କାରଣ ଦୂରୀଭୂତ ହୁଅନ୍ତେ ପୁଣି ସେଠାରେ ସ୍ୱୟଂପ୍ରକଟ ହୋଇ ଭକ୍ତର ସେବାପୂଜା ଗ୍ରହଣ କଲେ । ଇତି ମଧ୍ୟରେ ମଥୁରାର ଜନୈକ ଚୌବେଙ୍କୁ ସ୍ୱପ୍ନାଦେଶ କରି ତାଙ୍କ ଗୃହକୁ ଗଲେ । ସେଠାରେ ପରମ ଆନନ୍ଦରେ ରାତିରେ ବିଗ୍ରହରୂପରେ ଓ ଦିନରେ ବାଳକ ରୂପରେ ଚୌବେଙ୍କ ଗୃହରେ ଲୀଳା କରୁଥାନ୍ତି ।

ଶ୍ରୀଳ ସନାତନ ଗୋସ୍ୱାମୀ ସେହି ଦ୍ୱାଦଶ ଅଦିତ୍ୟ ଟିଲା ଠାରେ ଭଜନ କୁଟୀର କରିଥାନ୍ତି । ବୃନ୍ଦାବନରେ ସେତେବେଳେ ଆଦୌ ଜନବସତି ନଥାଏ । ଭିକ୍ଷା କାହୁଁ ମିଳିବ ? ଅତଏବ ସନାତନ ଗୋସ୍ୱାମୀ ପ୍ରତିଦିନ ୧୦କି.ମି. ମଥୁରା ଯାଇ ସାତଘରୁ ମାଧୁକରୀ ଭିକ୍ଷା ଗ୍ରହଣ କରି ଜୀବନ ନିର୍ବାହ କରୁଥାନ୍ତି । ରହନ୍ତି କିନ୍ତୁ ବୃନ୍ଦାବନରେ ।

ଦିନକର କଥା । ଗୋସ୍ୱାମୀ ପାଦ ମଥୁରା ଯାଇ ଦେଖନ୍ତି ଯେ - ସ୍ୱୟଂ ମଦନ ମୋହନ ଚୌବେଙ୍କ ପିଲାମାନଙ୍କ ସାଙ୍ଗରେ ମୂର୍ତ୍ତି ମଧ୍ୟରୁ ବାହାରି ଆସି ଜୀବନ୍ତ ଦେହ ଧାରଣ କରି ଆଉ ଗୋଟିଏ ବାଳକ ହୋଇ ଖେଳୁଛନ୍ତି । କିଛି ସମୟ ପରେ ଦେଖିଲେ ସେ ପିଲାମାନଙ୍କ ସହିତ ଭୋଜନଲୀଳା ବି କରୁଛନ୍ତି । ସେଦିନ ଚୌବେଙ୍କ ଗୃହିଣୀଙ୍କୁ ମଦନ ମୋହନଙ୍କ ଭୋଜନ ଅବଶିଷ୍ଟ ମାଗି ଗୋସ୍ୱାମୀ ମହାଶୟ ସେବନ କରି ଦିବ୍ୟ ଆନନ୍ଦରେ ବିଭୋର ହୋଇ ଉଠିଲେ ।

ଭଗବାନ କେବଳ ଲୀଳାମୟ ନୁହନ୍ତି । ଇଚ୍ଛାମୟ ମଧ୍ୟ । ମଦନ ମୋହନ ଉଭୟ ଚୌବେ ଜୀ ଓ ସନାତନ ଗୋସ୍ୱାମୀଙ୍କୁ ସ୍ୱପ୍ନାଦେଶ କରି ମଥୁରା ଛାଡ଼ି ଆସିଲେ ମୂର୍ତ୍ତି ରୂପରେ ଯମୁନା କୂଳସ୍ଥିତ ଶ୍ରୀଳ ସନାତନଙ୍କ ବୃନ୍ଦାବନର ଭଜନ କୁଟୀରକୁ । ଠାକୁରଜୀ ଏବେ ସନାତନଙ୍କ ମାଧୁକରି ଭିକ୍ଷାରେ ଭାଗ ବସେଇଲେ । ତେବେ ଦିନେ

ରୁଟି ଅଲଣା ଦେଖି ଭଗବାନଙ୍କର ଅରୁଚି ହେଲା । ମାଗିଲେ ସନାତନ ଲୁଣ ଟିକିଏ ଦେଲେ ଭଲ ହୁଅନ୍ତା । ହେଲେ ଗୋସ୍ୱାମୀ କି ଛାଡ଼ିବା ଲୋକ । ସିଧା ସଳଖ ଉତ୍ତର ଦେଲେ-ଆଜି ଲୁଣ ମାଗୁଛ । କାଲି ପାୟସ ପାଇଁ ଚିନି କିସିମିସ ମାଗିବ । ଜାଣିକି ପାରୁନାହଁ ମୁଁ ଯେ ଭିକାରୀ ସେବକ । ବୁଝିଗଲେ ମଦନମୋହନ । କୋଟିବ୍ରହ୍ମାଣ୍ଡ ନାୟକଙ୍କର ସେ ନାୟକ । ରାଜାକୁ କି ଖଜା ଅପୂର୍ବ । ଭଗବାନଙ୍କୁ ଏଥର କିଛି ବ୍ୟବସ୍ଥା କରିବାକୁ ପଡ଼ିବ ।

ସନ୍ଧ୍ୟାବେଳେ ଦେଖାଗଲା । ଅମୃତସରର ଜଣେ ଧନୀ ସୌଦାଗର ଅନେକ ନୌକାରେ ମୂଲ୍ୟବାନ ବିକ୍ରୀ ଦ୍ରବ୍ୟ ଧରି ଯମୁନା ନଦୀର ଆଦିତ୍ୟ ଟିଲା ପାଖରେ ଫସିଯାଇଛନ୍ତି । ନୌକା ମଥୁରା ଯାଇପାରୁନି । ସୌଦାଗର ଜଣକ ହଡ଼ବଡ଼େଇ ଗଲେ । ନୌକାରେ ମୁଣ୍ଡ ପିଟିଲେ । ପାଖରେ ପହଞ୍ଚି ଭଗବାନ ଗୋପାଳ ବାଳକ ବେଶରେ ଉପାୟ ବତେଇ ଦେଲେ ସନାତନ ଗୋସ୍ୱାମୀଙ୍କ ଶରଣ ପଶିବାକୁ । ଅତ୍ୟନ୍ତ ବ୍ୟାକୁଳ ହୋଇ ସୌଦାଗର ନୌକା ଛାଡ଼ି ଧାଇଁଲେ । ସେ ଦେଖାକଲେ ଗୋସ୍ୱାମୀ ମହାଶୟଙ୍କୁ ସବୁକଥା ନିବେଦନ କଲେ । ଗୋସ୍ୱାମୀଙ୍କର ଶରଣ ପଶିଲେ । ଶ୍ରୀ ସନାତନ ବୁଝିଗଲେ ସବୁକଥା । କହିଲେ ଅସଲି ଶରଣଦାତା ସେଇ ଗୋପାଳ ବାଳକ । ହେଇ ଦେଖ ସେଇ ଭଜନ କୁଟୀର ମଧ୍ୟରେ ମୁରକି ହସୁଛନ୍ତି ! ତାଙ୍କର ମନ୍ଦିର ସେବା ପୂଜା ବ୍ୟବସ୍ଥା ଦରକାର । ମୋର କିଛି ଦରକାର ନାହିଁ । ମୁଁ ଅକିଞ୍ଚନ ସେବକ । ତାଙ୍କ ମନ୍ଦିର ସ୍ଥାପନ ସହିତ ଭୋଗରାଗ ବ୍ୟବସ୍ଥା କରିପାରିବ ତ କର ।

ସୌଦାଗର କୃତକୃତ୍ୟ ହୋଇଗଲେ । ପ୍ରତିଶ୍ରୁତି ଦେଲେ ନୌକାସ୍ଥିତ ସକଳ ଦ୍ରବ୍ୟ ବିକ୍ରୀ କରି ସବୁ ପଇସାରେ ମନ୍ଦିର ନିର୍ମାଣ ସହିତ ସେବା ପୂଜା ବିଧି ଖଞ୍ଜିଦେବେ । ସେ ସବୁ କଲେ ମଧ୍ୟ । ନୌକା ଏବେ ଛାଏଁ ଛାଏଁ ଚାଲିଲା । ଜିନିଷ ବିକ୍ରୀ ହୋଇଗଲା । ସୌଦାଗର ମହା ଖୁସୀ । ଶ୍ରୀମଦନ ମୋହନ ମଧ୍ୟ ଖୁସୀ । ଭଗବାନଙ୍କର କୃପା ଭକ୍ତ ମାଧ୍ୟମରେ ମିଳେ ବୋଲି ଠାକୁରଜୀ ଘୋଷଣା କଲେ ସେଦିନ । ସେଇ ଦିବ୍ୟ ଲୀଳାର ସାକ୍ଷୀ ଆଜିର ସେଇ ଜୀର୍ଣ୍ଣ ଶ୍ରୀମଦନ ମୋହନ ମନ୍ଦିର ।

ଆଉରଙ୍ଗଜେବଙ୍କ ଆକ୍ରମଣ କାଳରେ ଜୟପୁର ରାଜା ସେ ବିଗ୍ରହଙ୍କୁ ଜୟପୁର ସ୍ଥାନାନ୍ତରିତ କରିଥିଲେ । ତାଙ୍କର କନ୍ୟା ବିବାହବେଳେ ଯୌତୁକ ଆକାରରେ ତାଙ୍କୁ ନେଇଗଲେ । ବର୍ତ୍ତମାନ ରାଜସ୍ଥାନ ସ୍ଥିତ କରୋଲିଠାରେ ସେ ସେବାପୂଜା ପାଉଛନ୍ତି । ପ୍ରାଚୀନ ମନ୍ଦିର ଯବନମାନଙ୍କ ସ୍ପର୍ଶରେ ଅଶୁଦ୍ଧ ହୋଇଗଲା । ପରେ ମନ୍ଦିରର ଠିକ ପଛପଟେ ଆହୁରି ଗୋଟିଏ ଭବ୍ୟ ମନ୍ଦିର ନିର୍ମିତ ହୋଇଛି । ସେହି ମନ୍ଦିରରେ ଏବେ ଶ୍ରୀମଦନ ମୋହନଜୀଙ୍କ ପ୍ରତିଭୂ ପ୍ରତିଷ୍ଠିତ ହୋଇ ପୂଜିତ ହେଉଛନ୍ତି । ସେ ଭକ୍ତ, ସେ ଭଗବାନ ଓ ସେ ଶ୍ରୀମଦନମୋହନ ମନ୍ଦିରଙ୍କୁ ବିନମ୍ର ନମସ୍କାର ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

### ୩. ଶ୍ରୀରାଧା-ଗୋପୀନାଥଜୀ ମନ୍ଦିର

ପ୍ରଶ୍ନ- ୧୫. ପବିତ୍ର ଭାରତଭୂମିରେ ଭକ୍ତ ଭଗବାନଙ୍କ ଅଲୌକିକ ଲୀଳାସବୁ ଯୁଗେ ଯୁଗେ ପ୍ରକଟିତ ହୋଇଛି । ମୀରାବାଈ ଦ୍ୱାରକାଧୀଶଙ୍କ ବିଗ୍ରହରେ, ଗୌରାଙ୍ଗ ମହାପ୍ରଭୁ ପୁରୀ ଟୋଟା ଗୋପୀନାଥଙ୍କ ବିଗ୍ରହରେ ଓ ଚତୁର୍ଥ ମୂଳ ଜଗଦ୍‌ଗୁରୁ ଶ୍ରୀ ମଧ୍ୱ ଆଚାର୍ଯ୍ୟ କେରଳ ରାଜ୍ୟର ଉଡୁପୀ ଶ୍ରୀକୃଷ୍ଣ ବିଗ୍ରହରେ ଲୁଗାପଟା ସହିତ ଲୀନ ହୋଇଯିବା ଆମ ଇତିହାସର କଥା । ତେବେ ଗୋପୀଜନ ବଲ୍ଲଭ ନାମ ସାର୍ଥକ କରିବା ପାଇଁ ବୃନ୍ଦାବନରେ ପ୍ରକଟିତ ଗୋପୀନାଥ ଦେବ କେଉଁ ଗୋପୀକୁ ନିଜ ଦିବ୍ୟ ଅଙ୍ଗରେ ଆପଣେଇ ନେଇଥିଲେ ?

**ଶ୍ରୀମାନ୍ ରାସ ରସ-ଆରମ୍ଭୀ ବଂଶୀବଟ ତଟ ସ୍ଥିତଃ ।**
**କର୍ଷନ୍ ବେଣୁ ସ୍ୱନୈଃ ଗୋପୀ ଗୋପୀନାଥଃ ଶ୍ରିୟେଽସ୍ତୁ ॥**

ଉ. ବୈଦିକ ବିଦ୍ୱାନ ମାନେ କହନ୍ତି ଗୋପୀ-ଗୋପୀନାଥଙ୍କର ରାସଲୀଳା ହୁଏତ ଦ୍ୱାପର ଯୁଗରେ ହୋଇଥାଇପାରେ । କୃଷ୍ଣଭକ୍ତମାନେ କହୁଛନ୍ତି ଆଜି ବି ବୃନ୍ଦାବନର କୋଣେ ଅନୁକୋଣେ ଗୋପୀନାଥଙ୍କର ମୂରଲୀଧ୍ୱନି ସ୍ପଷ୍ଟ ଶୁଭୁଛି । ବିଗ୍ରହ ନିକଟ, ବଂଶୀବଟ, ଯମୁନାତଟରେ ସେବାକୁଞ୍ଜ, ନିଧୁବନ ଆଦିର ସେଇ ଦିବ୍ୟ ଚିନ୍ମୟଲୀଳା ନିତ୍ୟ ନିରନ୍ତର ବର୍ତ୍ତମାନ ମଧ୍ୟ ଚାଲୁ ରହିଛି । ଭଗବାନଙ୍କ ବାକ୍ୟ **ବୃନ୍ଦାବନଂ ପରିତ୍ୟଜ୍ୟ ପାଦଂ ଏକଂ ନ ଗଛାମି** । ଭଗବାନଙ୍କର ତ କିଛି ସଂସାର ଜଞ୍ଜାଳ ନାହିଁ । ବ୍ରହ୍ମାଜୀଙ୍କୁ ସୃଷ୍ଟି କରିବା, ବିଷ୍ଣୁଜୀଙ୍କୁ ପାଳନ କରିବା, ଶଙ୍କରଜୀଙ୍କୁ ସଂହାର ଓ ଶ୍ରୀମନ ନାରାୟଣଙ୍କୁ ଏ ତିନିଜଣଙ୍କ କାମର ସମନ୍ୱୟ କରିବା ଦାୟିତ୍ୱ ଅର୍ପଣ କରିସାରିଛନ୍ତି । ସୁତରାଂ ଠାକୁରଜୀ ବଂଶୀ ଖଣ୍ଡିକ ପାଖେ ପାଖେ ରଖି ବୃନ୍ଦାବନ ସାରା ୨୪×୭ ଦିନରାତି ଘୂରି ବୁଲୁଛନ୍ତି । କୁଞ୍ଜରୁ କୁଞ୍ଜ । କାଳେ ଗୋପୀଟିଏ ହାବୁଡ଼େ ପଡ଼ିଯିବକି ? ସେ ଦଣ୍ଡକାରଣ୍ୟବାସୀ ଦାଢ଼ୀବାଲା ସାଧୁ ହେଉ । ହେଲେ ହେଉ ପଛେ ଅଯୋଧ୍ୟାବାସିନୀ, ଜନକପୁର ବାସିନୀ, ମଥୁରା ବାସିନୀ କିମ୍ବା ଅର୍ଜୁନରୁ ଅର୍ଜୁନୀ, ନାରଦରୁ ନାରଦୀ ବା କୈଳାସବାସୀ ଗୋପୀଶ୍ୱର ମହାଦେବ । ଲହୁଣୀ, ଦୁଧ, ଦହି ମାଗିବି । ନଦେଲେ ଠେକି ଭାଙ୍ଗିବି ହରବର କରିବି । ସେଥିପାଇଁ ସେ କଟୀବଦ୍ଧ ।

ଗୌରଲୀଳାର ଅନ୍ୟତମ ପାର୍ଷଦ ଶ୍ରୀଗଦାଧର ପଣ୍ଡିତଙ୍କୁ ଶ୍ରୀରାଧାଙ୍କର ଭକ୍ତି ଅବତାର ମାନ୍ୟତା ଦିଆଯାଏ । ମଧୁପଣ୍ଡିତ ସେହି ଶୀଳ ଗଦାଧର ପଣ୍ଡିତଙ୍କ

ଶ୍ରେଷ୍ଠ ଶିଷ୍ୟ । ଶ୍ରୀକୃଷ୍ଣ ଲୀଳା, ନାମ, ଗୁଣ ବୈଷ୍ଣବ ମୁଖରୁ ଶୁଣି ପାଗଳ ପ୍ରାୟ ହୋଇ ଅସ୍ତବ୍ୟସ୍ତ କେଶ ବାସରେ ମଧୁ ପଣ୍ଡିତ ପହଞ୍ଚିଲେ ଦିବ୍ୟ ବୃନ୍ଦାବନ ଧାମ । ବଂଶୀବଟ ନିକଟରେ କାନ ପାତିଲେ । ଅନନ୍ୟ ବ୍ୟାକୁଳତା ହେତୁ କାହିଁଗଲେ ମୁରଲୀ ଫୁଙ୍କାର ରସିକ ନାଗର ତାଙ୍କ ହସ୍ତରେ ଧରାପଡ଼ିବାକୁ ବାଧ ହେଲେ । ତ୍ରିଭଙ୍ଗୀ ଠାଣିରେ ତାଙ୍କ ସାମନାରେ ଉଭା ହୋଇ ମୁରକି ହସିଲେ । ମଧୁ ପଣ୍ଡିତଙ୍କ ଅନୁରୋଧ କ୍ରମେ ମୂର୍ତ୍ତି ରୂପରେ କଳିଯୁଗୀ ଲୋକଙ୍କୁ ଅନୁଗ୍ରହ କରିବାକୁ ପ୍ରତିଶ୍ରୁତିବଦ୍ଧ ହେଲେ । ଯମୁନା କୂଳରେ ବୃନ୍ଦାବନର ଗୋପୀନାଥ ବଜାର ନିକଟରେ ଗୋପୀନାଥ ଘେରାରେ ଅଦ୍ୟାପି ତାଙ୍କର ମନ୍ଦିର ସଗର୍ବେ ବିଦ୍ୟମାନ । ଅଳ୍ପ ଦିନରେ ପରେ ପାଖେ ପାଖେ ପ୍ରତିଷ୍ଠିତ ହେଲେ ଶ୍ରୀରାଧାଙ୍କ ବିଗ୍ରହ ।

ନିତ୍ୟାନନ୍ଦ ପ୍ରଭୁଙ୍କ ପତ୍ନୀଙ୍କ ନାମ ମା'ଜାହ୍ନବା ଦେବୀ । ମା'ଜାହ୍ନବା ଶ୍ରୀକୃଷ୍ଣ ଲୀଳାବେଳେ କୃଷ୍ଣ ପ୍ରେୟସୀ ଅନଙ୍ଗମଞ୍ଜରୀ ଥିଲେ । ସେ ଯେଉଁ ବିଗ୍ରହ ନିର୍ମାଣ କରି ବୃନ୍ଦାବନ ପ୍ରେରଣ କରିଥିଲେ ତାଙ୍କୁ ଶ୍ରୀ ଗୋପୀନାଥଙ୍କ ବାମଭାଗରେ ସ୍ଥାପନ କରି ଶ୍ରୀରାଧା ବିଗ୍ରହକୁ ଡ଼ାହାଣ ପାଖେ ରଖାଗଲା । ଏହା ପୁଣି ଶ୍ରୀ ଗୋପୀନାଥଙ୍କ ପ୍ରଧାନ ସେବକଙ୍କୁ ପ୍ରଦତ୍ତ ସ୍ୱପ୍ନାଦେଶ ଅନୁସାରେ । ଜାହ୍ନବା ଦେବୀ ଯେତେବେଳେ ଶ୍ରୀରୂପ, ସନାତନ ଆଦିଙ୍କୁ ସାଙ୍ଗରେ ଧରି ଶ୍ରୀକାମ୍ୟବନ ଦର୍ଶନ କରୁଥିଲେ ସେ ସେଠାରେ ଗୋପୀନାଥ ଦେବଙ୍କ ବିଗ୍ରହ ଦର୍ଶନରେ ଭାବାବିଷ୍ଟ ହୋଇପଡ଼ିଲେ । ସ୍ୱହସ୍ତରେ ଅନ୍ନ, ବ୍ୟଞ୍ଜନ ପ୍ରସ୍ତୁତ କଲେ । ପ୍ରସାଦ ଲାଗିକଲେ । ପରିକ୍ରମା ବେଳେ ଶ୍ରୀଗୋପୀନାଥଜୀ ଶ୍ରୀ ହସ୍ତରେ ମା' ଜାହ୍ନବାଙ୍କ ପଣତ କାନି ଧରି ଟାଣିଲେ । ଲୀଳା ସେତିକିରେ ଅନ୍ତ ହେଲାନି । ଚାହୁଁ ଚାହୁଁ ମା'ଜାହ୍ନବୀଙ୍କ ଦେହ ଟାଣି ହୋଇ ଶ୍ରୀ ଗୋପୀନାଥଜୀଙ୍କ ଦିବ୍ୟ ବିଗ୍ରହରେ ମିଶି ମିଳାଇଗଲା । ସମବେତ ଭକ୍ତଗଣଙ୍କର ହରିବୋଲ ହୁଳହୁଳି ଶବ୍ଦରେ ଭଜନ କୀର୍ତ୍ତନରେ ଦିବ୍ୟ ବୃନ୍ଦାବନ ଧାମର ଗଗନ ପବନ ଥରି ଉଠିଥିଲା ସେ ଦିନ ।

ଆଉରଙ୍ଗଜେବଙ୍କ ଆକ୍ରମଣ କାଳରେ ସେ ବିଗ୍ରହ ତିନି ମୂର୍ତ୍ତି ପ୍ରଥମେ ଶ୍ରୀକାମ୍ୟବନରେ ଓ ପରେ ଜୟପୁରସ୍ଥିତ ଗୋପୀନାଥ ବଜାରକୁ ସ୍ଥାନାନ୍ତରିତ ହୋଇଗଲେ । ବର୍ତ୍ତମାନ ସେ ପ୍ରତିଭୂରୂପରେ ବୃନ୍ଦାବନର ସେଇ ଗୋପୀନାଥଜୀ ମନ୍ଦିରରେ ମଧ୍ୟ ସେବିତ ହେଉଛନ୍ତି ।

ରାଜସ୍ଥାନର ବିକାନୀରର ରାଜା ସେହି ପ୍ରାଚୀନ ମନ୍ଦିର ୧୬୩୨ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରି ନିଜକୁ ଧନ୍ୟ ମନେ କରିଥିଲେ ।

**୪. ଶ୍ରୀରାଧା ରମଣଜୀ ମନ୍ଦିର**

ପ୍ରଶ୍ନ-୧୬. ଶ୍ରୀକୃଷ୍ଣ ଲୀଳାରେ ଶ୍ରୀଗିରିରାଜ ଗୋବର୍ଦ୍ଧନଜୀ ଜୀବନ୍ତ ରୂପ ଧାରଣ କରି ଗୋପୀଗୋପାଳଙ୍କ ପ୍ରଦତ୍ତ କ୍ଷୀରି ପୁରି ଆଦି ନୈବେଦ୍ୟ ଭୋଜନ କରିଥିଲେ । ଏବେ ତ ଘୋର କଳିକାଳ ଚାଲିଛି । ଲୋକେ ଦେବୀ, ଦେବତା, ଏପରିକି ଶ୍ରୀଜଗନ୍ନାଥଙ୍କ ବିଗ୍ରହଙ୍କୁ ଜଡ଼ ଦାରୁ, ପଥର କହି ହସରେ ଉଡ଼ାଇ ଦେଉଛନ୍ତି । ଭକ୍ତମାନଙ୍କ ପୂଜିତ ଶାଳଗ୍ରାମ ଶିଳା କେବେ ଜୀବନ୍ତ ହୋଇ ଭକ୍ତକୁ କୃପା କରିଥିବା ଦୃଷ୍ଟାନ୍ତ ବୃନ୍ଦାବନ ଧାମରେ ଅଛି କି ?

**କୃଷ୍ଣଃ-ତୁ ଅନ୍ୟତମଂ ରୂପଂ ଗୋପ ବିଶ୍ରମ୍ଭଣଂ ଗତଃ ।**
**ଶୈଳୋଽସ୍ମି-ଇତି ବୃବନ୍ ଭୂରି ବଳିଂ-ଆଦତ ବୃହତ୍ ବପୁଃ ॥୩୫॥**

ଉ. ଗୋବର୍ଦ୍ଧନ ଶିଳା ଶ୍ରୀକୃଷ୍ଣ ଅଭିନ୍ନ ସ୍ୱରୂପ ଭାବେ ସ୍ୱୀକୃତ । ଆଜି ସେଇ ଲୀଳାକୁ ସ୍ମରଣ କରାଉଛନ୍ତି ଷୋଳ କୋଶ ଗୋବର୍ଦ୍ଧନ ପରିକ୍ରମା କରିବାବେଳେ ମୁଖାରବିନ୍ଦ ଦିବ୍ୟ ଧାମ ।

ଶ୍ରୀ ବୃନ୍ଦାବନର ଯମୁନାକୂଳରେ ରାଧାରମଣ ଘେରାରେ ଅବସ୍ଥିତ ବିଖ୍ୟାତ ମନ୍ଦିରରେ ସେବିତ ହେଉଛନ୍ତି ଶ୍ରୀରାଧାରମଣଜୀ ମହାରାଜ । ଷଡ଼ଗୋସ୍ୱାମୀ ମଧ୍ୟରୁ ଅନ୍ୟତମ ସନ୍ଥ ଦାକ୍ଷିଣାତ୍ୟ ପ୍ରଦେଶର ଶ୍ରୀଳ ଗୋପାଳଭଟ୍ଟଜୀ ଗୃହସ୍ଥାଶ୍ରମ ତ୍ୟାଗ କରି ପହଞ୍ଚିଲେ ପୁରୀର ଗମ୍ଭୀରାମଠରେ । କାଶୀ ମିଶ୍ର ଆଳୟରେ ଦର୍ଶନ କଲେ ଶ୍ରୀମନ୍ ମହାପ୍ରଭୁଙ୍କୁ । ତାଙ୍କ ଆଦେଶରେ ପହଞ୍ଚିଲେ ଶ୍ରୀବୃନ୍ଦାବନ ଧାମରେ । ସେଠାରେ ସନାତନ ଗୋସ୍ୱାମୀଙ୍କୁ ଦର୍ଶନ କଲେ । ତାଙ୍କ ଆଦେଶରେ ଗଲେ ନେପାଳ ରାଜ୍ୟର ଗଣ୍ଡକୀ ନଦୀରେ ସ୍ନାନ ଲାଗି । ସ୍ନାନ ସାରି ତୁଳସୀ ଚଉରାରେ ଜଳଦେବାକୁ ଗଡୁରେ ଜଳ ଆଣୁଆଣୁ ଦେଖିଲେ ଅଦ୍ଭୁତ ଲୀଳା । ଜଳରୁ ଡ଼ିଆଁ ମାରି ଶାଳଗ୍ରାମ ଶିଳାମାନ ତାଙ୍କ ଗଡୁ ଭିତରେ ପଶୁଛନ୍ତି । ଏକ ରୂପା ବାକ୍ସରେ ଦ୍ୱାଦଶ ଶାଳଗ୍ରାମକୁ ଧରି ଶ୍ରୀ ଗୋପାଳ ଭଟ୍ଟ ଗୋସ୍ୱାମୀ ପହଞ୍ଚିଲେ ଆଜିର ରାଧା ରମଣ ଘେରାରେ ।

ପରମ ନିଷ୍ଠା ଏବଂ କଠୋର ଭଜନ, କୀର୍ତ୍ତନ ଜପ ସହିତ ଭଜନ କୁଟୀରରେ ରହି ଶାଳଗ୍ରାମ ସେବା କରୁଥାନ୍ତି ସେ । ଦିନେ ଜଣେ ବିତ୍ତଶାଳୀ ଭକ୍ତ ବୃନ୍ଦାବନର

ମନ୍ଦିରମାନ ଦର୍ଶନ କରି କରି ବିଗ୍ରହମାନଙ୍କୁ ବସ୍ତ୍ର, ଅଳଙ୍କାର ଇତ୍ୟାଦି ଭେଟି ଦେଇଗଲେ । ଗୋପାଳ ଭଟ୍ଟ ଗୋସ୍ୱାମୀଙ୍କ ଠାକୁରଙ୍କୁ ମଧ୍ୟ କାନ, ନାକ, ଅଳଙ୍କାର ବସ୍ତ୍ର ଯାଚିଲେ । ସେଦିନ ରାତ୍ରିରେ ଗୋସ୍ୱାମୀଙ୍କୁ ନିଦ୍ରା ଆସୁନି । ବ୍ୟସ୍ତତା ନିଜପାଇଁ ନୁହେଁ । ପ୍ରାଣବଲ୍ଲଭ ଠାକୁରଙ୍କ ପାଇଁ ଗଭୀର ଚିନ୍ତାମଗ୍ନ ସେ । କହିଲେ, ''ଠାକୁର, ସବୁ ବିଗ୍ରହ ବସ୍ତ୍ର ଅଳଙ୍କାର ଧାରଣ କରି କେଡ଼େ ସୁନ୍ଦର ଦିଶିଲେ । ତୁମେ ଗୋଲ ମଟୋଲ ଶିଳା ହୋଇ ଆଉ କେତେ ଦିନ ଇମିତି ପଡ଼ି ରହିଥିବ । ତୁମର ହାତ, ଗୋଡ଼ ଥିଲେ ନାକ, କାନଥିଲେ ଅଳଙ୍କାର ପିନ୍ଧି କେଡ଼େ ସୁନ୍ଦର ଦିଶି ନଥାନ୍ତ ।

ରାତି ପାହି ସକାଳ ହେଲା । ଗୋସ୍ୱାମୀ ସ୍ନାନ, ଶୌଚାନ୍ତେ ବିଗ୍ରହ ସେବା କରିବାକୁ ଯାଇ ଦେଖିଲେ ଅପୂର୍ବ ଲୀଳା ଶାଳଗ୍ରାମ ବିଗ୍ରହଙ୍କର । ଦ୍ୱାଦଶ ମୂର୍ତ୍ତି ଶାଳଗ୍ରାମଙ୍କ ମଧ୍ୟରୁ ସବୁଠାରୁ ବଡ଼ ଶାଳଗ୍ରାମ ଶିଳା ଡ଼ବା ମଧ୍ୟରେ ବାକ୍ସରେ ଉଚ୍ଚତାକୁ ଚାହିଁ ଦ୍ୱାଦଶ ଅଙ୍ଗୁଳ ଉଚ୍ଚ ତ୍ରିଭଙ୍ଗୀ ଠାଣିରେ ଦିବ୍ୟ ସ୍ୱରୂପରେ ପ୍ରକଟିତ । ପ୍ରେମ ଗଦଗଦ ହୋଇ ମନ୍ଦିର ପ୍ରାଙ୍ଗଣରେ ଗଡ଼ିଗଲେ ଗୋସ୍ୱାମୀ ପାଦ । ସେ ବିଗ୍ରହର ପିଠିରେ ଅଧାଶାଳଗ୍ରାମ ଲାଗି ରହିଥାନ୍ତି । ଏବେ ମଧ୍ୟ ସେଇ ଶାଳଗାମ ତାଙ୍କ ଶ୍ରୀବିଗ୍ରହରେ ଦର୍ଶନୀୟ । ସେଇ ଦିନରୁ ବିଗ୍ରହଙ୍କର ସ୍ନାନ, ଅଭିଷେକ, ପୂଜନ ଚାଲିଲା । କାନ, ନାକରେ ଅଳଙ୍କାର ସବୁ ପିନ୍ଧିଲେ ସେ । ନାମ ରଖାଗଲା ଶ୍ରୀରାଧାରମଣଜୀ । ୧୫୪୨ଖ୍ରୀଷ୍ଟାବ୍ଦରେ ବୈଶାଖ ପୂର୍ଣ୍ଣିମା ତିଥିରେ ସେ ପ୍ରକଟ ହୋଇଥିଲେ । ଆଜିଯାଏଁ ପ୍ରତିବର୍ଷ ବୈଶାଖପୂର୍ଣ୍ଣିମା ଦିନ ତାଙ୍କ ପ୍ରକଟ ଉତ୍ସବ ମହା ସମାରୋହରେ ସେହି ମନ୍ଦିରରେ ପାଳିତ ହେଉଛି ।

ଆଉରଙ୍ଗଜେବଙ୍କ ଆକ୍ରମଣ କାଳରେ ଅନ୍ୟାନ୍ୟ ବିଶାଳ ବିଗ୍ରହଗଣ ବୃନ୍ଦାବନରୁ ଅନ୍ୟତ୍ର ସ୍ଥାନାନ୍ତରିତ ହେଲାବେଳେ ତାଙ୍କ ମୂଳ ବିଗ୍ରହ ବୃନ୍ଦାବନରେ ରହିପାରିଲେ । କାରଣ ହେଲା ତାଙ୍କ କ୍ଷୁଦ୍ର ଦ୍ୱାଦଶାଙ୍ଗୁଳ ବିଗ୍ରହ । ତାଙ୍କ ପାଖରେ ଶ୍ରୀରାଧାଙ୍କ ବିଗ୍ରହ ନାହାନ୍ତି କିନ୍ତୁ ପ୍ରତୀକ ରୂପେ ଦିବ୍ୟ ମୁକୁଟ ରଖାଯାଇ ସେବିତ ହେଉଛନ୍ତି ।

ଶ୍ରୀ ରାଧାରମଣ ବିଗ୍ରହଙ୍କର ଏକ ବିଶେଷତ୍ୱ ମଧ୍ୟ ରହିଛି । ଶ୍ରୀବୃନ୍ଦାବନର ତିନି ମୁଖ୍ୟ ବିଗ୍ରହଙ୍କର ବିଶେଷଣ ତାଙ୍କ ବିଗ୍ରହରେ ବିଦ୍ୟମାନ । ତାଙ୍କର ମୁଖାରବିନ୍ଦ ଶ୍ରୀଗୋବିନ୍ଦଜୀଙ୍କର, ବକ୍ଷସ୍ଥଳ ଶ୍ରୀ ଗୋପୀନାଥଜୀଙ୍କର ଓ ଚରଣ କମଳ ଶ୍ରୀମଦନ ମୋହନଜୀଙ୍କର ଦିବ୍ୟ ଝଲକଯୁକ୍ତ । ସେ ତିନିମୂଳ ଶ୍ରୀବିଗ୍ରହ ବୃନ୍ଦାବନରେ ନଥିବା ବେଳେ ଏହି ରାଧାରମଣଙ୍କ ବିଗ୍ରହ ଏବେ ବୃନ୍ଦାବନରେ ଦର୍ଶନ କରି କୃଷ୍ଣଭକ୍ତଗଣ ପରମ ଆହ୍ଲାଦରେ ନାଚି ଉଠନ୍ତି । ଭଜନ ଗାଇ ଗାଇ ଆତ୍ମହରା ହୁଅନ୍ତି ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

ପୁରୀରେ ରାଧାକାନ୍ତ ମଠରେ ଥାଇ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଶ୍ରୀରାଧାରମଣ ଶାଳଗ୍ରାମ ଶିଳାର ରୂପାନ୍ତରଣ ବିବରଣୀ ଶ୍ରବଣ କରି ଅତ୍ୟନ୍ତ ଭାବାବିଷ୍ଟ ଓ ଆନନ୍ଦିତ ହୋଇଥିଲେ । ଶ୍ରୀଳ ଗୋପାଳ ଭଟ୍ଟଙ୍କ ପାଖକୁ ଡ଼ୋର, କୌପୀନ ଓ କାଷ୍ଠ ଆସନ ଇତ୍ୟାଦି ପ୍ରେରଣ କରିଥିଲେ । ଏବେ ମଧ୍ଯ ସେଇ ଡ଼ୋର, କୌପୀନ ଆଦି ବସ୍ତୁ ସେଇ ମନ୍ଦିରେ ସେବା ପୂଜା ପାଉଛନ୍ତି ।

**୫. ଶ୍ରୀରାଧା ଦାମୋଦରଜୀ ମନ୍ଦିର**

ପ୍ରଶ୍ନ-୧୭. ସ୍ତ୍ରୀ ପୁରୁଷ ନିର୍ବିଶେଷରେ ମାନବ ମାତ୍ରେ ଧର୍ମ ସଂଗ୍ରହ କରିବା କଥା । ସେଥିରେ ମାନବ ଜୀବନ କୃତକୃତାର୍ଥ ହୁଏ । ତଥାପି କାର୍ତ୍ତିକ ମାସକୁ ଭକ୍ତମାନେ ବିଶେଷ ଧର୍ମମାସ କହିଥାନ୍ତି । ସେଥିପାଇଁ ସିନା କାର୍ତ୍ତିକ ମାସରେ ଜଗନ୍ନାଥ ଧାମ ଓ ବୃନ୍ଦାବନ ଧାମରେ କାର୍ତ୍ତିକ ବ୍ରତଧାରୀ ଭକ୍ତ ମାନଙ୍କର ଏତେ ଭିଡ଼ ଜମିଥାଏ । ଶାସ୍ତ୍ରରେ ବୋଧେ ଏଥିଲାଗି କାର୍ତ୍ତିକମାସକୁ ଦାମୋଦର ମାସ କୁହାଯାଇଛି । ବୃନ୍ଦାବନ ଧାମର ତିନି ମୁଖ୍ୟ ବିଗ୍ରହ ଶ୍ରୀ ଗୋବିନ୍ଦଜୀ, ଶ୍ରୀମଦନ ମୋହନ ଓ ଶ୍ରୀ ଗୋପୀନାଥ ଜୟପୁର ସ୍ଥାନାନ୍ତରିତ ହେଲାପରେ ଶ୍ରୀରାଧା-ଦାମୋଦର ମନ୍ଦିରକୁ ବର୍ତ୍ତମାନର ବୃନ୍ଦାବନ ଧାମର ଧଡ଼କନ/ହୃଦୟ ବୋଲି କାହିଁକି କୁହାଯାଏ ?

**ତ୍ୟକ୍ତ୍ୱା ଯଷ୍ଟିଂ ସୁତଂ ଭୀତଂ ବିଜ୍ଞାୟ-ଅର୍ଭକ ବତ୍ସଳା ।**
**ଇୟେଷ କିଳ ତଂ ବଦ୍ଧୁଂ ଦାମ୍ନା-ଅ-ତତ୍-ବୀର୍ଯ୍ୟ କୋବିଦା ॥୧୨॥**

ଉ. କର୍ମ ମାଧ୍ୟମରେ କର୍ମଯୋଗୀ ଓଁକାର ବ୍ରହ୍ମଙ୍କୁ ଖୋଜି ଥାଏ । ଜ୍ଞାନ ମାର୍ଗରେ ଜ୍ଞାନଯୋଗୀ ପରମାତ୍ମାଙ୍କ ଦିବ୍ୟ ଜ୍ୟୋତି ପାଇଁ ବର୍ଷ ବର୍ଷ ଧରି ସମାଧିରେ ବୁଡ଼ି ରହିବାକୁ ପାଗଳ ହୁଏ । ହେଲେ ଭକ୍ତ ଭକ୍ତି ମାଧ୍ୟମରେ ପ୍ରେମ ଦଉଡ଼ି (ଦାମ)ରେ ସେ ବ୍ରହ୍ମ-ପରମାତ୍ମାଙ୍କ ଅଭିନ୍ନ ସ୍ୱରୂପ ଭଗବାନଙ୍କୁ ପତଳା ଛାଟିଆରେ ପିଟିବାକୁ ଧାଏଁ । ପୁଣି ତାଙ୍କ ପଛେ ପଛେ ଦଉଡ଼େ ବାନ୍ଧିବାକୁ । ଦାମ କହିଲେ ଦଉଡ଼ି ଓ ଉଦର କହିଲେ ପେଟ । ନିରକ୍ଷରା ଗୋପୀ ଯଶୋଦା ଠାକୁରଜୀଙ୍କ ଉଦରକୁ ଦଉଡ଼ିରେ ବାନ୍ଧିବାରୁ ବାଳଗୋପାଳଙ୍କୁ ଗୋଟେ ବଢ଼ିଆ ଡ଼ିଗ୍ରୀ ମିଳିଲା ଦାମୋଦର ବୋଲି । ଜଣେ ସାମାନ୍ୟ ଗୋପାଳୁଣୀ କି ଜାଣିବେ କୋଟି ବ୍ରହ୍ମାଣ୍ଡ ନାୟକ ଭଗବାନଙ୍କ ଶକ୍ତିର ଆଡ଼ ଦୀର୍ଘ କେତେ ? ବ୍ୟାସଙ୍କ ଭାଷାରେ ଅ-ତତ୍-ବୀର୍ଯ୍ୟ(ଶକ୍ତି) କୋବିଦା ।

କାର୍ତ୍ତିକ ମାସରେ ଦେଖାଯାଏ ବୃନ୍ଦାବନର ସବୁତକ ରାସ୍ତାଗଳି ଯେମିତି କେବଳ ଗୋଟିଏ ମନ୍ଦିରରେ ପହଞ୍ଚିବାକୁ । ସେ ମନ୍ଦିରଟି ଏହି ଶ୍ରୀରାଧା-ଦାମୋଦର

ମନ୍ଦିର । ଷୋଡ଼ଶ ଶତାବ୍ଦୀର ସାଧୁ ବୈଷ୍ଣବ ଶୀଳ ରୂପ ଗୋସ୍ୱାମୀଙ୍କ ଭଜନ ସ୍ଥଳୀ । ତାଙ୍କ ଭଜନ କୁଟୀର ଏବଂ ତାଙ୍କ ସମାଧି ମନ୍ଦିର ଏବେ ସେହି ମନ୍ଦିର ପରିସରରେ ସଗର୍ବେ ବିଦ୍ୟମାନ । ଶ୍ରୀରୂପ-ସନାତନ ପ୍ରଭୁଙ୍କର ଅନ୍ୟତମ ଭ୍ରାତା ଅନୁପମ ପ୍ରଭୁଙ୍କ ସୁଯୋଗ୍ୟ ସନ୍ତାନ ଅଟନ୍ତି ଜୀବ ଗୋସ୍ୱାମୀ । ଶ୍ରୀମନ୍ ମହାପ୍ରଭୁଙ୍କ ଆଦେଶରେ ବୈଷ୍ଣବ ଗୁରୁ ଶ୍ରୀରୂପଗୋସ୍ୱାମୀ ପାଦଙ୍କର ସେବାରେ ନିଯୁକ୍ତ ହେଲେ ସେ । ସାଧନ, ଭଜନ, ଗୁରୁସେବା କୌଣସିଟିରେ ସେ ଅସନ୍ତୁଷ୍ଟ କରି ନଥିଲେ ଶ୍ରୀ ଶ୍ରୀ ଗୁରୁଦେବଙ୍କୁ । ଫଳ ସ୍ୱରୂପ ଶ୍ରୀରୂପ ଗୋସ୍ୱାମୀ ପାଦ ଏହି ରାଧା ଦାମୋଦର ଦେବଙ୍କୁ ସ୍ୱୟଂ ପ୍ରକଟ କରାଇ ଜୀବ ଗୋସ୍ୱାମୀଙ୍କୁ ପ୍ରଦାନ କରିଥିଲେ ତାଙ୍କ ବିଗ୍ରହ ସେବା ଲାଗି । ଏ ଘଟଣା ଘଟିଥିଲା ୧୫୯୯ ମସିହାର ମାଘ ମାସ ଶୁକ୍ଳ ଦଶମୀ ତିଥିରେ ।

ଆଉରଙ୍ଗଜେବଙ୍କ ସମୟରେ ଅନ୍ୟ ବିଗ୍ରହମାନଙ୍କ ସହିତ ଏହି ରାଧା ଦାମୋଦର ବିଗ୍ରହ ମଧ୍ୟ ଜୟପୁରକୁ ସ୍ଥାନାନ୍ତରିତ ହୋଇଛନ୍ତି । ସେହି ଦାମୋଦର ପ୍ରଭୁ ଏବେ ତାଙ୍କର ପ୍ରତିଭୂ ରୂପେ ସେ ପ୍ରାଚୀନ ମନ୍ଦିରରେ ଅନ୍ୟ ଶ୍ରୀବିଗ୍ରହମାନଙ୍କ ସହିତ ସେବିତ ହେଉଛନ୍ତି । ତାଙ୍କ ସହିତ ଓଡ଼ିଶାର ଜୟଦେବ ଗୋସ୍ୱାମୀଙ୍କ ସେବିତ ରାଧା ମାଧବ କୃଷ୍ଣ ଦାସ କବିରାଜଙ୍କ ସେବିତ ରାଧା ବୃନ୍ଦାବନଚନ୍ଦ୍ର ଓ ଭୂଗର୍ଭ ପଣ୍ଡିତଙ୍କ ସେବିତ ରାଧା-ଛୈଳଚିକ୍କଣିଆଜୀଙ୍କ ସହିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦିବ୍ୟ ବିଗ୍ରହସବୁ ଓ ଶ୍ରୀ ସନାତନ ଗୋସ୍ୱାମୀଙ୍କ ସେବିତ ଶ୍ରୀ ଗୋବର୍ଦ୍ଧନ ଶୀଳା ମଧ୍ୟ ପୂଜିତ ହେଉଛନ୍ତି । ଗୌର ଲୀଳା କାଳର ଗୌରପାର୍ଷଦ ରାଗାନୁଗାମାର୍ଗୀ ଭକ୍ତ ଗଣଙ୍କର ଅସଂଖ୍ୟ ସମାଧି ଏହି ମନ୍ଦିର ପରିସରରେ ବିଦ୍ୟମାନ । କାର୍ତ୍ତିକ ମାସରେ ସାଧାରଣ ପରିକ୍ରମା ଓ ଦଣ୍ଡବତୀ ପରିକ୍ରମାକାରୀଙ୍କର ସଂଖ୍ୟା ଗଣିବା ଏବେ ମୁସ୍‌କିଲ ବ୍ୟାପାର ।

ଏହି ମନ୍ଦିର ପରିସରରେ ଶ୍ରୀଜୀବ ଗୋସ୍ୱାମୀ ପାଦଙ୍କର ସମାଧି, ଭୂଗର୍ଭ ପଣ୍ଡିତଙ୍କ ସମାଧି ସହିତ ଚୈତନ୍ୟ ଚରିତାମୃତ ଗ୍ରନ୍ଥର ରଚୟିତା ଶ୍ରୀକୃଷ୍ଣଦାସ କବିରାଜଙ୍କ ସମାଧି ମଧ୍ୟ ମୁଖ୍ୟ ସମାଧିରୂପେ ସ୍ଥାପିତ ହୋଇଛନ୍ତି ।

ସାରା କାର୍ତ୍ତିକ ମାସ ଭଜନ, କୀର୍ତ୍ତନ, ଗାନ, ନର୍ତ୍ତନ ପ୍ରବଚନ ଆଦିରେ ଏହି ମନ୍ଦିର ଦିବ୍ୟ ସ୍ପନ୍ଦନ ଖେଳାଏ ଆଜି ମଧ୍ୟ ଅଗଣିତ କୃଷ୍ଣ ଭକ୍ତମାନଙ୍କ ହୃଦୟ କନ୍ଦରରେ । ଦାମୋଦର ମାସ ସାରା କିଛି ନା କିଛି ଉତ୍ସବ ପ୍ରତିଦିନ ଅନୁଷ୍ଠିତ ହେଉଥାଏ । ପାଶ୍ଚାତ୍ୟ ଦେଶରେ କୃଷ୍ଣଚେତନା ଜାଗ୍ରତ ଲାଗି ନିଜ ଗୁରୁଙ୍କ ଠାରୁ ଠେକା ନେଇଥିବା

ଶ୍ରୀଳ ଅଭୟ ଚରଣ ଭକ୍ତିବେଦାନ୍ତ ସ୍ୱାମୀ ପ୍ରଭୁପାଦଙ୍କର ପ୍ରାରମ୍ଭିକ ଭଜନସ୍ଥଳୀ ଏହି ମନ୍ଦିର । ଏହି ମନ୍ଦିର ପରିସରରେ ବସି ସେ ପରମ ଶାସ୍ତ୍ର ଶ୍ରୀମଦ୍ଭାଗବତ ମହାଗ୍ରନ୍ଥର ଇଂରେଜୀ ଅନୁବାଦର ଶୁଭାରମ୍ଭ କରିଥିଲେ । ସେହିପରି ଅତିପରିଣତ ବୟସରେ ଆଖିକୁ ଭଲକରି ଦିଶୁ ନଥିବା ଚମ ଧୁଡୁ ଧୁଡୁ ଅବସ୍ଥାରେ ଶ୍ରୀକୃଷ୍ଣଦାସ କବିରାଜଜୀ ଚୈତନ୍ୟ ଚରିତାମୃତ ଗ୍ରନ୍ଥ ରଚନା ଲାଗି ଅନୁମତି ମାଗିଥିଲେ ଶ୍ରୀରାଧା-ଦାମୋଦର ଜୀଙ୍କୁ । ସେ ବିଗ୍ରହ ସମ୍ମୁଖରେ ସାଷ୍ଟାଙ୍ଗ ଦଣ୍ଡବତ କରୁଥିବା ସମୟରେ ଠାକୁରଙ୍କ ଧଣ୍ଡାମାଳ ଦୁଇଖଣ୍ଡ ହୋଇ ଛିଣ୍ଡି ପଡ଼ିଥିଲା । ମନ୍ଦିର ପୂଜାରୀ ମହାଶୟ ସେଇ ପ୍ରସାଦୀ ମାଳକୁ ଲମ୍ବାଇ ଦେଇଥିଲେ ଶ୍ରୀଯୁକ୍ତ କୃଷ୍ଣଦାସ କବିରାଜଙ୍କ ଗଳାରେ । ସତେକି ଗ୍ରନ୍ଥ ଲିଖନ ଲାଗି ଅନୁମତି ମିଳିଗଲା ତାଙ୍କୁ । ଫଳରେ ଜନ୍ମନେଲେ କଳିଯୁଗର ପାବନାବତାର ଶ୍ରୀଗୌରାଙ୍ଗ ଭକ୍ତମାନଙ୍କର ନିତ୍ୟ ପଠନୀୟ ଭକ୍ତକଣ୍ଠହାର ଶ୍ରୀ ଚୈତନ୍ୟ ଚରିତାମୃତ  ମହାଗ୍ରନ୍ଥ । ଯାହାକୁ ଭକ୍ତି ମାର୍ଗର ସ୍ନାତକୋତ୍ତର ପି.ଜି. ପାଠ୍ୟକ୍ରମରେ ମାନ୍ୟତା ମିଳିଛି ।

ଧନ୍ୟ ତୁମେ ଭଗବାନ ରାଧା ଦାମୋଦର । ଧନ୍ୟ ତୁମ ଭକ୍ତ ସମାଜ ଶ୍ରୀରୂପ-ସନାତନ-ଜୀବ-ଭୂଗର୍ଭ-କୃଷ୍ଣଦାସ କବିରାଜ-ପ୍ରଭୁପାଦ ଆଦି ଗୌରଭକ୍ତଗଣ । ଧନ୍ୟ ତୁମର ରାଗାନୁଗା ଭକ୍ତି ମାର୍ଗ ।

ଭକ୍ତ-ଭକ୍ତି-ଭଗବାନ-ଗୁରୁଙ୍କର ଜୟ ହେଉ ।

**୬. ଶ୍ରୀରାଧା-ଶ୍ୟାମସୁନ୍ଦରଜୀ ମନ୍ଦିର**

ପ୍ରଶ୍ନ-୧୮. ରାଜାନୁଗା ଭକ୍ତିମାର୍ଗର ଭକ୍ତମାନଙ୍କ ମତରେ ସତ୍ୟଯୁଗର ଦଣ୍ଡକମଣ୍ଡଳୁଧାରୀ ଶ୍ରୀ ବାମନଦେବ, ତ୍ରେତାଯୁଗର ଶ୍ରୀସୀତା-ରାମ ଓ ଦ୍ୱାପର ଯୁଗର ଶ୍ରୀରାଧା-କୃଷ୍ଣଙ୍କର ମିଳିତ ବିଗ୍ରହ ହିଁ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ରୂପେ ଲୀଳା କରିଥିଲେ । ସାଙ୍ଗରେ ଥାଆନ୍ତି ତାଙ୍କର ସେଇ ନିତ୍ୟ ପାରିଷଦଗଣ । ଦୁଷ୍ଟ ନିବାରଣ ଲାଗି ହାତରେ ଅସ୍ତ୍ର ଶସ୍ତ୍ର କିଛି ନାହିଁ । ଜୀବ ଉଦ୍ଧାରର ମହାନ ଅସ୍ତ୍ର କେବଳ ସେଇ କଳିସନ୍ତରଣ ଉପନିଷଦ ମନ୍ତ୍ର ହରେକୃଷ୍ଣ ମହାମନ୍ତ୍ର । ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କ ପୁରୀ ଟୋଟାଗୋପୀନାଥ ବିଗ୍ରହରେ (ମତାନ୍ତରେ ଶ୍ରୀଜଗନ୍ନାଥ ବିଗ୍ରହରେ) ଅପ୍ରକଟ ହୋଇଯିବା ପରେ ଜୀବ ଉଦ୍ଧାର ଲୀଳା ଏବେ ମଧ୍ୟ ଚାଲୁ ରହିଛି ବୋଲି କି ଅକାଟ୍ୟ ପ୍ରମାଣ ସେମାନେ ଦେଇଥାନ୍ତି ?

**ଅଦ୍ୟାପି ସେହି ଲୀଳା କରେ ଗୌରରାୟ ।**
**କୋନ୍ କୋନ୍ ଭାଗ୍ୟବାନ୍ ଦେଖିବାର ପାୟ ॥**

ଉ. ଏହି ଅକାଟ୍ୟ ଉକ୍ତିର ସତ୍ୟତା ପ୍ରତିପାଦନ କରିବା ଲକ୍ଷ୍ୟରେ ଶ୍ରୀରାଧା-ଶ୍ୟାମସୁନ୍ଦର ମନ୍ଦିରରେ ବୃନ୍ଦାବନର ଲୋଇ ବଜାରରେ ଶ୍ରୀ ଶ୍ରୀ ଶ୍ୟାମସୁନ୍ଦରଜୀ ବିଗ୍ରହ ବିଦ୍ୟମାନ ହୋଇଛନ୍ତି ।

ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁଙ୍କୁ କୃଷ୍ଣଲୀଳାର କନକମଞ୍ଜରୀ ଦାସୀ ବୋଲି କୁହାଯାଏ । ଶ୍ରୀ ଶ୍ୟାମାନନ୍ଦ ବୃନ୍ଦାବନ ପହଞ୍ଚିଲେ ଅଦମ୍ୟ ଉତ୍କଣ୍ଠାରେ ଶ୍ରୀକୃଷ୍ଣ ପ୍ରେମ ପ୍ରାପ୍ତି ଲକ୍ଷ୍ୟରେ । ଶ୍ରୀ ଗୌରଦାସ ପଣ୍ଡିତଙ୍କ ଶିଷ୍ୟ ଶ୍ରୀହୃଦୟ ଚୈତନ୍ୟ ପ୍ରଭୁଙ୍କର ଅତ୍ୟନ୍ତ ପ୍ରତିଭାଶାଳୀ ଅନୁଗତ ଶିଷ୍ୟ ଶ୍ରୀଶ୍ୟାମାନନ୍ଦ । ଶ୍ରୀଳ ସନାତନ ଗୋସ୍ୱାମୀ ତାଙ୍କୁ ନିଧୁବନର ନିତ୍ୟରାସସ୍ଥଳୀ କୁଞ୍ଜ ଝାଡୁ କରିବା ଦାୟିତ୍ୱ ଦେଲେ । ପରମ ପ୍ରେମରେ ନିଜର ମନବୁଦ୍ଧିକୁ ମଜ୍ଜନ କରି ରୀତିମତ ମନପ୍ରାଣ ଦେଇ ନିତ୍ୟ ଝାଡୁ ଲଗାଇବା ସେବା କଲେ ସେ । ଦିନେ ସୌଭାଗ୍ୟବଶତଃ ଶ୍ରୀରାଧାରାଣୀଙ୍କର ବାମ ଚରଣ କମଳର 'ମଞ୍ଜୁଘୋଷ' ନାମକ ସୁବର୍ଣ୍ଣ ନୂପୁର ପାଇଲେ । ଅବିଳମ୍ବେ ନିଜ ଧୋତି କାନିରେ ସଯତ୍ନରେ ବାନ୍ଧି ପକାଇଲେ ଶ୍ରୀଶ୍ୟାମାନନ୍ଦ ପ୍ରଭୁ । ଶ୍ରୀ ରାଧାଜୀ ଓ ସଖୀ ଲଳିତା ସ୍ଥୂଳ ମନୁଷ୍ୟ ରୂପରେ ପ୍ରକଟ ହୋଇ ପରଦିନ ଝାଡୁ କରିବା ବେଳେ ତାଙ୍କୁ ଜିଜ୍ଞାସା କଲେ ସେଇ ମଣିଖଚିତ ମହାର୍ଘ ନୂପୁର ବିଷୟରେ । ସେ କି ସହଜରେ ଛାଡ଼ିବା ଲୋକ । ଗୁରୁକୃପା ଶକ୍ତିଦ୍ୱାରା ସେ କହିଲେ, ''ଏଭଳି ଦିବ୍ୟ ନୂପୁରର ମାଲିକାଣୀ ଆପଣଙ୍କ ପରି ସ୍ଥୂଳ ଶରୀରଧାରୀ କୌଣସି ମାନବୀ କେବେ ହୋଇ ନପାରନ୍ତି । ଯାହାର ନୂପୁର ସେ ନିଜେ ଆସି ନେଇପାରନ୍ତି । ଦେବାରେ ମୋର ଆପତ୍ତି ନାହିଁ ।'' ସେତେବେଳେ ରାଧାରାଣୀ ଅନନ୍ୟୋପାୟ ହୋଇ ନିଜ ରାଗାନୁଗା ବିରଳ ଭକ୍ତକୁ କୃପାକଲେ ସ୍ୱରୂପ ଦର୍ଶନ କରାଇ । ତତ୍‌କ୍ଷଣାତ ମୂର୍ଚ୍ଛିତ ହୋଇ ଅଛାଡ଼ ଖାଇ ଲୋଟିପଡ଼ିଲେ ଶ୍ରୀ ଶ୍ୟାମାନନ୍ଦ ସେଇ ପବିତ୍ର ନିଧୁବନ ମାଟିରେ । ଲଳିତା ସଖୀଙ୍କ ଦ୍ୱାରା କାନିରୁ ଫିଟାଇ ନୂପୁର ହସ୍ତଗତ କଲେ ଶ୍ରୀଜୀ । ବଦଳରେ ସ୍ୱ ହୃଦୟ କନ୍ଦରରୁ ପ୍ରକଟ କରାଇ ଶ୍ରୀ ଶ୍ୟାମ ସୁନ୍ଦରଜୀଙ୍କ ବିଗ୍ରହଟିଏ ପ୍ରଦାନ କରି ଚେତନା ପ୍ରାପ୍ତ ଶ୍ୟାମାନନ୍ଦଙ୍କୁ ଆଦେଶ ଦେଇଗଲେ ସମ୍ଭାଳି ରଖିବାକୁ । ତାଙ୍କ କପାଳରେ ଦିବ୍ୟ ନୂପୁରର ଚିହ୍ନ ତିଳକ ରଖିଗଲେ ।

ସେଇ ଦିବ୍ୟ ଶ୍ରୀ ବିଗ୍ରହ ସ୍ନାନ, ମାର୍ଜନ, ଅଭିଷେକ କରାଗଲେ । ସେବାକୁଞ୍ଜ ନିକଟରେ ପ୍ରକାଣ୍ଡ ମନ୍ଦିର ନିର୍ମିତ ହେଲେ ରାଜସ୍ଥାନର ଭରତପୁର ରାଜାଙ୍କ ଆଦେଶରେ । ଆଉରଙ୍ଗଜେବଙ୍କ ସମୟରେ ଅନ୍ୟାନ୍ୟ ବିଗ୍ରହ ସ୍ଥାନାନ୍ତରିତ

ହେବାବେଳେ ଆକାରରେ କ୍ଷୁଦ୍ର ବିଗ୍ରହ ହୋଇଥିବା ହେତୁ ସେହି ମୂଳ ବିଗ୍ରହ ଅଦ୍ୟାପି ସେଇ ମନ୍ଦିରରେ ବିଦ୍ୟମାନ ଅଛନ୍ତି । କିନ୍ତୁ ରତ୍ନବେଦୀର କେନ୍ଦ୍ରସ୍ଥଳରେ ଅଛନ୍ତି ବର୍ତ୍ତମାନ ଆଉ ଏକ ଭବ୍ୟ ବିଶାଳ ଦିବ୍ୟ ମୂର୍ତ୍ତି ଯାହା ବେଦାନ୍ତ ଗ୍ରନ୍ଥର 'ଅଚିନ୍ତ୍ୟ ଭେଦାଭେଦ' ଭାଷ୍ୟର ଲେଖକ ଶ୍ରୀମନ୍ ବଳଦେବ ବିଦ୍ୟାଭୂଷଣଙ୍କ ଦ୍ୱାରା ସେବିତ ହେଉଥିଲେ । ଏ ମହାଶୟଙ୍କର ସମାଧି ମଧ୍ୟ ଏହି ମନ୍ଦିରର ପଛପଟେ ସ୍ଥାପିତ ହୋଇଛନ୍ତି । ଅନ୍ୟ ପକ୍ଷରେ ଶ୍ରୀଶ୍ୟାମାନନ୍ଦ ପ୍ରଭୁଙ୍କ ସମାଧି ସେହି ମନ୍ଦିରର ପାର୍ଶ୍ୱଦେଶରେ ଭୂଗର୍ଭରେ ସ୍ଥାପିତ ହୋଇଅଛନ୍ତି । ମନ୍ଦିରର ପୂଜାରୀଙ୍କୁ ଅନୁରୋଧ କଲେ ଚାବି ଖୋଲି ସେ ଭୂମିତଳ ସ୍ଥିତ ସମାଧିକୁ ଭକ୍ତମାନଙ୍କୁ ଦେଖାଇ ଦିଅନ୍ତି ।

ଶ୍ରୀବୃନ୍ଦାବନର ସକଳ ମନ୍ଦିରର ପ୍ରାତଃ ଆଳତୀ ହୁଏ କେବଳ ଏହି ଶ୍ରୀ ଶ୍ୟାମାସୁନ୍ଦର ମନ୍ଦିର ଆଳତି ପରେ । କାରଣ ସର୍ବାଗ୍ରେ ରାତ୍ରୀ ୩ଘଣ୍ଟା ୩୬ମିନିଟ୍‌ରେ ଏହି ମନ୍ଦିରର ବିଗ୍ରହମାନଙ୍କର ଆଳତୀ ହୋଇଥାଏ । ମୂଳ କ୍ଷୁଦ୍ର ବିଗ୍ରହ ବଦଳରେ କେନ୍ଦ୍ରରେ ବଡ଼ ବିଗ୍ରହଙ୍କର ପ୍ରତିଷ୍ଠା କରାଯିବା କାରଣ ସମ୍ବନ୍ଧରେ ପୂଜାରୀ ମହାଶୟ କହନ୍ତି– କ୍ଷୁଦ୍ର ବିଗ୍ରହଙ୍କର ବିଶେଷ ଶୃଙ୍ଗାର କରିବା ବସ୍ତ୍ର ଅଳଙ୍କାର ପିନ୍ଧାଇବା ଆଦି କାର୍ଯ୍ୟରେ ମନ ମାନିଲାନି ସେବକ ମାନଙ୍କର । ଅଗଣିତ ଦର୍ଶକଙ୍କର ସାକ୍ଷାତ ଦର୍ଶନରେ ମଧ୍ୟ ମନ ପୂରିଲାନି । ସୁତରାଂ ଏବେ ଆଉ ଗୋଟିଏ ବଡ଼ ବିଗ୍ରହ ନିର୍ମାଣ କରି ତାଙ୍କ ରାଜକୀୟ ଶୃଙ୍ଗାର କରାଯାଉଛି ମୂଳ ବିଗ୍ରହଙ୍କ ପାଖେ ପାଖେ ରଖାଯାଇ ।

କାର୍ତ୍ତିକ ମାସରେ ଏହି ମନ୍ଦିରରେ ଗାଉଣା, ବାଜଣା, ମହାମନ୍ତ୍ର କୀର୍ତ୍ତନ ସହିତ ମନ୍ଦିର ପରିକ୍ରମା ଅତ୍ୟନ୍ତ ପ୍ରେମ ଉନ୍ମାଦନା ଉତ୍ପାଦକ । କାର୍ତ୍ତିକ ମାସ ସାରା ବିଗ୍ରହମାନଙ୍କର ଭିନ୍ନ ଭିନ୍ନ ବେଶ ଶୃଙ୍ଗାର କରାଯାଏ । କାର୍ତ୍ତିକ ପୂର୍ଣ୍ଣିମା ଦିନର ରାସଲୀଳା ଝାଙ୍କି ନିଷ୍କାମ କୃଷ୍ଣଭକ୍ତମାନଙ୍କର ଅବଶ୍ୟ ଦର୍ଶନୀୟ । ମାସ ସାରା ପ୍ରବଚନ ପାରାୟଣ ଆଦି ମଧ୍ୟ ଅନୁଷ୍ଠିତ ହୋଇଥାଏ ଏହି ମନ୍ଦିରରେ ।

**୭. ବାଙ୍କବିହାରୀଜୀ/ଶ୍ରୀବିହାରଜୀ ମନ୍ଦିର**

ପ୍ରଶ୍ନ–୧୯. ସର୍ବଶାସ୍ତ୍ର ମୁକୁଟମଣି ଶ୍ରୀମଭାଗବତରେ ସ୍ୱୟଂ ଭଗବାନ ଉଦ୍ଧବଜୀଙ୍କୁ କହିଛନ୍ତି ଯେ ସେ ଅଷ୍ଟାଙ୍ଗ ଯୋଗ, ସାଂଖ୍ୟ ଦର୍ଶନ ଜ୍ଞାନପ୍ରାପ୍ତି, ରାଜଧର୍ମ, ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ ନାରୀ ଧର୍ମ ଆଦିର ପାଳନଦ୍ୱାରା, ବେଦ ଅଧ୍ୟୟନ ଦ୍ୱାରା, କଠିନ ତପସ୍ୟା ଦ୍ୱାରା ଗୋଦାନ–ଭୂଦାନ–ପ୍ରାଣ ଦାନାଦି ଦ୍ୱାରା ବଶୀଭୂତ ହୋଇପାରନ୍ତି ନାହିଁ । ହୁଅନ୍ତି କେବଳ ତାଙ୍କଠାରେ କରାଯାଉଥିବା ଅନନ୍ୟ ଭକ୍ତିଦ୍ୱାରା । ଭଗବାନ ଭକ୍ତ ବଶୀଭୂତ ବୋଲି ବୃନ୍ଦାବନ ଧାମରେ କିପରି ନିଜ ଭକ୍ତିକୁ ସାବ୍ୟସ୍ତ କରିଛନ୍ତି ?

**ନ ସାଧୟତି ମାଂ ଯୋଗୋ ନ ସାଂଖ୍ୟଂ ଧର୍ମ ଉଦ୍ଧବ ।**
**ନ ସ୍ୱାଧ୍ୟାୟଃ ତପଃ ତ୍ୟାଗୋ ଯଥା ଭକ୍ତିଃ ମମ ଉର୍ଜିତାଃ ॥୨୦॥**

ଉ. ଶ୍ରୀ ଯମୁନା କୂଳରେ ଶ୍ରୀମଦନ ମୋହନଜୀ ମନ୍ଦିର ସନ୍ନିକଟ ଓ ସେହି ମନ୍ଦିରର ଦକ୍ଷିଣ ଦିଗରେ ଅବସ୍ଥିତ ଶ୍ରୀ ଶ୍ରୀ ବାଙ୍କେବିହାରୀଜୀଙ୍କ ମନ୍ଦିରରେ ବିରାଜିତ ସ୍ୱୟଂ ପ୍ରକଟ ବିଗ୍ରହରେ । ସେ କେବଳ ନିଜ ଭକ୍ତର ପ୍ରେମ ଦଉଡ଼ିରେ ବନ୍ଧା । ଆଜକୁ ପାଞ୍ଚ ଶହ ବର୍ଷ ପୂର୍ବେ ସ୍ୱାମୀ ଶ୍ରୀ ହରିଦାସ ମହାରାଜ ପ୍ରସିଦ୍ଧ ସଂଗୀତ ସମ୍ରାଟ ତାନସେନଙ୍କ ଗୁରୁ ଥିଲେ । ଥରେ ଭାରତର ସମ୍ରାଟ୍ ଆକବର ତାନସେନ୍‌ଙ୍କ କୃପାରୁ ପ୍ରସିଦ୍ଧ ହରିଭକ୍ତ ହରିଦାସ ସ୍ୱାମୀଙ୍କ ସଙ୍ଗୀତ ମୂର୍ଚ୍ଛନା ନିଶାର୍ଦ୍ଧରେ ଶ୍ରୀଧାମ ବୃନ୍ଦାବନ ନିଧୁବନରେ ଶ୍ରବଣ କରି ଅତ୍ୟନ୍ତ ପ୍ରଭାବିତ ହୋଇଥିଲେ ।

ସନ୍ଥ ହରିଦାସ ତାଙ୍କ ଦିବ୍ୟ ସଙ୍ଗୀତ ଗାନ କରି ନିଧୁବନ ସ୍ଥିତ ବିଶାଖା କୁଣ୍ଡରୁ ଶ୍ରୀ ବାଙ୍କେବିହାରୀଙ୍କ ଦିବ୍ୟ ବିଗ୍ରହକୁ ପ୍ରକଟ କରାଇଥିଲେ । ପବିତ୍ର ନିଧୁବନରେ ଏବେ ଏହି ଘଟଣାକୁ ଘୋଷଣା କରୁଛନ୍ତି ତାଙ୍କ ସମାଧି ପୀଠ ପବିତ୍ର ନିଧୁବନରେ ବିଦ୍ୟମାନ ହୋଇ । ସନ୍ଥ ହରିଦାସଙ୍କ ଦେହାନ୍ତ ପରେ ତାଙ୍କ ଶିଷ୍ୟମାନେ ବର୍ତ୍ତମାନର ମନ୍ଦିରରେ ତାଙ୍କୁ ପ୍ରତିଷ୍ଠା କରି ସେବା ପୂଜା ବନ୍ଦୋବସ୍ତ କରିଛନ୍ତି । ଔରଙ୍ଗଜେବଙ୍କ ଆକ୍ରମଣ କାଳରେ ଏହି ଶ୍ରୀବିଗ୍ରହ ମଧ୍ୟ ବୃନ୍ଦାବନ ବାହାରକୁ ଯାଇନାହାନ୍ତି । ସାନ ବିଗ୍ରହଟିଏ ହୋଇଥିବା କାରଣକୁ ଯତ୍ନ ସହକାରେ ତାଙ୍କୁ ତାଙ୍କ ଭକ୍ତମାନେ ଗୁପ୍ତରେ ଲୁଚାଇ ରଖିଦେଇଥିଲେ । ସଂକଟ ଟଳିଯିବା ପରେ ମନ୍ଦିରରେ ପୁନଃ ସ୍ଥାପନ କରିଥିଲେ ।

ଶ୍ରୀ ବିହାରୀଜୀଙ୍କ ଶ୍ରୀଅଙ୍ଗ ପ୍ରକଟ କାଳରେ ତିନି ଜାଗାରେ(ଆଣ୍ଠୁ, ଅଣ୍ଟା ଓ ଗ୍ରୀବା) ତେଢ଼ା ହୋଇ ଥିବାରୁ ତାଙ୍କର ମୂଳରୁ ଏଭଳି ବାଙ୍କେ ବୋଲି ନାମ କରଣ ହୋଇଛି । ସେ ପୁରୀ ଶ୍ରୀଜଗନ୍ନାଥଙ୍କ ଭଳି ବଡ଼ ରସିକ ଠାକୁର । ଥରେ ଜଣେ ଭକ୍ତ ତାଙ୍କ ଦର୍ଶନ କରୁ କରୁ ଏକାଗ୍ରଭାବରେ ଠାକୁରଜୀଙ୍କୁ ଅନେକ ସମୟ ଧରି ଦର୍ଶନ କରନ୍ତେ ସେ ମୋହିତ ହୋଇଗଲେ । ତାଙ୍କୁ କୃପା କରିବାକୁ ସେଇ ରାତିରେ ମନ୍ଦିର ଛାଡ଼ି ଭକ୍ତ ସାଙ୍ଗରେ ପଳାଇ ଗଲେ । ପରଦିନ ସକାଳେ ପୂଜାରୀ ଦେଖନ୍ତି ମନ୍ଦିର ଖାଲି । ଠାକୁର ନାହାନ୍ତି । ବହୁ ଖୋଜାଖୋଜି ପରେ ସେଠାରୁ ପ୍ରାୟ ୬୦କି.ମି. ଦୂର ଆଲିଗଡ଼ର ଏକ ଗ୍ରାମରେ ତାଙ୍କୁ ଦେଖିବାକୁ ମିଳିଲା । ତାଙ୍କୁ ଆଣି ପୁଣି ମନ୍ଦିରରେ ସ୍ଥାପନ କରାଗଲା । ସେଇଦିନଠାରୁ ମନ୍ଦିରରେ ତାଙ୍କ ଦର୍ଶନରେ କଟକଣା ଜାରି ହେଲା । ଝଲକ ଦର୍ଶନ ବା ଝାଙ୍କି ଦର୍ଶନ ବ୍ୟବସ୍ଥା ହେଲା । ଆଜି ମଧ୍ୟ ପ୍ରତି ଦୁଇ ତିନି ମିନିଟରେ ତାଙ୍କ ଆଗରେ ପରଦା ଟାଣି ତାଙ୍କର ଦର୍ଶନ ମଝିରେ ମଝିରେ ବନ୍ଦ କରାଯାଇଥାଏ ।

କେବଳ ଅକ୍ଷୟ ତୃତୀୟ ଦିନ ତାଙ୍କ ଚରଣ କମଳ ଦର୍ଶନ ମିଳେ । ତାଙ୍କ ପାଖରେ ଏଯାଏଁ ଶ୍ରୀରାଧା ରାଣୀ ବିଜେ କରିନାହାନ୍ତି । ପୂଜାରୀ ମାନଙ୍କର ତାଙ୍କୁ ଭାରି ଡ଼ର । ସେ ଯେ ରସିକ ଠାକୁର । କାଳେ କୁଆଡ଼େ କେତେବେଳେ କାହା ସାଙ୍ଗରେ ପଳାଇବେ । ବୃନ୍ଦାବନ ଧାମର ଏହା ଏକମାତ୍ର ମନ୍ଦିର ଯେଉଁଠାରେ ସକାଳର ମଙ୍ଗଳ ଆଳତୀ କରାହୁଏ ନାହିଁ । କାରଣ ବାଙ୍କେବିହାରୀଜୀ ନିଧୁବନରେ ରାତିସାରା ରାସରେ ମାତିଥାଆନ୍ତି । ତେଣୁ ସକାଳୁ ତାଙ୍କୁ ଉଠାଇବାକୁ ପୂଜାରୀମାନେ ସାହସ କରିପାରନ୍ତି ନାହିଁ । ତାଙ୍କ ଶୃଙ୍ଗାର ମଧ୍ୟ ଅତି ବିଚିତ୍ର ଧରଣର । ସବୁଦିନେ ତାଙ୍କ ହାତରେ ବଂଶୀ ଦିଆଯାଏ ନାହିଁ । ପିଲାଲୋକ ଭରସା କ'ଣ ? ମୁରଲୀ ଫୁଙ୍କି କ'ଣ ବୋଲେ କ'ଣ କାଣ୍ଡ ଘଟାଇ ବସିବେ । ସୁତରାଂ ବିଧିରକ୍ଷା ପାଇଁ ବର୍ଷକରେ ଦିନେ ରାସପୂର୍ଣ୍ଣିମା ଦିନ ସଂଧ୍ୟାବେଳେ କେବଳ ତାଙ୍କ ଶ୍ରୀହସ୍ତରେ ବଂଶୀ ଧରାଇ ଦିଆଯାଏ ।

ତାଙ୍କ ମନ୍ଦିରରେ ବାହାର ପ୍ରସାଦ ସମର୍ପଣ କରାଯାଏ ନାହିଁ । ସକଳ ପ୍ରସାଦ ତାଙ୍କ ମନ୍ଦିର ବେଢ଼ାରେ କେବଳ ପ୍ରସ୍ତୁତ କରାଯାଇଥାଏ । ତାଙ୍କ ଦର୍ଶନ ସମୟ ପୂର୍ବାହ୍ନ ନଅରୁ ବାରଘଣ୍ଟା ଓ ଅପରାହ୍ନ ଛଅରୁ ନଅଘଣ୍ଟା । ସେହି ଶ୍ରୀବାଙ୍କେ ବିହାରୀଙ୍କୁ ଦୂରରୁ ଜୁହାର ।

୮. ଶ୍ରୀ ଜୀ ବା ଶ୍ରୀରାଧାରାଣୀ ମନ୍ଦିର

ପ୍ରଶ୍ନ-୨୦. ମଥୁରାର ରାଜା କଂସ ଭୟରେ ନନ୍ଦରାଜା ସକଳ ପ୍ରଜାମାନଙ୍କ ସହିତ ଗୋକୁଳରୁ ଉଠିଗଲେ । କିଛିଦିନ ''ଛଟିକରା'' ଠାରେ ରହି ପରେ ନନ୍ଦୀଶ୍ୱର ପର୍ବତ ଉପରେ ନନ୍ଦଗାଁଓ ସ୍ଥାପନ କରି ସ୍ଥାୟୀ ଭାବରେ ବସବାସ କରିଥିଲେ । ସେହିପରି ଶ୍ରୀରାଧାରାଣୀ ରାଜା ବୃଷଭାନୁଙ୍କ ରାଜ୍ୟ ରାଓଲ ଠାରେ ପ୍ରକଟ ହୋଇଥିଲେ ଓ ପରେ 'ବରସାନା'/'ବର୍ଷାଣା' ଠାରେ ବ୍ରହ୍ମଗିରି ପର୍ବତ ଉପରେ ସ୍ଥାୟୀ ଭାବରେ ବସବାସ କଲେ । ରାଜାବୃଷଭାନୁଙ୍କ ନାମ ଅନୁସାରେ ରାଜଧାନୀର ନାମ ବର୍ଷାଣା ରଖାଯାଇଥିଲା । ଆଧୁନିକ ବର୍ଷାଣା ଧାମର ସର୍ବଶ୍ରେଷ୍ଠ ମନ୍ଦିରରେ ବିରାଜମାନ ଶ୍ରୀମତୀ ରାଧାରାଣୀ(ସଂକ୍ଷେପରେ ଶ୍ରୀଜୀ) କାହିଁକି ବୃନ୍ଦାବନରେ ପ୍ରକଟ ହେଲେ ?

**ଭୁବୋ ଭାର-ଅବତାରାୟ ଗଚ୍ଛନ୍ ଦେବୋ ଜନାର୍ଦ୍ଦନଃ ।**
**ରାଧାଂ ପ୍ରାହ ପ୍ରିୟେ ଭୀରୁ ଗଚ୍ଛ ତ୍ୱଂ-ଅପି ଭୂତଳେ ।୬ ।**

ଉ. କଂସ, ଶିଶୁପାଳ, ଦନ୍ତାବକ୍ର, କାଳଯବନ ଆଦି ହରି ବିଦ୍ୱେଷୀ ଆସୁରୀ ପ୍ରବୃତ୍ତିର ଲୋକଙ୍କୁ ଉଦ୍ଧାର କରିବାକୁ ଜଗତର ନାଥ ଜଗନ୍ନାଥ(ଶ୍ରୀକୃଷ୍ଣ/ଜନାର୍ଦ୍ଦନ)

ଲୀଳା କରିବାକୁ ଇଚ୍ଛା ପ୍ରକଟ କଲେ ବ୍ରହ୍ମ-ଶଙ୍କର-ଇନ୍ଦ୍ର-ଭୂଦେବୀ ଆଦିଙ୍କ କାତର ପ୍ରାର୍ଥନାରେ ବଶୀଭୂତ ହୋଇ । ଲୀଳା ଏକାକୀ ହେବ କିପରି ? ଗୋବର୍ଦ୍ଧନ ପର୍ବତ, ଯମୁନା ନଦୀ, ବୃନ୍ଦବାନ ଧାମ ସହିତ ଗୋପୀ, ଗୋପାଳଙ୍କ ସହିତ ରାଧାରାଣୀଙ୍କୁ ମଧ୍ୟ ମର୍ତ୍ତ୍ୟକୁ ଆଣିଲେ । ଲୀଳା କଲେ । ଲୀଳା ଶେଷରେ ୧୨୫ବର୍ଷ ବୟସରେ ଅପ୍ରକଟ ହୋଇଗଲେ । ଯାହାକୁ ସ୍ୱଧାମଗମନ ଲୀଳା କୁହାଯାଏ ।

ମହାଭାବମୟୀ କୃଷ୍ଣପ୍ରେୟସୀ ଶ୍ରୀରାଧାଙ୍କ ଅପ୍ରକଟ ପରେ ପରେ ରାଜା ବଜ୍ରନାଭ ଏହି ବ୍ରହ୍ମଗିରି ପର୍ବତ ଉପରେ ଶ୍ରୀରାଧା-ଶ୍ରୀ ଲଳିତା ବିଗ୍ରହ ସ୍ଥାପନ ପୂର୍ବକ ଏକ ସୁଉଚ୍ଚ, ବିଶାଳ ଭବ୍ୟ ମନ୍ଦିର ନିର୍ମାଣ କରିଥିଲେ । ଏହା ବର୍ଷାନା ଧାମର ବର୍ତ୍ତମାନର ସର୍ବଶ୍ରେଷ୍ଠ ଆକର୍ଷଣ ଅଟେ । ପୂର୍ବେ ଏଠାରେ ବୃଷଭାନୁ ରାଜାଙ୍କର ରାଜପ୍ରସାଦ ବିରାଜମାନ ଥିଲା । ଶ୍ରୀଜୀଙ୍କର ଏହି ଦିବ୍ୟ ବିଗ୍ରହଙ୍କୁ ଦାକ୍ଷିଣାତ୍ୟ ରାଜ୍ୟର ସନ୍ଥ ଶ୍ରୀ ନାରାୟଣ ଭଟ୍ଟଗୋସ୍ୱାମୀ ସ୍ୱପ୍ନାଦେଶ ପ୍ରକାରେ ମୃତ୍ତିକା ଖୋଦନ କରାଇ ପ୍ରକଟ କରାଇଥିଲେ । ପରେ ପରେ ବର୍ତ୍ତମାନର ଏହି ମନ୍ଦିର ନିର୍ମାଣ କରାଇ ତାଙ୍କର ପୂଜା ପାଠର ସେବା ବ୍ୟବସ୍ଥା କରିଥିଲେ ।

ଏହି ପର୍ବତ ଉପରେ ପ୍ରସିଦ୍ଧ ଦାନ ଗଡ଼, (ଠାକୁରଜୀ କଂସ ରାଜାଙ୍କ ଭଣଜା ବୋଲି ନିଜକୁ କହି ଟିକସ ବାହାନାରେ ଦୁଧ ଦହି ଲହୁଣୀ ଆଦି ଦାନ ମାଗିବା ସ୍ଥାନ) ମାନ ଗଡ଼(ଶ୍ରୀଜୀ ଅଭିମାନ କରନ୍ତେ ମାଲୁଣୀ, କାଚରାଣୀ, ନାପିତୁଣୀ, ସନ୍ୟାସିନୀ ଆଦି ବେଶରେ ଠାକୁରଜୀ ତାଙ୍କୁ ମନେଇବା ଲୀଳା ସ୍ଥାନ) ଓ ମୟୂରକୁଟୀ(ଠାକୁରଜୀ ଓ ଶ୍ରୀଜୀ ଉଭୟ ମୟୂର ଓ ମୟୂରୀ ରୂପରେ ଲୀଳା କରିବା ସ୍ଥାନ) ଦର୍ଶନୀୟ ।

ଏହି ପର୍ବତର ନିମ୍ନଦେଶରେ ଶ୍ରୀବୃଷଭାନୁ ମନ୍ଦିର, ସାଙ୍କରୀ ଖୋର(ଦୁଇ ପାହାଡ଼ ମଝିରେ ଥିବା ସଂକୀର୍ଣ୍ଣ ଖୋଲ ଗଳି ରାସ୍ତା, ଯେଉଁବାଟ ଦେଇ ବ୍ରଜଗୋପାଳୁଣୀ ମାନେ ଦୁଧ, ଦହି ଆଦି ମୁଣ୍ଡରେ ଧରି ଠାକୁରଜୀଙ୍କୁ ଲୁଚି ଯିବା ପାଇଁ ଉଦ୍ୟମ କରୁଥିଲେ), ପ୍ରେମ ସରୋବର(ଯେଉଁ ଦିବ୍ୟ ପୁଷ୍କରିଣୀରୁ ଭ୍ରମରଟିଏ ଉଡ଼ି ଆସି ରାଧାରାଣୀଙ୍କ ବଦନ କମଳର ସୁଗନ୍ଧରେ ମୋହିତ ହୋଇ ଉପଦ୍ରବ କରୁଥିଲା । ଠାକୁରଜୀ କୃପାକରି ତାଙ୍କୁ ଭ୍ରମର ଉପଦ୍ରବରୁ ରକ୍ଷା କରିଥିବା ସ୍ଥାନ) ଊଁଚାଗାଁ(ଲଳିତା ସଖୀଙ୍କ ପ୍ରକଟ ସ୍ଥାନ) ଓ ସଂକେତ ଗାଁଓ(ନନ୍ଦ ଗାଉଁ ଓ ବର୍ଷାଣା ଉଭୟଠାରୁ ସମାନ ଦୂରତାରେ ଅବସ୍ଥିତ ସ୍ଥଳ ଯେଉଁଠାରେ ଶ୍ରୀରାଧା-କୃଷ୍ଣଙ୍କର କୈଶୋର ଅବସ୍ଥାରେ ପ୍ରଥମ ମିଳନ ହୋଇଥିଲା) ଇତ୍ୟାଦି ଅନେକ ଅନେକ ଲୀଳାସ୍ଥଳୀ ଦର୍ଶନୀୟ ଅଟେ ।

## ୯. ଶ୍ରୀ ରଙ୍ଗଜୀ/ଶ୍ରୀରଙ୍ଗନାଥଜୀ ମନ୍ଦିର

ପ୍ରଶ୍ନ-୨୧. ଶ୍ରୀଗୋବିନ୍ଦ ଦେବଙ୍କ ମନ୍ଦିର ନିକଟରେ ଏହି ପ୍ରସିଦ୍ଧ ଲକ୍ଷ୍ମୀ-ନାରାୟଣ ମନ୍ଦିର ବିଦ୍ୟମାନ । ଦକ୍ଷିଣ ଭାରତର କାବେରୀ ନଦୀ କୂଳରେ ଶ୍ରୀରଙ୍ଗମ ସହରରେ ଅବସ୍ଥିତ ଶ୍ରୀରଙ୍ଗନାଥଜୀଙ୍କ ମନ୍ଦିର ନିର୍ମାଣ ଶୈଳୀରେ ଏହା ଶ୍ରୀ ବୃନ୍ଦାବନ ଧାମରେ ନିର୍ମିତ ହୋଇଛି । ଶ୍ରୀ ସୀତାରାମ ଭଜନକାରୀଙ୍କୁ ରାମାନୁଜୀ ଓ ରାମାନନ୍ଦୀ ବୈଷ୍ଣବ କୁହାଯାଏ । ଶ୍ରୀରାଧାକୃଷ୍ଣ ଭଜନକାରୀଙ୍କୁ କୃଷ୍ଣାନନ୍ଦୀ ବୈଷ୍ଣବ କୁହାଗଲା ବେଳେ ବୈକୁଣ୍ଠ ବିହାରୀ ବିଷ୍ଣୁଙ୍କ ସହିତ ମହାଲକ୍ଷ୍ମୀ ଭଜନକାରୀ ମଧ୍ୟ ନିଜକୁ ବୈଷ୍ଣବ ବୋଲି ଦାବି କରିବା ଯୁକ୍ତିଯୁକ୍ତ ନୁହେଁ କି ?

**ଈଶ୍ୱରଃ ପରମଃକୃଷ୍ଣଃ ସତ୍-ଚିତ୍-ଆନନ୍ଦ ବିଗ୍ରହଃ ।**
**ଅନାଦିଃ-ଆଦି-ଗୋବିନ୍ଦଃ ସର୍ବକାରଣ କାରଣମ୍ ।।୫।।**

ଉ. କୃଷ୍ଣାନନ୍ଦୀ ସାଧକମାନଙ୍କ ମତରେ ଶ୍ରୀକୃଷ୍ଣ ହିଁ ଗୋଲୋକ ବିହାରୀ ଠାକୁର ସର୍ବକାରଣ କାରଣ । ତଥାପି ଲକ୍ଷ୍ମୀ-ନାରାୟଣଙ୍କ ଭକ୍ତଗଣଙ୍କ ମତରେ ଶ୍ରୀମନ ନାରାୟଣ ହିଁ ମୂଳ ଠାକୁର । ତାଙ୍କର ଅବତାର ଶ୍ରୀକୃଷ୍ଣ । ଶ୍ରୀ ନାରାୟଣ ହିଁ ଅବତାରୀ । ତଦ୍‌ବିତ୍‌ମାନେ କିନ୍ତୁ ଅଯଥା ତର୍କ ଜଞ୍ଜାଳରେ ନ ପଶି କହନ୍ତି ଉଭୟମତ ସେମାନଙ୍କ ବିଶ୍ୱାସର ଗଭୀରତା ଓ ସାଧନାର ପାହାଚ ଅନୁସାରେ ଠିକ୍ । ଏହା ସ୍ୱମତ ମଣ୍ଡନ ଓ ପରମତ ଖଣ୍ଡନ ଚେଷ୍ଟାରୁ ଊର୍ଦ୍ଧ୍ୱରେ ରଖାଯିବା ଉଚିତ ।

ଶ୍ରୀବୃନ୍ଦାବନର କେନ୍ଦ୍ରସ୍ଥଳରେ ବିଦ୍ୟମାନ ଏହି ମନ୍ଦିର ଗୋଟିଏ ନୁହେଁ ଦୁଇଟି ନୁହେଁ ଚାରିପ୍ରସ୍ଥ ପ୍ରାଚୀର ଯୁକ୍ତ । ମନ୍ଦିରର ନିର୍ମାଣଶୈଳୀ ଏପରି ହୋଇଛି ଯେ ସକଳ ପାର୍ଶ୍ୱଦେବତାମାନଙ୍କୁ ବୁଲି ବୁଲି ଦର୍ଶନ କରିସାରିବା ବେଳକୁ ମନ୍ଦିରର ପରିକ୍ରମା ଆପେ ଆପେ ହୋଇଯାଏ । ଠାକୁରଜୀଙ୍କ ବିଗ୍ରହ ସମ୍ମୁଖରେ ସୁବର୍ଣ୍ଣ ତାଳଗଛ ଗରୁଡ଼ ସ୍ତମ୍ଭ ଆକାରରେ ଶ୍ରୀମନ୍ ଲକ୍ଷ୍ମୀନାରାୟଣଙ୍କ ଐଶ୍ୱର୍ଯ୍ୟ ଡ଼ିଣ୍ଡିମ ପିଟୁଛନ୍ତି । ମନ୍ଦିର ମଧ୍ୟରେ ଏକ ମନୋରମ ପୁଷ୍କରିଣୀ ଗଜରାଜ କୁଣ୍ଡ ବିଦ୍ୟମାନ । ଶ୍ରାବଣ ମାସ ପୂର୍ଣ୍ଣିମା ଦିନ ଏଠାରେ ଗଜେନ୍ଦ୍ର ମୋକ୍ଷଣ ଲୀଳା ମହାସମାରୋହରେ ପ୍ରତିବର୍ଷ ପାଳିତ ହୁଏ ।

ମନ୍ଦିର ପରିସରରେ ଚତୁଃସନଙ୍କ ବିଗ୍ରହ, ଯମୁନାଚାର୍ଯ୍ୟ, ରାମାନୁଜ ଆଚାର୍ଯ୍ୟ, ଶ୍ରୀସୀତା-ରାମଙ୍କ ବିଗ୍ରହ ସହିତ ଶ୍ରୀବେଣୁଗୋପାଳଙ୍କ ଦିବ୍ୟ ମୂର୍ତ୍ତି ମଧ୍ୟ ଦର୍ଶକ ହୃଦୟକୁ ପ୍ରେମାପ୍ଲୁତ କରି ପକାଏ । ଏଠାରେ ରଥୋତ୍ସବ, ବୈକୁଣ୍ଠ ଉତ୍ସବ, ଶ୍ରୀରାମଲୀଳା ଓ ଶ୍ରୀକୃଷ୍ଣ ଲୀଳା ଅଭିନୟ ଆଦି ଅନୁଷ୍ଠିତ ହେବା ସମୟରେ ମନ୍ଦିର ପରିସରରେ ଅଭୂତପୂର୍ବ ଜନସମାଗମ ହୋଇଥାଏ ।

ଦାକ୍ଷିଣାତ୍ୟ ପ୍ରଦେଶର ଶ୍ରୀରାଧା କୃଷ୍ଣ ଦାସ ଓ ଶ୍ରୀ ଗୋବିନ୍ଦ ଦାସ ନାମରେ ଦୁଇଜଣ ପରମବୈଷ୍ଣବ ସାଧକ ବହୁମୂଲ୍ୟ ଧନ ବ୍ୟୟ କରି ଏହି ରାଜକୀୟ ଶୈଳୀରେ ନିର୍ମିତ ବିଶାଳ ଭବ୍ୟ ମନ୍ଦିର ନିର୍ମାଣ କରିଥିଲେ । ଭବିଷ୍ୟତରେ ବିଭିନ୍ନ ଲୀଳା ଉତ୍ସବ ଅନୁଷ୍ଠାନ ଲାଗି ସୁନା-ରୂପା-ପିତଳ ଆଦି ଠାକୁରଙ୍କ ବାହାନ, ପାଲିଙ୍କି, ରତ୍ନ ପଲଙ୍କ, ରଥ, ସିଂହାସନ ସବୁ ନିର୍ମାଣ କରିବା ବ୍ୟବସ୍ଥା ସହିତ ଭବିଷ୍ୟତ ରକ୍ଷଣା ବେକ୍ଷଣ ସେବା ପୂଜା ବ୍ୟବସ୍ଥା ମଧ୍ୟ ସେ ଦୁହେଁ ଖଞ୍ଜିଦେଇ ଯାଇଛନ୍ତି ।

ସମଗ୍ର ମନ୍ଦିର, ପ୍ରାଚୀର, ପ୍ରାସାଦ, ପାବଛ ଆଦି ଫିକା(ପିଙ୍କ୍) ମାର୍ବଲରେ ସୁଉଚ୍ଚ ଓ ସୁଦୃଢ଼ ପ୍ରାଚୀର୍ ସବୁ ସଂପୂର୍ଣ୍ଣ ଦକ୍ଷିଣ ଭାରତୀୟ ଶୈଳୀରେ ଶ୍ରୀରଙ୍ଗନାଥ, ବିଷ୍ଣୁ କାଞ୍ଚି ଓ ଶିବ କାଞ୍ଚି ମନ୍ଦିର ଢ଼ାଞ୍ଚାରେ ନିର୍ମାଣ କରାଯାଇଛି । ବୃନ୍ଦାବନ ବସଷ୍ଟାଣ୍ଡ୍‌ର ଏହା ନିକଟତମ ଅତି ବିଶାଳ ମହାର୍ଘ ମନ୍ଦିର ।

**୧୦. ଗୋପୀଶ୍ୱର/ଗୋପେଶ୍ୱର ମନ୍ଦିର**

ପ୍ରଶ୍ନ-୨୨. ଶ୍ରୀବୃନ୍ଦାବନଧାମ ଶ୍ରୀକୃଷ୍ଣାନନ୍ଦୀ ବୈଷ୍ଣମମାନଙ୍କର ସର୍ବଶ୍ରେଷ୍ଠ ପ୍ରସିଦ୍ଧ କ୍ଷେତ୍ର । ତଥାପି ଦେବଦେବ ମହାଦେବ ବୃନ୍ଦାବନ କ୍ଷେତ୍ରର କ୍ଷେତ୍ରପାଳର ମାନ୍ୟତା ପାଇବାର କାରଣ କିସ ?

**ନିମ୍ନଗାନାଂ ଯଥା ଗଙ୍ଗା　　　　ଦେବାନାଂ ଅଚ୍ୟୁତୋ ଯଥା ।**
**ବୈଷ୍ଣବାନାଂ ଯଥା ଶମ୍ଭୁଃ　　　　ପୁରାଣାନାଂ ଇଦଂ ତଥା ॥୧୬॥**

ଉ. ଶ୍ରୀମଦ୍ଭାଗବତଙ୍କ ମତରେ ସକଳ ନଦୀମାନଙ୍କ ମଧ୍ୟରେ ଗଙ୍ଗା, ଦେବୀ ଦେବତାମାନଙ୍କ ମଧ୍ୟରେ ଶ୍ରୀମନ୍ ନାରାୟଣ ଓ ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରୀମଦ୍ଭାଗବତ ଶ୍ରେଷ୍ଠ ବୋଲି ସ୍ୱୀକୃତ । ସେହିଭଳି ଚତୁଃସନ, ଶ୍ରୀନାରଦ, ସପ୍ତର୍ଷି ସହିତ ସେମାନଙ୍କ ପିତାଜୀ ସୃଷ୍ଟିକର୍ତ୍ତା ବ୍ରହ୍ମଦେବଙ୍କ ଅପେକ୍ଷା ବୈଷ୍ଣବ ମାନଙ୍କ ମଧ୍ୟରେ ଶ୍ରୀ ଶଙ୍କରଜୀ ସର୍ବଶ୍ରେଷ୍ଠ ଅଟନ୍ତି । ତାଙ୍କ କୃପା ବା ଅନୁମତି ବିନା ବୃନ୍ଦାବନରେ କୌଣସି ଜୀବର ପ୍ରବେଶ ନିଷିଦ୍ଧ । ଏପରିକି ଅଲିଅଳ ଗୋପୀ ଏବଂ ଗୋପାଳମାନେ ମଧ୍ୟ ଶ୍ରୀ ଶଙ୍କରଜୀଙ୍କ ନିତ୍ୟ ଆରଧନା କରନ୍ତି ଶ୍ରୀକୃଷ୍ଣଙ୍କ କୃପାପ୍ରାପ୍ତି ଲାଗି ।

ଶ୍ରୀକୃଷ୍ଣ ଲୀଳାର ସର୍ବୋଚ୍ଚ ରସମୟ ଲୀଳା ମହାରାସ ଲୀଳା ବୃନ୍ଦାବନରେ ଆରମ୍ଭ ହେବାର ଯୋଗାଡ଼ ଚାଲିଥାଏ । ଯୋଗମାୟା ଏହାର ପ୍ରସ୍ତୁତି ପର୍ବରେ ସକ୍ରିୟ ଭୂମିକାରେ ଅବତୀର୍ଣ୍ଣା । ବୃନ୍ଦାବନର ବଂଶୀବଟ ଠାରେ ରାସପୂର୍ଣ୍ଣିମା ଦିନ ଅର୍ଦ୍ଧରାତ୍ରୀ ସମୟରେ ଠାକୁରଜୀ ମୋହନବଂଶୀ ବାଦନ କଲେ । କ୍ଳୀଂ ବୀଜର ଆକର୍ଷଣ

ଅଧିକାରିଣୀ ଗୋପୀମାନଙ୍କ ହୃଦୟ କନ୍ଦରରେ କୃଷ୍ଣ ପ୍ରେମ ତରଙ୍ଗ ସୃଷ୍ଟି କଲା । ଘର ସଂସାର ପାଇଟି ଜଞ୍ଜାଳ ଛାଡ଼ି ଦୌଡ଼ିଲେ ଗୋପୀମାନେ । କୌଣସି ଗୋପୀ ଅନ୍ୟ କାହାକୁ ଡ଼ାକୁ ନଥାନ୍ତି । ସମସ୍ତେ ଚାହାନ୍ତି ପ୍ରିୟତମଙ୍କ ସହିତ ଏକାନ୍ତ ମିଳନ ।

ପଞ୍ଚମ ସ୍ୱରରେ ଦିବ୍ୟ ମୋହନ ମୂରଲୀ ବାଜୁଥାଏ । ସେ ବଂଶୀ ଧ୍ୱନିର କରାମତି କେମିତି ଅଦ୍ଭୁତ କେଜାଣି । ସେ ଧ୍ୱନି ତରଙ୍ଗ ରାଧାଙ୍କୁ ରାଧେ ରାଧେ, ଲଳିତାଙ୍କୁ ଲଳିତେ, ଲଳିତେ ବୋଲି ଶୁଭୁଥାଏ । ସକଳ ଗୋପୀଙ୍କୁ ନିଜ ନିଜ ନାଁ ଧରି ମଧୁର ସ୍ୱରରେ ଡ଼ାକୁଥିବା କଥା ଗୋପୀମାନେ ଅନୁଭବ କରୁଥାନ୍ତି । ଏ ଦିବ୍ୟ ସୂକ୍ଷ୍ମ ତରଙ୍ଗ ବିଶିଷ୍ଟ କୃଷ୍ଣପ୍ରେମ ବଂଶୀସ୍ୱନ ଆହ୍ୱାନକୁ ଗୋପୀମାନଙ୍କ ପାଖରେ ଏକା ପଲଙ୍କରେ ଶୟନ କରିଥିବା ଗୋପାଳମାନଙ୍କୁ ସିନା ଶୁଭିଲା ନାହିଁ । ହେଲେ ପରମ ବୈଷ୍ଣବ ଶ୍ରୀ ଶଙ୍କରଜୀଙ୍କୁ କୈଳାସ ପର୍ବତରେ ଏହା ସ୍ପଷ୍ଟ ଶୁଣାଗଲା । ଧ୍ୟାନ ତପସ୍ୟାଦି ଛାଡ଼ି ମୁହୂର୍ତ୍ତକ ମଧ୍ୟରେ ସେ ଯାଇ ପହଞ୍ଚିଲେ ବୃନ୍ଦାବନରେ । ରାସମଣ୍ଡଳ ମଧ୍ୟକୁ ପ୍ରବେଶ ପାଇଁ କିନ୍ତୁ ବାଟ ଓଗାଳିଲେ ମା'ବୃନ୍ଦାବତୀ । ପୁରୁଷ ମାନଙ୍କୁ ପ୍ରବେଶ ନିଷିଦ୍ଧ ଏ ଲୀଳାରେ । ତଥାପି ନିରାଶ କଲେନି ମା'ପରମବୈଷ୍ଣବ ଶଙ୍କର ଭଗବାନଙ୍କୁ । ବାଟ ବତାଇ ଦେଲେ ମହାରାସ କ୍ରୀଡ଼ା ପ୍ରବେଶ ପାଇଁ । ମସ୍ତକରେ ବିରାଜମାନ ଚନ୍ଦ୍ରଦେବତା ପୁରୁଷ । ତାଙ୍କୁ ଓହ୍ଲାଇ ବାହାରେ ରଖିବାକୁ ହେବ । ମାନସରୋବରରେ ଗୋପାଳମନ୍ତ୍ର ଗାନ କରି ସ୍ନାନ କଲେ ଦିବ୍ୟ ଗୋପୀ ଦେହଟିଏ ମିଳିବ । ସାପ ମାନଙ୍କୁ ଓହ୍ଲାଇବା ଦରକାର । ପତ୍ନୀ ଗଙ୍ଗାମାତା ସ୍ତ୍ରୀ ହୋଇଥିବାରୁ ସେ ଯାଇପାରିବେ । ଅବିଳମ୍ବେ ସକଳ ସର୍ତ୍ତ ପୂରଣ କରି ସାରି ଦିବ୍ୟରାସ ମୈଦାନରେ ପହଞ୍ଚିଲେ ଶ୍ରୀ ଶ୍ରୀ ମହାଦେବ ବାଘଛାଲ କାଢ଼ି ଏବଂ ଶାଢ଼ୀ ପିନ୍ଧି । ପୁଣି ମସ୍ତକରେ ହାତେ ଓଢ଼ଣା ଟାଣି । ମଜା କଥାଟି ହେଲା ଯେ ତାଙ୍କ ଚାଲି କିନ୍ତୁ ହଂସ ଚାଲି ନୁହେଁ । ପୁରା ପହେଲମାନ ଚାଲି ।

ଗୋପୀମାନେ କାହୁଁ ବୁଝିବେ ଏ ରହସ୍ୟ । ଗୋପୀଜନ ବଲ୍ଲଭଙ୍କୁ କିନ୍ତୁ କଥାଟା ଅଛପା ରହିଲାନି । ଠାକୁରଜୀ ହାୟ, ଗୋପୀଶ୍ୱର/ଗୋପେଶ୍ୱର କହି ସ୍ୱାଗତ କଲେ ସେ ଶ୍ରୀଶଙ୍କରଜୀଙ୍କୁ । କୃତ୍ୟ କୃତ୍ୟ ହେଲେ ଭଗବାନ ଶଙ୍କର ଦିବ୍ୟରାସ ଲୀଳାରେ ଦେବ ଦୁର୍ଲ୍ଲଭ ସୁଯୋଗ ଲାଭ କରି ।

ବଂଶୀବଟ ପାଖରେ ଆଜି ମଧ୍ୟ ସେହି ଗୋପୀଶ୍ୱରଙ୍କର ସଗୁଣ-ସାକାର ମୂର୍ତ୍ତି ଓ ନିକଟସ୍ଥ ଗୋପୀଶ୍ୱର ମନ୍ଦିରରେ ନିର୍ଗୁଣ-ନିରାକାର ଲିଙ୍ଗ ରୂପରେ ସେବା ପୂଜା ପାଉଛନ୍ତି । ଗୋପୀଶ୍ୱର ବିଗ୍ରହ ବ୍ୟତୀତ ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର ଶ୍ରୀ ବ୍ରଜନାଭଙ୍କ

ଦ୍ୱାରା ତାଙ୍କର ଲିଙ୍ଗମୂର୍ତ୍ତି ମଧ୍ୟ ସେବିତ ହେଉଛନ୍ତି ଏହି ଭବ୍ୟ ଗୋପୀଶ୍ୱର ମନ୍ଦିରରେ । ପବିତ୍ର ଶିବରାତ୍ରୀରେ ମହାସମାରୋହରେ ଏବେ କି ଶୈବ କି ବୈଷ୍ଣବ ସମସ୍ତେ ତାଙ୍କୁ ଗୋଦୁଗ୍ଧ ଓ ଯମୁନା ଜଳରେ ମହାଭିଷେକ କରନ୍ତି । ସକଳ ବ୍ରଜବାସୀ ମହା ଆନନ୍ଦରେ ଭଜନ, କୀର୍ତ୍ତନ, ସେବା ପୂଜା, ଧୂପ ଦୀପ, ବେଲପତ୍ର ଆଦିରେ ଏହି ଗୋପେଶ୍ୱରଙ୍କର ସମୁଚିତ ପୂଜନ କରି ନିଜ ଜୀବନକୁ ଧନ୍ୟ ମନେ କରନ୍ତି । ଖାଲି ସେତିକି ନୁହେଁ ଯେହେତୁ ଆଜି ମଧ୍ୟ ପ୍ରତ୍ୟେକ ରାତ୍ରିରେ ବୃନ୍ଦାବନର ନିଧୂବନ ଓ ସେବା କୁଞ୍ଜରେ ସେଇ ଦିବ୍ୟରାସଲୀଳା ଅନୁଷ୍ଠିତ ହେଉଛି । ମନ୍ଦିରର ସେବକମାନେ ଶଙ୍କରଜୀଙ୍କ ଲିଙ୍ଗକୁ ବସ୍ତ୍ର ଅଳଙ୍କାର ଆଦିରେ ସଜ କରି ମନ୍ଦିର ବନ୍ଦ କରନ୍ତି କାରଣ ରାସମଣ୍ଡଳକୁ ବିଜୟ କଲାବେଳେ ଯେପରି କିଛି ଅଭାବ ଅସୁବିଧା ହେତୁ ଠାକୁରଙ୍କର ଲୀଳାରେ ଭାଗନେବା ସୁଯୋଗ ହାତଛଡ଼ା ହୋଇଯିବ । ଶିବ ଲୋକ, କୈଳାସ ଲୋକ ପଛେ ଭାସିଯାଇ ଶଙ୍କରଜୀଙ୍କର ରାସଲୀଳା ପ୍ରେମପ୍ରାପ୍ତିରୁ ବଞ୍ଚିତ କରିବାକୁ ସାହାସ କାହାର ଅଛି ।

ଦ୍ୱାପର ଯୁଗ କେବେଠାରୁ ଶେଷ ହେଲାଣି । କିନ୍ତୁ କଳିଯୁଗରେ ମଧ୍ୟ ୫୦୦ବର୍ଷ ପୂର୍ବେ ଶ୍ରୀଳ ସନାତନ ଗୋସ୍ୱାମୀ ଆଦି ଷୋଡ଼ଶ ଶତାବ୍ଦୀରେ ଶ୍ରୀଗୋପେଶ୍ୱର ଠାକୁରଙ୍କୁ ନିତ୍ୟ ଦର୍ଶନ କରୁଥିଲେ । ସେତେବେଳେ ସାରା ବୃନ୍ଦାବନ ବଣ ଘନ ଜଙ୍ଗଲରେ ପୂର୍ଣ୍ଣ ଥିଲା । ସନାତନ ପ୍ରଭୁ ଦର୍ଶନ କରିବାକୁ ଯିବା ବାଟରେ ବାଟବଣା ହୋଇଯାଉଥିଲେ । ଦିନେ କରୁଣାସାଗର ଗୋପେଶ୍ୱର ମହାଦେବ ତାଙ୍କ ଭଜନସ୍ଥଳୀ ନିକଟରେ ବନଖଣ୍ଡୀ ମହାଦେବ ନାମରେ ପ୍ରକଟ ହୋଇ ଆଦେଶ ଦେଲେ, ‘‘ହେ ବୈଷ୍ଣବ ଶିରୋମଣି, ସନାତନ, ଏଣିକି ତୁମେ ଆଉ ଗୋପେଶ୍ୱର ଦର୍ଶନଲାଗି ଏତେ ବାଟ ଯିବା ଦରକାର ନାହିଁ । ଏହି ବନ ମଧ୍ୟରେ ତୁମେ ମୋର ଦର୍ଶନ କରିପାରିବ ।’’ ଆଜି ସେଠାରେ ଏକ ସୁନ୍ଦର ମନ୍ଦିର ମୁଣ୍ଡଟେକି ଠିଆ ହୋଇଛି ବନଖଣ୍ଡୀ ମହାଦେବଙ୍କୁ ଧରି । ଧନ୍ୟ ଭଗବାନ, ଭଗବାନଙ୍କର ଭକ୍ତ ଓ ଭଗବାନଙ୍କର ଭକ୍ତବତ୍ସଳ ଲୀଳା ।

## ୧୧. ଶ୍ରୀ ସାକ୍ଷୀ ଗୋପୀନାଥଜୀ ବା ଶ୍ରୀ ସାକ୍ଷୀଗୋପାଳ ମନ୍ଦିର

ପ୍ରଶ୍ନ-୨୩. ସକଳ ଶାସ୍ତ୍ରଙ୍କର ମୁକୁଟମଣି ସନାତନ ବେଦଗ୍ରନ୍ଥ । ବେଦ ଭଗବାନ କହନ୍ତି ନ ତସ୍ୟ ପ୍ରତିମା ଅସ୍ତି । ଅର୍ଥାତ୍ ଭଗବାନଙ୍କର ପ୍ରତିମା ବା ବିଗ୍ରହ କେବେ ବି କାଠ, ପଥର, ପିତ୍ତଳ ମୂର୍ତ୍ତି ନୁହନ୍ତି । ସେ ହିଁ ସ୍ୱୟଂ ଚିନ୍ମୟ ବିଗ୍ରହ । ଗୋଟିଏ ରୂପରେ ସେ ଅଚଳ ବିଗ୍ରହରୂପରେ ଥାଇ ମଧ୍ୟ ଅନ୍ୟ ଅସଂଖ୍ୟ ରୂପରେ ନିଜ

ନିଜ ଭକ୍ତ ପଛରେ ସଚଳ ମୂର୍ତ୍ତି ଧରି ଚାଲୁଥାନ୍ତି । ସୁଯୋଗ ଖୋଜୁଥାନ୍ତି ଭକ୍ତକୁ କୃପା କରିବାକୁ । ଠାକୁରଜୀ ସାମନାରେ କିମ୍ବା ବାମ ଦକ୍ଷିଣ ପାଖେ ପାଖେ ନଯାଇ ସର୍ବଦା ଭକ୍ତର ପଛେ ପଛେ ଯାଆନ୍ତି କାହିଁକି ?

**ନିରପେକ୍ଷଂ ମୁନିଂ ଶାନ୍ତଂ ନିର୍ବୈରଂ ସମଦର୍ଶନମ୍ ।**
**ଅନୁବ୍ରଜାମି-ଅହଂ ନିତ୍ୟଂ ପୂୟୟେତି ଅଙ୍ଘ୍ରିରେଣୁଭିଃ ॥୧୬॥**

ଉ. ଭକ୍ତ ଲୋଭକରେ ଭଗବାନଙ୍କ କୃପା କଣିକାକୁ । ଆଶ୍ଚର୍ଯ୍ୟର କଥା ଭଗବାନ କିନ୍ତୁ ଲୋଭ କରନ୍ତି ଭକ୍ତ ପାଦଧୂଳି କଣିକାକୁ । ପୁରାଣ କହନ୍ତି- ସୂର୍ଯ୍ୟ ବଂଶୀ ରାଜା ଭଗୀରଥଙ୍କ ପଛେ ପଛେ ମା'ଗଙ୍ଗା ଦେବୀ ଚାଲିଥିଲେ । ବୃନ୍ଦାବନ ବିହାରୀ ବୃନ୍ଦାବନ ଛାଡ଼ି ଯାଆନ୍ତି ନାହିଁ ବୋଲି ପ୍ରତିଜ୍ଞା କରିଛନ୍ତି ଗୋପୀମାନଙ୍କ ଆଗରେ । ଦରକାର ପଡ଼ିଲେ ତାଙ୍କୁ ମଧ୍ୟ ଆହୁରି ଅନେକ ସଚଳ ବିଗ୍ରହବନ୍ତ ହୋଇ ଭକ୍ତକୁ ବିପଦ ଆପଦରେ ରକ୍ଷା କରିବାକୁ ଏପରିକି ସାକ୍ଷୀ ଦେବାକୁ ଯିବାକୁ ପଡ଼େ । ଏ ବାଣୀର ସତ୍ୟତା ଘୋଷଣା କରିବାକୁ ଗୋପୀନାଥ ଆଜି ମଧ୍ୟ ବୃନ୍ଦାବନର ମନ୍ଦିର ଶୂନ୍ୟ କରି ସେହି ସାକ୍ଷୀ ଗୋପୀନାଥ ପୁରୀ ଭୁବନେଶ୍ୱର ରାସ୍ତାରେ ସାକ୍ଷୀଗୋପାଳ ନିକଟରେ ଶ୍ରୀ ସାକ୍ଷୀଗୋପାଳ ବିଗ୍ରହ ରୂପରେ ବିଦ୍ୟମାନ ।

ଅନେକ ଦିନ ତଳର କଥା । ଆନ୍ଧ୍ର ପ୍ରଦେଶର ବିଦ୍ୟାନଗରର ଦୁଇଜଣ ବ୍ରାହ୍ମଣ ସାଥୀ ହୋଇ ଗଲେ ବୃନ୍ଦାବନ ଧାମ ଦର୍ଶନରେ । ଜଣେ ଅତ୍ୟନ୍ତ ବୃଦ୍ଧ ଓ ଅନ୍ୟ ଜଣକ ଯୁବକ । ସେତେବେଳେ ଗାଡ଼ି ମୋଟର ସୁବିଧା ନଥାଏ । ବହୁ କଷ୍ଟ ସହି ପଦବ୍ରଜରେ ଦୁଇ ଜଣ ଯାକ ଯାତ୍ରା କଲେ । ପଦେ ପଦେ ଯୁବକ ଜଣକ ବୃଦ୍ଧଙ୍କୁ ସାହାଯ୍ୟ କରୁଥାନ୍ତି । ବୃନ୍ଦାବନରେ ଏହି ସାକ୍ଷୀଗୋପାଳ ମନ୍ଦିରରେ ବୃଦ୍ଧ ବ୍ରାହ୍ମଣ ଭାବିଲେ- ଏ ଯୁବକଙ୍କ ଋଣରୁ କିପରି ମୁକ୍ତି ପାଆନ୍ତି । ଯୁବକଙ୍କୁ ପ୍ରସ୍ତାବ ଦେଇ କହିଲେ, ''ଗାଁକୁ ଫେରିଲେ ତୁମ ହସ୍ତରେ ମୁଁ ମୋର ଅବିବାହିତା କନ୍ୟାଟିକୁ ଅର୍ପଣ କରି ତୁମର ଋଣମୁକ୍ତ ହେବି ।'' ନିଜର ଓ ବୃଦ୍ଧ ଉଭୟଙ୍କ ଧନ ସମ୍ପତ୍ତି ପଦ ପ୍ରତିଷ୍ଠାକୁ ବିଚାର କରି ଯୁବକ ଜଣକ ସଙ୍ଗେ ସଙ୍ଗେ କହିଲେ, ''ଏହା କୌଣସି ହାଟ ବଜାର ସ୍ଥାନ ନୁହେଁ । ଠାକୁର ମନ୍ଦିର । ଯାହା କହୁଛ ବୁଝି ବିଚାର କହ । କହିଥିବା କଥା ପାଳନ ନକଲେ ନର୍କଦଣ୍ଡ ଭୋଗିବାକୁ ପଡ଼ିପାରେ ।'' ବୃଦ୍ଧ ବ୍ରାହ୍ମଣ ଭାବାବେଗରେ ହଁ ମୋ କନ୍ୟା ତୁମକୁ ନିଶ୍ଚୟ ଦେବି ବୋଲି ଠାକୁରଙ୍କୁ ସାକ୍ଷୀ ରଖି କହିଦେଲେ ।

ଗାଁକୁ ଫେରି ବୃଦ୍ଧ ନିଜ କନ୍ୟା ସମର୍ପଣ ପ୍ରସ୍ତାବ ରଖନ୍ତେ ପରିବାର ଲୋକଙ୍କ ପ୍ରବଳ ପ୍ରତିବାଦର ସମ୍ମୁଖୀନ ହୋଇ କହିଥିବା କଥା କହିନାହିଁ ବୋଲି ମନା କରିଦେଲେ । ଯୁବକ ବ୍ରାହ୍ମଣ କିନ୍ତୁ ଠାକୁରଜୀ ସାକ୍ଷୀଥିବା କଥା କହିଲେ । ଏହି କଥା ଗ୍ରାମସଭାରେ ପଡ଼ିଲା । ଉଭୟ ପକ୍ଷର କଥା ଶୁଣି ଗ୍ରାମବାସୀମାନେ ଏକ ବିଚିତ୍ର ନିଷ୍ପତ୍ତି କଲେ । ଠାକୁରେ ଯଦି ବୃନ୍ଦାବନରୁ ଆସି ଏଠାରେ ସାକ୍ଷୀଦେବେ ତେବେ ବୃଦ୍ଧ ବ୍ରାହ୍ମଣ କନ୍ୟାଦେବାକୁ ବାଧ ହେବେ । ନଚେତ ଦେବାକୁ ବାଧ ନୁହନ୍ତି । ଯୁବକ ଭାବିଲେ ବିଚରା ବୃଦ୍ଧ ବ୍ରାହ୍ମଣ ଜଣକ ନର୍କ କାହିଁକି ଯିବ ? ବ୍ୟାକୁଳରେ ଧାଇଁଲେ ବୃନ୍ଦାବନ । ମନରେ ଅଟଳ ବିଶ୍ୱାସ । ପହଞ୍ଚିଲେ ଏଇ ମନ୍ଦିରରେ । କାନ୍ଦି କାନ୍ଦି ନିବେଦନ କଲେ, ''ପ୍ରଭୁ ଗୋପାଳଜୀ, ଚାଲ ବିଦ୍ୟାନଗର ଗାଁକୁ । ନିଜେ ମନ୍ଦିରରେ ରହି ସବୁ ଶୁଣିଛ । ବିଚରା ବୃଦ୍ଧ ବ୍ରାହ୍ମଣଙ୍କୁ ସତ୍ୟ ପାଳନରେ ସାହାଯ୍ୟ କର ।'' ଭଗବାନ ଭାବଗ୍ରାହୀ । କହୁ କହୁ କହିଦେଲେ, ''ହେ ବ୍ରାହ୍ମଣ, ମୁଁ ତ ପଥର ମୂର୍ତ୍ତି । ଯିବି କେମିତି ? ଯୁବକ କି ଛାଡ଼ିବା ଲୋକ ? କହିଲେ, - ''ଯେମିତି ପଥର ହୋଇ କଥା କହିପାରୁଛ । ସେମିତି ପଥର ଦେହରେ ଗୋଡ଼ କାଢ଼ି ଯିବ । ମୁଁ କିଛି ଶୁଣିବିନି । ତୁମକୁ ଯିବାକୁ ହେବ ।'' ଗୋପାଳଜୀ ବିଶ୍ୱାସୀ ଭକ୍ତ ପାଖରେ ନିଜେ ହାରିଯିବା ସ୍ୱୀକାର କଲେ । ହଉ ତେବେ ଚାଲ, କହିଲେ । ସର୍ତ୍ତ ରହିଲା, ସେ ଭକ୍ତ ପଛେ ପଛେ ଯିବେ । ଯୁବକ କେବେ ବି ପଛକୁ ଚାହିଁବେ ନାହିଁ । ଯଦି ଚାହିଁବେ ଠାକୁର ସେଇଠି ପଥର ବିଗ୍ରହରେ ରହିଯିବେ । ଆଗକୁ ଯିବେ ନାହିଁ ।

ଭକ୍ତ, ଭଗବାନ ଦୁହେଁ ଆଗ ପଛ ହୋଇ ଚାଲୁଥାନ୍ତି । ବାଟରେ ଗ୍ରାମ ପାଖରେ ଗୋଦାବରୀ ନଦୀ ବାଲି ପଡ଼ିଲା । ଗୋପଳ କୃଷ୍ଣଙ୍କ ନୂପୁର ଧ୍ୱନି ଆଉ ଶୁଣାଗଲାନି ବ୍ରାହ୍ମଣଙ୍କୁ । ତରତର ହୋଇ ସର୍ତ୍ତ କଥା ଭୁଲି ଅକସ୍ମାତ୍ ଚାହିଁଦେଲେ । ହସ ହସ ମୁଖରେ ଗୋପାଳଜୀ ପଥର ବିଗ୍ରହ ହୋଇଗଲେ । ସେଇଠି ରହିଗଲେ ନଦୀ ବାଲିରେ । ଯୁବକ ମୁଣ୍ଡ ପିଟି କାନ୍ଦିବାରେ ଲାଗିଲେ । ଶେଷରେ ଦୌଡ଼ିଲେ ଗାଁକୁ ଝାଳନାଳ ହୋଇ । ଗ୍ରାମବାସୀ ସମସ୍ତେ ବୃଦ୍ଧ ବ୍ରାହ୍ମଣଙ୍କ ପରିବାରର ଲୋକମାନଙ୍କ ସହିତ ପ୍ରତ୍ୟକ୍ଷ କଲେ ଭଗବାନଙ୍କ ଭକ୍ତ ବତ୍ସଳତାର ପ୍ରମାଣକୁ । କି ଆଚମ୍ବିତ କଥା ! ଏତେ ବଡ଼ ଏ ବିଶାଳ ବିଗ୍ରହ ନଦୀ ବାଲି ଶଯ୍ୟାରେ ବିରାଜମାନ ।

ମହା ଆବେଗ ଓ ଆଗ୍ରହର ସହିତ କନ୍ୟାଦାନ କଲେ ବୃଦ୍ଧ ବ୍ରାହ୍ମଣ ସେଇ ଯୁବକ ବ୍ରାହ୍ମଣଙ୍କ ହସ୍ତରେ । ଦୁଇ ବ୍ରାହ୍ମଣ ଏବେ ସିନା ମର ଦେହ ଛାଡ଼ିଦେଇଛନ୍ତି

ହେଲେ ଗୋପାଳଜୀଙ୍କ ଚିନ୍ମୟ ବିଗ୍ରହ ରୂପରେ ଏ କଥାର ସ୍ମାରକୀ ଧରି ଆଜି ଓଡ଼ିଶାର ସାକ୍ଷୀ ଗୋପାଳ ମନ୍ଦିରରେ ସେବା ପୂଜା ପାଉଛନ୍ତି । ଏହି ବିଗ୍ରହଙ୍କୁ ପୁରୀ ଗଜପତି ରାଜା ଦାକ୍ଷିଣାତ୍ୟ ଜୟ କରି ବିଦ୍ୟାନଗରଠାରୁ ଆଣି ରାଜଧାନୀ କଟକ ବାରବାଟୀ ଦୁର୍ଗରେ ରଖାଇଥିଲେ । ୧୫୧୦ମସିହାରେ ଶ୍ରୀମନ୍ ମହାପ୍ରଭୁଙ୍କ ଇଛାରେ ତାଙ୍କୁ ଜଗନ୍ନାଥ ମନ୍ଦିରରେ ସ୍ଥାପନ କରାଯାଇଥିଲା । ସେ ଅନେକ ଦିନ ଧରି କ୍ଷୁଧାର୍ତ୍ତ ଥିବାରୁ ଶ୍ରୀମନ୍ଦିରରେ ଭୋଗ ଲାଗିଲା ବେଳେ ସେ ତରବର ହୋଇ ପ୍ରସାଦ ଖାଇଗଲେ । ଶ୍ରୀଜଗନ୍ନାଥ, ବଳଦେବ, ସୁଭଦ୍ରା ସମସ୍ତେ ଅର୍ଦ୍ଧାହାରରେ ରହିଲେ । ଗଜପତିଙ୍କୁ ସ୍ୱପ୍ନାଦେଶ ଦେଇ ତାଙ୍କୁ ମନ୍ଦିରରୁ କଢ଼ାଇ ପଛପଟେ(ଆଜି ଯେଉଁଠାରେ ଅନ୍ୟ ଏକ ବିଗ୍ରହ ସାକ୍ଷୀଗୋପାଳ ରୂପରେ ପୂଜିତ ହେଉଛନ୍ତି) ରଖାଇଲେ । ପରେ ସାକ୍ଷୀଗୋପାଳଠାରେ ନୂତନ ଭବ୍ୟ ମନ୍ଦିରଟିଏ ନିର୍ମାଣ କରି ଗଜପତି ରାଜା ଠାକୁରଙ୍କ ସେବା ପୂଜାର ବ୍ୟବସ୍ଥା କରିଛନ୍ତି ।

ବୃନ୍ଦାବନର ସେହି ମନ୍ଦିରଟି ଏବେ ଆଉ ନାହିଁ । ଭାଙ୍ଗି ପଡ଼ିଛି । ସେ ଶୂନ୍ୟସ୍ଥାନଟି, ଏବେ ବୃନ୍ଦାବନ ବସଷ୍ଟାଣ୍ଡ ପାଖରେ ହନୁମାନଜୀଙ୍କ ମନ୍ଦିର ସାମନାରେ ଦର୍ଶନୀୟ । ଲେଖକ ୨୦୧୨ ମସିହାରେ ଅନେକ ଓଡ଼ିଆ ବୃନ୍ଦାବନ ଯାତ୍ରୀଙ୍କୁ ଧରି ନାମ ସଂକୀର୍ତ୍ତନ, ପୂଜାଦି କରି ସାକ୍ଷୀ ଗୋପାଳ ଜୀଉଙ୍କ କୃପା ଭିକ୍ଷା କରିଛନ୍ତି ସେହି ଶୂନ୍ୟ ପଡ଼ିଥିବା ଶ୍ରୀ ସାକ୍ଷୀଗୋପାଳ ଜୀଉଙ୍କ ବିଜେ ସ୍ଥଳୀରେ ।

## ୧୨. ଶ୍ରୀ ଜଗନ୍ନାଥଜୀ ମନ୍ଦିର

ପ୍ରଶ୍ନ-୨୪. ଶ୍ରୀଜଗନ୍ନାଥଜୀଙ୍କୁ ହିନ୍ଦୁଦେବତା କହି ଆମେ ଭୁଲ କରିବସୁ । ଯବନ କୁଳରେ ଜନ୍ମହୋଇ ଭକ୍ତ ସାଲବେଗ ଗାଇଲେ **ଜୀବନରେ ଥିବି ଯଦି ଯିବି ବୃନ୍ଦାବନ** । ସାଲବେଗଙ୍କୁ ଜନ୍ମ ଦେବା ମା'ବ୍ରାହ୍ମଣୀ ଏବଂ ବୀର୍ଯ୍ୟଦାତା ପିତା କିନ୍ତୁ ଥିଲେ ଯବନ । ଖାଣ୍ଟି ମୁସଲମାନ କୁଳରେ ଜନ୍ମ ହୋଇ ଅନେକ ଦିନ ଧରି ବୃନ୍ଦାବନ ବାସ କରି ପରମ ପ୍ରେମରେ ଉବେଇ ଟୁବେଇ ହେଲେ ଭକ୍ତ ଶିରୋମଣି ରସଖାନ୍‌ଜୀ । ବୃନ୍ଦାବନ ବାସ କରିବାକୁ ଶ୍ରୀହନୁମାନଜୀ, ଶ୍ରୀ ସୀତାରାମ, କାତ୍ୟାୟନୀ(ଦୁର୍ଗା)ଙ୍କ ସହିତ ଦେବଦେବ ମହାଦେବ ଆଗ୍ରହୀ ହେବା ସ୍ୱାଭାବିକ । ସେମାନେ ସମସ୍ତେ ଖାଣ୍ଟି କୃଷ୍ଣ ପ୍ରେମ ଖୋଜିଥାନ୍ତି । ହେଲେ ପରମ ପ୍ରେମମୟ ଠାକୁର ଶ୍ରୀଜଗନ୍ନାଥଙ୍କର ବ୍ରଜବାସ କରିବାକୁ କ'ଣ ମନ ହୁଏନା ?

**ମତ୍‌ନାଥ ଶ୍ରୀ ଜଗନ୍ନାଥ   ମଦ୍ ଗୁରୁ ଶ୍ରୀଜଗଦ୍‌ଗୁରୁ ।**
**ମଦ୍ ଆତ୍ମା ସର୍ବଭୂତ ଆତ୍ମା   ତସ୍ମୈ ଶ୍ରୀଗୁରବେ ନମଃ ।।**

ଉ. ଆଜକୁ ପ୍ରାୟ ଅଢ଼େଇଶ ବର୍ଷ ତଳର ପୁରୁଣା କଥା । ଯେଉଁ ବର୍ଷରେ ଦୁଇଟା ଆଷାଢ଼ ପଡ଼େ ସେବର୍ଷ ଶ୍ରୀଜଗନ୍ନାଥଙ୍କର ନବ କଳେବର ହୁଏ । ସାଧାରଣତଃ ବାରବର୍ଷରେ ଥରେ ଏହା ଘଟେ । ସେଥର କିନ୍ତୁ ଦୀର୍ଘ ଛତିଶ ବର୍ଷପରେ ପଡ଼ିଥାଏ ଆଷାଢ଼ ଦୋମାସି । ସେତେବେଳର ପ୍ରଥା ଅନୁସାରେ ନୂଆ ବିଗ୍ରହମାନେ ତିଆରି ହେଲେ ପୁରୁଣା ତିନିବିଗ୍ରହଙ୍କୁ ସମୁଦ୍ରରେ ଭସେଇ ଦିଆଯିବ । ଏବେ କିନ୍ତୁ ପୁରୁଣା ବିଗ୍ରହମାନଙ୍କୁ ଶ୍ରୀମନ୍ଦିର ପରିସରରେ କୋଇଲି ବୈକୁଣ୍ଠରେ ସମାଧି ଦିଆଯାଉଛି । ମନୁଷ୍ୟର, ଅସୁରଙ୍କର, ଦେବତାମାନଙ୍କର ସିନା ଦେହ ଆସକ୍ତି ହୁଏ । ଏଥର କିନ୍ତୁ ଶ୍ରୀଜଗନ୍ନାଥଙ୍କର ନିଜ ଦେହକୁ ଲୋଭ ହେଲା । ସେ ଭାବିଲେ ନବକଳେବର ହେଉଥାଉ । ତଥାପି ମୁଁ ଏ ବିଗ୍ରହ ତ୍ୟାଗ ନକରି ବରଂ ଅନ୍ୟ ପ୍ରତିଭୂ ରୂପରେ ବୃନ୍ଦାବନ ଚାଲିଯିବି । **ବିନୁ ପଦ ଚଲଇ ଶୁନଇ ବିନୁ କାନା** । ଦାରୁବ୍ରହ୍ମ ଯିବାକୁ ଇଚ୍ଛା କଲେ ସିନା । ସମସ୍ୟା ହେଲା ସେ ଭକ୍ତାଧୀନ । ପରତନ୍ତ୍ର । ଯିବେ କେମିତି ? ଜଣେ ଭକ୍ତ ଖୋଜିଲେ । ପାଇଗଲେ ମଧ୍ୟ । ରଜାକୁ କି ଖଜା ଅପୂର୍ବ !

ସେଇ ବୃନ୍ଦାବନ ଧାମରେ ଜଣେ ଶ୍ରୀଜଗନ୍ନାଥଙ୍କର ପ୍ରେମିକ ଭକ୍ତ ଶ୍ରୀହରିଦାସ ବାବାଜୀ । ଏ ହରିଦାସ ନିଧୁବନର ହରିଦାସ ନୁହନ୍ତି । ବୃନ୍ଦାବନରେ ଯମୁନା କୂଳରେ ଭଜନ କରି କରି ସେ ଅନେକ ଲୁହ ବୁହାଉଥାଆନ୍ତି । ମହାପ୍ରଭୁ କୃପା କରି ଦର୍ଶନ ଦେଲେ ବାବାଙ୍କୁ । ବାବାଜୀ ଶ୍ରୀଜଗନ୍ନାଥଙ୍କର ଦର୍ଶନ ପାଇଲେ ସିନା । ହେଲେ ମୂର୍ଚ୍ଛିତ ହୋଇପଡ଼ିଲେ । ଶ୍ରୀଜଗନ୍ନାଥ ଏବେ କରିବେ କ'ଣ ? ନିଜ ଭକ୍ତ ମୁଣ୍ଡରେ ଦିବ୍ୟ କରକମଳ ସ୍ଥାପନ କରି ଚେତର୍ନ କରାଇଲେ । ଆଜ୍ଞା ଦେଲେ, ''ମୁଁ ତୁମ ସେବା ପାଇବାକୁ ଆଗ୍ରହୀ । ଏହି ବୃନ୍ଦାବନ ଧାମର ମୁଁ ତୁମର ଆଶ୍ରୟରେ ହିଁ ରହିବି । ତୁମେ ଯେମିତି ରଖିବ ସେମିତି ରହିବି । ତୁମେ ଚଞ୍ଚଳ ଯାଅ ପୁରୁଷୋତ୍ତମ ଧାମ । ଏବର୍ଷ ମୋର ନବକଳେବର ହେବ । ମୁଁ ନୂଆ କଳେବରରେ ପୁରୁଷୋତ୍ତମ ଧାମରେ ରହିଲେ ମଧ୍ୟ ପୁରୁଣା କଳେବର ଧରି ତୁମ ସଙ୍ଗେ ବୃନ୍ଦାବନ ଚାଲି ଆସିବି । ତୁମେ ପୁରୀ ଗଜପତିଙ୍କୁ ମୋ ଆଜ୍ଞା କଥା କହି ମୋତେ ଧରି ଆସ ।''

ଶ୍ରୀହରିଦାସ ଚାଲିଲେ ବଣ ଜଙ୍ଗଲରେ ଚାଲି ଚାଲି କେବେ ଅଧା ଖାଇ କେବେ କିଛି ନ ଖାଇ । ପୁରୀରେ ପହଞ୍ଚି ସ୍ୱପ୍ନ ବୃତ୍ତାନ୍ତ ଜଣା କଲେ ଶ୍ରୀଗଜପତିଙ୍କୁ । ସବୁ ଶୁଣି ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ମହାରାଜା । କହିଲେ ମହାପ୍ରଭୁ ସିନା ତୁମକୁ ଏ ଆଦେଶ ଦେଇଛନ୍ତି । ମୋତେ ତ କିଛି ଆଦେଶ ମିଳିନାହିଁ । ତାଙ୍କ ବିନା ଆଜ୍ଞାରେ ମୁଁ ପୂର୍ବ ପ୍ରଚଳିତ ରୀତି ଅନୁସାରେ ତାଙ୍କର ବିଗ୍ରହମାନଙ୍କୁ ସିନା ମହୋଦଧିରେ ବିସର୍ଜନ କରିଦେବି । ଆପଣଙ୍କୁ ଆଦୌ ହସ୍ତାନ୍ତର କରି ପାରିବିନି । ମୁଁ ନିରୂପାୟ ବାବାଜୀ ମହାଶୟ ।''

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଗଜପତି ଦେବଙ୍କ ଏଭଳି ନୈରାଶ୍ୟଜନକ ବାଣୀରେ ଶ୍ରୀ ହରିଦାସ ବାବାଜୀ ମର୍ମାହତ ହେଲେ କିନ୍ତୁ ହିମ୍ମତ ହାରିଲେନି । ସିଧା ଚାଲିଲେ ମହୋଦଧୀ କୂଳକୁ । ଚାଲିଲା ଜଗନ୍ନାଥ ଭକ୍ତ ବାବାଜୀଙ୍କର ଅବିଶ୍ରାନ୍ତ ଭଜନ । ମହାପ୍ରଭୁ କିଛି ଉପାୟ କର । ଜଗନ୍ନାଥଜୀଙ୍କ ଆଉ ଚାରା କାହିଁ । ରାତିରେ ପଶିଲେ ଗଜପତିଙ୍କ ଶୟନ କକ୍ଷରେ । ପରେ ପରେ ତାଙ୍କ ହୃଦୟ ମନ୍ଦିରରେ । ଅଳ୍ପ ବିରକ୍ତି ମିଶା ମଧୁର କଣ୍ଠରେ ଆଦେଶ କଲେ, ''ରାଜନ୍, ମୁଁ ବୃନ୍ଦାବନରୁ ଯେଉଁ ଭକ୍ତକୁ ଡ଼ାକି ଆଣିଛି, ତୁମେ ତା'କଥାକୁ ବିଶ୍ୱାସ ନକରି ଆଦୌ ଠିକ କରିନ । ମୋ ପୁରୁଣା ତିନି ବିଗ୍ରହଙ୍କୁ ତାଙ୍କ ହସ୍ତରେ ମୋ ବୃନ୍ଦାବନ ଧାମକୁ ପଠାଇବା ବ୍ୟବସ୍ଥା କର । ଏଠାରେ ନବକଳେବରରେ ମଧ୍ୟ ତୁମେ ମୋତେ ପୂଜନ କରି ଆନନ୍ଦ ପାଉଥିବ ।''

ରାତି ପାହି ସକାଳ ହେଲା । ଗଜପତି ନିଜ ପାର୍ଷଦମାନଙ୍କୁ ଧରି ସମୁଦ୍ର କୂଳରେ ଭେଟିଲେ ବାବାଜୀ ମହାଶୟଙ୍କୁ । ସାଷ୍ଟାଙ୍ଗ ପ୍ରଣାମ କରି ଶ୍ରୀଜଗନ୍ନାଥଙ୍କ ସାକ୍ଷାତ ସେବକଙ୍କ ଚରଣ ବନ୍ଦନା କଲେ । ଶଗଡ଼ ଗାଡ଼ିରେ ତିନିବିଗ୍ରହ ମାନଙ୍କୁ ବାଜା ବାଜଣା ଲୋକବାକ ଦେଇ ବିଦାୟ ଦେଲେ ଅଶ୍ରୁପୂର୍ଣ୍ଣ ନେତ୍ରରେ । ମନେ ହେଲା ଜଣେ କନ୍ୟାପିତା ସତେ ଯେମିତି ଗେଲ ବସରରେ ତାଙ୍କ ଝିଅ ବିଦା କରୁଛନ୍ତି । ବାବାଜୀ ତାଙ୍କୁ ନେଇ ଯମୁନା କୂଳରେ ସ୍ଥାପନ କରି ସେବା ପୂଜାର ବ୍ୟବସ୍ଥା କରିଛନ୍ତି । ଅତ୍ୟନ୍ତ ସୁନ୍ଦର ପରିବେଶରେ ସେ ବୃନ୍ଦାବନରେ ରହି ସତେ ଯେପରି ବାହୁ ପ୍ରସାରଣ କରି କହୁଛନ୍ତି, ''ହେ, ଓଡ଼ିଶାବାସୀ, ଜୀବନ ଛାଡ଼ିବା ପୂର୍ବରୁ ସମସ୍ତେ ମୋତେ ଥରେ ଏଠାରେ ଦର୍ଶନ କର । ମୋ ଲୀଳାଭୂମିରେ ବ୍ରଜ ଧୂଳିରେ ଗଡ଼ । ଯମୁନା କୂଳ ରମଣ ରେତିରେ ଦେହ ମୁଣ୍ଡକୁ ରଗଡ଼ି ଦେଖତ । ପ୍ରେମ ବୀଜ ଅଙ୍କୁରିତ ହେଉଛି କି ନା ।''

ଶ୍ରୀ ବୃନ୍ଦାବନରେ ବାବାଜୀ ସୁନ୍ଦର ଫୁଲ ବଗିଚାଟିଏ କରିଛନ୍ତି । ମହାପ୍ରଭୁଙ୍କୁ କହି ମନ୍ଦିରର ଫୁଲ, ଫୁଲଗଛମାନଙ୍କୁ ଜଗିବା ଦାୟିତ୍ୱ ଦେଇଛନ୍ତି ଶ୍ରୀହନୁମାନଜୀଙ୍କୁ । ଏହି ବିଶାଳ ମନ୍ଦିର ସ୍ଥାପିତ ହୋଇଛି ଶ୍ରୀ ଯମୁନା କୂଳ ଜଗନ୍ନାଥ ଘାଟରେ ।

**ବିଶେଷ ଦ୍ରଷ୍ଟବ୍ୟ:** ଶ୍ରୀ ରାଧାକୁଣ୍ଡରେ ଶ୍ରୀଳ ରଘୁନାଥ ଗୋସ୍ୱାମୀଙ୍କ ଭଜନ କୁଟୀର ଓ ସମାଧି ପୀଠ ନିକଟରେ ପୁଣି ଏକ ଶ୍ରୀଜଗନ୍ନାଥଜୀ ବଡ଼ଭାଇ ବଳଭଦ୍ରଦେବ, ଭଗିନୀ ମା'ସୁଭଦ୍ରା, ଭକ୍ତରାଜ ସୁଦର୍ଶନଙ୍କ ସହିତ ସେବିତ ହେଉଥିବା ବିଗ୍ରହ ଶ୍ରୀଜଗନ୍ନାଥ ଭକ୍ତମାନଙ୍କର ଅବଶ୍ୟ ଦର୍ଶନୀୟ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# (ଗ) ଦ୍ୱାଦଶ ଉପବନ

## ୧. ଶ୍ରୀ ଗହ୍ୱରବନ

ପ୍ରଶ୍ନ-୨୫: ଦ୍ୱାଦଶ ଉପବନ ମଧ୍ୟରେ ଏହି ଗହ୍ୱବନର ଭୂମିକା କଅଣ ?

ଉ: ଶ୍ରୀବର୍ଷାଣା ପର୍ବତ ଉପରେ ଦାନଗଢ଼, ମାନଗଢ଼ ମୟୂରକୁଟି ମଝିରେ ଏହି ଗହ୍ୱବର ବନ ଅବସ୍ଥିତ। ଏହି ବନ ମଝିରେ ଗହ୍ୱବର କୁଣ୍ଡ ନାମରେ ଏକ ଅନେକ ପକ୍‌କା ପାହାଚ ଯୁକ୍ତ କୁଣ୍ଡ ଏ ବନର ଅବସ୍ଥିତରି ସଙ୍କେତ ଦେଉଛି। ବ୍ରଜବାସୀ ଗୋପୀ ଗୋପୀନାଥଙ୍କର ଏକାନ୍ତ ବିହାରସ୍ଥଳୀ ଏହି ବନ। ଏବେ ମଧ୍ୟ ଏଠାରେ ଦିନରାତ୍ରୀ ଉଭୟ ସମୟରେ ସେଇ ସେଇ ଲୀଳାମାନ ଅନୁଷ୍ଠିତ ହେଉଛି। କୌଣସି କୌଣସି ବିରଳ ଅତି ଭାଗ୍ୟବାନ ସାଧୁ ସନ୍ଥ ସେହି ଦିବ୍ୟ ଲୀଳା ଦର୍ଶନ ଆନନ୍ଦ ଅନୁଭବ କରୁଥିବା କହୁଛନ୍ତି।

ପାଖରେ ସ୍ୱର୍ଗୀୟ ଶ୍ରୀ ରମେଶ ବାବାଙ୍କ ଆଶ୍ରମ, ପ୍ରବଚନ ମଣ୍ଡପ, ଶ୍ରୀଦାନ ବିହାରୀ ଏବଂ ଶ୍ରୀମାନ ବିହାରୀଜୀଙ୍କ ମନ୍ଦିର ଏହି ଗହ୍ୱବର ବନରେ ମୁଣ୍ଡ ଟେକିଛନ୍ତି। ବ୍ରଜ ଚୌରାଶୀ କ୍ରୋଶ ପରିକ୍ରମା ବେଳେ ହଜାର ହଜାର ଯାତ୍ରୀମାନଙ୍କ ଲାଗି ପ୍ରସାଦ ଏହିଠାରେ ପ୍ରସ୍ତୁତ କରାଯାଇ ମୋଟର ଯାନ ଯୋଗେ ଦୂର ଦୂରାନ୍ତ ଅବସ୍ଥିତ ବିଶ୍ରାମସ୍ଥଳୀରେ ପହଞ୍ଚେଇ ଦିଆଯାଏ। ଶ୍ରୀ ରମେଶ ବାବାଙ୍କର ଅତି ଅତ୍ୟାଧୁନିକ ରୋଷେଇ ଶାଳା ଏହି ପାହାଡ଼ର ପାଦ ଦେଶରେ ଦ୍ରଷ୍ଟବ୍ୟ।

ଏହି ବନରେ ଭାରତର ପଞ୍ଚମ ମୂଳ ଜଗଦ୍‌ଗୁରୁ ଶ୍ରୀକୃପାଳୁ ମହାରାଜ ଅନେକ ବର୍ଷ ଧରି ଅଜ୍ଞାତବାସ କରି ଭକ୍ତି ସାଧନା କରିଥିଲେ। ତାର ୫୦୦ବର୍ଷ ପୂର୍ବରୁ ପୁଷ୍ଟି ମାର୍ଗୀ ସନ୍ଥ ଶ୍ରୀବଲ୍ଲଭ ଆଚାର୍ଯ୍ୟ ମଧ୍ୟ ଏହିଠାରେ ଶ୍ରୀଭାଗବତ ପାରାୟଣ ପ୍ରବଚନ କରିଥିଲେ। ଏହି ବନକୁ ପୁଣି ଥରେ ସବୁଜ ବନାନୀରେ ପରିଣତ କରିବାକୁ ଶ୍ରୀ ରମେଶ ବାବା ଏକ ମହାନ ବୃକ୍ଷରୋପଣ କାର୍ଯ୍ୟକ୍ରମର ସଂକଳ୍ପ ଓ ଶୁଭାରମ୍ଭ କରିଯାଇଛନ୍ତି। ଏହି ଗୁପ୍ତ ରହସ୍ୟମୟ ବନକୁ ନମସ୍କାର କରି ଆମେ ଅନ୍ୟାନ୍ୟ ଉପବନମାନ ଦର୍ଶନରେ ବାହାରିବା।

## ୨. ଶ୍ରୀ ସଙ୍କେତ ବନ

ପ୍ରଶ୍ନ-୨୬: ଶ୍ରୀରାଇ ଦାମୋଦର ଲୀଳାରେ ଏହି ଉପବନ କାହାକୁ କେଉଁ ସଙ୍କେତ ଦେଉଥିଲେ ?

ଉ. କାଳୀୟ ଦଳନ ପର୍ଯ୍ୟନ୍ତ ଶ୍ରୀମତୀ ଓ ଶ୍ରୀପତି ସହିତ ସେ କାଳୀୟଦଳନ ଲୀଳାସ୍ଥଳୀରେ ଉପସ୍ଥିତ ରହି ଠାକୁରଜୀଙ୍କ ପାରିବାର ପଣିଆ ଦର୍ଶନ କଲେ । ଦୂରରେ ଥାଇ ତାଙ୍କ ଅଲୌକିକ ରୂପମାଧୁରୀ ପାନ କରି ବୃଷଭାନୁନନ୍ଦିନୀ ଶ୍ରୀରାଧାରାଣୀ ବିହ୍ୱଳ ହୋଇପଡ଼ିଲେ । ଏ କଥା ସେ ପ୍ରିୟ ସଖୀ ଲଳିତାଙ୍କୁ ବ୍ୟକ୍ତ କରିଥିଲେ । ଅନ୍ୟ ପକ୍ଷରେ ଠାକୁରଜୀ ମଧ୍ୟ ଦୂରରେ ଥାଇ ଅସଂଖ୍ୟ ଦ୍ରଷ୍ଟାମାନଙ୍କ ମଧ୍ୟରେ ଶ୍ରୀରାଧାଙ୍କର ନିତ୍ୟ କିଶୋରୀ ରୂପର ମାଧୁରୀରେ ନିଜ ତନ ମନ ପ୍ରାଣ ସମର୍ପଣ କରିଦେଲେ । ଅଷ୍ଟସଖାମାନଙ୍କ ମଧ୍ୟରେ ଅତିପ୍ରିୟ ସଖା ସୁବଳଙ୍କୁ ସେ ଏକଥା ଜଣାଇଦେଲେ ।

ସୁବଳ ଯାଇ ପହଞ୍ଚିଲେ ବର୍ଷାଣାରେ । ଦେଖା କଲେ ଲଳିତା ଦେବୀଙ୍କ ସହିତ । ଠାକୁର ଠାକୁରାଣୀ (ଯୋଗମାୟା)ଙ୍କର ବ୍ୟାକୁଳତା କଥା ଶୁଣିଶୁଣାଇ ସଂକେତ ନାମ ସ୍ଥାନରେ ଗୋପନରେ ଉଭୟଙ୍କର ମିଳନ ଲାଗି ବ୍ୟବସ୍ଥା କରିଥିଲେ । ଏହି ସଙ୍କେତ ସ୍ଥଳୀଟି ଉଭୟ ବର୍ଷାଣା ଓ ନନ୍ଦଗ୍ରାମର ଠିକ୍ ମଧ୍ୟ ଭାଗରେ ଚାରି ଚାରି କି.ମି.ଦୂରରେ ଏବେ ବିଦ୍ୟମାନ । ଏହି ପବିତ୍ର ସଂକେତ ବନ ସ୍ଥଳରେ ଦୁହିଙ୍କର ପ୍ରଥମ ମିଳନ ହେଲା । ସର୍ବପ୍ରଥମେ ଯୋଗମାୟା ଏ ବନଟିକୁ ଫୁଲ, ଫଳ, ପଶୁ, ପକ୍ଷୀ, ଝୁଲଣ ଦୋଳି ଇତ୍ୟାଦିରେ ଦିବ୍ୟସ୍ୱରୂପରେ ସାଜ ସଜ୍ଜା କରିଦେଲେ । ସେତେବେଳେ ନିଶାର୍ଦ୍ଧରେ ନିଭୃତ ନିକୁଞ୍ଜଲୀଳା ଏହି ସ୍ଥାନରେ ପ୍ରାୟ ଅନୁଷ୍ଠିତ ହେଉଥିଲା । ବର୍ତ୍ତମାନ ସେଠାରେ ଏକ ସୁନ୍ଦର ଲୀଳା ମଣ୍ଡପ ନିର୍ମାଣ ହୋଇଛି ।

ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ଏ ସ୍ଥାନରେ ପହଞ୍ଚି ଭାବାବିଷ୍ଟ ହୋଇ ନୃତ୍ୟ କରିଥିଲେ । ଏଠାରେ ଭକ୍ତମାନେ ସଂକେତ ବିହାରୀ ମନ୍ଦିର, ରଙ୍ଗମହଲ, ଶଯ୍ୟା ମନ୍ଦିର, ବିହ୍ୱଳ କୁଣ୍ଡ, ସଂକେତ ଦେବୀ(ଯୋଗମାୟା) ଓ ବିହ୍ୱଳ ଦେବୀ(ମୁଖ୍ୟ ଲୀଳା ପରିକରି) ସହିତ ସଂକେତ ବଟ ଦର୍ଶନ କରି ସେହି ଅପ୍ରାକୃତ ଲୀଳାସ୍ମରଣ କରି ଦୁଇହାତ ଯୋଡ଼ି ପ୍ରଣାମ କରନ୍ତି । ଏହି ଦିବ୍ୟ ଭୂମିକୁ ଛୁଅଁନ୍ତି । ଆକାଶକୁ ଚାହିଁ ଚକ୍ଷୁ ମୁଦ୍ରିତ କରିଥାଆନ୍ତି ଏବେ ମଧ୍ୟ ଅଗଣିତ କୃଷ୍ଣଭକ୍ତ ମାନେ ।

## ୩. ଶ୍ରୀ ଟେର କଦମ୍ବ ବନ

ପ୍ରଶ୍ନ-୨୭: ଦିବ୍ୟ ଲୀଳାଭୂମି ଶ୍ରୀବୃନ୍ଦାବନରେ ଗୋଟିଏ କଦମ୍ବ ବୃକ୍ଷ ଗୋଟିଏ ବନର ଭ୍ରମ ସୃଷ୍ଟି କରିବା ସତ୍ୟ କି ?

ଉ. ଶ୍ରୀ ନନ୍ଦଗାଁ ପାହାଡ଼ ତଳେ ଅଳ୍ପ ଦୂରରେ ଏହି ଟେର କଦମ୍ବ ବନ ଅବସ୍ଥିତ । ଆଜି ଏହି ଲୀଳାସ୍ଥଳୀରେ ଗୋଟିଏ ମାତ୍ର ଅତି ବିଶାଳକାୟ କଦମ୍ବବୃକ୍ଷ

ଗୋଟିଏ କଦମ୍ବ ବନର ଭ୍ରମ ସୃଷ୍ଟି କରୁଛି । ଏହି ଅତି ଅଲୌକିକ ବୃକ୍ଷର ଶାଖା ପ୍ରଶାଖା ମାନଙ୍କୁ ଉପରକୁ ଟେକି ଧରି ରଖିବା ଲାଗି ଅନେକ କଂକ୍ରିଟ୍ ଖମ୍ବ ଓ କଂକ୍ରିଟ୍ କଡ଼ି(ବିମ୍) ଢ଼ଳାଇ କରାଯାଇଛି । ପାଖରେ ରାସମଣ୍ଡଳ ବେଦୀ ସହିତ କଦମ୍ବ ବନ ବିହାରୀ ଶ୍ରୀକୃଷ୍ଣଙ୍କ ମନ୍ଦିର ଦର୍ଶନୀୟ । ବର୍ତ୍ତମାନ ଏ ସ୍ଥଳୀରେ ଦର୍ଶକମାନେ ସକାଳେ ସଞ୍ଜରେ ଲମ୍ବ ପୁଚ୍ଛ ବିଶିଷ୍ଟ ମୟୂରୀ ନୃତ୍ୟ ଦର୍ଶନ କରିବାର ସୌଭାଗ୍ୟ ପ୍ରାପ୍ତ ହୁଅନ୍ତି ।

ଟେର ଶବ୍ଦର ଅର୍ଥ ଓଡ଼ିଆରେ ଉଣ୍ଡିବା ବା ଅନ୍ୟକୁ ନ ଜଣେଇ ନିଜର ପରିଚିତ ବସ୍ତୁ ବ୍ୟକ୍ତିର ସନ୍ଧାନ ନେବା । ଗୋଚାରଣ ସମୟରେ ଶ୍ରୀଗୋପାଳ ଏହି ବନରେ ଏହି ସ୍ଥଳରେ ଏକ ଉଚ୍ଚ କଦମ୍ବ ବୃକ୍ଷ ଉପରେ ଚଢ଼ି ଗାଈ, ବାଛୁରୀ ଓ ଗୋପାଳ ବାଳକମାନଙ୍କର ସନ୍ଧାନ ନେଉଥିଲେ । ଦରକାର ପଡ଼ିଲେ ମଧୁର ବଂଶୀ ସ୍ୱନ ଶୁଣାଇ ସେମାନଙ୍କୁ ଦୂରରୁ ଆକର୍ଷଣ କରି ଆଣି ପାଖ ବନରେ ପହଞ୍ଚାଇ ପାରୁଥିଲେ ।

ପାଞ୍ଚ ଶହ ବର୍ଷ ପୂର୍ବେ ଶ୍ରୀରୂପ ଗୋସ୍ୱାମୀ ପାଦ ଏହି ସ୍ଥଳୀରେ ଭଜନ କୁଟୀର ସ୍ଥାପନ କରି ଜପ ଧ୍ୟାନ ଆଦି କରୁଥିଲେ । ବ୍ରଜବାସୀଙ୍କଠାରୁ ମାଧୁକରୀ ଭିକ୍ଷା ଆଣି ଜୀବନ ନିର୍ବାହ କରୁଥିଲେ । ଦିନେ ତାଙ୍କ ବଡ଼ ଭାଇ ଶ୍ରୀ ସନାତନ ଗୋସ୍ୱାମୀ ଆସି ଏହି ଆଶ୍ରମରେ ପହଞ୍ଚିଲେ । ଶ୍ରୀରୂପ ଗୋସ୍ୱାମୀଙ୍କର ଇଚ୍ଛା ହେଲା ବଡ଼ ଭାଇଙ୍କୁ କିଛି ସୁସ୍ୱାଦୁ ପ୍ରସାଦ ସେବନ କରାଇବାକୁ । ସେ ଦେଖିଲେ ଆଶ୍ରମରେ ପାକ କରିବା ଭଳି କିଛି ହେଲେ ଦ୍ରବ୍ୟ ନାହିଁ । ଠିକ୍ ସେଇ ସମୟରେ ପାଖ ଗାଁରୁ ଆସିଛି ବୋଲି କହି ଝିଅଟିଏ ସୁମିଷ୍ଟ କ୍ଷୀରୀ ଆଣି ଦେଇ ତୁରନ୍ତ ଚାଲିଗଲା । ଦୁଇ ଭାଇ ସେ ପ୍ରସାଦ ପାଇବା ପରେ ଏତେ ଭାବାବିଷ୍ଟ ହୋଇଗଲେ ଯେ ଦୁହେଁ ହାତ ଧରାଧରି ହୋଇ ଉଦଣ୍ଡ ନାଚରେ ମାତିଗଲେ ''ରାଧେ ରାଧେ ଗୋବିନ୍ଦ ରାଧେ'' କହି କହି । ଦୁହେଁ ସ୍ୱାଭାବିକ ଚେତନା ଫେରି ପାଇବା ପରେ ଜାଣିଗଲେ ସେ ବାଳିକା ଆଉ କେହି ନଥିଲେ । ଥିଲେ ତାଙ୍କର ପରମ ଆରାଧ୍ୟା ରାଇକିଶୋରୀ ।

## ୪. ଶ୍ରୀ ଛତ୍ର ବନ

ପ୍ରଶ୍ନ-୩୧: ଲୀଳାମୟ କୃଷ୍ଣ ଏହି ବନରେ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ମିଶ୍ରିତ ଲୀଳା କଲେ କାହିଁକି ?

ଉ. ବୃନ୍ଦାବନରୁ ବର୍ଷାଣା ଯିବା ରାସ୍ତାରେ ଜିଟି ରୋଡ଼ର ଛାତା ଛକର ବାଟଭାଙ୍ଗି ବାମ ପାଖକୁ ଯିବାକୁ ପଡ଼େ । ଏହି ଛାତା ନାମ ସ୍ଥାନ ହିଁ କୃଷ୍ଣଲୀଳା ବର୍ଣ୍ଣିତ

ଏହି ଛତ୍ରବନ । ଏହି ଗ୍ରାମରେ ଏବେ ସୂର୍ଯ୍ୟକୁଣ୍ଡ, ଚନ୍ଦ୍ରକୁଣ୍ଡ, ଦାଉଜୀ ମନ୍ଦିର ସହିତ ଶ୍ରୀ ନାରାୟଣ ମନ୍ଦିର ମଧ୍ୟ ପ୍ରତିଷ୍ଠିତ ହୋଇଛନ୍ତି । ଗୋକୁଳ ଲୀଳା ସଂପୂର୍ଣ୍ଣ ମାଧୁର୍ଯ୍ୟ ଲୀଳା । ନନ୍ଦଗ୍ରାମ ଲୀଳା କିନ୍ତୁ କିଞ୍ଚିତ ଐଶ୍ୱର୍ଯ୍ୟ ମିଶ୍ରିତ ଲୀଳା । ଶ୍ରୀକୃଷ୍ଣଙ୍କର ଅନେକ ଚମତ୍କାର, ଅଲୌକିକ ଲୀଳା ଦେଖି ସୁଦାମା ଆଦି ଗୋପାଳ ସଖାମାନେ ତାଙ୍କୁ ଦିନେ ବିନୋଦରେ ଶ୍ରୀ ନାରାୟଣ ରୂପରେ ଏହି ସ୍ଥାନରେ ସଜେଇଦେଇ ଏକ ସିଂହାସନ ଉପରେ ମର୍ଯ୍ୟାଦାପୂର୍ଣ୍ଣ ଭାବରେ ବସାଇ ଦେଲେ । ଦାଉଜୀ(ବଳରାମଙ୍କୁ ତାଙ୍କ ବାମ ପାର୍ଶ୍ୱରେ ମହାମନ୍ତ୍ରୀ ପଣରେ ବସାଇଲେ । ପ୍ରିୟ ସଖା ମଧୁମଙ୍ଗଳ ସାମନାରେ ବସି ରାଜ ପରିଷଦର ବିଦୂଷକ କାର୍ଯ୍ୟ ଚଳାଇଲେ । ସଖା ସୁବଳ ତାମ୍ବୁଳ ସେବା କଲେ । ସୁବାହୁ ବିଶାଳ ଆଦି ସଖାମାନେ ପ୍ରଜା ଭୂମିକାରେ ରହିଲେ । ଅର୍ଜୁନ ଗୋପାଳ ଚାମର ସେବା କରୁଥିଲେ । ଶ୍ରୀଦାମ ଚିତ୍ର ବିଚିତ୍ର ଛତ୍ର ଧାରଣ କରିଥିଲେ କୃଷ୍ଣ-ବଳରାମଙ୍କ ମସ୍ତକ ଉପରେ ।

ଶ୍ରୀକୃଷ୍ଣ ଏବେ ଏକଛତ୍ର ଅଧିପତି ବୋଲି ସଖା ମଧୁମଙ୍ଗଳଙ୍କ ଦ୍ୱାରା ଢ଼େଙ୍ଗୁରା ଦ୍ୱାରା ସାରା ବ୍ରଜମଣ୍ଡଳରେ ଘୋଷଣା କରାଇଦେଲେ । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ କରିବାକୁ ଅନ୍ୟ କେହି ଚେଷ୍ଟା କଲେ ଦଣ୍ଡନୀୟ ହେବେ । ଏପରିକି ରାଜ୍ୟର କୌଣସି ଫୁଲ ବଗିଚାରୁ ରାଜକର୍ମଚାରୀଙ୍କ ବିନା ଅନୁମତିରେ କେହି ଫୁଲ ତୋଳିଲେ ତାଙ୍କୁ କଠିନ ଶାସ୍ତି ଦିଆଯିବ । ବର୍ତ୍ତମାନ ଏହି ବନର ମୁଖ୍ୟ ଆକର୍ଷଣ ଶ୍ରୀ ଛତ୍ରବନ ବିହାରୀ ମନ୍ଦିର ଓ ତାଙ୍କର ଶ୍ରୀ ବିଗ୍ରହ ।

ଐଶ୍ୱର୍ଯ୍ୟ ସହିତ ମାଧୁର୍ଯ୍ୟ ରସର ମିଳନର ସ୍ୱାଦ ଗୋପୀମାନଙ୍କୁ ଜଣାଇବା ଠାକୁରଜୀଙ୍କର ଏକମାତ୍ର ଉଦ୍ଦେଶ୍ୟ । କଥାଟିର ଅସଲି ରହସ୍ୟ ଖୋଲିଯିବ ପରବର୍ତ୍ତୀ ଉମରାଓ ବନ ଲୀଳା ପ୍ରକଟ ବେଳେ ।

## ୫. ଶ୍ରୀ ଉମରାଓ ବନ

ପ୍ରଶ୍ନ-୩୧ : ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ଲୀଳା ଲଢ଼େଇରେ ଜିତାପଟ ହୁଏ କାହାର ?

ଉ. ବର୍ତ୍ତମାନ ଛାତାଠାରୁ ଆଠ କି.ମି. ଦୂରରେ ଏହି ଉମରାଓ ଗ୍ରାମ ଓ ବନ ଦର୍ଶନୀୟ । ଏଠାରେ ଶ୍ରୀରାଧା ରାଣୀ ତାଙ୍କ ସଖୀମାନଙ୍କୁ ଧରି ଶ୍ରୀ ନାରାୟଣ ରୂପୀ କୃଷ୍ଣଙ୍କର ପ୍ରତିଦ୍ୱନ୍ଦ୍ୱୀ କରି ମାଧୁର୍ଯ୍ୟ ଲୀଳା ଦ୍ୱାରା ତାଙ୍କ ଐଶ୍ୱର୍ଯ୍ୟ ଗର୍ବ ଗଞ୍ଜନ କରିଥିଲେ । ଉମରାଓ ଶବ୍ଦର ଅର୍ଥ ରାଜ ରାଜେଶ୍ୱରୀ ବା ସର୍ବୋଚ୍ଚ ଶାସନକର୍ତ୍ତୀ । ସମଗ୍ର ରାଜ୍ୟର ଚରମ ପରମ ଅଧୀଶ୍ୱରୀ ।

ଯେତେବେଳେ ବ୍ରଜମଣ୍ଡଳରେ ଫୁଲ ତୋଳିବା ବାରଣ କରାଗଲା କୃଷ୍ଣ ଓ କୃଷ୍ଣସଖାମାନଙ୍କ ସହିତ ଶ୍ରୀ ଲଳିତା, ବିଶାଖା ଆଦି ସଖୀମାନେ ମିଶି ଏହି ସ୍ଥଳୀରେ ପୁଣି ଏକ ସୁନ୍ଦର ଲୀଳା ଅଭିନୟ କଲେ । ସଖୀମାନେ ଶ୍ରୀମତୀଙ୍କୁ ରାଜରାଜେଶ୍ୱରୀ ବେଶରେ ଅତି ସୁନ୍ଦର ଭାବରେ ସଜାଇ ଏକ ରମଣୀୟ ରତ୍ନ ସିଂହାସନରେ ବସାଇଦେଲେ । ଶ୍ରୀବୃନ୍ଦାଦେବୀ, ପୌର୍ଣ୍ଣମାସୀ ଓ ନାନ୍ଦୀମୁଖୀ ଆଦି ୧୦୮ କଳସ ଯମୁନା ଜଳରେ ଶ୍ରୀରାଧାଙ୍କ ଅଭିଷେକ କରାଯାଇଥିବା ହେତୁ ଆନନ୍ଦରେ ତାଙ୍କୁ ଶ୍ରୀରାଜରାଜେଶ୍ୱରୀ କି ଜୟ, ଶ୍ରୀ ବୃନ୍ଦାବନେଶ୍ୱରୀ କି ଜୟ ଇତ୍ୟାଦି ଧ୍ୱନି କରି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କଲେ । ଗୀତ, ବାଦ୍ୟ ନୃତ୍ୟ ଆଦିର ଆସର ଜମି ଉଠିଲା । ସେ ହେଲେ ବ୍ରଜମଣ୍ଡଳର ମନୁଷ୍ୟ ପଶୁ, ପକ୍ଷୀ, ବୃକ୍ଷଲତା; ନଦନଦୀ, ତୀର୍ଥ ବନ ଉପବନ ରୂପୀ ସକଳ ପ୍ରଜାମାନଙ୍କର ମହାରାଜେଶ୍ୱରୀ ।

ଏବେ ଠାକୁରାଣୀ ତାଙ୍କ ଶାସନକାର୍ଯ୍ୟ ଆରମ୍ଭ କଲେ । ବୃନ୍ଦାବନରେ ତାଙ୍କ ବ୍ୟତୀତ ଆଉ କାହାରି ହେଲେ ପ୍ରଜାମାନଙ୍କୁ ହୁକୁମ ଦେବା ଅଧିକାର ନାହିଁ ବୋଲି ଘୋଷଣା କଲେ । ପୁଣି ଯଦି କେହି ଏ ନିୟମ ଭଙ୍ଗ କରିଥାନ୍ତି ତାଙ୍କୁ ଦରବାରକୁ ଅଣାଯାଉ ବୋଲି ଆଦେଶ ଦେଲେ । ତାଙ୍କ ପାଖରେ ସଖୀ, ମଞ୍ଜରୀ, ଦାସୀ ଅସଂଖ୍ୟ ଥିଲେ । ସେମାନେ ସମସ୍ତେ ନିଜ ନିଜକୁ ମହାରାଣୀଙ୍କ ସୈନ୍ୟ ଭାବି ବ୍ରଜମଣ୍ଡଳର ରାଜପଦର ଅନଧିକାରୀ ଲୋକଙ୍କ ବିରୁଦ୍ଧରେ ଯୁଦ୍ଧଘୋଷଣା କଲେ । ସଖୀମାନେ ସମସ୍ତେ ଦୋଷୀ ଓ ବିଦ୍ରୋହୀ କୃଷ୍ଣ ଓ କୃଷ୍ଣ ସଖା ଆକ୍ରମଣରେ ବାହାରିଲେ । ହାତରେ ତାଙ୍କର ନଥିଲା, ଧନୁତୀର, ଖଣ୍ଡା କିମ୍ବା ବର୍ଚ୍ଛା ବା ଠେଙ୍ଗାବାଡ଼ି । ସମସ୍ତଙ୍କ ହାତରେ କେବଳ ଫୁଲମାଳ, ସୁନାର ଆରତୀ ଥାଳୀ, ଘୋରା ଚନ୍ଦନ ଓ ଧୂପ ଦୀପ ଆଦି ପୂଜନ ସାମଗ୍ରୀ । ସମସ୍ତେ ମିଶି ଶ୍ରୀକୃଷ୍ଣଙ୍କ ସିଂହାସନ ଉପରେ ଅତର୍କିତ ଚଢ଼ଉ କଲେ ।

ଏଭଳି ପରିସ୍ଥିତିରେ ଗୋପାଳବାଳକମାନେ କୃଷ୍ଣଙ୍କୁ ଛାଡ଼ି ଦୂରକୁ ପଳାଇବାକୁ ବାହାରିଲେ । ଲଳିତା ଦେବୀ ଧାଇଁ ଯାଇ ଧରିନେଲେ ସୁବଳଙ୍କୁ । ତାଙ୍କୁ ନେଇ ଶ୍ରୀରାଧାଙ୍କ ଦରବାରରେ ପହଞ୍ଚିଲେ । ବିଶାଖା ଆଦି ସଖୀମାନେ ଆସି ଶ୍ରୀକୃଷ୍ଣଙ୍କ ପାଖରେ ପହଞ୍ଚିଗଲେ । ସଙ୍ଗେ ସଙ୍ଗେ ତାଙ୍କୁ ଯୁଦ୍ଧ ବନ୍ଦୀ ବୋଲି ଘୋଷଣା କଲେ । ତାଙ୍କ ଦୁଇ ହାତକୁ ଫୁଲମାଳରେ ପଛ ଆଡ଼ିଆ ବାନ୍ଧି ଶ୍ରୀରାଧାଙ୍କ ଦରବାରରେ ହାଜର କରାଇଲେ । ଏ କଥା ଦେଖି ମା'ରାଧାରାଣୀ ବଡ଼ ଲାଜରା ହେଲେ । ସେ ନିଜ ସିଂହାସନରୁ ଓହ୍ଲାଇ ପଡ଼ିଲେ । ଗୋପୀମାନେ ଏବେ ଦୁହିଁଙ୍କୁ ଝୁଲାରେ ବସାଇ

ଯୁଗଳ ମିଳନ ପର୍ବରେ ଆନନ୍ଦ ଲୁଟିଥିଲେ । ଆଜି ସେହି ସ୍ଥାନରେ ସାକ୍ଷୀରୂପେ ବିଦ୍ୟମାନ ଶ୍ରୀ କିଶୋରୀ କୁଣ୍ଡ ।

୫୦୦ବର୍ଷ ପୂର୍ବେ ଶ୍ରୀ ଲୋକନାଥ ଗୋସ୍ୱାମୀ ବ୍ରଜମଣ୍ଡଳ ପରିକ୍ରମା କରୁଥିବା ବେଳେ ଏହି ସ୍ଥାନରେ ଧ୍ୟାନରେ ବସି ଅତ୍ୟନ୍ତ ଭାବାବିଷ୍ଟ ହୋଇଗଲେ । ତାଙ୍କ ସାଙ୍ଗରେ ଥାଆନ୍ତି ଶ୍ରୀଭୂଗର୍ଭ ଗୋସ୍ୱାମୀ । ଦୁହେଁ ଏହିଠାରେ ଭଜନ କରୁଥାଆନ୍ତି । ଦିନେ ନିଶାର୍ଦ୍ଧରେ ଶ୍ରୀମତୀ ତାଙ୍କର ଚିନ୍ମୟ ବିଗ୍ରହଙ୍କୁ ଆଣି ଶ୍ରୀଲୋକନାଥ ଗୋସ୍ୱାମୀଙ୍କୁ ପ୍ରଦାନ କଲେ ଓ ତାଙ୍କ ସେବା ପୂଜା କରିବାକୁ ଆଦେଶ ଦେଲେ । ସେ ସ୍ଥାନଟି ଆଜିର ଏହି କିଶୋରୀ କୁଣ୍ଡ । ସେଇ ବିଗ୍ରହଙ୍କର ନାମ ଶ୍ରୀରାଧା ବିନୋଦଜୀ । ଏହି ଶ୍ରୀବିଗ୍ରହଙ୍କୁ ସେ ନେଇ ବୃନ୍ଦାବନର ଶ୍ରୀରାଧା ଗୋକୁଳାନନ୍ଦ ମନ୍ଦିରରେ ସ୍ଥାପନା କରିଥିଲେ । ଔରଙ୍ଗଜେବ ଆକ୍ରମଣ କାଳରେ ସେ ମୂଳ ବିଗ୍ରହ ଜୟପୁରକୁ ସ୍ଥାନାନ୍ତରିତ ହୋଇଥିଲେ । ଏବେ ସେ ରାଜସ୍ଥାନର ଜୟପୁର ସହରରେ ମହା ଆଡ଼ମ୍ବରରେ ସେବିତ ହେଉଛନ୍ତି ।

## ୬. ଶ୍ରୀ ମାଠବନ:

ପ୍ରଶ୍ନ-୩୩: ଯାବଟ ଗ୍ରାମରେ ଶ୍ରୀରାଧା ରାଣୀଙ୍କ ପାତିବ୍ରତ୍ୟର ପରୀକ୍ଷା ଏ ମାଠବନ କଲା କିପରି ?

ଉ. ଶ୍ରୀ ଯମୁନାଜୀଙ୍କ ପୂର୍ବ ପଟେ ଭଦ୍ରବନର ୬କି.ମି. ଦକ୍ଷିଣରେ ଏହା ଅବସ୍ଥିତ । ଶ୍ରୀ ବ୍ରଜଲୀଳାରେ ଏ ବନର ମାହାତ୍ମ୍ୟ କିଛି କମ ନୁହେଁ । ବର୍ଷାଣା ପର୍ବତ ଶ୍ରୀରାଧାଙ୍କର ପିତାଘର । ଶାଶୁ ଘର କିନ୍ତୁ ଯାବଟ । ନନ୍ଦଗାଁଓ ଠାରୁ କୋଶୀ ଆସିବା ବାଟରେ ଅଳ୍ପ ଦୂରରେ ଦକ୍ଷିଣ ପଟେ ଏ ଲୀଳାସ୍ଥଳୀ ଦର୍ଶନୀୟ ଯେଉଁଠାରେ ଶ୍ରୀରାଧା, ପତି ଅଭିମନ୍ୟୁ, ଜଟିଳା, କୁଟିଳା ଶାଶୁ ନଣନ୍ଦଙ୍କୁ ନେଇ ଘର ସଂସାର କରିଥିଲେ । ତତ୍‌କାଳୀନ ସମାଜ କହିଲା ଯେ ବାହା ସାହା ହୋଇ ପତିଙ୍କୁ ସର୍ବସ୍ୱ ମନେ ନକରି କୃଷ୍ଣ ନାମକ ଅନ୍ୟ ଏକ ପୁରୁଷ ପୁଅକୁ ମନ ଅର୍ପଣ କରିବା କିଛି ଭଲ କଥା ନୁହେଁ । ଜଣେ ବୋହୂ ଲୁଚି ଲୁଚି ଯମୁନାକୁ ଯିବା, ନିଶାର୍ଦ୍ଧରେ ଗୃହତ୍ୟାଗ କରି(ସ୍ଥୁଳ ଶରୀରରେ ହେଉ ବା ସୂକ୍ଷ୍ମ ଶରୀରରେ ହେଉ) କୁଞ୍ଜବନରେ କୃଷ୍ଣଙ୍କ ସହ ଦୋଳି ଝୁଲିବା ଇତ୍ୟାଦି କେଉଁ ବୁଦ୍ଧିମାନର କାମ ? ସମାଜ ବିଦ୍ରୋହର ସ୍ୱର ଉଠାଇଲା । ତାଙ୍କୁ ଚରିତ୍ରହୀନା ବୋଲି ଧେଣ୍ଡୁରା ପିଟିଲା ।

ପୌର୍ଣ୍ଣମାସୀ ଦେବୀଙ୍କୁ କିନ୍ତୁ କଥାଟା ବାଧିଲା । ସେ ଖୋଲାଖୋଲି କହିଲେ, ''ବିବାହିତ ପତି ଥାନ୍ତୁ କି ନ ଥାନ୍ତୁ ଜଗତପତି କୃଷ୍ଣଙ୍କୁ ଭଲ ପାଇବା ହିଁ ଜଣେ ନାରୀ ଲାଗି ସଂସାରର ସାର କଥା । ସେଇତ ମନୁଷ୍ୟ ଜୀବନର ସାର୍ଥକତା । ଏ କଥା ପରୀକ୍ଷା କରାଯାଉ । ଜଣେ ଦେହରେ ସତୀ ହେଉ କି ନ ହେଉ ମନରେ ସତୀ ହେବା ହିଁ ସତୀ ପଣିଆରେ ଗଣା ।'' ଯାବଟବାସୀମାନେ କହିଲେ, ''ମନ ପରା ଭିତିରି କଥା । ସେ କଥା ଜାଣିବା କେମିତି ?'' ପୌର୍ଣ୍ଣମାସୀ ଏବେ ଗୋଟିଏ ମାଟି କଳସ ବରାଦ କଲେ । ସେଥିରେ ସହସ୍ର ଜଳା କରାଯାଇଥିଲା । ସର୍ତ୍ତ ରଖାଗଲା ଯେ ତାକୁ ଶ୍ରୀଯମୁନା ନଦୀ ଜଳରେ ବୁଡ଼ାଇ ଗାଁକୁ ଯେ ଜଳ ଆଣି ପାରିବ, ବୁନ୍ଦାଏ ଜଳ ବୋହିବ ନାହିଁ ସେଇ ଏକା ସତୀ । ନଚେତ ଅସତୀ ।

ପରୀକ୍ଷା ଦିନ ଡ଼ରରେ ଅନେକ ଯାବଟବାସୀ ବୋହୂ କଳସୀ ଉଠେଇଲେ ନାହିଁ । ଯେଉଁମାନେ ଗଲେ ସେମାନେ ସମସ୍ତେ ଫେଲ୍ ମାରିଲେ । ହଜାର କଣା ଥିବା କଳସୀରେ ଜଳ ଆସିବ କିପରି ? ଶେଷରେ ପୌର୍ଣ୍ଣମାସୀ ଶ୍ରୀରାଧା ରାଣୀଙ୍କୁ ପଠାଇଲେ ପରୀକ୍ଷା ନିମିତ୍ତ । ଶ୍ରୀରାଧା ଆଦୌ ଡ଼ରିଲେ ନାହିଁ । କୃଷ୍ଣ ନାମ ମନେ ମନେ ଜପି ଯମୁନା କୂଳକୁ ଗଲେ । ନାମ ଜପି କଳସୀ ବୁଡ଼େଇଲେ । ନାମ ଜପି ମନ, ମୁନ, ଚଇତନ(ଅହଂକାର) ଏକତ୍ର କରି ସବୁକୁ କୃଷ୍ଣଙ୍କୁ ସମର୍ପଣ କରି କଳସୀ ଉପରକୁ ଉଠେଇଲେ । କି ଆଚମ୍ବିତ କଥା । ଜଳପୂର୍ଣ୍ଣ କଳସୀ ଆଣି ସେ ଶାଶୁ, ନଣନ୍ଦ, ପତିଦେବଙ୍କ ପାଖରେ ହାଜର । ବୁନ୍ଦାଏ ଜଳ କଳସୀରୁ କଣାବାଟେ ବାହାରି ନାହିଁ । କଠିନ ପରୀକ୍ଷାର ଅନ୍ତ ଘଟିଲା । ବ୍ରଜମଣ୍ଡଳରେ ହୁରି ପଡ଼ିଲା ଖଣ୍ଡମଣ୍ଡଳରେ ଜଣା ପଡ଼ିଲା ଯେ ଶ୍ରୀରାଧା ଏକା ମନରେ ସତୀ । ଜଟିଳା କୁଟିଳାଙ୍କ ମୁଖ ବନ୍ଦ । ମାଆ ଝିଅ ଦୁହେଁ ମୁଣ୍ଡରେ ହାତ ପିଟିଲେ । ଭାବିଲେ ଆମେ ଦୁହେଁ ନ ଯାଇ ବୁଦ୍ଧିମାନର କାମ କରିଛୁ । ନଚେତ ଆମେ ଦୁହେଁ ଧରାପଡ଼ି ଅପଦସ୍ତ ହୋଇଥାଆନ୍ତୁ ! ! !

ଯେଉଁ ସ୍ଥାନ/ଗ୍ରାମରେ ଏହି ଚିନ୍ମୟ କଳସୀ ତିଆରି ହୋଇଥିଲା ସେଇ ମାଟି ଦେଇଥିବା ବନର ନାମ ଆଜି ମାଠବନ ଓ ଗ୍ରାମର ନାମ ମାଠ ଗ୍ରାମ । ସେ ସ୍ଥଳରୁ ମାଟି ଆଣି କୃଷ୍ଣଭକ୍ତ ମୁଣ୍ଡରେ ମାରେ ଓ ମନରେ ସତୀ କିମ୍ବା ସତିଆ ହେବାକୁ ରାଧାକୃଷ୍ଣଙ୍କୁ ଆଶିର୍ବାଦ ମାଗିଥାଏ ।

## ୭. ଶ୍ରୀ କୋକିଳା ବନ

ପ୍ରଶ୍ନ-୨୮: ଅତି ପ୍ରସିଦ୍ଧ କୋକିଳାବନ କେଉଁଠାରେ ଓ କାହିଁକି ପ୍ରକଟ ହୋଇଥିଲେ ?

ଉ. ଶ୍ରୀନନ୍ଦଗାଓଁ ଠାରୁ ୪କି.ମି. ଉତ୍ତରରେ ଏହି ସବୁଜିମା ପୂର୍ଣ୍ଣ ତୃଣ, ତରୁ, ଗୁଳ୍ମ ଭରା ସୁନ୍ଦର କୋକିଳାବନ ଦର୍ଶନରେ ବହୁ ସଂଖ୍ୟାରେ ଭକ୍ତମାନେ ଆସନ୍ତି । ଲୀଳା ସମୟରେ ଦିନେ ଶ୍ରୀରାଧାଙ୍କ ସହିତ ମିଳନ ଲାଗି ଠାକୁରଜୀ ଏହି ସ୍ଥାନରେ ପହଞ୍ଚି ଦେଖିଲେ ଯେ ଶ୍ରୀମତୀ କିମ୍ବା କୌଣସି ଜଣେ ହେଲେ ସଖୀ ସଂକେତ ସ୍ଥଳରେ ନାହାନ୍ତି । ନିରୁପାୟ ହୋଇ ଭଗବାନ ଏଠାରେ ଗୋଟିଏ ଦିବ୍ୟ କୋକିଳ ସ୍ୱରରେ ଧ୍ୱନି ଉତ୍ପନ୍ନ କଲେ । ଏହାର ମଧୁର ସ୍ୱରରେ ସକଳ କୃଷ୍ଣ ପ୍ରେମୀ ଭକ୍ତମାନଙ୍କର ହୃଦୟରେ ସ୍ପନ୍ଦନ ଖେଳିଗଲା । ରାଧାରାଣୀ ଜାଣିଗଲେ ଭଗବାନଙ୍କର ଏହା ଏକ ଲୀଳା ସଂକେତ ବୋଲି । ଶାଶୁଙ୍କ ଆଦେଶ ପାଇବାରେ ଆଉ ଡ଼େରି ହେଲାନାହିଁ । ଲଳିତା ସଖୀଙ୍କୁ ସାଙ୍ଗରେ ଧରି ସେ କୁଞ୍ଜରେ ମିଳିତ ହେଲେ କୁଞ୍ଜବିହାରୀଙ୍କ ସଙ୍ଗରେ । ସେହି ଦିନଠାରୁ ସ୍ଥାନର ନାମ ହୋଇଛି କୋକିଳା ବନ । ଠାକୁରଙ୍କ ନାମ ହୋଇଛି କୋକିଳାବନବିହାରୀ ।

ଏହି ପବିତ୍ର ସ୍ଥାନରେ ଶ୍ରୀବଲ୍ଲଭ ଆଚାର୍ଯ୍ୟ ଧ୍ୟାନସ୍ଥ ହୋଇ ପୂର୍ବେ ହୋଇଥିବା ଦିବ୍ୟଲୀଳାର ସଙ୍କେତ ସବୁ ଅନୁଭବ କରି ଅତ୍ୟନ୍ତ ଭାବାବିଷ୍ଟ ହୋଇ ଯାଇଥିଲେ । ପରେ ପରେ ଏବେ ଏଠାରେ ଭବ୍ୟ ଶ୍ରୀ ଶନିମନ୍ଦିର, ଶିବମନ୍ଦିର, ସୂର୍ଯ୍ୟକୁଣ୍ଡ, କୃଷ୍ଣକୁଣ୍ଡ, ଲଳିତା କୂପ ଓ କୋକିଳା କୁଣ୍ଡ ଇତ୍ୟାଦି ଅନେକ ଭକ୍ତି ଉତ୍ପାଦନକାରୀ ଦେବୀ ଦେବତା ସେବିତ ହୋଇ ସ୍ଥାନଟିର ଗୌରବ ବର୍ଦ୍ଧନ କରୁଛନ୍ତି । ଚାଲନ୍ତୁ ତାଙ୍କୁ ନମସ୍କାର କରି ଆଗେ ବଢ଼ିବା ।

## ୮. ଶ୍ରୀ ଅଟଳବିହାରୀ ବନ:

ପ୍ରଶ୍ନ-୨୯: ଗୋଟିଏ ଉପବନର ନାମ ଅଟଳ ରଖାଯିବାର କାରଣ କିସ ?

ଉ. ଏ ସ୍ଥାନଟି ମଥୁରାର ମଧୁବନ ଓ ବୃନ୍ଦାବନ ଉଭୟର ସୀମାରେ ଥିବା ଶ୍ରୀବୃନ୍ଦାବନ ଧାମର ଦକ୍ଷିଣ ଅଞ୍ଚଳରେ ଅବସ୍ଥିତ । ନିକଟରେ ଭୋଜନସ୍ଥଳୀ ବା ଭାତରୋଲ ଗ୍ରାମ ଅଛି । ଯେଉଁଠାରେ ଏକଦା ମଥୁରା ରାଜ୍ୟର ଅନେକ କର୍ମକାଣ୍ଡୀ ବ୍ରାହ୍ମଣମାନେ ବହୁ ଆଡ଼ମ୍ବର ପୂର୍ଣ୍ଣ ଯଜ୍ଞ କରୁଥିଲେ । ଖୁବ ସତର୍କତାର ସହିତ ସେମାନେ ଶୁଦ୍ଧବେଦ ମନ୍ତ୍ରମାନ ନିର୍ଭୁଲ ଉଚ୍ଚାରଣ କରୁଥିଲେ । ସୌଭାଗ୍ୟକୁ ସେ ଦିନ ଏହି

ଅଟଳବନଠାରେ ଶ୍ରୀକୃଷ୍ଣଙ୍କ ଗୋପାଳ ସଖାମାନେ ଭୋକିଲା ହୋଇ କିଛି ଖାଇବା ପାଇଁ ବନ୍ଦୋବସ୍ତ କରିବାକୁ ଭଗବାନଙ୍କ ନିକଟରେ କଟାଳ କଲେ । ଶ୍ରୀ ଗୋବିନ୍ଦ ସେମାନଙ୍କୁ ଭାତରୋଲ ପାଖକୁ ପଠାଇଲେ ଯଜ୍ଞ କରୁଥିବା ବ୍ରାହ୍ମଣମାନଙ୍କଠାରୁ କିଛି ଭୋଜ୍ୟ ପଦାର୍ଥ ଆଣିବା ଲାଗି । ପିଲାମାନେ ଗଲେ । ବ୍ରାହ୍ମଣମାନଙ୍କୁ କହିଲେ, ‘‘କୃଷ୍ଣବଳରାମ ଅଟଳ ବନରେ ଅଛନ୍ତି । ଆମମାନଙ୍କୁ ପଠାଇଛନ୍ତି । ଆମେ ସବୁ ଅତ୍ୟନ୍ତ କ୍ଷୁଧାର୍ତ୍ତ । କିଛି ଭୋଜନ ଦ୍ରବ୍ୟ ପ୍ରାର୍ଥନା କରିବାକୁ ଆସିଛୁ ।’’ ଅବଜ୍ଞାରେ ବ୍ରାହ୍ମଣମାନେ ହଁ କିମ୍ବା ନାହିଁ କିଛି କହିବା ଅନାବଶ୍ୟକ ମଣିଲେ । ପିଲାମାନେ ଫେରି ଆସି ଠାକୁରଜୀଙ୍କ ପାଖରେ ସବୁକଥା ଜଣାକଲେ । ବର୍ତ୍ତମାନ ଭଗବାନ କିନ୍ତୁ ଆଉ ଥରେ ଯାଇ ସେମାନଙ୍କ ପତ୍ନୀମାନଙ୍କୁ ‘‘କୃଷ୍ଣ ବଳରାମ କ୍ଷୁଧାର୍ତ୍ତ ଅଛନ୍ତି । କିଛି ଭୋଜନ ସାମଗ୍ରୀ ଥିଲେ ଦିଅନ୍ତୁ ବୋଲି’’ ନିବେଦନ କରିବାକୁ କହିଲେ ।

ଗୋପାଳବାଳକମାନେ ଏହି ବ୍ରାହ୍ମଣମାନଙ୍କ ଘରକୁ ଯାଇ ଏଥର ସେ ବ୍ରାହ୍ମଣ ପତ୍ନୀମାନଙ୍କୁ କୃଷ୍ଣ ବଳରାମଙ୍କ କଥାଟି ଜଣାଇଲେ । ସେମାନେ ଅତ୍ୟନ୍ତ ଆଗ୍ରହ ସହକାରେ ନିଜ ନିଜ ଘରୁ ସଙ୍ଖୁଡ଼ି ନିସଙ୍ଖୁଡ଼ି ଫଳମୂଳ ଆଦି ଯାହା ପାଇଲେ ସାଙ୍ଗରେ ଧରି ଏହି ଅଟଳ ବନରେ ପହଞ୍ଚିଲେ । ଅତି ଆଗ୍ରହ ସହକାରେ କୃଷ୍ଣ ବଳରାମଙ୍କ ସହିତ ଗୋପାଳବାଳକମାନଙ୍କ କ୍ଷୁଧା ନିବାରଣ କରି କୃତ କୃତ୍ୟ ହେଲେ । ଭଗବାନ ସେତେବେଳେ ଏହି ସ୍ଥାନରେ ଭକ୍ତିମତୀ ବ୍ରାହ୍ମଣ ପତ୍ନୀମାନଙ୍କର ଭକ୍ତି କେତେ ଅଟଳ ଅବିଚଳ ଦୃଢ଼ ବୋଲି ସମସ୍ତଙ୍କ ସାମ୍ନାରେ ପ୍ରଶଂସା କରିଥିଲେ । ଶୁଷ୍କ ବେଦ ଓ କର୍ମକାଣ୍ଡୀ ଯଜ୍ଞ ଜ୍ଞାନ ଠାରୁ ଆର୍ଦ୍ର ଭକ୍ତିର ଉପାଦେୟତାକୁ ମନେ ରଖିବାକୁ ସେ ଦିନର ସେହି ବନ ଆଜିର ଅଟଳ ବନ ଏବଂ ପୂଜିତ ବିଗ୍ରହ ଆଦିର ଅଟଳ ବନ ବିହାରୀ ବୋଲି ପରିଚିତ ହୋଇଛନ୍ତି । ଏହି ଲୀଳାସ୍ଥଳୀକୁ ଭକ୍ତିପୂତ ପ୍ରଣାମ କରାଯାଉ ।

## ୯. ଶ୍ରୀ ବସ୍ତ ବନ:

ପ୍ରଶ୍ନ-୩୦: ବେଦବର୍ଣ୍ଣିତ ପରମାତ୍ମା ଗୋବିନ୍ଦଙ୍କୁ ବତ୍ସପାଳ ବନେଇବାରେ ଏହି ବନର ଭୂମିକା କିସ ?

ଉ. ଅଘାସୁର ଉଦ୍ଧାର ପରେ ସୃଷ୍ଟିକର୍ତ୍ତା ବ୍ରହ୍ମାଜୀ ବ୍ରଜମଣ୍ଡଳରେ ପହଞ୍ଚିଛନ୍ତି ଭଗବାନଙ୍କ ବାଲ୍ୟଲୀଳା ଦର୍ଶନର ରସ ଆସ୍ୱାଦନ କରିବା ନିମିତ୍ତ । ଏଠାରେ ପହଞ୍ଚିବା ପରେ ବ୍ରହ୍ମାଜୀଙ୍କ ବୁଦ୍ଧି କିନ୍ତୁ କୁଣ୍ଠିତ ହୋଇଯାଇଛି ଭକ୍ତ ଭଗବାନଙ୍କ ଲୀଳା ରହସ୍ୟ ବୁଝିବା ଲାଗି । ପରୀକ୍ଷା କରିବା ପାଇଁ ସେ ଏହି ସ୍ଥଳରୁ ଗୋପାଳ ବାଳକ ଓ

ଗୋବତ୍ସମାନଙ୍କୁ ଯୋଗବଳରେ ନିଜ କମଣ୍ଡଳୁରେ ଧରି ନେଇ ବ୍ରହ୍ମ ଲୋକ ଚାଲି ଯାଇଥିଲେ ସଂଧ୍ୟା ଆହ୍ନିକ କରି ସେଠାରେ ଶ୍ରୀନାରାୟଣ ଭଗବାନଙ୍କୁ ପୂଜନ କରିବାକୁ । ତାଙ୍କର ଫେରିବା ସମୟକୁ ବର୍ଷେ ବିତିଯାଇଥାଏ ମୃତ୍ୟୁ ଲୋକରେ । ଠାକୁରଜୀଙ୍କ ବୟସ ପାଞ୍ଚପୁରି ଛଅ ହୋଇଗଲାଣି । ଶ୍ରୀ ବ୍ରହ୍ମାଜୀ ଦେଖିଲେ ଚୋରେଇ ନେଇଥିବା ବତ୍ସାବାଳକମାନେ ଶ୍ରୀକୃଷ୍ଣଙ୍କ ସାଙ୍ଗରେ ପୂର୍ବଭଳି ଖେଳୁଛନ୍ତି । ଭାବିଲେ ଡୁପ୍ଲିକେଟ ହୋଇଥିବେ ପରା । ନିଜ କମଣ୍ଡଳୁରେ ଦେଖନ୍ତି ସେମାନେ ପୂର୍ବ ଭଳି ସୂକ୍ଷ୍ମ ଦେହରେ ଅଚେତ ଅବସ୍ଥାରେ ପଡ଼ି ରହିଛନ୍ତି ।

ଗଭୀର ଧ୍ୟାନ ମଗ୍ନ ହୋଇ ଶ୍ରୀ ବ୍ରହ୍ମଦେବ ବୁଝିଗଲେ ଏବେ ଏ ସବୁ ଗୋବିନ୍ଦଙ୍କ ଅଲୌକିକ କାଣ୍ଡ । ବ୍ରହ୍ମାଙ୍କ ବିନା ସହାୟତାରେ ମଧ୍ୟ ଶ୍ରୀକୃଷ୍ଣ ତାଙ୍କ ଚିନ୍ମୟ ଦେହରୁ ଡୁପ୍ଲିକେଟ୍ ଗୋବତ୍ସା ଓ ଗୋପାଳ ବାଳକ ସୃଷ୍ଟି କରିଛନ୍ତି । ଜାଣିନେଲେ ସୃଷ୍ଟିକର୍ତ୍ତା ବ୍ରହ୍ମା ହୋଇ ମଧ୍ୟ ଭଗବାନଙ୍କ ପାଖରେ ତାଙ୍କ ବୁଦ୍ଧି କେତେ ସୀମିତ । ଚାରି ମୁକୁଟ ସହିତ ମସ୍ତକମାନଙ୍କୁ ଶ୍ରୀକୃଷ୍ଣଙ୍କ ଚରଣ କମଳ ସ୍ପର୍ଶ କରାଇ ବାରମ୍ବାର ଦଣ୍ଡବତ ପ୍ରଣାମ କଲେ । ଭାଗବତଙ୍କର ୧୪ଶ ଅଧ୍ୟାୟ ବର୍ଣ୍ଣିତ ୪୦ଶ୍ଳୋକ ଗାଇ ସବିନୀତ କ୍ଷମା ପ୍ରାର୍ଥନା ମଧ୍ୟ କଲେ । ଠାକୁରଜୀଙ୍କୁ ପ୍ରସନ୍ନ କଲେ । ତାଙ୍କ ଚାରି ପାଖରେ ତିନି ପରିକ୍ରମା ଲଗାଇ ବ୍ରହ୍ମଲୋକ ଯିବାକୁ ଆଦେଶ ପ୍ରାପ୍ତ ହେଲେ । ଆଜି ସେଇ ସ୍ଥାନ ବତ୍ସବନ ରୂପରେ ବିରାଜିତ । ଚତୁର୍ମୁଖୀ ଚତୁର୍ଭୁଜୀ ବ୍ରହ୍ମାଜୀ ଏବଂ ଠାକୁରଜୀ ବତ୍ସବିହାରୀ ମନ୍ଦିରରେ ସେବିତ । ସେ ତୀର୍ଥସ୍ଥଳୀର ଗୋଆଲକୁଣ୍ଡ ଗୋଆଲ ମଣ୍ଡଳୀ ସ୍ଥାନ ସହିତ ହରିବୋଲ ତୀର୍ଥ ବର୍ତ୍ତମାନ ଭକ୍ତମାନଙ୍କ ହୃଦୟରେ କୃଷ୍ଣ ପ୍ରେମ ଉତ୍ପାଦନ କରିବାରେ ସେହିଦିନଠାରୁ ଏ ପର୍ଯ୍ୟନ୍ତ ଲାଗିଛନ୍ତି ।

## ୧୦. ଶ୍ରୀରାଧା ବନ ବା ଶ୍ରୀରାଧା ବାଗ:

ପ୍ରଶ୍ନ-୩୪: ଏହି ଶ୍ରୀରାଧା ବନ ପ୍ରାକଟ୍ୟର କାରଣ କ'ଣ ?

ଉ. ବର୍ଷାଣା ପର୍ବତରୁ ଶ୍ରୀଜୀ ମନ୍ଦିର ଦର୍ଶନ କରି ତଳକୁ ଓହ୍ଲାଇବା ବେଳେ ବାମ ପାର୍ଶ୍ୱରେ ଦର୍ଶନୀୟ ଏହି ଶ୍ରୀରାଧାବନ । ଦିବ୍ୟ ଲୀଳା ହେଉଥିବା ସମୟରେ କୁଞ୍ଜ ସଜା, ସିଂହାସନ ସଜା ଇତ୍ୟାଦି ପାଇଁ ଦରକାର ହେଉଥିବା ସୁନ୍ଦର, ସୁଗନ୍ଧିତ ଫୁଲ ସବୁକୁ ସଂଗ୍ରହ କରିବା ପାଇଁ ସେତେବେଳେ ଯୋଗମାୟାଙ୍କ ଦ୍ୱାରା ଅନେକ ସୁନ୍ଦର ସୁନ୍ଦର ବନ ଉପବନର ବ୍ୟବସ୍ଥା କରାଯାଇଥିଲା । ଶ୍ରୀ ଶ୍ୟାମ ସୁନ୍ଦରଙ୍କର ଗଳାରେ ଲମ୍ବିବା ନିମିତ୍ତ କିଛି ବିଶେଷ ବା ଖାସ୍ ଫୁଲ ସଂଗ୍ରହ ଲାଗି ଶ୍ରୀଯୋଗମାୟା

ବର୍ଷାଣା ପର୍ବତର ପାଦଦେଶରେ ଏହି ରାଧାବନର ପ୍ରାକଟ୍ୟ କରାଇଥିଲେ । ବର୍ତ୍ତମାନ ମଧ୍ୟ ଏହି ବନର ଖୁବ୍ ଯତ୍ନ ସହକାରେ ରକ୍ଷଣାବେକ୍ଷଣ କରାଯାଏ । ବାହାରୁଥିବା ଫୁଲ ସବୁକୁ ଶ୍ରୀଜୀଙ୍କ ମନ୍ଦିରକୁ ସେବା ପୂଜା ଲାଗି ପଠାଯାଇଥାଏ ।

ନିବୁଜ ଘେରା ମଧ୍ୟରେ ଅବସ୍ଥିତ ଏହି ବନରେ ଅଁଳା ଫଳ ସହିତ ଅନ୍ୟାନ୍ୟ ସୁସ୍ୱାଦୁ ପାଚିଲା ଫଳମାନ ଆଜି ମଧ୍ୟ ଉପଲବ୍ଧ ହେଉଛି । ଏହି ବନରେ ସନ୍ଧ୍ୟା ସମୟରେ ଶତ ଶତ ମୟୂରଙ୍କୁ ଦାନା ଦେବାର ବ୍ୟବସ୍ଥା ହୋଇଛି । ଏକ ନିର୍ଦ୍ଦିଷ୍ଟ ସମୟରେ ସେମାନେ ଏହି ବନକୁ ଆସି ଖୁସିରେ ଚାରା ଖାଇ ଦର୍ଶକ ମନରେ ଅଫୁରନ୍ତ ଆନନ୍ଦ ଉପୁଜାଇ ଥାଆନ୍ତି । ବଗିଚାର ମଧ୍ୟ ଭାଗରେ ସୁନ୍ଦର ସିଂହାସନ ଓ ମଣ୍ଡପ ନିର୍ମାଣ କରାଯାଇଛି ଶ୍ରୀରାଧା ଶ୍ୟାମ ସୁନ୍ଦରଙ୍କର ନିଶା କାଳରେ ଯୁଗଳ ବିହାର ଲାଗି । ଏହି ବନର ପାଖକୁ ଲାଗି ଶ୍ୟାମବନ ନାମରେ ଅନ୍ୟ ଏକ ମନଲୋଭା ବଗିଚା ଦର୍ଶନୀୟ । ବ୍ରଜମଣ୍ଡଳରେ ସୌନ୍ଦର୍ଯ୍ୟ, ଶାନ୍ତି, ସବୁଜିମା ଭରା ବନରାଜିର ଶୋଭା ପ୍ରତ୍ୟେକ କୃଷ୍ଣଭକ୍ତର ହୃଦୟକୁ ବନ ଦୁଇଟି ଆନନ୍ଦିତ କରିଥାଆନ୍ତି ।

## ୧୧. ଶ୍ରୀ ସେବାକୁଞ୍ଜ ବା ନିକୁଞ୍ଜବନ:

ପ୍ରଶ୍ନ-୩୫: ଶ୍ରୀବୃନ୍ଦାବନ ଧାମରେ ଏତେ ବନ ଉପବନ ମଧ୍ୟରେ ଏହି ସେବା କୁଞ୍ଜରେ ସାରା ଦିନଯାକ ଏତେ ଜନଗହଳିର କାରଣ କିସ ?

ଉ. ଶ୍ରୀବୃନ୍ଦାବନ ଧାମର ଠିକ୍ ମଧ୍ୟ ଭାଗରେ ପାଚେରୀ ଘେରା ଏହି ବନ ଦର୍ଶନାର୍ଥୀ ଭକ୍ତମନକୁ ଅତ୍ୟନ୍ତ ଆକର୍ଷଣ କରେ । ରାତ୍ରୀ ସାରା ଚାବି ପକାଇ ବନକୁ ଭକ୍ତଙ୍କ ପାଇଁ ମଧ୍ୟ ବନ୍ଦ ରଖାଯାଏ । ପ୍ରତ୍ୟୁଷ ଚାରିଟାରେ ସେବାକୁଞ୍ଜ ଫାଟକ ଖୋଲୁ ଖୋଲୁ ଆରମ୍ଭ ହୋଇଯାଏ ଜୟଶ୍ରୀରାଧେ, ଜୟଶ୍ରୀରାଧେ ଜୟଘୋଷ । ମହାଆଡ଼ମ୍ବର ସହକାରେ ପୂଜା, ପାଠ, ସ୍ତୁତି, ସ୍ତବ, ଭଜନ, କୀର୍ତ୍ତନ, ସେବାକୁଞ୍ଜ ପରିକ୍ରମା ଆଦି ଏକ ସମୟରେ ଆରମ୍ଭ ହୋଇଯାଏ । ବ୍ରଜବାସୀମାନେ ପ୍ରତ୍ୟେକ ଦିନ ପ୍ରାୟତଃ ଏ କୁଞ୍ଜକୁ ଅବଶ୍ୟ ଆସି ନାମ ଭଜନ ସହିତ ପରିକ୍ରମା କରି ନିଜ ନିଜର ଦିନ ଚର୍ଯ୍ୟା ଆରମ୍ଭ କରନ୍ତି ।

ସେବା କୁଞ୍ଜର ମଧ୍ୟ ଭାଗରେ ସଂରକ୍ଷିତ ଏକ ଗଭୀର କୁଣ୍ଡ(ଶ୍ରୀଲଳିତା କୁଣ୍ଡ)ଦର୍ଶନୀୟ । ପାହାଚ ଓହ୍ଲେଇ ଅଧା ଗଭୀରତା ପର୍ଯ୍ୟନ୍ତ ଏ କୁଣ୍ଡ ତଳକୁ ଯାଇହୁଏ । ତେଣିକି ଭୟ ଲାଗେ । ମହାତ୍ମାମାନଙ୍କ ମୁଖରୁ ଶୁଣାଯାଏ ଥରେ ଠାକୁରଜୀ ନିଜ ବଂଶୀଦ୍ୱାରା ଏଠାରେ ଭୂମିକୁ ଆଘାତ କରି ଏହି କୂପ ପ୍ରକଟ କରାଇଥିଲେ ଓ

ଗୋପୀମାନଙ୍କ ତୃଷା ନିବାରଣ କରିଥିଲେ । ଦ୍ୱିତୀୟ କିମ୍ବଦନ୍ତୀଟି ମଧ୍ୟ ଆହୁରି ମଜାଦାର କଥା । ଶ୍ରୀ ବାଙ୍କେବିହାରୀ ମନ୍ଦିର ନିକଟରେ ଏକ ଭବ୍ୟ ମନ୍ଦିରରେ ସେବିତ ବୃନ୍ଦାବନର ପ୍ରସିଦ୍ଧ ଠାକୁର ଶ୍ରୀରାଧା ବଲ୍ଲଭଜୀଙ୍କର ପ୍ରାକଟ୍ୟ ଏହି ଲଳିତା କୁଣ୍ଡରୁ ହୋଇଥିଲା ।

ଭକ୍ତମାନଙ୍କ ଦୃଢ଼ ବିଶ୍ୱାସ ସେ ବନରେ ଥିବା ବୃକ୍ଷଲତା ଦିନବେଳେ ଭକ୍ତକୁ ଆନନ୍ଦ ଦିଅନ୍ତି ଦର୍ଶନ ଓ ସ୍ପର୍ଶ ଆଦି ଦେଇ କିନ୍ତୁ ରାତ୍ରିରେ ଭଗବାନଙ୍କୁ ଆନନ୍ଦ ଦିଅନ୍ତି ଅଲୌକିକ ରାସକ୍ରୀଡ଼ା କରି ଗୋଟିଏ ଗୋଟିଏ ଚିନ୍ମୟ ଗୋପୀ ଦେହ ଧାରଣ କରି । ଆଜି ମଧ୍ୟ ବିଶ୍ୱାସୀ, ଶ୍ରଦ୍ଧାଳୁ କୃଷ୍ଣ ଭକ୍ତମାନେ ଏହି ବନର ମୃତ୍ତିକା ଜରି ମୁଣିରେ ପ୍ୟାକ କରି ନିଜ ନିଜ ଘରକୁ ଆଣି ଘର ଭିତରେ ବାହାରେ ବିଞ୍ଚି ଦେଇ ଆନନ୍ଦ ପାଆନ୍ତି । ବୃନ୍ଦାବନ ଯାଇପାରିନଥିବା ସଂପର୍କୀୟମାନଙ୍କ ଲଲାଟରେ ତିଳକ କରି ଲଗାଇ ଦିଅନ୍ତି । ବିଶ୍ୱାସ କରାଯାଏ ଯେ ସେ ଲୋକ ଦେହ ଛାଡ଼ିବା ପୂର୍ବରୁ ବୃନ୍ଦାବନ, ବ୍ରଜମଣ୍ଡଳ ଦର୍ଶନରେ ନିଶ୍ଚୟ ଯିବ ହିଁ ଯିବ ।

## ୧୨. ଶ୍ରୀ ନିଧୁବନ ବା ଶ୍ରୀ ନିଧିବନ:

ପ୍ରଶ୍ନ-୩୬: ବନ ତ ବନ ନିଧୁବନ ଏବଂ ମାଟି ତ ମାଟି ନିଧୁବନ ମାଟି ବୋଲି କାହିଁକି କୁହାଯାଏ ?

ଉ. ପାଞ୍ଚଶହ ବର୍ଷ ପୂର୍ବେ ସେବାକୁଞ୍ଜ ଓ ତାଙ୍କ ପାଖରେ ଥିବା ନିଧୁବନ ଗୋଟିଏ ବନ ଥିଲା । ଏବେ ସାଧୁ ସନ୍ଥମାନେ ମଠ, ମନ୍ଦିର, ଆଶ୍ରମ ଆଦି ନିର୍ମାଣ କରି ମଝିରେ ରାସ୍ତା ତିଆରି କରି ଦେବାରୁ ନିଧୁବନ ଆଜି ସେବାକୁଞ୍ଜ ଠାରୁ ସ୍ୱତନ୍ତ୍ର ହୋଇଯାଇଛନ୍ତି । ବ୍ରିଟିଶ ଶାସନ କାଳରୁ ଏ ପର୍ଯ୍ୟନ୍ତ ଏହି ବନକୁ ଅତ୍ୟନ୍ତ କଡ଼ା ପହରା ମଧ୍ୟରେ ରାତିସାରା ଚାବି ପକାଇ ରଖାଯାଏ । ପ୍ରାତଃ ଚାରିଟା ବେଳେ ଏହି ବନର ଚାବି ଖୋଲି ଫାଟକ ଖୋଲାଯାଏ ।

ବନ ମଧ୍ୟରେ ଅବସ୍ଥିତ ଏକ ଗହିରିଆ କୁଣ୍ଡ (ବିଶାଖାକୁଣ୍ଡ) ବିଦ୍ୟମାନ । ଏ କୁଣ୍ଡ ମଧ୍ୟରୁ ଶ୍ରୀ ହରିଦାସ ଗୋସ୍ୱାମୀ ଶ୍ରୀ ବାଙ୍କେବିହାରୀ ଠାକୁରଙ୍କ ଦିବ୍ୟ ବିଗ୍ରହ ପ୍ରାପ୍ତ ହୋଇଥିଲେ । ସେ ଜୀବନସାରା ଏହି ଠାରେ ବିହାରୀଜୀଙ୍କୁ ପ୍ରସନ୍ନ କରିବାକୁ ସୁଲଳିତ ଶାସ୍ତ୍ରୀୟ ସ୍ୱରରେ ସଂଗୀତ ଗାନ କରନ୍ତି । ଦିଲ୍ଲୀ ସିଂହାସନର ଅଧିପତି ସମ୍ରାଟ ଆକବର ଦିନେ ତାଙ୍କର ପ୍ରିୟ ସଂଗୀତଜ୍ଞ ତାନସେନଙ୍କୁ ଧରି ରାତ୍ରୀ ଅର୍ଦ୍ଧ ସମୟରେ ଲୁଚି ସେ ହୃଦୟଗ୍ରାହୀ ସଙ୍ଗୀତର ସ୍ୱର ଓ ମୂର୍ଚ୍ଛନା ଶ୍ରବଣରେ ଭାବାବିଷ୍ଟ ହୋଇ ଯାଇଥିଲେ ।

ଏବେ ସ୍ୱାମୀ ହରିଦାସଙ୍କ ଭଜନ କୁଟୀର, ସମାଧି ମନ୍ଦିର ସେହି ବନ ମଧ୍ୟରେ ଦର୍ଶନୀୟ । ଚିର ସବୁଜ ଲତାକୁଞ୍ଜ ମଧ୍ୟରେ ଯୁଗଳ ସରକାରଙ୍କ ବସିବା ନିମିତ୍ତ ଓ ଗୋପାଙ୍ଗନା ମାନଙ୍କର ନୃତ୍ୟ ସଙ୍ଗୀତ ଆସର ନିମିତ୍ତ ଏକ ସୁନ୍ଦର ସିଂହାସନ ଓ ମାର୍ବଲ ବିଛା ଚଉତରା ନିର୍ମାଣ କରାଯାଇଛି । ବନର ଏକ ପାର୍ଶ୍ୱରେ ରଙ୍ଗମହଲ ଗୃହ ଦର୍ଶନୀୟ । ସେହି ରଙ୍ଗମହଲରେ ଶ୍ରୀରାଧାକୃଷ୍ଣଙ୍କ ନିମିତ୍ତ ପ୍ରତିଦିନ ସଂଧ୍ୟାପରେ ଦନ୍ତ କାଠି, ଜଳପୂର୍ଣ୍ଣ ପାତ୍ର, ତାମ୍ବୁଳ, ସିନ୍ଦୂର, କଜଳ, ତେଲ, ପାନିଆ ଆଦି ରଖାଯାଏ । ଦ୍ୱାର ବନ୍ଦ କରାଯାଇ ଚାବି ପକାଯାଏ । ସକାଳେ କିନ୍ତୁ ଦେଖାଯାଏ ସେସବୁର ବ୍ୟବହାର ହୋଇଥିବାର ସଂକେତ । ଆଜି ମଧ୍ୟ ନିଶାର୍ଦ୍ଧରେ ଶ୍ରୀ ବାଙ୍କେବିହାରୀ ସେଠାରେ ନିତ୍ୟ ରାସ କରନ୍ତି ।

କୁଞ୍ଜଲତା ବୃକ୍ଷ ମୂଳରୁ କିଛି ମୃତ୍ତିକା ସଂଗ୍ରହ କରି ଘରକୁ ଆଣି କାହା ମସ୍ତକରେ ଟିପାଟିଏ ଦେଲେ ସେ ଦେହ ଛାଡ଼ିବା ପୂର୍ବରୁ ନିଶ୍ଚୟ ବୃନ୍ଦାବନ ଧାମକୁ ଟାଣିହୋଇ ଯିବେ ବୋଲି ବିଶ୍ୱାସ କରାଯାଏ । ଏହି ବନର ଲତା, କୁଞ୍ଜ, ମାଟି, ଗୋଡ଼ି, ପବନ ଓ ଆକାଶକୁ ମଧ୍ୟ ଆମର ପ୍ରଣାମ ।

## (ଘ) ଦ୍ୱାଦଶ ଯମୁନା ଘାଟ

### ୧. ଶ୍ରୀ ରାମ ଘାଟ:

ପ୍ରଶ୍ନ-୩୭: ଶ୍ରୀ ବ୍ରଜମଣ୍ଡଳରେ ୨୪ବନ ମଧ୍ୟରେ ଏବଂ ଶ୍ରୀଯମୁନାଙ୍କର ୨୪ ମୁଖ୍ୟ ଘାଟମାନଙ୍କରେ ଗୋପୀଗୋପୀନାଥଙ୍କ ଅନେକ ମନମୋହକ ଲୀଳାମାନ ହୋଇଥିଲା । ତେବେ ଶ୍ରୀକୃଷ୍ଣ ଲୀଳା ମଧ୍ୟରେ ଶ୍ରୀରାମଘାଟର ସମ୍ବନ୍ଧ କଅଣ ?

ଉ. ସେ ରାମ ରାଘବ ରାମ ନୁହନ୍ତି । ସେ ଯାଦବ ରାମ ବଳରାମ ଅଟନ୍ତି । ଏଠାରେ ଶ୍ରୀରାମ କହିଲେ ଦଶରଥ ନନ୍ଦନ ରାମଙ୍କୁ ନ ବୁଝାଇ ବସୁଦେବ ନନ୍ଦନ ଶ୍ରୀ ବଳରାମଙ୍କୁ ବୁଝାଇଥାଏ । ବ୍ରଜମଣ୍ଡଳର ଉତ୍ତର ଭାଗରେ ଶ୍ରୀ ଖଦିର ବନ ଅବସ୍ଥିତ । ଖଦିର ବନର ଏହି ସ୍ଥାନରେ ଭଗବାନଙ୍କ ଦ୍ୱାରକାଲୀଳା ସମୟରେ ବଡ଼ ଠାକୁର ରାସ ଲୀଳା କରିଥିଲେ । ଯେଉଁ ଗୋପୀମାନେ ପୂର୍ବେ ମହାରାସ ସମୟରେ ଜନ୍ମ ହୋଇ ନଥିଲେ କିମ୍ବା ଅତି ଅଳ୍ପ ବୟସ୍କ ହେତୁ ଶ୍ରୀକୃଷ୍ଣଙ୍କ ମହାରାସକ୍ରୀଡ଼ାରେ ଭାଗ ନେଇ ପାରିନଥିଲେ ସେଇମାନଙ୍କୁ ନେଇ ଏହି ପବିତ୍ର ସ୍ଥଳ ଜୀବ-ବ୍ରହ୍ମ ମିଳନ ପର୍ବର ରସ ବିତରଣ ଓ ରସ ଆସ୍ୱାଦନ ଶ୍ରୀ ବଳରାମଙ୍କ ଦ୍ୱାରା କରାଯାଇଥିଲା ।

ସେ ସମୟରେ ଶ୍ରୀ ଯମୁନା ମହାରାଣୀଙ୍କୁ ମଧ ଶ୍ରୀ ବଳଦେବ ଜୀଉ ରାସକ୍ରୀଡ଼ା ପାଇଁ ନିମନ୍ତ୍ରଣ କରିଥିଲେ । ଶ୍ରୀ ଯମୁନା ଲକ୍ଷ୍ୟ କଲେ ଯେ ବଳରାମଜୀ ବାରୁଣୀ ମଦ୍ୟପାନ କରି ଚୈତ୍ର(ମଧୁମାସ) ବୈଶାଖ(ମାଧବ ମାସ) ଦ୍ୱୟରେ ରାସକ୍ରୀଡ଼ା କରିବେ । ସଂସାରୀ ସଂପର୍କରେ ବଳରାମ ତାଙ୍କ ଦେଢ଼ସୁର ହେବେ । ସୁତରାଂ ସଂଭ୍ରମ ଦୃଷ୍ଟିରୁ ସେ ଲୀଳାରେ ଯୋଗଦେବାରେ ପଶ୍ଚାତ୍‌ପଦ ହେବାରୁ ବଳରାମଜୀ ନିଜ ଯୋଗବଳରେ ଲଙ୍ଗଳ ମୁନରେ ଯମୁନା ନଦୀକୁ ଆକର୍ଷଣ କରି ଧରଣୀମାତାଙ୍କୁ କମ୍ପମାନ କରିଥିଲେ । ସେତେବେଳେ ଶ୍ରୀ ଯମୁନା ଅନନ୍ୟ ଉପାୟ ହୋଇ ତାଙ୍କ ଠାରେ ଶରଣ ପଶିଥିଲେ । ଅନେକ ସ୍ତବ ସ୍ତୁତି ପ୍ରାର୍ଥନା କରି ତାଙ୍କୁ ଶାନ୍ତ କରିଥିଲେ । ଆଜି ସେଇ ସ୍ଥାନର ନାମ ଶ୍ରୀରାମ ଘାଟ । ସେ ଘାଟକୁ ଆମର କୋଟି କୋଟି ଦଣ୍ଡବତ ପ୍ରଣାମ ।

**୨. ଶ୍ରୀ ଗୋପୀ ଘାଟ:**

ପ୍ରଶ୍ନ-୩୮: ମହାରାସ ଅନୁଷ୍ଠିତ ହେବା ପୂର୍ବରୁ ବ୍ରଜବାଳାମାନେ ଦୀର୍ଘ ଏକମାସ କାଳ ଶ୍ରୀଯମୁନା ନଦୀର ଏହି ଘାଟରେ କାତ୍ୟାୟନୀ ପୂଜା କରିଥିଲେ । ପୂଜା ପାଠ କରିବାକୁ ହେଲେ ବୈଦିକ କର୍ମକାଣ୍ଡ ଜ୍ଞାନ ଲୋଡ଼ା ପଡ଼େ । ଗୋପକୁମାରୀମାନେ ଟିପ ମଡ଼ଉଥିବା ନିରକ୍ଷର ଭଟ୍ଟାଚାର୍ଯ୍ୟ । କାହାଠାରୁ ଶିଖି କେଉଁ ମନ୍ତ୍ରରେ ସେମାନେ କେଉଁ ଲକ୍ଷ୍ୟ ପୂରଣ ଲାଗି ଗୋପୀ ଘାଟରେ ପୂଜା କରିଥିଲେ ?

**କାତ୍ୟାୟନୀ ମହାମାୟେ ମହାଯୋଗିନୀ-ଅଧିଶ୍ୱରୀ ।**
**ନନ୍ଦଗୋପ ସୁତଂ ଦେବି ପତିଂ ମେ କୁରୁ ତେ ନମଃ ॥୪॥**

ଉ. ଶ୍ରୀ ପୌର୍ଣ୍ଣମାସୀ ଦେବୀ ସେମାନଙ୍କୁ ଏ ମନ୍ତ୍ରଟି ଶିକ୍ଷା ଦେଇଥିଲେ । ମା'ଦୁର୍ଗାଙ୍କର ଅନେକ ରୂପରେ ପୂଜା କରାଯାଏ । ଶ୍ରୀ ଦୁର୍ଗାଙ୍କ କୋଳରେ ବାଳକୃଷ୍ଣ ଖେଳୁଥିବା ରୂପକୁ କାତ୍ୟାୟନୀ ବା ଭଦ୍ରକାଳୀ କୁହାଯାଏ । ମନ୍ତ୍ରଟିର ସରଳ ଅର୍ଥ ସେ ଗୋପାଙ୍ଗନାମାନଙ୍କୁ ବୁଝାଇ ଦେଇଥିଲେ ଯେ ନନ୍ଦନନ୍ଦନ ମୁରଲୀମୋହନ ଶ୍ରୀକୃଷ୍ଣ ମୋର ମନ, ହୃଦୟର ପତି ହୁଅନ୍ତୁ । ଆପଣଙ୍କୁ ଶତ ଶତ ନମସ୍କାର । ହେ ମାତେଶ୍ୱରୀ, ଆମେ ଆପଣଙ୍କୁ ଗୁରୁ ମାନୁଛୁ । ଦୁଇ ହାତ ଯୋଡ଼ି ଆଣ୍ଠୁ ମାଡ଼ି ବସି ଆପଣଙ୍କ ଚରଣ କମଳରେ ଶରଣ ପଶୁଛୁ । ବାସ୍ । ଏତିକି ତ ପ୍ରତ୍ୟେକ ଜୀବର ପ୍ରାର୍ଥନା ହେବା ଉଚିତ ନିଜ ନିଜ ଗୁରୁଙ୍କ ପାଖରେ ଶ୍ରୀକୃଷ୍ଣ ପ୍ରେମର ପ୍ରାପ୍ତି ଲାଗି ।

ଆଜି ସେହି ସ୍ଥାନରେ ଶ୍ରୀ ଯମୁନାକୂଳରେ କାତ୍ୟାୟନୀ ଦେବୀଙ୍କ ମନ୍ଦିର ଦର୍ଶନୀୟ । ଆମ ମନରେ ସେ କୃଷ୍ଣପ୍ରେମ ପ୍ରାପ୍ତିର ଲାଳସା ଜଣାଇ, କାତ୍ୟାୟିନୀ ଦେବୀଙ୍କୁ ଶତ ଶତ ପ୍ରଣାମ କରାଯାଉ ।

**୩. ଶ୍ରୀଚୀର ଘାଟ/ବସ୍ତ୍ର ହରଣ ଘାଟ:**

**(କ) ଖଦିର ବନର ଚୀରଘାଟ:**

ପ୍ରଶ୍ନ-୩୮: କୃଷ୍ଣ ଭକ୍ତମାନଙ୍କ ଲାଗି ଚୀର ଶବ୍ଦର ଅର୍ଥ ଦେହ ଅଭିମାନ । ନିଜକୁ ଆତ୍ମା ବା କୃଷ୍ଣଦାସ ନ ମାନିଲେ ଦେହାତ୍ମ୍ୟବୋଧ ସାଧକ ମନରୁ ଆଦୌ ଛାଡ଼ିଯାଏ ନାହିଁ । ପୂଜା, ପାଠ, ମନ୍ତ୍ର କୋଟିଏ କଲେ ମଧ୍ୟ । ସେଥିଲାଗି ସାଧକର ମନର ସଂପୂର୍ଣ୍ଣ ଶରଣାଗତି ଦରକାର । ତାହା ପୁଣି ଜଣେ ବିରକ୍ତ ବୈଷ୍ଣବଙ୍କ ଆନୁଗତ୍ୟରେ ନିତ୍ୟ ଭାଗବତ ପାଠ ଓ କାୟ ମନୋବାକରେ ବୈଷ୍ଣବ ସେବା କରି କରି । ସଂସାରରେ କାହାଠାରେ ବୁଦ୍ଧି ଓ ମନକୁ ସମର୍ପଣ କଲେ ତାଠାରୁ ଅନେକ ଭୌତିକ ଦ୍ରବ୍ୟ ସୁଖ ଇତ୍ୟାଦିର ପ୍ରାପ୍ତି ଆଶା, ଆକାଙ୍‌କ୍ଷା ଓ ଲାଳସା ଜାଗ୍ରତ ହୁଏ ମନୁଷ୍ୟ ମନରେ । ଶ୍ରୀକୃଷ୍ଣଙ୍କ ତ ସ୍ୱୟଂ ବାଞ୍ଛାକଳ୍ପତରୁ । ତାଙ୍କୁ ଯାହା ମାଗିବ ତା ମିଳିବ । ଗୋପାଙ୍ଗନାମାନେ ଏଭଳି ମନ, ବୁଦ୍ଧି, ଅହଂକାର ସର୍ବସ୍ୱ ସମର୍ପଣ କରି ଅଡୁଆରେ ପଡ଼ିଗଲେ କି ?

**ନ ମୟି-ଆବେଶିତ ଧିୟା କାମଃ କାମାୟ କଳ୍ପତେ ।**
**ଭର୍ଜିତା କ୍ୱଥିତା ଧାନା ପ୍ରାୟୋ ବୀଜାୟ ନ-ଇଷ୍ୟତେ ॥୨୬॥**

ଉ. ବିଲକୁଲ ଅଡୁଆରେ ପଡ଼ି ନାହାନ୍ତି । ଭଗବାନ ଏ ଶ୍ଲୋକରେ ଜୀବ ସମୂହକୁ ଆଶ୍ୱାସନା ବାଣୀରେ ଅଭୟ ପ୍ରଦାନ କରି କହୁଛନ୍ତି ଯେ କୃଷ୍ଣଙ୍କୁ ମନ ବୁଦ୍ଧି ଅର୍ପଣ କଲେ (ଆବେଶିତ ଧିୟା) ସଂସାରୀ ଇଛାର ଚେରମୂଳ ଉପୁଡ଼ି ଯାଏ । ଠିକ୍ ଯେମିତି ଉଷୁନା ଧାନ (ଭର୍ଜିତା ଧାନା) ଗଜା ହୁଏନା (ବୀଜାୟ ନ-ଇଷ୍ୟତେ) ।

**(ଖ) ବୃନ୍ଦାବନର ଚୀରଘାଟ:**

ବୃନ୍ଦାବନରେ ଶ୍ରୀଯମୁନା କୂଳରେ ଗୋବିନ୍ଦ ଘାଟ ନିକଟରେ ଚୀରଘାଟ ନାମକ ସ୍ଥାନରେ ଗୋଟିଏ ବିଶାଳ କଦମ୍ବ ବୃକ୍ଷ ସେବା ପୂଜା ପାଉଥିଲେ । ୨୦୧୨ ମସିହାରେ ସେ ଦେହଛାଡ଼ିବା ପରେ ସେ ସ୍ଥାନଟି ଏବେ ଶୂନ୍ୟ ଦେଖାଯାଉଛି ।

## ୪. ଅକ୍ରୁର ଘାଟ ବା ବ୍ରହ୍ମହ୍ରଦ:

ପ୍ରଶ୍ନ-୪୦: ରାଜା କଂସଙ୍କର କଠୋର ଆଦେଶରେ ମନ୍ତ୍ରୀ ଅକ୍ରୁର ରଥ ଧରି ନନ୍ଦଗାଁ ଆସିଥିଲେ। ନନ୍ଦ ଯଶୋଦାଙ୍କୁ ବୁଝାଇ ଶୁଝାଇ କୃଷ୍ଣ ବଳରାମଙ୍କୁ ସୁବର୍ଣ୍ଣ ରଥରେ ବସାଇ ମଥୁରା ନେଉଥାନ୍ତି। ବାଟରେ ସଂଧ୍ୟା ସମୟ ଉପଗତ ହେଲା। ଯମୁନା କୂଳରେ ରଥ ରଖିଲେ। କୃଷ୍ଣ ବଳରାମଙ୍କୁ କହି ଏହିଠାରେ ଶ୍ରୀଯମୁନା ଘାଟକୁ ସ୍ନାନ ଓ ସଂଧ୍ୟା ବନ୍ଦନା ନିମିତ୍ତ ଗଲେ। କୃଷ୍ଣନାମ ସ୍ମରଣ କରି ଜଳରେ ବୁଡ଼ି ଦେଖିଲେ କି ଆଶ୍ଚର୍ଯ୍ୟ!! ଜଳ ମଧ୍ୟରେ କୃଷ୍ଣ ବଳରାମ ଦୁହେଁ ମହାବିଷ୍ଣୁ ଓ ଅନନ୍ତ ଶଯ୍ୟା ରୂପରେ ବିଦ୍ୟମାନ। ଉପରକୁ ଉଠି ଦେଖିଲେ ଦୁହେଁ ଯଥା ପୂର୍ବ ରଥରେ ବିରାଜମାନ(ଆସୀନୌ ପୁନଃ)। ଏଭଳି ଭେଳିକି ଦେଖି ଅକ୍ରୂରଜୀଙ୍କ ମନରେ କି ସନ୍ଦେହ ଉପୁଜିଲା ସେତେବେଳେ?

**ତତ୍ରାପି ଚ ଯଥାପୂର୍ବଂ ଆସୀନୌ ପୁନଃ ଏବ ସଃ।**
**ନ୍ୟମଜ୍ଜଦ୍ ଦର୍ଶନଂ ଯତ୍‌ମେ ମୃଷା କିଂ ସଲିଳେ ତୟୋଃ ॥୪୩॥**

ଉ. ଅକ୍ରୂର ଭାବିଲେ ଯଦି ରଥ ଉପରେ ଦୁଇ ଭାଇ ବସିଛନ୍ତି, ତେବ ଜଳରାଶି ମଧ୍ୟରେ(ସଲିଳେ) ଦେଖିଥିବା ବୈକୁଣ୍ଠ ବିହାରୀ କୃଷ୍ଣ ବଳରାମ ମିଥ୍ୟା(ମୃଷା) ହୋଇଥିବେ। ସୁତରାଂ ସେ ଶ୍ରୀଯମୁନା ଜଳରେ ବୁଡ଼ିଲେ କଥାର ସତ୍ୟତା ପରୀକ୍ଷା କରିବା ପାଇଁ। କି ଆଶ୍ଚର୍ଯ୍ୟ କଥା!! ସେ ଦୁହେଁ ଜଳ ମଧ୍ୟରେ ଗୋଟାସୁଦ୍ଧା ଚିନ୍ମୟ ସ୍ୱରୂପରେ ବିରାଜମାନ। ବନ୍ଦନ ଭକ୍ତିର ଆଚାର୍ଯ୍ୟ ମହାଭକ୍ତ ଅକ୍ରୁର ସଙ୍ଗେ ସଙ୍ଗେ ବୁଝିଗଲେ ଏ ଲୀଳାର ରହସ୍ୟ। ଉପରକୁ ଆସନ୍ତେ ଠାକୁରଜୀ ହସି ହସି ପଚାରିଲେ, "ବାବା, ସ୍ନାନ ତର୍ପଣରେ ଏତେ ଅସ୍ୱାଭାବିକ ବିଳମ୍ବ ହେଲା କାହିଁକି? ଜଳ ମଧ୍ୟରେ କଅଣ କିଛି ରହସ୍ୟମୟ କଥା ଦେଖିଲେ କି?" ଅକ୍ରୁରଜୀ ସଙ୍ଗେ ସଙ୍ଗେ ଦୁହିଁଙ୍କ ପାଦତଳେ ପଡ଼ି ସ୍ତୁତି କରିଚାଲିଲେ। ପୁରା ଅଧ୍ୟାୟଟିଏ ଖର୍ଚ୍ଚ କରିଛନ୍ତି ବ୍ୟାସଦେବ ଏହି ସ୍ତୁତିକୁ ଉଲ୍ଲେଖ କରିବାକୁ। ସେଇ ସ୍ଥାନଟି ଏହି ପବିତ୍ର ଅକ୍ରୂର ଘାଟ।

ପୁଣି ଏହି ସ୍ଥାନରେ ଠାକୁରଜୀ ତାଙ୍କ ପ୍ରିୟ ସଖା ଗୋପାଳବାଳକମାନଙ୍କୁ ବୈକୁଣ୍ଠ ଦର୍ଶନ କରାଇଥିଲେ। ଏହାର ଅନ୍ୟ ନାମ ବୈକୁଣ୍ଠ ଦର୍ଶନ ଘାଟ, ବ୍ରହ୍ମଦର୍ଶନ ବା ସଂକ୍ଷେପରେ ବ୍ରହ୍ମହ୍ରଦ।

## ୫. ଶ୍ରୀ ନନ୍ଦଘାଟ:

ପ୍ରଶ୍ନ-୪୧ : ପୂର୍ବ ବର୍ଣ୍ଣିତ ଖଦିର ବନରେ ଯମୁନା କୂଳରେ ଅକ୍ରୂର ଘାଟର ଦକ୍ଷିଣରେ ଅବସ୍ଥିତ ଏହି ନନ୍ଦ ଘାଟ ତୀର୍ଥ । ଦିନକର କଥା ନନ୍ଦମହାରାଜ ପବିତ୍ର ବଡ଼ ଏକାଦଶୀ ବ୍ରତ କରିଥାନ୍ତି । ତିଥି ହେଲା କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ । ନନ୍ଦ ରାଜା ବ୍ରତ କରି ଦିନାନ୍ତେ ଶଯ୍ୟା ଗ୍ରହଣ କଲେ । ପ୍ରତ୍ୟୁଷ ବୋଲି ଭାବି ନିଶାର୍ଦ୍ଧରେ ଭ୍ରମରେ ଏହି ସ୍ଥାନରେ ଶ୍ରୀଯମୁନା ସ୍ନାନ କରିବାକୁ ଜଳମଧ୍ୟରେ ପ୍ରବେଶ କରିଥିଲେ । ଆସୁର ବେଳାରେ ସ୍ନାନ କରୁଥିବାରୁ ବରୁଣ ରାଜାଙ୍କ ପ୍ରହରୀମାନେ ନନ୍ଦଙ୍କୁ ଧରିନେଲେ । ବରୁଣ ରାଜା ବନ୍ଦୀ କରି ତାଙ୍କୁ ରଖିନେଲେ । ଏଣେ ନନ୍ଦଗ୍ରାମରେ ଖୋଜା ଲୋଡ଼ା ଚାଲିଲା । ନନ୍ଦ ରାଜା ସ୍ନାନ କରିବାକୁ ଯାଇ ଫେରିନାହାନ୍ତି । କୃଷ୍ଣ ବଳରାମଙ୍କ ପାଖରେ କଥା ପହଞ୍ଚିଲା । ଠାକୁରଜୀ ବ୍ରଜବାସୀମାନଙ୍କ ସୁରକ୍ଷା ଦାୟିତ୍ୱ ବଡ଼ଭାଇ ବଳରାମଙ୍କୁ ଦେଇ ନିଜେ ବରୁଣପୁର ଚାଲିଲେ ଯମୁନା ଜଳରେ ପ୍ରବେଶ କରି । ସମୁଦ୍ର ରାଜା ଜଳଦେବତା ବରୁଣ ଶ୍ରୀ ଭଗବାନଙ୍କୁ ଦର୍ଶନ କରି ତତ୍‌କ୍ଷଣାତ୍ ଚିହ୍ନିପାରିଲେ । ଦେଖିଲେ ଭଗବାନଙ୍କ ପିତା ନନ୍ଦଙ୍କୁ ବନ୍ଦୀ କରି ରଖି ସେ ଅପରାଧ କରିଛନ୍ତି । ସେ କ୍ଷମା ମାଗିବାକୁ ଯାଇ କିଭଳି ଶବ୍ଦରେ ଶରଣ ପଶିଲେ ନନ୍ଦନନ୍ଦନଙ୍କ ଛତ୍ରଛାୟା ତଳେ ?

**ଅଜାନତା ମାମକେନ ମୂଢ଼େନ ଅକାର୍ଯ୍ୟ ବେଦିନା ।**
**ଆନୀତୋଽୟଂ ତବ ପିତା ତତ୍ ଭବାନ୍ କ୍ଷନ୍ତୁଂ ଅର୍ହସି ॥୭॥**

ଉ. ବରୁଣ ରାଜା ଅତ୍ୟନ୍ତ ବିନମ୍ର ସ୍ୱରରେ କହିଲେ, "ହେ ପ୍ରଭୋ, ମୋ ଅସୁର ଅନୁଚରମାନେ ଆପଣଙ୍କ ପିତା ବୋଲି ଶ୍ରୀନନ୍ଦ ରାଜାଙ୍କୁ ଚିହ୍ନି ନପାରି (ଅଜାନତୋ ମାମକେନ) ମୁର୍ଖାମୀର କାମଟିଏ କରି ଦେଇଛନ୍ତି । ହେଇ, ନିଅନ୍ତୁ ଆପଣଙ୍କ ପିତା ଶ୍ରୀନନ୍ଦ ମହାରାଜାଙ୍କୁ । ଆମମାନଙ୍କୁ କ୍ଷମା କରିଦିଅନ୍ତୁ ।" ଏହା କହି ବରୁଣ ରାଜା ପିତାପୁତ୍ରଙ୍କୁ ସିଂହାସନରେ ବସାଇ ସ୍ତୁତି ବନ୍ଦନା ଗାନ କରି ସେବା ପୂଜା କରି ଉଭୟଙ୍କୁ ପ୍ରସନ୍ନ କରିଥିଲେ । ବରୁଣ ପୁରରୁ ଫେରିବା ପରେ ନନ୍ଦରାଜ ବ୍ରଜବାସୀ ମାନଙ୍କୁ ସେ ସବୁ କଥା କହି ଆଚମ୍ଭିତ କରିଦେଇଥିଲେ ।

**୬. ଶ୍ରୀ ବିଶ୍ରାମ ଘାଟ:**

ପ୍ରଶ୍ନ-୪୨ : ସଂଖ୍ୟାତୀତ ଶ୍ରୀକୃଷ୍ଣ ଲୀଳାର ଯେଉଁ ବିଚିତ୍ର ବିଚିତ୍ର ୨୪ଟି ଲୀଳା ଶ୍ରୀଯମୁନାନଦୀ କୂଳରେ ହୋଇଥିଲେ ସେ ସବୁ ମଧ୍ୟରୁ ବାରଟି ମଥୁରା ସହରର

ଆଦି କେଶବ ମନ୍ଦିର ବା ଦ୍ୱାରକାଧୀଶ ମନ୍ଦିର ଉତ୍ତରକୁ ୧୨ଟି ତୀର୍ଥ ଓ ଦକ୍ଷିଣକୁ ୧୨ଟି ତୀର୍ଥ ଭାବରେ ଜଣାଶୁଣା । ତେବେ ବିଶ୍ରାମ ଘାଟର ଏତେ ପ୍ରସିଦ୍ଧି କ'ଣ ପାଇଁ ?

କଂସ ଉଦ୍ଧାର ପରେ ମଥୁରା ବାସୀମାନେ ମହା ଆନନ୍ଦରେ କୃଷ୍ଣ ବଳରାମଙ୍କୁ ଏକ ସୁସଜ୍ଜିତ ହସ୍ତୀ ପିଠିରେ ବସାଇ ନଗର ଭ୍ରମଣ କରାଇଲେ । ସମଗ୍ର ମଥୁରାବାସୀ ଦ୍ୱାରମାନଙ୍କରେ ପୂର୍ଣ୍ଣକୁମ୍ଭ ବସାଇ ଦୀପ ଜଳାଇ ଦୁର୍ବା, ଅକ୍ଷତ ଓ ଲାଜାବର୍ଷଣ କରୁ କରୁ ମହା ଆନନ୍ଦରେ ବୁଡ଼ିଗଲେ । ଶୋଭାଯାତ୍ରାକୁ ବସୁଦେବଜୀ ଓ ନନ୍ଦ ମହାରାଜା ଏହି ମଥୁରା ଘାଟରେ ବିଶ୍ରାମ କରାଇଲେ । ବାଳକଦ୍ୱୟ ମଲ୍ଲଯୁଦ୍ଧ, କଂସ ଉଦ୍ଧାର କରି କ୍ଳାନ୍ତ ଅବଶ ହୋଇପଡ଼ିଛନ୍ତି । ତାଙ୍କ ପାନ ଭୋଜନ କଥା ନଗରବାସୀ ସଂପୂର୍ଣ୍ଣ ପାଶୋରି ଯାଇଛନ୍ତି । ସୁତରାଂ ସେଠାରେ ସେ ଦୁହିଁଙ୍କ ଲାଗି ଖାନ, ପାନ ଓ ବିଶ୍ରାମ କରାଯାଇଥିବାର ସ୍ମୃତି ବହନ କରି ଏହା ଆଜିର ମଥୁରା ନଗରୀର ବିଶ୍ରାମ ଘାଟ ଏକ ମହାନ ତୀର୍ଥରେ ସେବା ପୂଜାର ହକଦାର ହୋଇଛନ୍ତି । ଏହି ଘାଟରୁ ନଦୀର ଅପର ପାର୍ଶ୍ୱକୁ ଭକ୍ତମାନେ ଦୁର୍ବାସା ଆଶ୍ରମକୁ ଯାଇଥାନ୍ତି ଡ଼ଙ୍ଗା ପାର ହୋଇ ।

ଆଦିକେଶବ ମହାପ୍ରଭୁଙ୍କ ସହିତ ବିଶ୍ରାମଘାଟ ମହାତୀର୍ଥଙ୍କୁ କରବଦ୍ଧ କୋଟି କୋଟି ପ୍ରଣାମ ।

## ୭. ଶ୍ରୀ ବ୍ରହ୍ମାଣ୍ଡ ଘାଟ:

ପ୍ରଶ୍ନ-୪୩: ମହାବନର ପ୍ରାଚୀନ ଗୋକୁଳର ଅତି ନିକଟରେ ଶ୍ରୀଯମୁନା କୂଳରେ ଏହି ପବିତ୍ର ଘାଟ ଦର୍ଶନୀୟ । ଏଠାରେ ଶ୍ରୀଯମୁନା ନଦୀରେ ସ୍ନାନ କରିବା ଲାଗି ସୁନ୍ଦର ପାହାଚମାନ ନିର୍ମାଣ କରାଯାଇଛି । ପାଖରେ ଏକ କଦମ୍ବ ବୃକ୍ଷରେ ସାଲୁ କନା ବାନ୍ଧି ମନସ୍କାମନା ପୂରଣ କରିବାକୁ ଶ୍ରୀ ଯମୁନାଙ୍କୁ ପ୍ରାର୍ଥନା କରାଯାଏ । ସ୍ନାନ ପରେ ମନ୍ଦିରରେ ଶ୍ରୀ ବ୍ରହ୍ମାଣ୍ଡ ବିହାରୀ ଠାକୁର ଦର୍ଶନୀୟ ।

ପାଞ୍ଚବର୍ଷ ବୟସରେ ଶ୍ରୀ ଗୋକୁଳ ଲୀଳାବେଳେ ଠାକୁରଜୀ ଦିନେ କୁଆଡ଼େ ବ୍ରଜ ମାଟି ଖାଇଦେଲେ । ସାଥି ଗୋପାଳ ବାଳକମାନେ ବିଶେଷତଃ ଶ୍ରୀବଳରାମଜୀ ମାଆ ଯଶୋଦାଙ୍କୁ ଏ କଥା ଜଣାଇଥିଲେ । ମା' ଯଶୋମତୀ ଦେଖିଲେ ଅବସ୍ଥା ସଙ୍ଗୀନ । ମାଟି ଖାଇଲେ ନିଶ୍ଚୟ ପିଲାର ସ୍ୱାସ୍ଥ୍ୟ ବିଗିଡ଼ି ଯିବ । ପିଲା ବକଟେ କ'ଣ ବଳେଇ ଯିବକି ? ପ୍ରଥମେ ଗେଲରେ ପରେ ଧମକ ଦେଇ ଏହି ସ୍ଥାନରେ ପଚାରିଥିଲେ ମାଟିଖିଆ କଥା ସତ ନା ମିଛ ବୋଲି । ଭଗବାନ ତ ଲୀଳାମୟ । ସଫେଦ ମିଛ

କହିଦେଲେ, ''ମାଆ, ମୋତେ ବିଶ୍ୱାସ କର । ସେମାନେ ସବୁ ଡ଼ାହା ମିଛୁଆ । ମୁଁ ଆଦୌ ମାଟି ଖାଇନାହିଁ ।'' ତାଙ୍କର ଅଭିପ୍ରାୟ ସେ ମାଟି ନୁହେଁ ବରଂ ବ୍ରଜ ରଜ ଆହରଣ ଆସ୍ୱାଦନ କରିଛନ୍ତି । ବ୍ରଜ ରଜ କଅଣ ମାଟି, ଗାଈ କଅଣ ପଶୁ, ଗଙ୍ଗା କଅଣ ନଦୀ, ତୁଳସୀ କଅଣ ଗଛ, ଶିବଲିଙ୍ଗ ବା ଶାଳଗ୍ରାମ କଅଣ ପଥର । ଜଗନ୍ନାଥ କଅଣ ନିମ୍ବକାଠ ? ଅତଏବ ତାଙ୍କ ମାଟି ଖାଇବା କଥା ମିଥ୍ୟା ନୁହେଁ ତ ଆଉ କଅଣ ? ସ୍ନେହମୟୀ ଯଶୋଦା ତଥାପି ପରତେ ଗଲେନି ବାଳୁତ ପୁଅର ଦମ୍ଭୋକ୍ତିକୁ । ଭଗବାନ ମୁଖ ଖୋଲି ଦିଅନ୍ତେ ଜନନୀ ଯଶୋମତୀ ଗୋବିନ୍ଦଙ୍କ ମୁଖ ମଧ୍ୟରେ କ'ଣ ସବୁ ଦେଖିଲେ (ସା ତତ୍ର ଦଦୃଶେ) ?

**ସା ତତ୍ର ଦଦୃଶେ ବିଶ୍ୱଂ ଜଗତ ସ୍ଥାସ୍ନୁ ଚ ଖଂ ଦିଶଃ ।**
**ସ-ଅଦ୍ରି ଦ୍ୱୀପ-ଅବଧ୍ୱି ଭୂଗୋଳଂ ସବାୟୁ ଅଗ୍ନି-ଇନ୍ଦୁ ତାରକମ୍ ॥୩୭॥**

ଉ. ଭଗବାନ ବାଳକୃଷ୍ଣଙ୍କର ମୁଖ କମଳରେ(ତତ୍ର) ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ କଲେ ମାଆ ଯଶୋଦା । ସେଥିରେ ଚର(ସ୍ଥାସ୍ନୁ), ଅଚର(ଜଙ୍ଗମ) ଜଗତ, ଆକାଶ, ଦଶଦିଗ, ସକଳ ପର୍ବତ, ଦ୍ୱୀପ, ମହୋଦଧି, ବାୟୁ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ର ଗଣ ଦେଖାଯାଉଥିଲେ । ଠାକୁରଜୀ ସଙ୍ଗେ ସଙ୍ଗେ ଯୋଗମାୟାଙ୍କୁ ଆଦେଶ ଦେଇ ମା ଦେଖୁଥିବା ଅଦ୍ଭୁତ ଦୃଶ୍ୟ ଦର୍ଶନ ବନ୍ଦ କରିଦେଲେ । ଐଶ୍ୱର୍ଯ୍ୟ ଦର୍ଶନରେ ମାଧୁର୍ଯ୍ୟ ଲୀଳା କିରକିରା ହୋଇଯିବ । ଏହି ବ୍ରହ୍ମାଣ୍ଡ ଘାଟର ମାଟି ଏବେ ମଧ୍ୟ ଚାଖିଲେ ମିଠା ଲାଗେ । ଭକ୍ତମାନେ ଏଠାରେ ବିକ୍ରୀ ହେଉଥିବା ପାଞ୍ଚ ଦଶ ଟଙ୍କାର ଶୁଖିଲା ମାଟି ଗୋଟାଳି କିଣି କାନିରେ ବାନ୍ଧିବା ଉଚିତ ।

## ୮. ଶ୍ରୀ ଚିନ୍ତାହରଣ ଘାଟ:

ପ୍ରଶ୍ନ-୪୪: ଶ୍ରୀ ଯମୁନାଙ୍କର ଏ ସୁନ୍ଦର ଘାଟଟି ବ୍ରହ୍ମାଣ୍ଡ ଘାଟର ଅଦୂରରେ ଦକ୍ଷିଣରେ ଅବସ୍ଥିତ । ଏଠାର ଠାକୁରଜୀଙ୍କ ନାମ ଶ୍ରୀ ଚିନ୍ତାହରଣ ବିହାରୀ । କେଉଁ ଦୁଇଟି କାରଣରୁ ଏ ଘାଟର ନାମ ଏପରି କରାଯାଇଛି ?

ଉ. ପ୍ରଥମ କାରଣ ହେଲା ଭଗବାନ ନାରାୟଣ ଲୋକନାଥ ହେଲେ ମଧ୍ୟ ଶ୍ରୀ ଶଙ୍କର ବିଶ୍ୱନାଥ ରୂପେ ନିଜ ନିଜ ଭକ୍ତ ଗହଣରେ ପରିଚିତ । ତଥାପି ଉଭୟଙ୍କର ଭେଦ ଅଭେଦ ଦୁଇ କଥା ବୁଝିବା ପାଇଁ ଦୁହେଁ ଅନେକ ଲୀଳା କରିଥାଆନ୍ତି । ଶ୍ରୀ ଗୋଲୋକ ବିହାରୀ କୃଷ୍ଣ ବାଳକୃଷ୍ଣ ରୂପେ ପ୍ରକଟ ହୁଅନ୍ତେ ଶ୍ରୀ ଶଙ୍କରଜୀ କୈଳାସ

ଛାଡ଼ି ଛୁଟି ଆସିଥିଲେ ତାଙ୍କୁ ଦର୍ଶନ କରି କୃତାର୍ଥ ହେବେ ବୋଲି । ହେଲେ ତାଙ୍କର ଚିନ୍ତା ଜୀବ ଭୂମିକାରେ ଶ୍ରୀ ଶିବଜୀ ତାଙ୍କ ମାୟା ପରଦା ହଟାଇ ଶ୍ରୀକୃଷ୍ଣ ଦର୍ଶନ କରିବେ କେମିତି । ଏହି ଘାଟରେ ସମାଧି ଲଗାଇ ବସିଗଲେ ସେ । ଲୀଳାମୟ କୃଷ୍ଣଙ୍କର ଏକ ନାମ ଚିନ୍ତାମଣି । ସୁତରାଂ ସେ ନିଜେ କରୁଣ କ୍ରନ୍ଦନ ଲୀଳା କରି ଶ୍ରୀ ଶିବଜୀଙ୍କୁ ଦର୍ଶନ ଦେବାର ବନ୍ଦୋବସ୍ତ କରି ତାଙ୍କର ଚିନ୍ତା ହରଣ କରିଦେଲେ ।

ଦ୍ୱିତୀୟ କାରଣଟି ମଧ୍ୟ ଆହୁରି ମନୋମୁଗ୍ଧକର । କ୍ଷୁଦ୍ର ସନ୍ତାନର ମୁଖମଣ୍ଡଳରେ ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ କରି ମାତା ଯଶୋଦା ଅତ୍ୟଧିକ ଚିନ୍ତାଗ୍ରସ୍ତ ହୋଇଗଲେ । ପୁଅକୁ ପ୍ରେତ ବାଧା ଲାଗିଗଲା କି ଆଉ ! ନିଶ୍ଚୟ କୌଣସି ଭୂତ, ପ୍ରେତ, ଡ଼ାହାଣୀ, ଚିରଗୁଣୀ ଆବିଷ୍ଟ ହୋଇଥିବ । ତେଣୁ ପ୍ରଥମେ ପୁଅ ଛାତିରେ ଲେଣ୍ଡାଏ ଛେପ ପକାଇଦେଲେ । ପରେ ଗୋରୁ ଗୁହାଳକୁ ନେଇ ଦୌଡ଼ିଲେ । ଗାଈ ଲାଞ୍ଜରେ ପୁଅକୁ ଝାଡ଼ିଦେଲେ । ଗୋମୂତ୍ର ଗୋରଜରେ ସ୍ନାନ ବି କରାଇଲେ । ତଥାପି ମନ ବୁଝୁ ନଥାଏ । ଅତଏବ ଆକୁଳ ଚିତ୍ତରେ ପ୍ରେତ ପତି ଶ୍ରୀ ଶିବଙ୍କୁ ଚିନ୍ତନ କଲେ । ସେ ଆସି ଦର୍ଶନ କରନ୍ତେ ବା ଦର୍ଶନ ଦିଅନ୍ତେ ତାଙ୍କ ଚିନ୍ତାହରଣ ହୋଇଥିଲା । ସେଠାରେ ଏବେ ଶଙ୍କରଜୀଙ୍କ ମନ୍ଦିର ବିରାଜମାନ ହୋଇ ଏ ଲୀଳା ସ୍ମରଣ କରାନ୍ତି କୃଷ୍ଣଭକ୍ତମାନଙ୍କୁ । ଏହି ତୀର୍ଥ ଦର୍ଶନରେ ଜୀବର ସଂସାର ଚିନ୍ତାଯାଏ, ହରି ଚିନ୍ତନ ହୁଏ ।

## ୯. ଶ୍ରୀ କାଳୀୟ ଦଳନ ଘାଟ ବା କାଳୀ ଦହ:

ପ୍ରଶ୍ନ-୪୫: ଶ୍ରୀ ବୃନ୍ଦାବନ ଧାମର ଶ୍ରୀ ଯମୁନା ନଦୀର ଏକ ଅତି ପ୍ରସିଦ୍ଧ ଘାଟ ଏହି କାଳୀ ଦହ । ଆଜି ମଧ୍ୟ ଏଠାରେ ଏକ ମହାନ କଦମ୍ବ ବୃକ୍ଷ ସେ କାଳୀୟ ଦଳନ ଲୀଳାର ସାକ୍ଷ୍ୟ ଦେଉଛନ୍ତି । କାଳୀୟ ନାଗଙ୍କର ଫଣା ସଂଖ୍ୟା ୫,୭,୧୦୦କିମ୍ବା ୧୦୦୦ବିଷୟରେ ଅନେକ ମତମତାନ୍ତର ହୁଏ । ତତ୍ତ୍ୱ ଦୃଷ୍ଟିରୁ ଦେଖିଲେ କିଛି ବି ବିବାଦର ଅବକାଶ ମିଳେନାହିଁ । ମନୁଷ୍ୟର ଦେହ, ଗୃହ, ପତି କିମ୍ବା ପତ୍ନୀ, ଧନ, ଜୀବନ, ଯୌବନ, ସଂପତ୍ତି ଇତ୍ୟାଦି ସଂସାର ଆସକ୍ତି ଏହି ଫଣା ସଂଖ୍ୟାର ସଙ୍କେତ ଅଟେ । ଜୀବର ଭୌତିକ ଆସକ୍ତିକୁ ନଷ୍ଟ କରି ତାକୁ ଶରଣାଗତ କରାଇବା ପଥ ପ୍ରଦର୍ଶନ କରିବାକୁ ଭଗବାନଙ୍କର ଏହି ସବୁ ଲୀଳାର ପ୍ରାକଟ୍ୟ ହୁଏ । ଭଗବାନ ପ୍ରକୃତିର ପଞ୍ଚତତ୍ତ୍ୱ କ୍ଷିତି, ଅପ୍, ତେଜ, ମରୁତ ଓ ଆକାଶ ତତ୍ତ୍ୱଙ୍କୁ ବିଶୋଧନ କରିବା କଥା । ମୃଦ ଭକ୍ଷଣ କରି କ୍ଷିତିକୁ, ଦାବାନଳ ପାନ କରି ଅଗ୍ନିଙ୍କୁ, ତୃଣାବର୍ତ୍ତ ଲୀଳା କରି ବାୟୁ(ମରୁତ)କୁ ଏବଂ ବ୍ୟୋମାସୁର ଉଦ୍ଧାର ଲୀଳାରେ ଆକାଶ ତତ୍ତ୍ୱକୁ ଶୁଦ୍ଧି କରିଥିଲେ ।

ତେବେ ଜଳତତ୍ତ୍ୱକୁ ଶୁଦ୍ଧ କରିବା ଲକ୍ଷ୍ୟରେ ବ୍ରଜବାସୀମାନଙ୍କୁ ବିଷାକ୍ତ ଜଳ ପାନ ବଦଳରେ ଶୁଦ୍ଧ ଯମୁନା ଜଳ ଯୋଗାଇଦେବାକୁ କିପରି ଏହାର ଶୁଦ୍ଧିକରଣ କଲେ ?

**ବିଲୋକ୍ୟ ଦୂଷିତାଂ କୃଷ୍ଣାଂ କୃଷ୍ଣଃ କୃଷ୍ଣ-ଅହିନା ବିଭୁଃ ।**
**ତସ୍ୟା ବିଶୁଦ୍ଧିଂ-ଅନ୍ୱୀଛନ୍ନ ସର୍ପଂ ତଂ ଉଦ୍‌ବାସୟତ ॥୧॥**

ଉ. ଭଗବାନ କୃଷ୍ଣ(ବିଭୁଃ କୃଷ୍ଣଃ) ଦେଖିଲେ ଯେ ଶ୍ରୀଯମୁନା ଜଳ ବିଷାକ୍ତ(ଦୂଷିତାଂ କୃଷ୍ଣାଂ) । ସେ ଚାହିଁଲେ(ଅନ୍ୱୀଛନ୍) ତାକୁ ଶୋଧନ କରିବାକୁ । ସୁତରାଂ ତାକୁ ଜୀବନରେ ନ ମାରି ରମଣକ ଦ୍ୱୀପ(ଆଜିର ପ୍ରଶାନ୍ତ ମହାସାଗର ସ୍ଥିତ ଫିଜି ଦ୍ୱୀପ)କୁ ପଠାଇଦେଲେ । ତତ୍ତ୍ୱତଃ ବୁଝିଲେ ସାଧକ ଆସକ୍ତି ମୁକ୍ତ ହେବାକୁ ନିଜ ମୂଲ୍ୟବାନ ଇନ୍ଦ୍ରିୟମାନଙ୍କୁ ସମୂଳେ ନଷ୍ଟ କରିବା କି ଦରକାର ? ସେମାନଙ୍କର ଦିଗ ବଦଳାଇଦେଲେ କାମ ଶେଷ । ୧୧ ଇନ୍ଦ୍ରିୟଙ୍କୁ ବିଷୟ ସୁଖ ପଛରେ ନ ଦଉଡ଼ାଇ କୃଷ୍ଣ ଲୀଳା, କୃଷ୍ଣଭକ୍ତ ସେବାରେ ଲଗାଇଦେଲେ ତାର ପାଇଟି ଛିଣ୍ଡିବ । ଭଗବାନ ଠିକ୍ ସେଇ କଥା କରିଛନ୍ତି । କାଳୀୟ ନାଗର ମସ୍ତକ ଉପରେ ନିଜ ଦିବ୍ୟ ଚରଣ କମଳ ରଖି ତାକୁ ବିଶେଷ କୃପା କରିଛନ୍ତି । ସକୁଟୁମ୍ବେ ରମଣକ ଦ୍ୱୀପକୁ ପ୍ରେରଣ କରିଦେଇଛନ୍ତି । ସେତେବେଳେ କାଳୀୟଙ୍କ ପତ୍ନୀମାନେ ଆଦୌ ଦୁଃଖିତା ହୋଇନାହାନ୍ତି । ବରଂ ଆନନ୍ଦରେ ଆତ୍ମହରା ହୋଇ ନିଜ ପତିଦେବ ତାଙ୍କ ମସ୍ତକରେ ଭଗବାନଙ୍କର ଚରଣ କମଳ ସ୍ଥାପନକୁ ଆଶିର୍ବାଦ ମାନିଛନ୍ତି । ଦୀର୍ଘ ସ୍ତୁତି ଶ୍ଳୋକମାନ ଗାନ କରି ସେମାନେ ଠାକୁରଜୀଙ୍କୁ ପ୍ରସନ୍ନ କରିଛନ୍ତି ।

ଏହି ପବିତ୍ର ଘାଟରେ କାଳୀୟ ଦହ ବିହାରୀ ଠାକୁରଙ୍କ ମନ୍ଦିର ଦର୍ଶନୀୟ । ପାଖରେ ଦେଖି ପାରନ୍ତି ଶ୍ରୀ ପ୍ରବୋଧାନନ୍ଦ ସରସ୍ୱତୀଙ୍କ ସମାଧିସ୍ଥଳୀ । ଯେଉଁ ମହାତ୍ମା ବୃନ୍ଦାବନ ମାହାତ୍ମ୍ୟ ଗ୍ରନ୍ଥକୁ ସତରଶହ ଶ୍ଳୋକରେ ରଚନା କରି ଅମରତ୍ୱ ପ୍ରାପ୍ତ ହୋଇଛନ୍ତି । ସେ ଶହେ ଶ୍ଳୋକରେ ଶ୍ରୀମନ ମହାପ୍ରଭୁଙ୍କର ମଧ୍ୟ ସ୍ତୁତି ଗାନ କରିଯାଇଛନ୍ତି ।

## ୧୦. ପ୍ରସ୍କନ୍ଦନ ଘାଟ ବା ସୂର୍ଯ୍ୟଘାଟ ଓ ଇମିଲିତାଲା ଘାଟ:

ପ୍ରଶ୍ନ-୪୬: କାଳୀଦହର ଅଳ୍ପ ଦୂରରେ ଦକ୍ଷିଣରେ ଶ୍ରୀମଦନ ମୋହନ ମନ୍ଦିର । ଏହି ମନ୍ଦିର ଦ୍ୱାଦଶ ଆଦିତ୍ୟ ବା ସୂର୍ଯ୍ୟଘାଟ ଟିଲା ଉପରେ ନିର୍ମିତ ହୋଇଛନ୍ତି । କାଳୀୟ ଦମନ ଲୀଳା ପରେ ଠାକୁରଜୀଙ୍କୁ ସାମାନ୍ୟ ଶୀତଳତା ବୋଧ ହେଲା । ସେ ଏହି ସ୍ଥାନରେ ବିଶ୍ରାମ କରୁଥିଲେ । ଶ୍ରୀ ସୂର୍ଯ୍ୟନାରାୟଣ ଭଗବାନ ତାଙ୍କ ଚିନ୍ମୟ ରୂପ

(ଦ୍ୱାଦଶ ଆଦିତ୍ୟ ଭାବ)ରେ ଆସି ଶ୍ରୀକୃଷ୍ଣଙ୍କ ଦେହକୁ ଉଷ୍ମ ହେବାର ବ୍ୟବସ୍ଥା କଲେ । ଭଗବାନଙ୍କ ସୁକୋମଳ ତନୁରୁ କେଇ ବୁନ୍ଦା ଦିବ୍ୟ ଶ୍ରମସ୍ୱେଦ ବିନ୍ଦୁ(ପ୍ରସ୍କନ୍ଦନ) ଝରି ପଡ଼ିଥିଲା । ବ୍ରଜବାସୀମାନେ ଏ ସ୍ଥାନର ନାମ ସେହି ଦିନଠାରୁ ସୂର୍ଯ୍ୟଘାଟ ବୋଲି ରଖିଛନ୍ତି ।

ଏହି ଘାଟର ଠିକ୍ ଦକ୍ଷିଣ ଦିଗରେ ଶ୍ରୀ ଯମୁନା କୂଳରେ ଆହୁରି ଏକ ଅତି ମନୋରମ ବିଖ୍ୟାତ ଇମିଲିତାଲା ଘାଟ ଅବସ୍ଥିତ । ଏହି ଘାଟରେ ଶ୍ରୀମନ ଗୌରାଙ୍ଗ ମହାପ୍ରଭୁ ୫୦୦ବର୍ଷ ପୂର୍ବେ ଧ୍ୟାନ ଓ ବିଶ୍ରାମ କରିଥିଲେ ଏକ ତେନ୍ତୁଳି ବୃକ୍ଷ(ଇମଲି) ତଳେ । ଶ୍ରୀରାଧା ଗୋବିନ୍ଦଙ୍କ ମହାରାସ ଲୀଳା ଏହି ସ୍ଥାନର ନିକଟରେ ହୋଇଥିବାର ସେ ଧ୍ୟାନ ବଳରେ ଜାଣିପାରି ଭକ୍ତମାନଙ୍କ ଆଗରେ ପ୍ରକାଶ କରିଥିଲେ । ଏହି ସ୍ଥାନର ଦକ୍ଷିଣରେ ଏବେ ମଧ୍ୟ ଶୃଙ୍ଗାର ବଟ, ଗୋବିନ୍ଦ ଘାଟ, ରାସମଣ୍ଡଳ ବେଦୀମାନ ନିର୍ମିତ ହୋଇ ଶୋଭାପାଉଛନ୍ତି । ୫୦୦ ବର୍ଷ ପୁରୁଣା ଏହି ତେନ୍ତୁଳି ବୃକ୍ଷଟି ଏ ପର୍ଯ୍ୟନ୍ତ ଥିଲା । ଅଳ୍ପଦିନ ପୂର୍ବରୁ ସେ ବୃକ୍ଷ ଦେହ ଛାଡ଼ିଲେ । ସେ ସ୍ଥାନରେ ଏକ ନୂତନ ତେନ୍ତୁଳି ବୃକ୍ଷ ରୋପିତ ହୋଇଛନ୍ତି । ପୁରୁଣା ବୃକ୍ଷର ଗଣ୍ଡିର ଅଂଶମାନଙ୍କୁ ବ୍ରଜବାସୀମାନେ ବାଣ୍ଟିକୁଣ୍ଟି ଘରକୁ ନେଇଯାଇ ନିଜ ନିଜ ମନ୍ଦିରରେ ପୂଜା କରୁଛନ୍ତି । ବାକି ମୂଳ ଗଣ୍ଡିଟି ସେହି ସ୍ଥାନରେ ଟିଣ ପାତ ଘେରାଯାଇ ସୁରକ୍ଷିତ ଭାବରେ ରଖାଯାଇଛନ୍ତି । ଗୌରାଙ୍ଗ ମହାପ୍ରଭୁଙ୍କ ଲୀଳାମାନ ଏବେ ସେଠାରେ ସୁନ୍ଦର ଭାବରେ ଚିତ୍ରିତ ହୋଇ ଶୋଭାୟମାନ ହେଉଛନ୍ତି ।

## ୧୧. ଶ୍ରୀ ଶୃଙ୍ଗାର ଘାଟ ଏବଂ ଶ୍ରୀ ଗୋବିନ୍ଦ ଘାଟ:

ପ୍ରଶ୍ନ-୪୭: ଇମଲି ତାଲା ଘାଟର ଅଳ୍ପ ଦୂରରେ ଦକ୍ଷିଣରେ ଶୃଙ୍ଗାରଘାଟ ଦର୍ଶନୀୟ । ନିତ୍ୟାନନ୍ଦ ପ୍ରଭୁ ବୃନ୍ଦାବନ ଆସିଥିବା ବେଳେ ଏହି ସ୍ଥାନରେ ଲୀଳା ଖେଳା ଆଦି କରିଥିଲେ ବୋଲି ପ୍ରମାଣ କିଛି ଅଛି କି ?

ଉ. ସେଠାରେ ଥିବା ବଟବୃକ୍ଷଟି ଦେହ ତ୍ୟାଗ କରିବା ଅନେକ ଦିନ ହେଲାଣି । ଏକ ନୂତନ ବଟବୃକ୍ଷ ସେଠାରେ ରୋପିତ ହୋଇଛନ୍ତି । ମୂଳ ବୃକ୍ଷର ମୂଳ ଏବେ ମଧ୍ୟ ମନ୍ଦିର ବେଢ଼ାରେ ସଂରକ୍ଷିତ ହୋଇ ରହିଛନ୍ତି । ସେଠାରେ ଏକ ସୁନ୍ଦର ଗୌର ନିତାଇ ମନ୍ଦତିର ସେବିତ ହେଉଛନ୍ତି । ନିତ୍ୟାନନ୍ଦ ପ୍ରଭୁଙ୍କର ବଂଶଧରମାନେ ଆଜିକାଲି ସେଠାରେ ଅବସ୍ଥାନ କରି ମନ୍ଦିରର ସେବା ପୂଜା ଆଦି କରୁଛନ୍ତି । ମହାରାସ ସମୟରେ ଶ୍ରୀରାଧାରାଣୀଙ୍କୁ ସଙ୍ଗରେ ଧରି ଠାକୁରଜୀ କିଛି ସମୟ ଲାଗି ଏହି ସ୍ଥାନକୁ

ଚାଲି ଆସିଥିଲେ । ପାଖ ପୁଷ୍ପ ବାଟିକାରୁ ପୁଷ୍ପ ଚୟନ କରି ସେ ନିଜେ ମାଳ ଗୁନ୍ଥି ଶ୍ରୀରାଧାଙ୍କ ଗଭାରେ ମଣ୍ଡନ କରିଥିଲେ । ତାଙ୍କ କେଶ ବିନ୍ୟାସ କରୁଥିବା, ତାଙ୍କ ପାଦରେ ରଙ୍ଗ ଅଳତା ଲଗାଉଥିବା ଦୃଶ୍ୟ ଏହି ମନ୍ଦିରରେ ଫ୍ରେମ ବନ୍ଧା ଫଟୋ ଦେଖିବାକୁ ମିଳିଥାଏ । ପାଖରେ ଏକ କୁଣ୍ଡରେ ରମଣ ରେତିର ରେତ (ବାଲି) ସଂକେତ କରନ୍ତି ଏ ସେହି ଭାଗ୍ୟବାନ ବ୍ରଜରେଣୁ ଯାହା ଗୋପୀ ଗୋପୀନାଥଙ୍କ ମହାରାସ ବେଳର ଚରଣ କମଳ ସ୍ପର୍ଶରେ ପବିତ୍ର ହୋଇଛନ୍ତି ।

ପାଖରେ ସେଇ ଯମୁନା କୂଳରେ ବୃନ୍ଦାବନ ବସଷ୍ଟାଣ୍ଡରୁ ଆସିଥିବା ଏକ ଓସାରିଆ ରାସ୍ତାର ମୁହଁ ଆକାରରେ ଶ୍ରୀ ଗୋବିନ୍ଦ ଘାଟ ବିଦ୍ୟମାନ । ଏ ସେହି ପବିତ୍ର ସ୍ଥାନ ଯେଉଁଠାରେ ଗୋପାଙ୍ଗନାମାନେ ମହାରାସ ବେଳେ ହଜିଥିବା ଗୋବିନ୍ଦଙ୍କୁ ବ୍ୟାକୁଳରେ ଅନେକ ଖୋଜି ଖୋଜି ପୁନଃପ୍ରାପ୍ତ ହୋଇଥିଲେ । ସେତେବେଳକୁ ତାଙ୍କ ସାଙ୍ଗରେ ଶ୍ରୀମତୀ ମଧ୍ୟ ଥାଆନ୍ତି । ଏହି ଅଞ୍ଚଳକୁ ଏବେ ରାସମଣ୍ଡଳ ଆଖ୍ୟା ଦିଆଯାଉଛି । ପ୍ରତ୍ୟେକ ବର୍ଷ ଆଶ୍ୱିନ ପୂର୍ଣ୍ଣିମା ବେଳକୁ ଓଡ଼ିଶାର କଳାକାରମାନେ ଯାଇ ସେଠାରେ ରାସଲୀଳା ଅଭିନୟ କରିଥାନ୍ତି । ପାଖରେ ଲାଡ଼ଲୀ ଶରଣଜୀଙ୍କ ମନ୍ଦିରରେ ବର୍ଷସାରା ବିଶେଷତଃ କାର୍ତ୍ତିକ ମାସରେ ଭାଗବତ ପ୍ରବଚନ, ପାରାୟଣ, ସେବା ଏବଂ ପୂଜା ଧୁମ୍‌ଧାମରେ ପାଳିତ ହୋଇଥାଏ ।

## ୧୨. ଶ୍ରୀକେଶୀ ଘାଟ ଓ ଶ୍ରୀପାନି ଘାଟ:

ପ୍ରଶ୍ନ-୪୮: ଶ୍ରୀ ବୃନ୍ଦାବନର ଶ୍ରୀ ଗୋବିନ୍ଦ ଘାଟ ଦକ୍ଷିଣରେ ଏହି ଘାଟ ଦୁଇଟି କାହିଁକି ଏତେ ବିଖ୍ୟାତ ହୋଇପାରିଛନ୍ତି ?

ଉ. କାରଣ ଏହି ଦୁଇଟି ନଦୀ ଘାଟ ବର୍ତ୍ତମାନ ଅନେକ ମଠ, ମନ୍ଦିର, ବିଶ୍ରାମଗାର ଆଦିଙ୍କୁ ଏଠାରେ ସ୍ଥାନ ଦେଇଛନ୍ତି । କଂସ ଅନୁଚର କେଶୀ ଅସୁର(ମୟ ଦାନବର ପୁତ୍ର) ଏକ ବିଶାଳକାୟ ଅଶ୍ୱରୂପ ଧାରଣ କରି ଗୋପୀମାନଙ୍କୁ ଆକ୍ରମଣ କରିଥିଲା । ଉଦ୍ଦେଶ୍ୟ ଥାଏ ଗୋପୀନାଥ ଯଦି ଗୋପୀମାନଙ୍କୁ ରକ୍ଷା କରିବା ପାଇଁ ଆସନ୍ତି ତାଙ୍କୁ ପ୍ରାଣରେ ମାରି କଂସ ରାଜାଙ୍କଠାରୁ ବାହାବା ନେବ । ଗୋପୀମାନଙ୍କ ଚିତ୍କାର ଶୁଣି ଭଗବାନ ସଖାମାନଙ୍କୁ ଧରି ତୁରନ୍ତ ଆସି ପହଞ୍ଚିଗଲେ । ଖେଳରେ ଖେଳରେ ତାର ଦୁଇ ପଛ ଗୋଡ଼କୁ ଧରି ଶୂନ୍ୟରେ ବୁଲାଇ ବୁଲାଇ ଦୂରକୁ ଫିଙ୍ଗି ଦେଲେ । ଅସୁର ନ ମରି ପୁଣି ମୁଖ ବ୍ୟାଦାନ କରି ଧାଇଁ ଆସିଲା । ଲୀଳା ବିହାରୀ କୃଷ୍ଣ ଏହି ସ୍ଥାନରେ ତା ମୁଖରେ ନିଜ ଆଜାନୁଲମ୍ବିତ ବାହୁକୁ ଭର୍ତ୍ତି କରିଦେଇ ଅତିଶୟ

ଉତ୍ତାପଯୁକ୍ତ କରିଦେଲେ । କେଶୀ ସେ ପୋଡ଼ା ଜଳା ଯାତନା ସହ୍ୟ କରିନପାରି ଏହି ସ୍ଥାନରେ ପ୍ରାଣ ତ୍ୟାଗ କଲା । ଭଗବାନଙ୍କ ହାତରେ ମରିଥିବାରୁ ଉଦ୍ଧାର ପାଇ ବୈକୁଣ୍ଠ ଲୋକ ଗମନ କରିଥିଲା । ଲୀଳାସ୍ଥଳୀର ନାମ ରହିଗଲା ଶ୍ରୀକେଶୀ ଘାଟ ।

ଶ୍ରୀ ବୃନ୍ଦାବନ ଦକ୍ଷିଣ ସୀମା ଶେଷ ଆଡ଼କୁ ଶ୍ରୀଯମୁନା ନଦୀର ପଶ୍ଚିମ ଦିଗରେ ଅବସ୍ଥିତ ଏହି ପାନିଘାଟ । ନଦୀର ଅପର ପାର୍ଶ୍ୱରେ ଏବେ ଦୁର୍ବାସା ଆଶ୍ରମ ଦର୍ଶନୀୟ । ଥରେ ଗୋପଲଳନା ମାନେ ଦୁର୍ବାସା ଋଷିଙ୍କୁ ବ୍ରାହ୍ମଣ ଭୋଜନ ଦେଇ ତୃପ୍ତ କରିବାକୁ ଇଛା କଲେ । ସେମାନେ ଅନେକ ମିଷ୍ଟାନ୍ନ, ସ୍ୱାଦୁଯୁକ୍ତ ପକ୍ୱ ଅନ୍ନ ଧରି ଯମୁନା କୂଳରେ ପହଞ୍ଚିଲେ । ଦେଖିଲେ ଯମୁନା ଦୁଇକୂଳ ଖାଇ ବହୁଛନ୍ତି । ଯମୁନା ନଦୀ ପାର ହେବେ କିପରି ? ହଠାତ୍ ଦେଖାଦେଲେ ଦୁର୍ବାସା ଋଷିଙ୍କ ଶିଷ୍ୟ ଶ୍ରୀବାଳକୃଷ୍ଣ । ଗୋପୀମାନେ ନଦୀ ପାର ହେବାକୁ ନୌକା ଖୋଜିବାକୁ ତାଙ୍କୁ ନିବେଦନ କଲେ । ଗୋବିନ୍ଦ ବତାଇଦେଲେ ଅନ୍ୟ ଏକ ଉପାୟ । କହିଲେ, ''ଯାଅ ଗୋପାଳୁଣୀମାନେ, ଯମୁନା ନଦୀକୁ କହିବ ଯେ ଯଦି ନନ୍ଦ ନନ୍ଦନ ଆଜନ୍ମ ବ୍ରହ୍ମଚାରୀ ହେବା ସତ କଥା ତେବେ ଆମକୁ ଯିବାକୁ ବାଟ ଛାଡ଼ିଦିଅ ।'' ଗୋପୀମାନେ ଖୁବ୍ ବହେ ମନେ ମନେ ହସିଲେ । ଯେଉଁ କୃଷ୍ଣ ଅନେକ ଗୋପୀଙ୍କ ପଣତ କାନି ଟାଣିପାରେ, ଆଖି ମାରି ପାରେ ବାଟରେ ଘାଟରେ ନାନା ହଟହଟା କରେ ସେ ପୁଣି ବ୍ରହ୍ମଚାରୀ !!!'' ତଥାପି କଷ୍ଟେ ମଷ୍ଟେ ଯମୁନା କୂଳକୁ ଗଲେ । କୃଷ୍ଣଙ୍କ କହିଥିବା କଥା କହିଲେ ମଧ୍ୟ । କି ଆଶ୍ଚର୍ଯ୍ୟ କଥା । ତତ୍କ୍ଷଣାତ୍ ଯମୁନା ଜଳ ଦୁଇ ଭାଗ ହୋଇଗଲା । ଗୋପୀମାନେ ଅନାୟାସରେ ନଦୀ ପାର ହୋଇ ଦୁର୍ବାସାଙ୍କ ଆଶ୍ରମରେ ପହଞ୍ଚିଲେ ।

ଦୁର୍ବାସା ମହର୍ଷି ଯୋଗୀ ଲୋକ । ତାଙ୍କ ଖାଇବା କେହି ଦେଖି ପାରନ୍ତି ନାହିଁ । ଗୋପୀମାନେ ତାଙ୍କୁ ଅନ୍ନ ବ୍ୟଞ୍ଜନ ଆଦି ଖାଇବାକୁ ବାଧ କଲେ । ଦୁର୍ବାସା କୃଷ୍ଣାର୍ପଣ ମନ୍ତ୍ର ବୋଲି ଭୋଜନ କରି ଚାଲିଲେ । ତିନି ପାଞ୍ଚଜଣ ଗୋପୀନୁହନ୍ତି । ଶହ ଶହ ଗୋପୀଙ୍କ ସକଳ ଭୋଜନ ପଦାର୍ଥ ଖାଇ ଭୋଗ ଡ଼ାଲା, ବାସନ କୁସନ ସବୁ ଖାଇ ଖାଲି କରିଦେଲେ । ଗୋପୀମାନେ ଋଷିଙ୍କୁ ଦଣ୍ଡବତ କରି ଏବେ ଫେରିବାକୁ ବାହାରିଲେ । ଅଡୁଆ କଥା ହେଲା । ଯମୁନା ପୁଣି ଜଳପୂର୍ଣ୍ଣ । ଭାବିଲେ ଋଷି ତ ଚମତ୍କାରୀ ବାବା । କେତେ ସିଦ୍ଧିର ଅଧିକାରୀ । ଋଷିଙ୍କୁ ଯମୁନା ପାର ହେବାର ଉପାୟ ପଚାରିଲେ ନିରୀହା ଗୋପାଙ୍ଗନାମାନେ । ମହର୍ଷି ହସି ହସି କହିଲେ, ''କିଛି ଚିନ୍ତା କରନାହିଁ । ଯାଅ, ଯମୁନା ନଦୀଙ୍କୁ ପଚାର ଦୁର୍ବାସା ଆଜି କିଛି ଭୋଜନ କରି

ନଥିବା ଯଦି ସତ କଥା ତେବେ ଆମକୁ ନଦୀ ପାର ହେବାକୁ ବାଟ ଦିଅ ।'' ଗୋପୀମାନେ ପରସ୍ପର ମୁହଁ ଚାହିଁ ହସିଲେ । ଭାବିଲେ କୃଷ୍ଣଙ୍କ ବ୍ରହ୍ମଚାରୀ ରହିବା ନ ରହିବା ଦେଖି ନଥିଲେ ସିନା କିନ୍ତୁ ଏ ବାବାଜୀଙ୍କୁ ତ ଆମେ ନିଜ ହାତରେ ଖୁଆଇଛେ । ନ ଖାଇବା କଥା ସତ ହେବ କେମିତି ? ତଥାପି କହିଲେ, ''ଚାଲ ତ ଦେଖି, ଏ ବଡ଼ ଚମତ୍କାରୀ ବାବା । ଦେଖାଯାଉ ଯାଙ୍କର କଥାର ସତ୍ୟତା କେତେ ?'' ଗୋପ ଲଳନାମାନେ ହସ କୌତୁକ କରି କରି ଶ୍ରୀଯମୁନା ପୁଳିନରେ ପହଞ୍ଚିଲେ । ମହର୍ଷିଙ୍କ କହିଥିବା କଥା ତାଙ୍କୁ କହିଲେ । ହାୟ, ଏ କି କାଣ୍ଡ, ଶ୍ରୀ ଯମୁନା ସାକ୍ଷୀଦେଲେ, ଦୁର୍ବାସା ନିଜେ କିଛି ଖାଇନାହାନ୍ତି । ସବୁ ତାଙ୍କ ଚେଲା କୃଷ୍ଣଙ୍କୁ ଖୁଆଇଦେଇଛନ୍ତି । ଯମୁନା ବାଟ ଛାଡ଼ିଦେଲେ । ସଙ୍ଗେ ସଙ୍ଗେ ଗୋପୀମାନେ ନଦୀ ପାର ହୋଇ ଠାକୁରଜୀଙ୍କ ପାଖରେ ପହଞ୍ଚିଗଲେ । ଯମୁନା ନଦୀଙ୍କର ଜୟଗାନ, ଦୁର୍ବାସା ଋଷିଙ୍କର ଜୟଗାନ ଲୀଳାମୟ ଶ୍ରୀକୃଷ୍ଣଙ୍କର ଜୟଗାନ, ଗୁରୁ-ଚେଲାଙ୍କର ଜୟଗାନ ସହିତ ଭକ୍ତି-ଭକ୍ତ-ଭଗବାନ-ଗୁରୁ ଚାରିଜଣଙ୍କର ଜୟଗାନ କରି କରି ହୁଳହୁଳି ଦେଇ ବୃନ୍ଦାବନ ଧାମ ପ୍ରକମ୍ପିତ କରିଦେଇଥିଲେ ।

ଆଜିର ଶ୍ରୀ ବୃନ୍ଦାବନର ପାନିଘଟ ସେଇ ଲୀଳାସ୍ଥଳୀ । ତାକୁ ପାଖରୁ ଓ ଦୂରରୁ ଆମର କୋଟି ଦଣ୍ଡବତ ।

## (ଙ) ଦ୍ୱାଦଶ କୁଣ୍ଡ

### ୧. ଶ୍ରୀ ରାଧାକୁଣ୍ଡ ଓ ଶ୍ରୀ ଶ୍ୟାମ କୁଣ୍ଡ:

ପ୍ରଶ୍ନ-୪୯ : ଶ୍ରୀରାଧାକୁଣ୍ଡ ଓ ଶ୍ରୀ ଶ୍ୟାମକୁଣ୍ଡ ଦୁଇଟିର ପ୍ରାକଟ୍ୟ କେଉଁଠି ଓ କାହିଁକି ହେଲା ?

ଉ. ଶ୍ରୀ ଗିରିଗୋବର୍ଦ୍ଧନଙ୍କର ପରିକ୍ରମା କରିବା ସମୟରେ ପଶ୍ଚିମ ସୀମାରେ ଏକ ଅତି ସଂକୀର୍ଣ୍ଣ ଗଳି ରାସ୍ତା ଦେଇ ଯିବାକୁ ହୁଏ ଯେଉଁଠାରେ ଗାଡ଼ି ମୋଟର ଚଳାଚଳର ଅସୁବିଧା ଦୂର କରିବାକୁ ଏବେ ଏକ ନୂତନ ବାଇପାସ ନିର୍ମାଣ କରାଯାଇଛି । ସେହି ସ୍ଥାନର ନାମ ଶ୍ରୀରାଧାକୁଣ୍ଡ ଯାହାକି ଷଡ଼ଗୋସ୍ୱାମୀମାନଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀରଘୁନାଥ ଗୋସ୍ୱାମୀ ଦେବଙ୍କ ଆଶ୍ରମ ଓ ସମାଧିସ୍ଥଳ । ପୃଥିବୀର ସର୍ବାପେକ୍ଷା ଗରିବ ତମ ବିଧବା ମାନଙ୍କର ଦର୍ଶନ ଏହି ଠାରେ କରିହୁଏ । ସେମାନେ ଖଣ୍ଡିଏ ଖଣ୍ଡିଏ ପରିଷ୍କାର ଧଳା ଲୁଗା ପିନ୍ଧି କାନି ପତେଇ ଦିନସାରା ବସିଥାଆନ୍ତି କେତେବେଳେ

ଶ୍ରୀ ରାଧାରାଣୀ କୃପା କରି କାହା ହାତରେ ଦଶ କୋଡ଼ିଏ ପଇସା ଦେବେ ପରା ! ଆଶା ଥାଏ ଏ ଦେହ ରକ୍ଷା ହେବ ଦିନକ ପାଇଁ । ତାଙ୍କ ନାମ ଜପିବି । ଏହି ସ୍ଥାନର ଚାରିକିଲୋମିଟର ଦୂରରେ ଅଛି ଆରିଟ(ଅରିଷ୍ଟାସୁର) ଗ୍ରାମ । ଏହି ଗ୍ରାମ ଚିହ୍ନିତ କରୁଛନ୍ତି ଶ୍ରୀମଦ୍ଭାଗବତ ବର୍ଣ୍ଣିତ କଂସ ପ୍ରେରିତ ଅରିଷ୍ଟାସୁର ଉଦ୍ଧାର ସ୍ଥଳକୁ । ଏହି ଅସୁର ଏକ ପ୍ରକାଣ୍ଡ ବୃଷଭ (ଷଣ୍ଢ) ରୂପରେ ଏଠାକୁ ଆସି ଗୋପୀ ଗୋପାଳଙ୍କୁ ଆକ୍ରମଣ କରିଥିଲା । ଲୀଳା ବିହାରୀ କୃଷ୍ଣ ବିଚରାକୁ ମାରି ସଦ୍‌ଗତି ପ୍ରଦାନ କଲେ । ତଥାପି ଗୋପୀ ଗୋପାଳଙ୍କ ଖେଳ ଆରମ୍ଭ ହେଲା ନାହିଁ । ଶ୍ରୀରାଧା ଠାକୁରଜୀଙ୍କୁ ସ୍ପର୍ଶ କରିବାକୁ ମନା କଲେ । ପୂର୍ବେ ବୃତ୍ରାସୁର ବ୍ରାହ୍ମଣଙ୍କୁ ହତ୍ୟାକରି ସ୍ୱର୍ଗ ସମ୍ରାଟ ଦେବରାଜ ଇନ୍ଦ୍ର ବ୍ରହ୍ମହତ୍ୟା ପାପଭାଗୀ ହୋଇଥିଲେ । ଏବେ ଶ୍ରୀକୃଷ୍ଣ ବୃଷଭ ଅସୁରକୁ ମାରି ଗୋହତ୍ୟା ପାପଭାଗୀ ହୋଇଛନ୍ତି । ସମଗ୍ର ଜଗତର ତୀର୍ଥ ଜଳରେ ସ୍ନାନ କଲେ ଏ ପାପରୁ ମୁକ୍ତ ହୋଇପାରିବେ ସେ ।

**ପ୍ରଥମ ମତ:** ଠାକୁରଜୀ ନିଜ ଏକ ଚରଣ କମଳର ଗୋଇଠି ଭୂମିରେ ପ୍ରହାର କଲେ । ସେ ତ ଇଚ୍ଛାମୟ ଓ ଲୀଳାମୟ । ତାଙ୍କ ଇଚ୍ଛାରୁ ଯୋଗମାୟାଙ୍କ ଦ୍ୱାରା ତତ୍‌କ୍ଷଣାତ ସେଠାରେ ଏକ ଜଳସ୍ରୋତ ସହ କୁଣ୍ଡ ପ୍ରକଟ ହେଲା । ନାମ ରଖାଗଲା କୃଷ୍ଣ କୁଣ୍ଡ ବା ଶ୍ୟାମକୁଣ୍ଡ । ଶ୍ରୀରାଧା ପ୍ରମାଣ ଚାହିଁଲେ ତୀର୍ଥମାନଙ୍କର । ତୀର୍ଥମାନେ ଦିବ୍ୟ ଶରୀର ଧରି ନିଜ ନିଜର ପରିଚୟ ଦେଲେ । ଭଗବାନ ସେ ଜଳରେ ସ୍ନାନ କରି ନିଜେ ଶୁଦ୍ଧ ହେଲେ । ଗୋପୀମାନଙ୍କୁ ଶୁଦ୍ଧ ହେବାକୁ କହିଲେ । ରାଧା ରାଣୀ ଅମଙ୍ଗ ହେଲେ । ନିଜେ ଭୂମିରେ କଙ୍କଣ ଆଘାତ କରି ସେହି ସ୍ଥାନରେ ଆଉ ଏକ କୁଣ୍ଡ ପ୍ରକଟ କରାଇଲେ । ଶ୍ରୀକୃଷ୍ଣଙ୍କ ଆଦେଶରେ କୃଷ୍ଣ କୁଣ୍ଡରୁ ତୀର୍ଥମାନେ ଆନନ୍ଦରେ ଆସି ସେ କୁଣ୍ଡକୁ ମଧ୍ୟ ପୂର୍ଣ୍ଣକଲେ । ତାଙ୍କର ନାମ ରଖାଗଲା ରାଧାକୁଣ୍ଡ । ଏବେ ଗୋପୀମାନେ ଶ୍ରୀରାଧାଙ୍କ ସହିତ ଶ୍ୟାମ କୁଣ୍ଡରେ ସ୍ନାନ କଲେ । ଗୋପାଳମାନେ ମଧ୍ୟ ଶ୍ରୀରାଧାକୁଣ୍ଡରେ ସ୍ନାନ କଲେ । ହସ ପରିହାସ ଖେଳ କୌତୁକରେ ସମସ୍ତେ ଆନନ୍ଦ ପ୍ରାପ୍ତ ହେଲେ । ଆଜି ସେଇ ଦୁଇ କୁଣ୍ଡ କୃଷ୍ଣ ଭକ୍ତମାନଙ୍କ ଲାଗି ଏକ ମହାନ ତୀର୍ଥ ଭାବରେ ଗଣା ଯାଉଛନ୍ତି ।

**ଦ୍ୱିତୀୟମତ:** ଶ୍ରୀ ବୃନ୍ଦାବନ ଧାମ ନିବାସୀ ଭାଗବତ ପ୍ରବଚକ ଶ୍ରୀ ପୁଣ୍ଡରୀକ ଗୋସ୍ୱାମୀଙ୍କ ମତରେ ସେତେବେଳେ ଭାରତର ସକଳ ନଦନଦୀ ସରୋବର ସମୁଦ୍ର ଆଦି ତୀର୍ଥ ଆସି ପହଞ୍ଚିଗଲେ । ଠାକୁରଜୀ କିନ୍ତୁ ରାଧାରାଣୀଙ୍କୁ କହିଲେ, "ଗୋ

ରାଧେ, ଏସବୁ ତୀର୍ଥ ମୋତେ ଶୁଦ୍ଧ କରିବାରେ ସର୍ବଥା ଅକ୍ଷମ । ସେମାନେ ନିଜେ ପବିତ୍ର ହେବାକୁ ମୋତେ ଆଶ୍ରୟ କରିଛନ୍ତି ପରା । ଅତଏବ ମୋର ଶୁଦ୍ଧିକରଣର ଉପାୟ ବତେଇ ଦେଉଛି ।'' ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ଯୋଗମାୟାଙ୍କୁ ସ୍ମରଣ କରି ଏକ ଦିବ୍ୟ ସିଂହାସନ ପ୍ରକଟ କରାଇଦେଲେ । ରାଧାରାଣୀଙ୍କୁ ସେଥିରେ ବିରାଜମାନ କରାଇଦେଲେ । ତୀର୍ଥମାନଙ୍କୁ ଆଦେଶ ଦେଲେ ଅଭିଷେକ ଜଳ ଶ୍ରୀରାଧାଙ୍କ ଉପରେ ଢ଼ାଳିବାକୁ । ଅଭିଷେକ ଜଳ ଶ୍ରୀରାଧାଙ୍କ ଚରଣ ସ୍ପର୍ଶ କଲା । ଭଗବାନ ଭୂମିରେ ବସି ପଡ଼ି ରାଧରାଣୀଙ୍କ ଚରଣ ଧୌତ ଜଳକୁ ଧାରଣ କରିବାକୁ **ଦେହି ପଦ ପଲ୍ଲବଂ ଉଦାରଂ** କହି ନିଜ ମସ୍ତକ ଉପରେ ଶ୍ରୀରାଧାଙ୍କ ଚରଣ କମଳ ଦ୍ୱୟକୁ ହସି ହସି ସ୍ଥାପନ କରିଦେଲେ । ଗୋପୀ ଗୋପାଳମାନେ ଆନନ୍ଦରେ ନାଚିଗଲେ । ତାଳି ମାରି ହସି ହସି ଠେଲା ପେଲା ହେଲେ । ଠାକୁର ଓ ଠାକୁରାଣୀ ଯେଉଁ ସ୍ଥାନରେ ଠିଆ ହୋଇଥିଲେ ସେହି ଅଭିଷେକ ଜଳରେ ଦୁଇଟି କୁଣ୍ଡ ହୋଇଗଲା । ଭଗବାନ ନିଜ ମୁରଲୀ ସ୍ପର୍ଶ କରାଇ ଦୁଇ କୁଣ୍ଡ ମଧ୍ୟସ୍ଥ କୁଣ୍ଡକୁ ଜଳାଟିଏ କରି ଦୁଇ କୁଣ୍ଡଜଳକୁ ମିଶାଇ ଦେଲେ ।

ରାଧା କୁଣ୍ଡର ଚାରିପଟେ ଭିନ୍ନ ଭିନ୍ନ ଆଠଟି ସ୍ନାନ ଘାଟମାନ ବର୍ତ୍ତମାନ ପ୍ରତିଷ୍ଠିତ ହୋଇଛନ୍ତି । ଅଷ୍ଟ ମହାସଖୀଙ୍କ ନାମରେ ସେମାନେ ମଧ୍ୟ ସ୍ମରଣୀୟ । ସେହିପରି ଶ୍ୟାମକୁଣ୍ଡର ଆଠଟି ଘାଟ ଠାକୁରଜୀଙ୍କ ଅଷ୍ଟସଖା (ସୁବଳ, ସୁଦାମ, ମଧୁମଙ୍ଗଳ, ଧନସୁଖା, ମନସୁଖା ଇତ୍ୟାଦି)ଙ୍କ ନାମରେ ତୀର୍ଥ ଭାବେ ସେବା ପାଉଛନ୍ତି । ଏହି କୁଣ୍ଡ ସବୁ ପାଞ୍ଚଶହ ବର୍ଷ ତଳେ ଲୁପ୍ତ ପ୍ରାୟ ହୋଇ ରହିଥିଲେ । ଶ୍ରୀମଦ୍ ଚୈତନ୍ୟ ମହାପ୍ରଭୁ ଚିହ୍ନଟ କରିଥିଲେ ସେମାନଙ୍କୁ । ସେତେବେଳକୁ ରାଧାକୁଣ୍ଡ, ଶ୍ୟାମକୁଣ୍ଡ ଦୁଇଟି ବଡ଼ ବଡ଼ ଧାନ କିଆରୀ ରୂପେ ବିଦ୍ୟମାନ ଥିଲେ । ଆଜି ଅନେକ ଥର ସଂସ୍କାର, ପଙ୍କୋଦ୍ଧାର ପରେ ପଥର ପାହାଚମାନ ଗଢ଼ାଯାଇ କୁଣ୍ଡ ଦୁଇଟି ମହାନ ତୀର୍ଥର ମାନ୍ୟତା ପାଇଛନ୍ତି । ଶ୍ରୀ ରାଧା କୁଣ୍ଡ ମଧ୍ୟରେ ନିମଗ୍ନ ହୋଇ ରହିଛି କଙ୍କଣ କୁଣ୍ଡ । ସେହିଭଳି ଶ୍ରୀ ଶ୍ୟାମକୁଣ୍ଡ ମଧ୍ୟରେ ବଜ୍ରନାଭ କୁଣ୍ଡ (ଖରାଦିନେ ପଙ୍କୋଦ୍ଧାର ବେଳେ ଉଭୟ କୁଣ୍ଡ ଦର୍ଶନୀୟ) । ଶ୍ରୀରାଧାକୁଣ୍ଡ କୂଳରେ ଶ୍ରୀ ରଘୁନାଥ ଦାସ ଗୋସ୍ୱାମୀଙ୍କ ସମାଧି ମନ୍ଦିର ଓ ଭଜନ କୁଟୀର ସେମାନଙ୍କର ଶୋଭାବର୍ଦ୍ଧନ କରୁଛନ୍ତି । ପରିକ୍ରମା ମାର୍ଗରେ ଜିହ୍ୱା ମନ୍ଦିର ଓ ଗୋପୀକୂଅ ଦର୍ଶନୀୟ । ଶ୍ରୀଲ ରଘୁନାଥ ଗୋସ୍ୱାମୀ ରାଧାକୁଣ୍ଡରେ ବାସ କରୁଥିବା ବେଳେ ନିଜ ସ୍ନାନ ଶୌଚ ଲାଗି ରାଧାକୁଣ୍ଡର

ଜଳ ବ୍ୟବହାର କରିବାକୁ ସଂକୋଚ କରୁଥିଲେ । ତାଙ୍କ ଭକ୍ତମାନେ ସେଠାରେ ଏକ କୂପ ଖନନ କଲେ । ହଠାତ ଦିନେ ଏକ ଅଘଟଣ ଘଟିଲା । ଲୁହା ଶାବଳ ମୁନ ବାଜି ଏକ ପଥରରୁ ଲାଲ ଲାଲ ତାଜା ରକ୍ତ ନିର୍ଗତ ହେଲା । କୂପ ଖନନ ବନ୍ଦ ରଖାଗଲା । ରାତିରେ ଗୋସ୍ୱାମୀଙ୍କୁ ଶ୍ରୀ ରାଧାରାଣୀ ସ୍ୱପ୍ନରେ ଜଣାଇଦେଲେ ଗିରିରାଜ ଗୋବର୍ଦ୍ଧନଙ୍କର ଦୁଇ ଚକ୍ଷୁ ଶ୍ରୀରାଧାକୁଣ୍ଡ ଓ ଶ୍ରୀ ଶ୍ୟାମକୁଣ୍ଡ । ତାଙ୍କ ମୁଖ ମଧ୍ୟସ୍ଥ ପଥର ରୂପୀ ଜିହ୍ୱାରେ ଶାବଳ ବାଜିବାରୁ ରକ୍ତ କ୍ଷରଣ ଘଟିଛି । ତଥାପି ବ୍ୟାକୁଳ ହେବା ଅନାବଶ୍ୟକ । ଆଦେଶ କଲେ ପାଖରେ ମନ୍ଦିରଟିଏ ନିର୍ମାଣ କରି ସେ ପଥର ଟୁକୁଡ଼ାଟିକୁ ପୂଜା କରାଯାଉ । ଆଜି ତାଙ୍କର ସେଇ ଆଦେଶ ପାଳିତ ହେଉଛି । ସେ କୂଅ ଓ ମନ୍ଦିର ଆଜିର ଗୋପୀକୁଅ ଓ ଜିହ୍ୱା ମନ୍ଦିର । ଦୁହିଁଙ୍କୁ ଶ୍ରଦ୍ଧାରେ ଦର୍ଶନ କରି ପ୍ରଣାମ କରନ୍ତୁ ।

ଏହି ରାଧାକୁଣ୍ଡ ସ୍ଥାନଟି ଏବେ ଅଗଣିତ ବୈଷ୍ଣବ ମାନଙ୍କର ପବିତ୍ର ସମାଧିସ୍ଥଳ ଓ ଛୋଟ କାଟିଆ ସହରାଞ୍ଚଳରେ ପରିବର୍ତ୍ତିତ ହୋଇଛି । ଗଢ଼ି ଉଠିଛି ଅନେକ ବୈଷ୍ଣବ ଆଶ୍ରମ ମଠ ଓ ମନ୍ଦିର ।

**୨. ଶ୍ରୀ ଲଳିତା କୁଣ୍ଡ:**

ପ୍ରଶ୍ନ-୫୦: ଶ୍ରୀକୃଷ୍ଣଙ୍କୁ ଛାଡ଼ି ଶ୍ରୀରାଧା ରହିପାରନ୍ତି ନାହିଁ । ଶ୍ରୀ ଶ୍ୟାମକୁଣ୍ଡ ପ୍ରକଟ ହେଉ ହେଉ ଶ୍ରୀରାଧାକୁଣ୍ଡ ମଧ୍ୟ ପ୍ରକଟ ହେଲେ । ଦୁହେଁ ମିଶି ଶ୍ରୀ ଲଳିତା, ବିଶାଖା ଆଦି ଅଷ୍ଟମହାସଖୀମାନେ ଶ୍ରୀରାଧାଙ୍କ କୁଣ୍ଡ ପାଖରେ ସ୍ଥାନିତ ହେବାର କଅଣ କିଛି ବ୍ୟବସ୍ଥା କଲେ କି ?

ଉ. ଯୋଗମାୟା ସଙ୍ଗେ ସଙ୍ଗେ ସେଠାରେ ସେ ବ୍ୟବସ୍ଥା ଖଞ୍ଜିଦେଲେ । ନାମ ରଖା ଗଲା ଶ୍ରୀ ଲଳିତା କୁଣ୍ଡ । ଏହି ଦୁଇ କୁଣ୍ଡ ପାଖେ ପାଖେ କେବଳ ଶ୍ରୀ ଲଳିତା ଦେବୀ ନୁହନ୍ତି ବରଂ ୧.ଶ୍ରୀ ଲଳିତା, ୨.ଶ୍ରୀ ବିଶାଖା, ୩. ଶ୍ରୀ ଚମ୍ପକଲତା, ୪. ଶ୍ରୀ ଚିତ୍ରା, ୫.ଶ୍ରୀ ରଙ୍ଗଦେବୀ, ୬. ଶ୍ରୀ ସୁଦେବୀ, ୭. ଶ୍ରୀ ଇନ୍ଦୁଲେଖାଙ୍କ ସହିତ, ୮. ଶ୍ରୀ ତୁଙ୍ଗବିଦ୍ୟାଙ୍କର କୁଣ୍ଡମାନେ ମଧ୍ୟ ପ୍ରକଟ ହେଲେ । ଗୋପୀ ଗୋପୀନାଥଙ୍କର ଜଳକେଳି, ସ୍ନାନ, ଅର୍ଘ୍ୟ, ପାଦ୍ୟ ଓ ଆଚମନୀୟ ଇତ୍ୟାଦିରେ ବ୍ୟବହୃତ ହୋଇ ଏହି କୁଣ୍ଡମାନେ ନିଜର ଗୌରବ ବୃଦ୍ଧି କରିଥିଲେ । ଏମାନେ ଅର୍ଦ୍ଧଚନ୍ଦ୍ରାକାରରେ ଶ୍ରୀ ଶ୍ୟାମକୁଣ୍ଡର ତିନି ଦିଗରେ ବିରାଜମାନ ହେଉଥିବା କଥା ଏବେ ମଧ୍ୟ ସେଠାରେ ଦର୍ଶନୀୟ ।

## ୩. ଶ୍ରୀ ମାଲ୍ୟହାରୀ କୁଣ୍ଡ:

ପ୍ରଶ୍ନ-୫୧ : ଶ୍ରୀ ଶ୍ୟାମ ସୁନ୍ଦରଙ୍କ ସହିତ ଶ୍ରୀ ରାଧାରାଣୀ ଅଷ୍ଟମହାସଖୀଙ୍କୁ ସଙ୍ଗରେ ଧରି ଲୀଳା କରିବା ବେଳେ କୁଞ୍ଜ ସେବାରେ ଦରକାର ପଡୁଥିବା ପତ୍ର, ଫୁଲ, ଫଳ ଯୋଗମାୟା ଯୋଗାଡ଼ କରୁଥିଲେ କିପରି ?

ଉ. ଶ୍ରୀ ଗିରିରାଜ ଗୋବର୍ଦ୍ଧନଙ୍କର ଏହି ପବିତ୍ର ସ୍ଥଳରେ ଅନେକ ପ୍ରକାର କୁଞ୍ଜ, ନିକୁଞ୍ଜ, ନିଭୃତି ନିକୁଞ୍ଜ ସାଜସଜା ନିମିତ୍ତ ଅନେକ ପୁଷ୍ପ ଅଳଙ୍କାର ଆଦି ଲାଗି ଉଦ୍ୟାନର ବ୍ୟବସ୍ଥା ହୋଇଥିଲା । ସେମାନଙ୍କ ମଧ୍ୟରୁ ଏହି ମାଲ୍ୟହାରୀ କୁଣ୍ଡ ଅନ୍ୟତମ । ଶ୍ରୀ ରଘୁନାଥ ଦାସ ଗୋସ୍ୱାମୀ ଏହି ଶ୍ରୀରାଧା କୁଣ୍ଡ ଧାମରେ ସାରା ଜୀବନ ଅତିବାହିତ କରିଥିଲେ । ତାଙ୍କ ରଚିତ ମୁକ୍ତା ଚରିତ ଗ୍ରନ୍ଥରେ ସେ କହନ୍ତି- ଦିନକର କଥା । ମାସ କାର୍ତ୍ତିକ ବା ଦାମୋଦର ମାସ । ତିଥି ଅମାବାସ୍ୟା । ଗୋବିନ୍ଦ ତାଙ୍କ ପ୍ରିୟ ଧେନୁ ଓ ବତ୍ସାଙ୍କର ସେବା କରିବାକୁ ଚାହିଁଲେ । ଧେନୁମାନଙ୍କ ମଧ୍ୟରେ ହଂସୀ ଓ ହରିଣୀ ଧେନୁ ଦୁଇଟି ତାଙ୍କର ଅତିପ୍ରିୟ ଥିଲେ । ଇଛା ହେଲା ତାଙ୍କୁ ମୁକ୍ତାମାଳ ପିନ୍ଧାଇବେ ସେମାନଙ୍କ ଗଳାରେ କିମ୍ବା ମସ୍ତକର ଶିଙ୍ଗମାନଙ୍କରେ । ଠାକୁରଜୀ ଗୋପାଳମାନଙ୍କ ଠାରୁ ଖବର ପାଇ ପହଞ୍ଚିଲେ ଶ୍ରୀ ଲଳିତାଙ୍କ ନିକଟରେ । ସେ ବସି ସୁନ୍ଦର ମୁକ୍ତାହାର ସବୁ ପ୍ରସ୍ତୁତ କରୁଥାଆନ୍ତି । ଭଗବାନ ତାଙ୍କୁ ମୁକ୍ତା ପ୍ରାର୍ଥନା କଲେ ନିଜ ଗାଈ ଶିଙ୍ଗକୁ ସଜାଇବା ଲାଗି । ଲଳିତାଙ୍କ ସହିତ ଅନ୍ୟ ସଖୀମାନେ ଏଭଳି ଉଦ୍ଦେଶ୍ୟରେ ମୁକ୍ତା ବ୍ୟବହାର କରିବାକୁ ନାପସନ୍ଦ କଲେ । ସେମାନେ ମୁକ୍ତା ଦେବାକୁ ସ୍ପଷ୍ଟ ମନା କରିଦେଲେ । ଠାକୁରଜୀ କି ଛାଡ଼ିବା ଲୋକ । ଅନେକ କଟାଳ କଲେ । ଶ୍ରୀ ରାଧାରାଣୀ ଖୋଜି ଖୋଜି ଗୋଟେ ଭଙ୍ଗା ମୁକ୍ତା ପାଇଲେ । ଯାଚିଲେ ଶ୍ରୀକୃଷ୍ଣଙ୍କୁ । ଅପମାନରେ ସେ ଘରକୁ ଚାଲି ଆସିଲେ । ମା ଯଶୋଦାଙ୍କ ନିକଟରେ ଅଳି କଲେ ମୁକ୍ତାପାଇଁ ।

ଯଶୋଦା ଦେଖିଲେ ଅବୁଝା ପିଲା । ଚାରି ଛଅଟି ମୁକ୍ତା ବହୁ କଷ୍ଟରେ ଦେଲେ । ଶ୍ରୀକୃଷ୍ଣଙ୍କର କିନ୍ତୁ ବେଶୀ ମୁକ୍ତା ଦରକାର । ମୁଣ୍ଡକୁ ବଢ଼ିଆ ବୁଦ୍ଧି ଜୁଟିଲା ତାଙ୍କର । ଗୋଚାରଣ ଭୂମିରେ ଏକ କ୍ଷେତ୍ର ପ୍ରସ୍ତୁତ କରି ମୁକ୍ତାକୁ ବୀଜ ରୂପେ ରୋପଣ କଲେ । ମୁକ୍ତାଗଛ ବଡ଼ ହେଲେ ବେଶୀ ମୁକ୍ତା ଫଳ ଫଳିବ । ଦିନକୁଦିନ ସେଇ ବୃକ୍ଷ ମୂଳରେ ସେ ପ୍ରଚୁର ଗୋ ଦୁଗ୍ଧ ଥର ଥର କରି ଅଜାଡୁଥାଆନ୍ତି । ଇଛାମୟଙ୍କ ଲୀଳା ଅଲୌକିକ । କେତେଦିନ ଅନ୍ତେ ସତକୁ ସତ ମୁକ୍ତାରୁ ଅଙ୍କୁର, ଲତା, ଫୁଲ, ଫଳ ହେଲା । ଖବର ପହଞ୍ଚିଲା ଶ୍ରୀରାଧାରାଣୀଙ୍କ ଦରବାରରେ । ସେ

ମଧ୍ୟ ଏକ ସୁନ୍ଦର ମୁକ୍ତା କିଆରୀ ପ୍ରସ୍ତୁତ କଲେ । ଅନେକ ମୁକ୍ତାକୁ ବୀଜ କରି ପୋତିଲେ । ଦୁଧ, ଦହି, ସର, ସାର ଦେଲେ । କାହିଁ ଗୋଟିଏ ହେଲେ ମୁକ୍ତା ଫଳନ୍ତା ? ? ଭଗବାନ ଯାଇ ଲଳିତା ଆଦି ସଖୀମାନଙ୍କୁ ପୁଣି ତାଙ୍କ କିଆରୀରେ ଫଳିଥିବା ମୁକ୍ତା ମାଗିଲେ । ଠାକୁର ତ ବଡ଼ ହଟିଆ । ବାରମ୍ବାର ମାଗିଲେ ମୁକ୍ତା । ଲାଜରା ହେଲେ ରାଧାରାଣୀ । ମାନିଗଲେ ସିଧା ସଳଖ ତାଙ୍କର ମୁକ୍ତା ଫଳିଲା ନାହିଁ । ସେ ଶୁଣିଛନ୍ତି ଗୋବିନ୍ଦଙ୍କର ଅନେକ ମୁକ୍ତା ଜମିରୁ ଆମଦାନୀ ହୋଇଛି । ସୁତରାଂ ଉଚିତ ଦାମ ନେଇ ମୁକ୍ତା ଦେଲେ ସେ ମାଳ ଗୁନ୍ଥି ଧେନୁ ବତ୍ସାଙ୍କୁ ସଜାଇ ଦିଅନ୍ତେ ।

ଗୋବିନ୍ଦ ବର୍ତ୍ତମାନ ବସ୍ତା ବସ୍ତା ମୁକ୍ତା ସହିତ ମୂଲ୍ୟବାନ ମଣି ଇତ୍ୟାଦି ପଠାଇ ଦେଲେ । ଶ୍ରୀରାଧାରାଣୀ ସଖୀମାନଙ୍କୁ ଲଗାଇ ଅନେକ ସୁନ୍ଦର ସୁନ୍ଦର ହାର, ମାଳ, ଅଳଙ୍କାର ମାନ ପ୍ରସ୍ତୁତ କଲେ । ପୌର୍ଣ୍ଣମାସୀ ଦେବୀ ସେଠାରେ ଦିବ୍ୟ କୁଞ୍ଜଟିଏ ନିର୍ମାଣ କଲେ । ଦୋଳି ପ୍ରସ୍ତୁତ ହୋଇଗଲା । ଗୋପାଳ ବାଳକମାନେ ବେଣୁ ସହିତ ବେଣୁଧରଙ୍କୁ ଆଣି କୁଞ୍ଜରେ ବିଜେ କଲେ । ଅଷ୍ଟ ମହାସଖୀମାନେ ଶ୍ରୀରାଧାଙ୍କୁ ସଜେଇ ଆଣି କୁଞ୍ଜରେ ପହଞ୍ଚାଇଦେଲେ । ପ୍ରସ୍ତୁତ ମୁକ୍ତାମାନଙ୍କ ଦ୍ୱାରା ରାଧାଗୋବିନ୍ଦଙ୍କୁ ଗୋପ ଲଳନାମାନେ ସୁନ୍ଦର ଭାବେ ସଜେଇଲେ । ନାନା ବାଜା ବାଜିଲା । ସଙ୍ଗୀତ ଗାନ ହେଲା । ପ୍ରକାର ପ୍ରକାର ନାଚ ବି ଚାଲିଲା । ଦୋଳି ଝୁଲା ହେଲା । ଗୋପୀ ଗୋପାଳଙ୍କ ସହିତ ଶ୍ୟାମ । ଶ୍ୟାମଙ୍କୁ ମଧ୍ୟ ଅସୀମ ଅଲୌକିକ ଆନନ୍ଦ ପ୍ରାପ୍ତି ହେଲା । ସେହିଦିନଠାରୁ ଏ ସ୍ଥାନରେ ମାଲ୍ୟାହାର କୁଣ୍ଡଟି ଲୀଳାସ୍ଥଳୀର ସଙ୍କେତ ଦେଉଛି । ତାଙ୍କୁ କୋଟି କୋଟି ଜୁହାର ।

## ୪. ଶ୍ରୀ ନାରଦ କୁଣ୍ଡ:

ପ୍ରଶ୍ନ-୫୨: ଶ୍ରୀ ଗିରିରାଜ ଗୋବର୍ଦ୍ଧନଙ୍କୁ ପରିକ୍ରମା କରିବାବେଳେ କୁସୁମ ସରୋବର ନିକଟରେ ବାମପଟେ ଏହି ନାରଦକୁଣ୍ଡ ଅବସ୍ଥିତ । ସକଳ ଦେବୀ ଦେବତା ମାନଙ୍କ ମଧ୍ୟରେ ରାଜା ଇନ୍ଦ୍ର । ସେ ସର୍ବଦା ବିଳାସ ବ୍ୟସନରେ ବୁଡ଼ି ରହିଥାନ୍ତି । କିନ୍ତୁ ଦେବତାମାନଙ୍କ ମଧ୍ୟରେ ନିତ୍ୟ ନିରନ୍ତର ନାରାୟଣ ନାମ ଜପ କରୁଥିବା ଧ୍ୟାନ ଚିନ୍ତନ କରୁଥିବା ଶ୍ରୀ ବ୍ରହ୍ମାଙ୍କ ପୁତ୍ର ନାରଦଜୀଙ୍କୁ ଦେବର୍ଷି କାହିଁକି କୁହାଯାଏ ?

ଉ. ଏହାର କାରଣଟି ଅତ୍ୟନ୍ତ ସ୍ପଷ୍ଟ । ବିଳାସ ବୈରାଗ୍ୟ ଦୁଇଟି ବିପରୀତ ସ୍ୱାଭାବିକ ମାନବ ଗୁଣ । ବିଳାସ ଦେବତାକୁ ଦାନବ କରାଏ କିନ୍ତୁ ବୈରାଗ୍ୟ ଦାନବକୁ ମାନବ କରାଇଥାଏ । ନାରଦ ଏ ଦୁଇ ଧର୍ମର ସମନ୍ୱୟ କର୍ତ୍ତା । ସେ ଚିରକାଳ

ଅବିବାହିତ । ବଡ଼ ବଡ଼ ରାଜା, ମହାରାଜା ହୁଅନ୍ତୁ ପଛେ ଦେବତା, ମାନବ କିମ୍ବା ଅସୁର ସେମାନେ ସମସ୍ତେ ସ୍ୱାଗତ କରିଥାନ୍ତି ଏହି ଦେବର୍ଷି ନାରଦଙ୍କୁ ।

ଦେବର୍ଷି ନାରଦଜୀ କଳ୍ପ ଆରମ୍ଭରୁ ନାରାୟଣ ନାମ ଜପ ରୂପ ଧ୍ୟାନ କରୁଥାନ୍ତି । ହଠାତ୍ ଖବର ପାଇଲେ ଶ୍ରୀକୃଷ୍ଣ ଅବତାର ନେଇ ସାରିଲେଣି । ନାମ ଜପ, ରୂପ ଧ୍ୟାନ, ବୀଣା ବାଦନ କରି ସେ ସିନା ନାରାୟଣଙ୍କ ଦର୍ଶନ କରିପାରୁଥିଲେ ହେଲେ ଲୀଳାମୟ କୃଷ୍ଣଙ୍କ ଦର୍ଶନ କରିବେ କେମିତି ? ଦିନେ ଦେବ ଦେବ ମହାଦେବଙ୍କୁ ଭେଟି ପ୍ରଶ୍ନ କଲେ ଶ୍ରୀକୃଷ୍ଣଙ୍କ ଅଷ୍ଟକାଳୀୟ ଲୀଳା ସ୍ମରଣ ବିଧିର ରହସ୍ୟ ଜାଣିବା ନିମିତ୍ତ । ଶଙ୍କର ଭଗବାନ ଦରହାସଟିଏ ହସି ସେ ବିଷୟରେ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ବତେଇ ଦେଲେ ଏ ଜ୍ଞାନ ଲାଗି ନାରଦ ବରଂ ବ୍ରଜମଣ୍ଡଳର ଠାକୁରାଣୀ ଶ୍ରୀ ବୃନ୍ଦାଦେବୀଙ୍କ ଶରଣ ପଶନ୍ତୁ ।

କାଳ ବିଳମ୍ବ ନକରି ନାରଦଜୀ ପହଞ୍ଚିଗଲେ କେଶୀ ତୀର୍ଥରେ ବିଦ୍ୟମାନ ଶ୍ରୀ ବୃନ୍ଦାଦେବୀଙ୍କ ନିକଟରେ । ତାଙ୍କ ପାଦତଳେ ପଡ଼ି ଶରଣ ଭିକ୍ଷା କଲେ । ଆଶିର୍ବାଦ ମୁଦ୍ରାରେ ବୃନ୍ଦାଦେବୀ ବ୍ରହ୍ମା, ଶଙ୍କର ଆଦିଙ୍କୁ ଅଜଣା ଏହି ପରମ ଗୋପନୀୟ ଅଷ୍ଟ କାଳୀୟ ଲୀଳା(ବୃନ୍ଦାବନରେ ଦିନକୁ ଆଠ ପ୍ରହରରେ ବିଭକ୍ତ କରି ପ୍ରତ୍ୟେକ ପ୍ରହର ସମୟରେ ଯେଉଁ ଭିନ୍ନ ଭିନ୍ନ ରୂପରେ ଶ୍ରୀରାଧା ଗୋବିନ୍ଦଙ୍କର ନିଭୃତ ନିକୁଞ୍ଜରେ ସେବା କରାଯାଏ)ସେ ସବୁ ଟିକି ନିଖି କରି ବୁଝେଇ କହିବାକୁ ବାଧ ହେଲେ ।

ପରେ ପରେ ଦେବର୍ଷି ନାରଦ ଚୌରାଶୀ କୋଶ ବ୍ରଜମଣ୍ଡଳ ପରିକ୍ରମା କଲେ । ଶେଷରେ ଗୋବର୍ଦ୍ଧନ ପର୍ବତର କୁସୁମ ସରୋବର ନିକଟସ୍ଥ ଏହି ସ୍ଥାନଟିକୁ ନିର୍ବାଚନ କଲେ ଧ୍ୟାନ ନିମିତ୍ତ । ନିଜ ମନ, ବୁଦ୍ଧି, ଚିତ୍ତ ଓ ଅହଂକାରକୁ ପର୍ଯ୍ୟାୟକ୍ରମେ କେନ୍ଦ୍ରିତ କରି ଏହି ଅଷ୍ଟକାଳୀୟ ସେବା ମନେ ମନେ ଚିନ୍ତନ ସ୍ମରଣ କରି ଶ୍ରୀ ରାଧାଗୋବିନ୍ଦଙ୍କ କୃପା ପ୍ରାପ୍ତ ହୋଇଥିଲେ । ମଥୁରା ନରପତି ଶ୍ରୀ ବଜ୍ରନାଭ ସେହି ପବିତ୍ର ତପସ୍ୟା ସ୍ଥଳଟି ଚିହ୍ନିତ କଲେ ଆଜିର ଏହି ଶ୍ରୀ ନାରଦକୁଣ୍ଡକୁ ସ୍ଥାପନ କରି । ଏବେ ସେଠାରେ ଏକ ସୁନ୍ଦର ଆଶ୍ରମ ଗଢ଼ି ଉଠିଛି । କୃଷ୍ଣଭକ୍ତମାନଙ୍କ ମନରେ ଭକ୍ତି ଉତ୍ପନ୍ନ କରୁଛି ସେଠାରେ ନିର୍ମିତ ଶ୍ରୀରାଧାକୃଷ୍ଣ ମନ୍ଦିର ଓ ସେହି ଶ୍ରୀନାରଦ କୁଣ୍ଡ ।

**୫. ଶ୍ରୀ ଗୋଆଲ କୁଣ୍ଡ:**

ପ୍ରଶ୍ନ-୫୩: ସାତବର୍ଷର କହ୍ନେୟାଲାଲ୍ ବ୍ରଜଧାମରେ ଦେବରାଜ ଇନ୍ଦ୍ରଙ୍କର ପୂଜନ ବନ୍ଦ କରାଇଥିଲେ । ତେବେ କ'ଣ ଠାକୁରଜୀ ସେତେବେଳେ ସକଳ ପୂଜା ଆରାଧନା ବନ୍ଦ କରାଇଦେଲେ କି ?

ଉ. ନା ନା ଏଭଳି ଧାରଣା ପୁରାପୁରି ଭ୍ରମାତ୍ମକ ବୋଲି ଏହି ଗୋଆଲକୁଣ୍ଡ ଦର୍ଶନ କଲେ ଜଣାପଡ଼େ । ଗୋଆଲ କହିଲେ ବ୍ରଜର ଗୋପାଳମାନଙ୍କୁ ବୁଝାଏ । ଏକଦା ଠାକୁରଜୀ ସେତେବେଳର ଜଣେ ପ୍ରସିଦ୍ଧ ବ୍ରାହ୍ମଣ (ମଧୁମଙ୍ଗଳ)ଙ୍କୁ ନେଇ ବ୍ରଜବାସୀମାନଙ୍କ ଦ୍ୱାରା ସୂର୍ଯ୍ୟକୁଣ୍ଡ (ଶ୍ରୀ ନାରଦ କୁଣ୍ଡ ପାଖରେ) ସୂର୍ଯ୍ୟ ନାରାୟଣଙ୍କର ସଭକ୍ତିକ ପୂଜା ଆରାଧନା କରାଇଥିଲେ । ମଧୁମଙ୍ଗଳ ଶ୍ରୀକୃଷ୍ଣଙ୍କର ଅତିପ୍ରିୟ ସଖା ଓ ପୌର୍ଣ୍ଣମାସୀଦେବୀଙ୍କର ପୁତ୍ର । ପୂଜାରୁ ଦକ୍ଷିଣା ସ୍ୱରୂପ ଯେଉଁ ପ୍ରସାଦ ମଧୁମଙ୍ଗଳଙ୍କୁ ମିଳିଲା ତାଙ୍କୁ ସଯତ୍ନରେ ଲୁଚାଇ ରଖିବାକୁ ଠାକୁରଜୀ କହିଥିଲେ । କାରଣ ସୂର୍ଯ୍ୟନାରାୟଣ ଜଣେ କେହି ସାଧାରଣ ଦେବତା ନୁହନ୍ତି ଏ କଥା ସେ ସଖାଙ୍କୁ ବୁଝାଇଥିଲେ । ତାଙ୍କ ଉପାସନା ପ୍ରସାଦ ମଧ ବହୁ ମୂଲ୍ୟବାନ ।

ଦିନ ଅପରାହ୍ଣ ହେଲାଣି । କୁସୁମ ସରୋବର ନିକଟରେ ଏହି ଗୋଆଲକୁଣ୍ଡ ନାମକ ସ୍ଥାନରେ ଶ୍ରୀ ବଳରାମଙ୍କ ସହିତ ଅନେକ ଗୋପାଳ ଖେଳ କସରତ କରୁଥାଆନ୍ତି । କୃଷ୍ଣ ମଧୁ ମଙ୍ଗଳ ଦୁହେଁ ସେଠାରେ ପହଞ୍ଚିଗଲେ । ସଖାମାନଙ୍କ ସହ ବଳଦେବ ମଧ ଧାଇଁ ଆସିଲେ । ବଟୁ ବ୍ରାହ୍ମଣ କଅଣ କାନିରେ ବାନ୍ଧିଛନ୍ତି ବୋଲି ପଚାରିଲେ । ମଧୁମଙ୍ଗଳ ସେମାନଙ୍କୁ ଭାଗ ଦେବାକୁ ଅରାଜି ହେଲେ । ଦେଖାଇବାକୁ ମଧ ମନା କଲେ । କାରଣ ତାହା ସାମାନ୍ୟ ଦେବୀ ଦେବତାଙ୍କ ପୂଜାପ୍ରସାଦ ନଥିଲା । ସାକ୍ଷାତ ସୂର୍ଯ୍ୟ ନାରାୟଣଙ୍କ ମହାର୍ଘପ୍ରସାଦ । କେବଳ ପକ୍କା ବୈଷ୍ଣବ ମାନଙ୍କର ସେବନ ଯୋଗ୍ୟ । ଏ କଥା ବଡ଼ ଠାକୁରଙ୍କୁ ବହୁତ ବାଧିଲା । ସବୁ ଗୋପାଳବାଳକମାନଙ୍କୁ ମେଳ କରି ସେ ମଧୁମଙ୍ଗଳଙ୍କୁ ଆକ୍ରମଣ କଲେ । ସବୁତକ ପ୍ରସାଦ ଛଡ଼େଇ ନେଲେ । ମହା ଆନନ୍ଦରେ ପ୍ରସାଦ ଯାକ ସେବନ କରିଦେଲେ । ମଧୁମଙ୍ଗଳ କି ଛାଡ଼ିବା ଲୋକ । ସଙ୍ଗେ ସଙ୍ଗେ ଆଙ୍ଗୁଠିରେ ପଇତା ଗୁଡ଼ାଇ ଆଞ୍ଜୁଳିରେ ଜଳ ଧାରଣ କଲେ । ଅଭିଶାପ ଦେବାକୁ ବାହାରିଲେ । ଠାକୁରଜୀ ଦେଖିଲେ ବଡ଼ ବିଷମ ପରିସ୍ଥିତି । ସଖାମାନଙ୍କୁ ମନାଇ ବ୍ରାହ୍ମଣଙ୍କୁ କ୍ଷମା ଯାଚନା କରାଇଲେ । ସ୍ୱହସ୍ତରେ ମଧୁମଙ୍ଗଳଙ୍କୁ ନୂତନ ବସ୍ତ୍ର ଧାରଣ କରାଇଲେ । କାନ୍ଧରେ ଦାମିକା ଉତ୍ତରୀୟଟିଏ ଲମ୍ବାଇଦେଲେ । ଭବ୍ୟ ପଗଡ଼ିଟିଏ ପିନ୍ଧାଇ ଦେଲେ । ତାଙ୍କର ବହୁ ମାନନ କଲେ । ଶେଷରେ ତାଙ୍କର କ୍ରୋଧ ଶାନ୍ତ କରାଇଥିଲେ । ସେହି କଥାର ସାକ୍ଷୀ ଦେବା ଲାଗି ବଜ୍ରନାଭ ଏହି ପବିତ୍ର ଗୋଆଲକୁଣ୍ଡ ନିର୍ମାଣ କରାଇଦେଲେ ଗୋପାଳମାନଙ୍କର ସୂର୍ଯ୍ୟ ନାରାୟଣ ପୂଜାର ନୈବେଦ୍ୟ ଲୁଣ୍ଠନ ଲୀଳାକୁ ସଂକେତ କରିବା ଲକ୍ଷ୍ୟନେଇ ।

## ୬. ବ୍ରହ୍ମ କୁଣ୍ଡ, (କ) ଗୋବର୍ଦ୍ଧନ ବ୍ରହ୍ମକୁଣ୍ଡ:

ପ୍ରଶ୍ନ-୫୪: ବ୍ରହ୍ମକୁଣ୍ଡ କହିଲେ ଶ୍ରୀରାଧାକୃଷ୍ଣଙ୍କ ବ୍ରଜଧାମ ଲୀଳାରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଭୂମିକାକୁ ବୁଝାଏ । ଶ୍ରୀ ଗୋବର୍ଦ୍ଧନ ପର୍ବତରେ ବ୍ରହ୍ମାଙ୍କର କି ଲୀଳା ହୋଇଥିଲା ?

ଉ. ଅଘାସୁର ଉଦ୍ଧାର ଲୀଳା କଥା ଶ୍ରବଣ କରି ଶ୍ରୀ ବ୍ରହ୍ମାଜୀ ବ୍ରହ୍ମଲୋକରେ ଥାଇ ମଧ୍ୟ ଚମକି ପଡ଼ିଥିଲେ । ଅଘାସୁର କହିଲେ ଘୋର ପାପୀ ବା ପାପାତ୍ମାକୁ ବୁଝାଯାଏ । ତାର ଉଦ୍ଧାର କିଛି ସହଜ କଥା ନୁହେଁ । ସୁତରାଂ ସେ ବ୍ରହ୍ମଲୋକରୁ ଆସିଲେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ସ୍ୱୟଂ କୃତାର୍ଥ ହେବେ ବୋଲି । ସେଠାରେ ପହଞ୍ଚି କିନ୍ତୁ ଓଲଟ ଚିଜ ବୁଝିଲେ । ସେ ବେଦବିତ୍‌ମନେ କରୁଥିଲେ ନିଜକୁ । ବେଦରେ କାହାରି ଉଚ୍ଛିଷ୍ଟ  ଖାଇବା ଅନୁଚିତ ବୋଲି ସ୍ୱୟଂ ଭଗବାନ କହିଛନ୍ତି । ସେ କିନ୍ତୁ ଦେଖୁଛନ୍ତି ଗୋପାଳବାଳକଙ୍କ ସଙ୍ଗରେ ବସି ନିଜେ ବଣଭୋଜି ଲୀଳାରେ (ଭୋଜନଥାଳୀ ନାମକ ସ୍ଥାନରେ) ଗୋପାଳବାଳକମାନଙ୍କ ଉଚ୍ଛିଷ୍ଟ ଭୋଜନ କରୁଛନ୍ତି । ଏହା ତ ବିଲ୍‌କୁଲ୍ ବେଦବିରୁଦ୍ଧ ଆଚରଣ । ଅତଏବ ଠାକୁରଜୀଙ୍କ ଭଗବତ୍ତା ପ୍ରତି ତାଙ୍କର ସନ୍ଦେହ ହେଲା । ଶକ୍ତି ପରୀକ୍ଷା ଲାଗି ସେ ଏହି ସ୍ଥାନରୁ ପ୍ରଥମେ ଗୋବତ୍ସମାନଙ୍କୁ ଓ ପରେ ପରେ ସେମାନଙ୍କୁ ଖୋଜିବାକୁ ଆସିଥିବା ଗୋପାଳ ବାଳକମାନଙ୍କୁ ଯୋଗ ଶକ୍ତି ବଳରେ ନିଜ କମଣ୍ଡଳରୁ ରଖି ବ୍ରହ୍ମଲୋକ ଚାଲିଗଲେ ପ୍ରଭୁଙ୍କ ସଂଧ୍ୟାବନ୍ଦନା କରିବାକୁ । ଆଜିର ଗୋବର୍ଦ୍ଧନ ବ୍ରହ୍ମକୁଣ୍ଡ ସେହି ଚୋରେଇ ନେଇଥିବା ସ୍ଥାନ ।

## (ଖ) ବୃନ୍ଦାବନ ବ୍ରହ୍ମକୁଣ୍ଡ:

ସଂଧ୍ୟା ବନ୍ଦନା ବ୍ରହ୍ମାଜୀଙ୍କର ଶେଷ ହେଲା । ବ୍ରହ୍ମଲୋକରୁ ଫେରି ଆସିଲେ ସେ । ବ୍ରଜଭୂମିରେ ଯେଉଁ ସ୍ଥାନରେ ମରାଳ ବାହାନରୁ ଓହ୍ଲାଇଥିଲେ ସେ ସ୍ଥାନର ନାମ ଆଜିର ଚଉମୁହାଁ ଦିଲ୍ଲୀ ଆଗ୍ରା ରାସ୍ତା ଉପରେ ଅବସ୍ଥିତ ଏକ ପ୍ରସିଦ୍ଧ ସ୍ଥାନ, ଯେଉଁଠାରେ ଏକ ସୁନ୍ଦର ମନ୍ଦିର ନିର୍ମିତ ହୋଇଛି ଏହି ଲୀଳାକୁ ସ୍ମରଣ କରାଇଦେବା ନିମିତ୍ତ । ସେଠାରେ ପହଞ୍ଚି ବ୍ରହ୍ମାଜୀ ଦେଖିଲେ କମଣ୍ଡଳୁ ମଧ୍ୟରେ ଭୌତିକ ଦେହରେ ବତ୍ସା ଓ ଗୋପାଳବାଳକମାନେ ଅଛନ୍ତି । ପୁଣି ସେମାନେ ଚିନ୍ମୟ ଦେହ ଧାରଣ କରି ଲୀଳାମୟ ଶ୍ରୀକୃଷ୍ଣଙ୍କ ସହ ଲୀଳା କରିବାରେ ବ୍ୟସ୍ତ । ଅବିଳମ୍ବେ ବୁଝିଗଲେ କଥାର ରହସ୍ୟ । ଭଗବାନ ନିଜ ଚିନ୍ମୟ ଦେହରୁ ସେଇ ସେଇ ଭକ୍ତଗଣଙ୍କୁ ପ୍ରକଟ କରିସାରିଛନ୍ତି । ଯେଉଁ ସ୍ଥାନରେ ସେ କମଣ୍ଡଳୁରୁ ମୁକ୍ତ କରି ବାହାରେ ବତ୍ସା ବାଳକଙ୍କୁ ଛାଡ଼ିଥିଲେ ସେ

ସ୍ଥାନର ନାମ ଏବେ ପରଖମ । କାରଣ ସେ କ'ଣ ଭଗବାନଙ୍କ ପରୀକ୍ଷା କରିବେ ବରଂ ଭଗବାନ ତାଙ୍କୁ ପରୀକ୍ଷା କରିସାରିଛନ୍ତି । ବ୍ରହ୍ମା ହରି ଭକ୍ତି ପରୀକ୍ଷାରେ ଫେଲ ଜାଣିପାରି ଭୀଷଣ ଅନୁତପ୍ତ ହେଲେ । ଯେଉଁ ସ୍ଥାନରେ ସେ ଚାରି ମସ୍ତକର ମୁକୁଟମାନଙ୍କୁ ଭଗବାନଙ୍କ ଚରଣ କମଳରେ ସ୍ଥାପନ କରି କ୍ଷମା ମାଗିଲେ ୪୦ଶ୍ଲୋକରେ ସ୍ତୁତି କରିଥିଲେ । ସେହି ସ୍ଥାନଟି ଆଜିର ବୃନ୍ଦାବନ ବସଷ୍ଟାଣ୍ଡ ନିକଟବର୍ତ୍ତୀ ବ୍ରହ୍ମକୁଣ୍ଡ । ଗୌରାଙ୍ଗ ମହାପ୍ରଭୁ ଏ ସ୍ଥାନରେ ପହଞ୍ଚି ଭାବ ବିହ୍ୱଳ ହୋଇ ଭକ୍ତମାନଙ୍କ ଗହଣରେ ଉଦଣ୍ଡ ନୃତ୍ୟ କରିଥିଲେ । ଏକ ସୁନ୍ଦର କୁଣ୍ଡ ନିର୍ମାଣ କରି ତା ମଧ୍ୟରେ ଗୋଟିଏ କଂକ୍ରିଟ୍ ପଦ୍ମପୁଷ୍ପ ନିର୍ମାଣ କରାଯାଇ ବ୍ରହ୍ମାଜୀଙ୍କୁ ବସେଇ ଦିଆଯାଇଥିବା ଦର୍ଶକମାନେ ଆଜି ମଧ୍ୟ ଏହିଠାରେ ଦର୍ଶନ କରିପାରିବେ ।

## ୭. ଶ୍ରୀ ଦାବାନଳ କୁଣ୍ଡ:

## (କ) ବୃନ୍ଦାବନର ଦାବାନଳ କୁଣ୍ଡ

ପ୍ରଶ୍ନ-୫୫: ସଂସାରରେ ବାଡ଼ବ ଅଗ୍ନି, ବନ ଅଗ୍ନି, ଦକ୍ଷିଣାଗ୍ନି, ଯଜ୍ଞ ଅଗ୍ନି, ଗାର୍ହପତ୍ୟ ଅଗ୍ନି, ଅସୁର ଅଗ୍ନି ଏବଂ ଦେବତା ଅଗ୍ନି ଇତ୍ୟାଦି ଅନେକ ପ୍ରକାରର ଅଗ୍ନି ହୋଇପାରନ୍ତି । ମହା ସମୁଦ୍ରରେ ଆପଣା ଛାଏଁ ଦେଖା ଦେଉଥିବା ଅଗ୍ନିକୁ ବାଡ଼ବ ଅଗ୍ନି କୁହାଯାଏ । ସେହିପରି ବନ ମଧ୍ୟରେ ପାକଳ ବୃଦ୍ଧ ବାଉଁଶ ସହିତ ବାଉଁଶ ଘଷି ହୋଇ ଅଗ୍ନି ଉତ୍ପନ୍ନ ହେଲେ ତାକୁ ବନ ଅଗ୍ନି କୁହାଯାଏ । ବୃନ୍ଦାବନରେ ଶ୍ରୀକୃଷ୍ଣ ଲୀଳାରେ ଦାବାଗ୍ନିଙ୍କର ଭୂମିକା କ'ଣ ?

ଉ. ଶ୍ରୀ ଯମୁନା ନଦୀ ତୀରସ୍ଥିତ କାଳୀୟ ହ୍ରଦରେ କାଳୀୟ ସର୍ପର ଶତ ଶତ ଫଣା ଉପରେ ନୃତ୍ୟକରି ଶ୍ରୀକୃଷ୍ଣ ବ୍ରଜବାସୀମାନଙ୍କୁ ଅତ୍ୟନ୍ତ ଆଚମ୍ବିତ କରିଦେଲେ । ସେତେବେଳକୁ ସଂଧ୍ୟା ଉତ୍ତୀର୍ଣ୍ଣପ୍ରାୟ । ବ୍ରଜବାସୀମାନେ ଆଉ ସାହାସ କରିପାରିଲେ ନାହିଁ ନନ୍ଦଗ୍ରାମ ଫେରିଯିବାକୁ । ଅଳ୍ପ ଦୂର ଯାଇ ସେହି ତୃଣଭୂମିରେ ଅବସନ୍ନ ହୋଇ ଶୟନ କଲେ । ବ୍ରଜବାସୀଙ୍କ ସହିତ ଗୋପାଳବାଳକ ଓ ଗୋ ସହିତ ଗୋ ବତ୍ସା ସମସ୍ତେ ବିଶ୍ରାମ ନେଲେ । କାଳୀୟ ସର୍ପର ବିଷ ଦ୍ୱାରା ସେ ସ୍ଥାନର ପାଖାପାଖି ବୃକ୍ଷ, ଲତା, ଗୁଳ୍ମ, ତୃଣ ସବୁ କିଛି ବିଷାକ୍ତ ହୋଇସାରିଥାଆନ୍ତି । ଅଗ୍ନି ଦେବତା ଦେଖିଲେ କିଛି ପ୍ରତିକାର ବ୍ୟବସ୍ଥା ନ କଲେ ସକାଳୁ ଉଠି ଭଗବାନ ଗୋପାଳଜୀଙ୍କର ଭକ୍ତଗଣ ଗୋ ପଲ ଓ ବତ୍ସାପଲ ବିଷାକ୍ତ ତୃଣ ଫଳ ଆଦି ଭୋଜନ କରି ପ୍ରାଣ ହରାଇବେ । ସେ ଏବେ ତାଙ୍କ ଦେଖିବା କାମ କଲେ ।

ପ୍ରବଳ ଅଗ୍ନି ରୂପ ଧାରଣ କଲେ ଅଗ୍ନି ଦେବତା । ନିଦ୍ରାରୁ ଉଠି ବ୍ରଜବାସୀମାନେ ଅତ୍ୟନ୍ତ ଭୟାର୍ତ୍ତ ହୋଇ ଚିତ୍କାର କଲେ । ଶ୍ରୀକୃଷ୍ଣ ଅଭୟ ଦେଲେ ସେମାନଙ୍କୁ । ସଙ୍ଗେ ସଙ୍ଗେ ଦାବାନାଳ ପାନ କରି ସ୍ୱଭକ୍ତମାନଙ୍କୁ ଉଦ୍ଧାର କଲେ । ପୁଣି ଅଗ୍ନିଦେବତାଙ୍କୁ କାର୍ଯ୍ୟ ରୂପରେ ପାଇ କାରଣ ମଧ୍ୟରେ ଲୀନ କରି ଶୁଦ୍ଧ କରିଦେଲେ । ଅନ୍ୟ କେହି ଏ କଥାର ମର୍ମ ଜାଣି ପାରିଲେନି । ଅଗ୍ନି ଦେବତା କିନ୍ତୁ ଏ କଥା ବୁଝିପାରି ବାଳକୃଷ୍ଣ ଲାଲଙ୍କୁ ସଲାମ ଠୁକିଲେ । ଏହି ସ୍ଥାନରେ ଏବେ **ପ୍ରସିଦ୍ଧ ସନ୍ଥ ଓଡ଼ିଆ ବାବାଙ୍କ ଆଶ୍ରମ** ବିଦ୍ୟମାନ ।

**(ଖ) ଖଦିର ବନର ଦାବାନଳ କୁଣ୍ଡ:**

ଖଦିର ବନରେ ଅକ୍ଷୟବଟ ନିକଟରେ ଭଗବାନ ପ୍ରଲମ୍ବାସୁରକୁ ନିଷ୍ପ୍ରାଣ କରି ଉଦ୍ଧାର କଲେ । ପୁଣି ବଳରାମ ଓ ଗୋପାଳବାଳକମାନଙ୍କୁ ଧରି ଖେଳରେ ଖୁସିରେ ମସ୍‌ଗୁଲ ହୋଇଗଲେ । ସେ କ୍ରୀଡ଼ା ସ୍ଥାନର ନାମ ମୁଞ୍ଜ ଅଟବୀ । ମୁଞ୍ଜ ଶବ୍ଦର ଅର୍ଥ ସଂସ୍କୃତରେ ତୃଣ ବୁଝାଏ । ସୁନ୍ଦର ଲୋଭନୀୟ ତୃଣ ଭୋଜନ କଲାବେଳେ ଧେନୁ ପଲ ଓ ବତ୍ସା ବୃନ୍ଦଙ୍କୁ କଂସ ପ୍ରେରିତ ଅସୁର ଅଗ୍ନି ପ୍ରକଟ ହୋଇ ମରଣାନ୍ତକ ଆକ୍ରମଣ କଲେ ।  ସମସ୍ତେ ଇତସ୍ତତଃ ହୋଇ ଚିତ୍କାର କଲେ । ଠାକୁରଜୀ ଦେଖିଲେ ପରିସ୍ଥିତି ଗମ୍ଭୀର । ଏ ଅଗ୍ନି ତାଙ୍କ ଭକ୍ତମାନଙ୍କୁ କଷ୍ଟ ଦେବାକୁ ଆଗ୍ରହୀ । ଅତଏବ ଏ ଅସୁର ଅଗ୍ନି । ଯାଙ୍କ ମୁଖଦର୍ଶନ ମଧ୍ୟ ପାପ । ଠାକୁରଜୀ ସମସ୍ତଙ୍କୁ ନେତ୍ର ବନ୍ଦ କରିବାକୁ କହିଲେ । ସମସ୍ତେ ନିଜ ନିଜ ନୟନ ମୁଦି ଦିଅନ୍ତେ ଭଗବାନ ପ୍ରବଳ ଅସୁର ଅଗ୍ନିକୁ ଗୋଟାସୁଦ୍ଧା ଆତ୍ମସାତ କରିଦେଲେ । ସ୍ୱଭକ୍ତମାନଙ୍କର ରକ୍ଷା ହୋଇଗଲା । ଲୀଳାରେ ଲୀଳାରେ ଅଗ୍ନିଦେବଙ୍କର ଆସୁରିକ ଭାବନା ମଧ୍ୟ ଶୁଦ୍ଧ ହୋଇଗଲା । ଏଠାରେ ମୁଞ୍ଜବିହାରୀ ମନ୍ଦିରରେ ସୁନ୍ଦର ରାଧାକୃଷ୍ଣ ବିଗ୍ରହ ଦର୍ଶନୀୟ ।

ଏହି ଲୀଳାସ୍ଥଳୀରେ ଗୋପୀ ଘାଟରେ କାତ୍ୟାୟନୀ ମନ୍ଦିର, ଯମୁନାକୂଳର ଅନ୍ୟତମ ଚୀର ଘାଟ ବା ବସ୍ତ୍ରହରଣ ଘାଟ ଦର୍ଶନୀୟ ।

**୮. ଶ୍ରୀ ଗୋବିନ୍ଦ କୁଣ୍ଡ:**

ପ୍ରଶ୍ନ-୫୬: ଶ୍ରୀ ଗିରିରାଜ ପରିକ୍ରମା କରିବା ସମୟରେ ପରିକ୍ରମା ମାର୍ଗରେ ପୁଛରୀ କା ଲୋଠା ପରେ ପରେ ଦର୍ଶନ କରିବାକୁ ପଡ଼େ ଏହି ଶ୍ରୀ ଗୋବିନ୍ଦ କୁଣ୍ଡ । ଠାକୁରଜୀଙ୍କ ଏଗାର ବର୍ଷ ଲୀଳା ମଧ୍ୟରେ ଦେବରାଜ ସ୍ୱର୍ଗ ସମ୍ରାଟ ଇନ୍ଦ୍ରଙ୍କ ଦତ୍ତ ତାଙ୍କର ଗୋବିନ୍ଦ ପଦବୀରେ ଅଭିଷେକ ଉତ୍ସବ ଏକ ମୁଖ୍ୟ ଲୀଳା । ସେଇ ଲୀଳାର ତାଙ୍କରି ସ୍ମୃତିରେ ବିରାଜମାନ ଆଜିର ଏ ବିଶାଳ ସରୋବର ଶ୍ରୀ ଗୋବିନ୍ଦ କୁଣ୍ଡ ।

ସେତେବେଳେ ଭଗବାନଙ୍କ ବୟସ ମାତ୍ର ସାତବର୍ଷ । ଇନ୍ଦ୍ର ପୂଜା ବନ୍ଦ କରାଇବାକୁ ଗୀତା ବର୍ଣ୍ଣିତ ଅଠର ଅଧ୍ୟାୟ କର୍ମଯୋଗକୁ ସେ ଶିକ୍ଷା ଦେଲେ ମାତ୍ର ଅଠର ଶ୍ଳୋକରେ ନିଜ ପିତା ନନ୍ଦ ମହାରାଜାଙ୍କୁ । ଇନ୍ଦ୍ର ପୂଜା ବନ୍ଦ କରାଗଲା । ଗିରିରାଜ ପୂଜା କରାଗଲା । ଗିରିରାଜ ମହାଶୟ ଜଡ଼ ପର୍ବତରୁ ଚେତନ ମହାଦେବତା ହୋଇଗଲେ । ମୁଖାରବିନ୍ଦ ଠାରେ ସ୍ୱମୁଖ ପ୍ରକଟ କରି ସେ ଛପନ ବ୍ୟଞ୍ଜନ ସେବନ କଲେ । ଏ କାଣ୍ଡ ଦେଖି ଇନ୍ଦ୍ର ଖପା ହେଲେ । ସାତଦିନ ଅଜସ୍ର ବର୍ଷା, ଝଡ଼ି ପବନ, ବିଜୁଳି ଓ ଘଡ଼ଘଡ଼ି ଚଡ଼ଚଡ଼ି ଇତ୍ୟାଦିର ପ୍ରକୋପ ଦେଖାଇଲେ । ଗୋବିନ୍ଦ ସପ୍ତକୋଶୀ ପର୍ବତକୁ ଛତ୍ର ଆକାରରେ ଟେକି ସକଳ ବ୍ରଜବାସୀଙ୍କୁ ରକ୍ଷା କଲେ । ଇନ୍ଦ୍ର ଖବର ପାଇଲେ ବ୍ରଜବାସୀ ସଂପୂର୍ଣ୍ଣ ସୁରକ୍ଷିତ ବୋଲି । ବୁଦ୍ଧି ହଜିଗଲା ତାଙ୍କର । ଶ୍ରୀ ବ୍ରହ୍ମାଜୀଙ୍କ ଶରଣ ପଶିଲେ ।

ଶ୍ରୀ ବ୍ରହ୍ମଦେବ ସେତେବେଳକୁ ଠାକୁରଜୀଙ୍କ ଅସଲି ପରିଚୟ ପାଇସାରିଥାନ୍ତି ବତ୍ସାହରଣ ଲୀଳା ମାଧ୍ୟମରେ । ଇନ୍ଦ୍ରଙ୍କ କାରନାମା ଶ୍ରବଣ କରି କାନରେ ହାତଦେଇ 'ରାମ', 'ରାମ' କହିଲେ । ତୁରନ୍ତ ଯାଇ ଶ୍ରୀକୃଷ୍ଣଙ୍କର ଚରଣ କମଳରେ ନତମସ୍ତକ ହୋଇ କ୍ଷମା ଯାଚନା କରିବା ପାଇଁ ଉପାୟ ବତାଇଦେଲେ । ଇନ୍ଦ୍ରଦେବ ଶ୍ରୀ ଗୋବର୍ଦ୍ଧନରେ ପହଞ୍ଚି କ୍ଷମା ମାଗିବାରୁ ଭଗବାନ କଅଣ ତତ୍କ୍ଷଣାତ କ୍ଷମା କରିଦେଲେ ?

**ମାଂ ଐଶ୍ୱର୍ଯ୍ୟ ଶ୍ରୀ ମଦ-ଅନ୍ଧୋ ଦଣ୍ଡପାଣିଂ ନ ପଶ୍ୟତି ।**
**ତଂ ଭ୍ରଂଶୟାମି ସଂପଦ୍ଭ୍ୟୋ ଯସ୍ୟ ଚେତ୍ ଇଚ୍ଛାମି-ଅନୁଗ୍ରହମ୍ ॥୧୬॥**

ଉ. ଭଗବାନ କରୁଣା ବରୁଣାଳୟ । ଇନ୍ଦ୍ରଙ୍କୁ ବୁଝାଇ କହିଲେ, "ହେ ଦେବରାଜ, ଏକା ଆପଣ ନୁହନ୍ତି, ମର୍ତ୍ତ୍ୟଲୋକରେ ମଧ୍ୟ ମନୁଷ୍ୟ ଅଳ୍ପ ଐଶ୍ୱର୍ଯ୍ୟ, ଧନ, ସଂପତ୍ତି, ପଦ, ପଦବୀ, ବଳ, ବିଦ୍ୟା, ବୁଦ୍ଧି ସାମର୍ଥ୍ୟ ପ୍ରାପ୍ତ ହେଲେ ଅହଂକାରରେ ଉତ୍ପାତ କରିବସୁଛି । ଇନ୍ଦ୍ର, ଚନ୍ଦ୍ର ଏପରିକି ମୋତେ (ମାଂ) ମଧ୍ୟ ମାନୁ ନାହିଁ । ଅନ୍ୟ କଥା କଅଣ କହିବି ନିଜର ମୃତ୍ୟୁକୁ ବି ପାଶୋରି ଯାଉଛି(ଦଣ୍ଡପାଣିଂ ନ ପଶ୍ୟତି) । ସେହିଭଳି ଦୁରାତ୍ମାମାନଙ୍କୁ ଧର୍ମ ମାର୍ଗ ଦର୍ଶାଇବାକୁ ବାଟକୁ ଆଣିବାକୁ ଆପଣଙ୍କ ମାଧ୍ୟମରେ ଏହି ଆଦର୍ଶ ଦଣ୍ଡ ବିଧାନ ଲୀଳା ମୁଁ ପ୍ରଦର୍ଶନ କରିଛି । ଯାହାହେଉ ଆପଣଙ୍କର ସଦ୍‌ବୁଦ୍ଧି ଉଦୟ ହୋଇଛି । ଏଣିକି ସଂସାର ଜାଣୁ ଯେ ଐଶ୍ୱର୍ଯ୍ୟ, ରୂପ, ବଳ ଇତ୍ୟାଦି ପାଇବା ଯେପରି ଭଗବତ କୃପା ସେ ସବୁକୁ ତାଙ୍କଠାରୁ ତାଙ୍କ ଇଚ୍ଛା ବିରୁଦ୍ଧରେ ଛଡ଼ାଇନେବା ମଧ୍ୟ ସେଇ ଭଗବତ କୃପା । ଆପଣ ଏବେ ସ୍ୱର୍ଗକୁ ଯାଇ ନିଜ ଇନ୍ଦ୍ର ଆସନରେ ଅବସ୍ଥାପିତ ହୁଅନ୍ତୁ ।"

ଏଭଳି ଅମୃତମୟ ଉପଦେଶ ଶ୍ରବଣ କରି ଇନ୍ଦ୍ର ପାପର ପ୍ରାୟଶ୍ଚିତ ଚିନ୍ତା କଲେ । ନିଜ ଐରାବତଙ୍କ ଦ୍ୱାରା ସ୍ୱର୍ଗରୁ ଗଙ୍ଗାଜଳ ଅଣାଇଲେ । କାମଧେନୁ ଦିବ୍ୟ ସୁରଭୀଙ୍କୁ ଅଣାଇ ଦୁଗ୍ଧ କୁଣ୍ଡ ପ୍ରକଟ କରାଇଲେ । ମୁନି ଋଷିମାନଙ୍କ ସ୍ୱସ୍ତି ବଚନ ସହିତ ଠାକୁରଜୀଙ୍କୁ ଏକ ଭବ୍ୟ ଆସନରେ ବସାଇ ସକଳ ଦେବତା ଓ ଅପ୍ସରାମାନଙ୍କ ଉପସ୍ଥିତିରେ ଅଭିଷେକ କରାଇଲେ । ଶ୍ରୀ ଗୋବିନ୍ଦ ବୋଲି ନୂତନ ନାମଟିଏ ପଦବୀ ଆକାରରେ ପ୍ରଦାନ କଲେ । ସେ ଅଭିଷିକ୍ତ  ଜଳ ଆଜି ସେଇ ଲୀଳାର ସାକ୍ଷ୍ୟ ଦେଉଛି ଶ୍ରୀଗୋବିନ୍ଦ କୁଣ୍ଡ ରୂପେ ।

ପାଖରେ ସୁରଭୀ କୁଣ୍ଡ, ଅପ୍ସରା କୁଣ୍ଡ, ଚକ୍ର କୁଣ୍ଡ, ଗୋବର୍ଦ୍ଧନ ଧାରଣ ଲୀଳାରେ ସେହି ଦେବତାମାନଙ୍କ ଉପସ୍ଥିତିର ସୂଚନା ଦିଅନ୍ତି ଆଜି ସେଇ କୁଣ୍ଡ ମାନେ । ଏବେ ଅନେକ ସିଦ୍ଧ ସାଧକ ବୈଷ୍ଣବମାନଙ୍କର ଆଶ୍ରମ, ମଠ ସେଠାରେ ଗଢ଼ି ଉଠିଛନ୍ତି ।

**୯. ଶ୍ରୀ ଉଦ୍ଧବ କୁଣ୍ଡ:**

ପ୍ରଶ୍ନ-୫୭: ଶ୍ରୀକୃଷ୍ଣ ଲୀଳାରେ ଏକ ଅତ୍ୟନ୍ତ ସ୍ମରଣୀୟ ମୁଖ୍ୟ ଭୂମିକାରେ ଅଭିନୟ କରିଛନ୍ତି ଏକାଧାରରେ ମହାଜ୍ଞାନୀ ଓ ଭକ୍ତ ଶ୍ରେଷ୍ଠ ଶ୍ରୀ ଉଦ୍ଧବଜୀ । ବ୍ରଜମଣ୍ଡଳରେ ଏବେ ମଧ୍ୟ ତିନୋଟି ଲୀଳାସ୍ଥଳୀ ଦର୍ଶନରେ କୃଷ୍ଣଭକ୍ତ ମାନେ ତାଙ୍କୁ ସ୍ମରଣ କରିଥାଆନ୍ତି । ପ୍ରଥମଟି ହେଲା ଉଦ୍ଧବଜୀ ମଥୁରାରୁ ଶ୍ରୀକୃଷ୍ଣଙ୍କ ପ୍ରେମଦୂତରୂପେ ଆସି ବୃନ୍ଦାବନ ଧାମରେ ଯେଉଁଠାରେ ଗୋପାଙ୍ଗନାମାନଙ୍କ ସହିତ ଜ୍ଞାନ ପ୍ରେମର ଆଲୋଚନା ଲାଗି ଉଦ୍ଧବ ସନ୍ଦେଶ ଉପସ୍ଥାପନ କରିଥିଲେ । ଏବେ ସେ ସ୍ଥାନଟି ବୃନ୍ଦାବନଧାମରେ ଶ୍ରୀ ରଙ୍ଗଜୀ ମନ୍ଦିର ପଛପଟେ ଥିବା ତୁଳସୀରାମ ଦର୍ଶନ ସ୍ଥଳ ନିକଟସ୍ଥ ଜ୍ଞାନ ଗୁଦଡ଼ି । ଦ୍ୱିତୀୟଟି ହେଲା ତାଙ୍କ ଜ୍ଞାନ ସନ୍ଦେଶ ଦେବାକୁ ଆସି ଦୀର୍ଘ ଦଶମାସ କାଳ ଯେଉଁ ସ୍ଥାନରେ ବ୍ରଜବାସ କଲେ ଦୁର୍ଲ୍ଲଭ କୃଷ୍ଣ ପ୍ରେମ ଲୀଳାରସ ଆସ୍ୱାଦନ କରିବା ଲାଗି । ଆଜି ସେ ସ୍ଥାନର ନାମ ଉଦ୍ଧବ କିଆରୀ ଯାହା ଏବେ ନନ୍ଦଗ୍ରାମ ନିକଟରେ ଅବସ୍ଥିତ ।

ତୃତୀୟ ସ୍ମାରକ ସ୍ଥାନଟି ହେଲା ଏହି ଶ୍ରୀ ଉଦ୍ଧବ କୁଣ୍ଡ । ଏବେ ଏଠାରେ ଏକ ସୁନ୍ଦର ଶ୍ରୀ ଉଦ୍ଧବ ବିହାରୀ କୃଷ୍ଣ ମନ୍ଦିରରେ ତାଙ୍କର ସେବା ପୂଜା ଚାଲିଛି । ସଂସାରରେ ଆମେ ଦେଖୁ ଯେ ପ୍ରଶଂସା କରେ ସେ ଭକ୍ତ । ଯାହାଙ୍କର ପ୍ରଶଂସା କରାଯାଏ ସେ ଭଗବାନ । ଶ୍ରୀମଦ୍ଭାଗବତ ମହାଗ୍ରନ୍ଥର ଏକାଦଶ ସ୍କନ୍ଧରେ ଏହାକୁ ଓଲଟାଇ କଅଣ ବୋଲି ଶ୍ରୀ ବ୍ୟାସଦେବ ଲେଖିଛନ୍ତି ?

**ନ ତଥା ମେ ପ୍ରିୟତମ ଆତ୍ମଯୋନିଃ ନ ଶଙ୍କରଃ ।**
**ନ ଚ ସଂକର୍ଷଣୋ ନ ଶ୍ରୀଃ ନ-ଏବ-ଆତ୍ମା ଚ ଯଥା ଭବାନ୍ ॥୧୫॥**

ଉ. ଭଗବାନ ଭକ୍ତର ପ୍ରଶଂସା କରିବାରେ ଶତମୁଖ ହୋଇ ପ୍ରଶଂସାର ରେକର୍ଡ଼ ଭାଙ୍ଗିଦେଇ କହିଥିଲେ, ''ହେ ମୋର ପ୍ରିୟତମ ଉଦ୍ଧବଜୀ, ଆପଣ(ଭବାନ) ମୋର ଏତେ ପ୍ରିୟ ଯେ ସେତେ ପ୍ରିୟ ମୋର ନିଜ ପୁତ୍ର ସୃଷ୍ଟିକର୍ତ୍ତା ବ୍ରହ୍ମା(ଆତ୍ମଯୋନିଃ) ମୋର ଅଭିନ୍ନ ଗୁଣ ଅବତାର ଶ୍ରୀ ଶଙ୍କରଜୀ, ମୋର ଜ୍ୟେଷ୍ଠ ଭ୍ରାତା ବଳଦେବ, ମୋର ବକ୍ଷ ବିହାରିଣୀ ମହାଲକ୍ଷ୍ମୀ ଏପରିକି ମୋର ନିଜ ଆତ୍ମା ମଧ୍ୟ ଆପଣଙ୍କ ସଦୃଶ ପ୍ରିୟ ନୁହନ୍ତି ।''

କୃଷ୍ଣଲୀଳା ଶେଷରେ ଭଗବାନ ଉଦ୍ଧବଜୀଙ୍କୁ ପ୍ରେମ ଓ ଜ୍ଞାନର ସର୍ବୋଚ୍ଚ ଉପଦେଶ, ଭାଗବତଙ୍କର ଏକାଦଶ ସ୍କନ୍ଧରେ ୨୪ଅଧ୍ୟାୟରେ ପ୍ରଦାନ କଲେ । ତାଙ୍କ ଶରୀରକୁ ଚିନ୍ମୟ କଲେ । ତାଙ୍କ ଜ୍ଞାନ ଅଂଶକୁ ବଦ୍ରିକା ଧାମରେ ରଖାଇଲେ ଜ୍ଞାନମାର୍ଗୀଙ୍କୁ ମୁକ୍ତିପଥ ପ୍ରଦର୍ଶନ ଲାଗି । ପ୍ରେମ ଅଂଶକୁ ଉଦ୍ଧବଙ୍କ ଅନ୍ତିମ ଇଛା ଅନୁଯାୟୀ ଏହି ଶ୍ରୀ ଉଦ୍ଧବ କୁଣ୍ଡ(କୁସୁମ ସରୋବର ନିକଟରେ) ଠାରେ ଲତା ଗୁଳ୍ମ ରୂପରେ ଲୁଚାଇ ରଖିଛନ୍ତି ଯୁଗ ଯୁଗାନ୍ତର ଲାଗି ଶ୍ରୀକୃଷ୍ଣପ୍ରେମ ପରିବେଷଣ ଲାଗି । ଯାହାର ପ୍ରମାଣ ଏହି ପୁସ୍ତକର ୨ୟ ଭାଗରେ ସବିଶେଷ ବର୍ଣ୍ଣିତ ହୋଇଛନ୍ତି ସ୍କନ୍ଦ ପୁରାଣ ବର୍ଣ୍ଣିତ ଭାଗବତ ମାହାତ୍ମ୍ୟ ଆଧାରରେ ।

## ୧୦. ଶ୍ରୀ ବିମଳାକୁଣ୍ଡ:

ପ୍ରଶ୍ନ-୫୮ : ଶ୍ରୀ କାମ୍ୟକ ବନରେ ଅବସ୍ଥିତ ମୁଖ୍ୟ ତୀର୍ଥମାନଙ୍କ ମଧ୍ୟରେ ଶ୍ରୀ ବିମଳାକୁଣ୍ଡ କାହିଁକି ଏତେ ପ୍ରସିଦ୍ଧି ଲାଭ କରିଛନ୍ତି ?

ଉ. ସତ୍ୟ, ତ୍ରେତା ଓ ଦ୍ୱାପର ତିନି ଯୁଗରେ ଏହି ଭବ୍ୟ କୁଣ୍ଡର ଗୁଣଗାନ କରାଯାଇଛି ।

**କ. ସତ୍ୟଯୁଗ କଥା:** ଆଦି ବରାହ ପୁରାଣରେ ଏହି କୁଣ୍ଡର ମାହାତ୍ମ୍ୟର ବର୍ଣ୍ଣନା ଦେଖିବାକୁ ମିଳେ । ସ୍ୱାୟମ୍ଭୁବ ମନ୍ୱନ୍ତର କାଳରେ ସୂର୍ଯ୍ୟବଂଶରେ ଅମ୍ବରୀଷ ନାମରେ ଜଣେ ଚକ୍ରବର୍ତ୍ତୀ ସମ୍ରାଟ୍ ଅଯୋଧ୍ୟାରେ ରାଜପଣ କରୁଥିଲେ । ସେ ଜଣେ ପରମ ବୈଷ୍ଣବ ରାଜା ଥିଲେ । ଦେବର୍ଷି ନାରଦଙ୍କଠାରୁ ଏହି ବିମଳା କୁଣ୍ଡର ମାହାତ୍ମ୍ୟ ତାଙ୍କ ରାଣୀ ସୁଶୀଳା ଶ୍ରବଣ କରି ରାଜାଙ୍କୁ ଧରି ମଥୁରା ପହଞ୍ଚିଲେ । ମଥୁରାରେ ଯମୁନା ସ୍ନାନ କରି ଗୋକର୍ଣ୍ଣେଶ୍ୱର ମହାଦେବ ଓ ଭୂତେଶ୍ୱର ମହାଦେବଙ୍କ ଦର୍ଶନ କଲେ ।

ପୁଣି ବୃନ୍ଦାବନ ଆସି ପବିତ୍ର କାଳୀୟ ହ୍ରଦ ଓ କେଶୀଘାଟ ଆଦିରେ ଯମୁନା ସ୍ନାନ କଲେ । ଶ୍ରୀ ଗୋବର୍ଦ୍ଧନ ଯାଇ ମାନସୀ ଗଙ୍ଗାରେ ସ୍ନାନ କଲେ । ଶେଷରେ କାମ୍ୟକ ବନରେ ପହଞ୍ଚିଲେ । ଏହି ବିମଳା କୁଣ୍ଡରେ ସ୍ନାନ କରି ଆଉ ରାଜା ରାଣୀ ନିଜ ରାଜ୍ୟକୁ ଫେରିଲେ ନାହିଁ । ଦୀର୍ଘ ଆଠ ମାସ ଏହି କୁଣ୍ଡରେ ସ୍ନାନ କରି ଭଗବାନ ଚତୁର୍ଭୁଜ ନାରାୟଣଙ୍କ ବିଗ୍ରହ ଦର୍ଶନ, ସେବା ପୂଜା କରିଥିଲେ । ଶେଷରେ ଦିନେ ସେ କୁଣ୍ଡ ମଧ୍ୟରେ ରାଜା ଅମ୍ବରୀଷ ଭଗବାନଙ୍କ ଦର୍ଶନ ପ୍ରାପ୍ତ ହେଲେ । ଭଗବାନ ଆଶିର୍ବାଦ ଦେଲେ ଯେ ପରବର୍ତ୍ତୀ ଜନ୍ମରେ ମଧ୍ୟ ସେ ଏହି କାମ୍ୟକ ବନର ସେବା ସୁଯୋଗ ପ୍ରାପ୍ତ ହେବେ । ସୁତରାଂ ରାଜା ଅମ୍ବରୀଷ ଏଠାରେ ଅନେକ ସୁନ୍ଦର ମନ୍ଦିର, ଆଶ୍ରମ, କୁଣ୍ଡ, ସରୋବର ଆଦି ସହିତ ବ୍ରାହ୍ମଣ, ବୈଷ୍ଣବ ଭୋଜନ ସେବା ଆଦିର ବ୍ୟବସ୍ଥା କଲେ ।

**(ଖ) ତ୍ରେତାଯୁଗର କଥା:** ଗର୍ଗ ସଂହିତାଙ୍କର ବର୍ଣ୍ଣନା ଅନୁସାରେ ସିନ୍ଧୁଦେଶ (ଆଜିର ଆଫଗାନିସ୍ଥାନ)ରେ ବିମଳ ନାମରେ ଜଣେ ରାଜା ଥିଲେ । ତାଙ୍କର ଛଅ ହଜାର ରାଣୀ ଥିଲେ । ସମସ୍ତେ କିନ୍ତୁ ପ୍ରଥମେ ନିଃସନ୍ତାନ ଥିଲେ । ମହାଋଷି ଯାଜ୍ଞବଲକ୍ୟଙ୍କ ସେବା ଓ କୃପାରେ ଅନେକ କନ୍ୟା ସନ୍ତାନଙ୍କୁ ଜନ୍ମଦେଲେ । ଏମାନେ ସମସ୍ତେ ପୂର୍ବଜନ୍ମରେ ଅଯୋଧ୍ୟାବାସିନୀ ଥିଲେ । ପ୍ରଭୁ ଶ୍ରୀରାମଙ୍କ ସୌନ୍ଦର୍ଯ୍ୟ ଓ ଗୁଣରେ ମୁଗ୍ଧ ହୋଇ ତାଙ୍କ ଅଙ୍ଗ ସଙ୍ଗ କାମନା କରିଥିଲେ । ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମ ସେତେବେଳ ସେହି ଅଯୋଧ୍ୟାବାସିନୀ ଶରଣାଗତ ଭକ୍ତମାନଙ୍କୁ ଆଶାର ବାଣୀ ଶୁଣାଇଥିଲେ । ସେମାନଙ୍କୁ ଆଶିର୍ବାଦ କରିଥିଲେ ପର ଜନ୍ମରେ ସେମାନଙ୍କୁ କୃଷ୍ଣରୂପରେ ପ୍ରାପ୍ତ ହେବାକୁ । କାରଣ ସେ ହିଁ ପରଜନ୍ମରେ କୃଷ୍ଣ ଅବତାର କାଳରେ ବହୁ ପତ୍ନୀକ ଭାବରେ ଜଣେ ଆଦର୍ଶ ପ୍ରେମିକ ଓ ଆଦର୍ଶ ଗୃହସ୍ଥ ଅବତାର ରୂପେ ଦିବ୍ୟ ଲୀଳା କରିବେ । ବର୍ତ୍ତମାନ ସେଇ ଅଯୋଧ୍ୟାନାରୀମାନେ ବିମଳ ରାଜାଙ୍କ କନ୍ୟାରୂପେ ସିନ୍ଧୁ ଦେଶରେ ଜନ୍ମ ହୋଇଛନ୍ତି । ସେମାନେ ଜନ୍ମରୁ କୃଷ୍ଣ ଭଜନ, ଚିନ୍ତନ ଆଦି କରି ଚାଲିଛନ୍ତି । ସେମାନେ ବହୁତ ଖୋଜି ଲୋଡ଼ି ପଚାରି ବୁଝି ଶେଷରେ ଏହି କାମ୍ୟବନରେ ସମସ୍ତେ ପହଞ୍ଚିଛନ୍ତି । ରସିକ ଶେଖର ଶ୍ରୀକୃଷ୍ଣ ସେମାନଙ୍କ ବ୍ୟାକୁଳ କ୍ରନ୍ଦନରେ ସେଠାରେ ପ୍ରକଟ ହୋଇଛନ୍ତି । ସେମାନଙ୍କ ସହିତ ବନ ବିହାର, ଜଳ ବିହାର ଓ ଅନେକ ଖେଳ କୌତୁକ କରିଛନ୍ତି । ଶେଷରେ ସେମାନଙ୍କୁ ସମାନ ସଂଖ୍ୟକ କୃଷ୍ଣ ରୂପରେ ପ୍ରକଟ ହୋଇ ପବିତ୍ର ରାସ ରସର ଆସ୍ୱାଦନ କରାଇଛନ୍ତି । ସେଇ ଭକ୍ତମାନଙ୍କର

ଆନନ୍ଦ ଅଶ୍ରୁ ବିଗଳିତ ହୋଇ ସେ ସ୍ଥାନ ଆଜିର ବିମଳାକୁଣ୍ଡରେ ଜଳ ରୂପରେ ସେବା ପୂଜା ପାଉଛନ୍ତି ।

**(ଗ) ଦ୍ୱାପର ଯୁଗର କଥା:** ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କ ଅବତାର ଓ ବ୍ରଜମଣ୍ଡଳରେ ଲୀଳା କାଳରେ ପ୍ରତ୍ୟେକ ବର୍ଷ ଥରେ ଲେଖାଏଁ ଭାରତର ସକଳ ତୀର୍ଥମାନେ ଆସନ୍ତି ଚାତୁର୍ମାସ୍ୟରେ ବ୍ରଜଧାମ ଦର୍ଶନ ଲାଗି । ଥରେ କୌଣସି କାରଣରୁ ତୀର୍ଥରାଜ ପୁଷ୍କର(ରାଜସ୍ଥାନର) ଆସି ପାରିନଥିଲେ । ଏକଥା ବ୍ରଜବାସୀମାନେ ଠାକୁରଜୀଙ୍କ କାନରେ ପକାଇଲେ । ଭଗବାନ ଶ୍ରୀକୃଷ୍ଣ ଯୋଗାମାୟାଙ୍କୁ ସ୍ମରଣ କଲେ । ଯୋଗମାୟା କାମ୍ୟବନର ଏହି ସ୍ଥାନରେ ଏକ ଜଳପ୍ରବାହ ସୃଷ୍ଟି କରାଇ କୁଣ୍ଡ ପ୍ରକଟ କରାଇଲେ । ଯାହାର ନାମ ଆଜି ବିମଳାକୁଣ୍ଡ ହୋଇଛି । ସାତଥର ପୁଷ୍କର ସ୍ନାନରେ ଯେଉଁ ଫଳ ମିଳେ ଏବେ ଥରେ ସ୍ନାନ କରି ବ୍ରଜବାସୀମାନେ ବା ବ୍ରଜଧାମର ତୀର୍ଥଯାତ୍ରୀମାନେ ସେଇ ସମାନ ଫଳ ପ୍ରାପ୍ତ ହେଉଛନ୍ତି ।

## ୧୧. ଶ୍ରୀ ଗୌରୀ କୁଣ୍ଡ:

ପ୍ରଶ୍ନ-୫୯: ଶ୍ରୀ କେଦାର ନାଥ ତୀର୍ଥରେ ଦର୍ଶନୀୟ ଗୌରୀକୁଣ୍ଡର ଭୂମିକା ବ୍ରଜରେ କୁଆଡୁ ଆସିଲା ?

ଉ. ଶ୍ରୀ ଗିରିରାଜ ଗୋବର୍ଦ୍ଧନ ପରିକ୍ରମା ପଥରେ ଅନ୍ନକୂଟ ଗ୍ରାମ, ଶଙ୍କର୍ଷଣ କୁଣ୍ଡ ନିକଟରେ ଏହି ସ୍ୱତନ୍ତ୍ର ପବିତ୍ର ଗୌରୀକୁଣ୍ଡ ବିଦ୍ୟମାନ । ଶ୍ରୀକୃଷ୍ଣ ଲୀଳାରେ ଶ୍ରୀରାଧାଙ୍କର ପିତାଙ୍କର ନାମ ଶ୍ରୀବୃଷଭାନୁ । ଶ୍ରୀ ବୃଷଭାନୁ ରାଜାଙ୍କର ବଡ଼ ଭାଇଙ୍କ ନାମ ଶ୍ରୀ ଚନ୍ଦ୍ରଭାନୁ । ଚନ୍ଦ୍ରଭାନୁଙ୍କର କନ୍ୟାର ନାମ ଶ୍ରୀ ଚନ୍ଦ୍ରାବଳୀ । ଚନ୍ଦ୍ରାବଳୀ ମଧ୍ୟ ବିବାହିତା ଥିଲେ । ତାଙ୍କ ପତିଙ୍କର ନାମ ଶ୍ରୀଗୋବର୍ଦ୍ଧନ ମଲ୍ଲ । ଚନ୍ଦ୍ରାବଳୀଙ୍କର ଦୁଇ ପ୍ରିୟ ସଖୀଙ୍କର ନାମ ଶୈବ୍ୟା ଓ ପଦ୍ମା । ରୂପ, ଗୁଣ, ବୈଦଗ୍ଧ, ଲାବଣ୍ୟ ସହିତ ଆତ୍ମ ସମର୍ପଣ ଭାବରେ ମଧ୍ୟ ଏହି ଚନ୍ଦ୍ରାବଳୀ ଶ୍ରୀରାଧାଙ୍କର ମଧ୍ୟ ସମକକ୍ଷା ଥିଲେ । ସେ ବିବାହିତା ନାରୀ ହୋଇ ନିଜ ପତିଙ୍କୁ କେବଳ ଦେହର ପତି ବୋଲି ମାନୁଥିଲେ କିନ୍ତୁ ମନ, ବୁଦ୍ଧି, ହୃଦୟ ସଂପୂର୍ଣ୍ଣ ସମର୍ପଣ କରି ଦେଇଥିଲେ ମଦନ ମୋହନ ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କୁ ।

ଏ ସ୍ଥାନର ଏପରି ନାମକରଣ ହୋଇଥିଲା ଏଠାରେ ଶ୍ରୀ ଗୌରୀ ଦେବୀଙ୍କର ପୂଜା ଯୋଗୁ । ଚନ୍ଦ୍ରାବଳୀ ପ୍ରତ୍ୟହ ଏହି ସ୍ଥଳୀକୁ ଦେବୀପୂଜା କରିବାକୁ ଆସନ୍ତି ଦୁଇ ସଖୀଙ୍କୁ ସଙ୍ଗରେ ଧରି । ପୂଜାବେଳେ ଦେବୀଙ୍କ କୃପା ଭିକ୍ଷା କରନ୍ତି ଶ୍ରୀ ନନ୍ଦ ନନ୍ଦନଙ୍କ

ଚରଣ କମଳରେ ଅଖଣ୍ଡ ନିତ୍ୟ ନବାୟମାନ, ନିରନ୍ତର ଭକ୍ତି ହେଉ ବୋଲି । ଶାଶୁଘରେ ଓ ଗାଁରେ ଏକଥା ସହ୍ୟ କରି ହୁଏନା । ଅନେକ ନିନ୍ଦା ହୁଏ ତାଙ୍କର । କୃଷ୍ଣ ପ୍ରେମର ସ୍ୱାଦ ଏତେ ମଧୁର ଯେ ଶ୍ରୀ ଚନ୍ଦ୍ରାବଳୀ ସବୁ ନିନ୍ଦା ଅପବାଦ ଚନ୍ଦନ ଭଳି ଆଦରି ନିଅନ୍ତି ସେହି କୃଷ୍ଣପ୍ରେମ ରସ ବଦଳରେ । ଠାକୁରଜୀ ମଧ୍ୟ ବିଭୋର ହୋଇ ଶ୍ରୀରାଧାଙ୍କ କୁଞ୍ଜକୁ ଗମନ କରିବା ବାଟରେ ଯାଉ ଯାଉ ବାଟ ଭୁଲି ପହଞ୍ଚିଯାଆନ୍ତି ଚନ୍ଦ୍ରାବଳୀଙ୍କ କୁଞ୍ଜରେ । ସେଠାରୁ ଯେତେବେଳେ ପୁଣି ଶ୍ରୀ ରାଧାକୁଞ୍ଜକୁ ଗମନ କରନ୍ତି ସେତେବେଳେ ତାଙ୍କ ବକ୍ଷରେ ନଖ କ୍ଷତ, ସିନ୍ଦୂର, ପୀତାମ୍ବରରେ ହଳଦୀ ଇତ୍ୟାଦି ସଂକେତ ଦେଖି ଶ୍ରୀରାଧା ବ୍ୟଥିତ ହୁଅନ୍ତି । ଈର୍ଷାରେ ନୁହେଁ ବରଂ ଶ୍ରୀକୃଷ୍ଣଙ୍କ ପ୍ରେମିକାର ନିର୍ଦ୍ଦୟ ବ୍ୟବହାର ଅନୁମାନ କରି । ନା ସେତିକି କଠୋର ବ୍ୟବହାର ସେ କରିନଥିଲେ ପ୍ରଭୁଙ୍କ କୋମଳ ଅଙ୍ଗରେ ନଖ କ୍ଷତ ଆଦି ଆସନ୍ତା କେଉଁଠୁ ?

ଆଜି ସେହି ଗୌରୀକୁଣ୍ଡ ସ୍ଥାନଟି କୃଷ୍ଣପ୍ରେମୀ ଭକ୍ତମାନଙ୍କୁ ନିନ୍ଦା କଷ୍ଟ ପାଇ କୃଷ୍ଣଙ୍କୁ ପ୍ରେମ କରିବାକୁ ପ୍ରେରଣା ଦିଏ ବୋଲି ତାଙ୍କୁ ଦୁଇ ହାତ ଯୋଡ଼ି ଆମକୁ ପ୍ରଣାମ କରିବାକୁ ପଡ଼େ । ଦାଉଜୀ ମନ୍ଦିର ଦର୍ଶନ ସାରି ବୃନ୍ଦାବନ ଫେରିବା ବେଳେ ଡ଼ାହାଣପଟେ ଏହି ଚନ୍ଦ୍ରାବତୀ ମନ୍ଦିର ଦର୍ଶନୀୟ ।

## ୧୨. ଶ୍ରୀ ଧର୍ମକୁଣ୍ଡ:

ପ୍ରଶ୍ନ-୬୦: ଶ୍ରୀକୃଷ୍ଣଙ୍କର ଲୀଳାଭୂମି ବ୍ରଜମଣ୍ଡଳକୁ ଦର୍ଶନ କରିବାକୁ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ବ୍ରହ୍ମା ଓ ଶଙ୍କର ଆଦି ଆସିଥିବାର ଅନେକ ପ୍ରମାଣ ମିଳୁଛି । ଏବେ ନନ୍ଦଗ୍ରାମ ପାଖରେ କୋକିଳାବନରେ ସୁନ୍ଦର ଶନିଦେବଙ୍କ ମନ୍ଦିର ଶୋଭାପାଇଲାଣି । ଭଗବାନ ନାରାୟଣ ସ୍ୱୟଂ ଧର୍ମର ସ୍ରଷ୍ଟା, ନିୟାମକ, ବେତ୍ତା ଓ ପାଳନକର୍ତ୍ତା । ତାଙ୍କର ଅନେକ ଅବତାରର କାରଣ ଏହି ଧର୍ମ ପାଳନର ଆଦର୍ଶସ୍ଥାପନ । ସେ ସ୍ୱୟଂ ନ୍ୟାୟବାନ ଏବଂ ଦୟାବାନ । ଧର୍ମରାଜ ପଦବୀଧାରୀ କିନ୍ତୁ ଯମରାଜ । ଭୌତିକ ଜଗତରେ ସେ ମୃତ୍ୟୁର ଦେବତା । ହାତରେ ତାଙ୍କର ପାଶ ଓ ଦଣ୍ଡ । ବାହନ ମହିଷି । ତାଙ୍କ ଲୋକର ନାମ ଯମ ଲୋକ । ତାଙ୍କର ସେବକମାନେ ଯମଦୂତ । ସେ କେବଳ ନ୍ୟାୟବାନ । ଦୟାବାନ ନୁହନ୍ତି । ସେ ସମଦର୍ଶୀ ନୁହନ୍ତି କିନ୍ତୁ ସମ ବ୍ୟବହାରୀ ।

ଶ୍ରୀକୃଷ୍ଣଙ୍କ ଅବତାର କାଳରେ ଯମରାଜା ବିଦୁର ରୂପରେ ଜନ୍ମ ନେଇଥିଲେ ମାଣ୍ଡବ୍ୟ ଋଷିଙ୍କ ଅଭିଶାପରେ । ସେ ଥିଲେ ଧାର୍ମିକ ପାଣ୍ଡବ ମାନଙ୍କର ପରମ ହିତୈଷୀ । ଜତୁ ଗୃହ ଦାହ ଷଡ଼ଯନ୍ତ୍ରରୁ ବିଦୁରଜୀ କୁନ୍ତୀଦେବୀଙ୍କ ସହିତ ପାଞ୍ଚ ପାଣ୍ଡବଙ୍କ ପ୍ରାଣ ରକ୍ଷା କରିଥିଲେ । ତଥାପି ଏକ ବକ ପକ୍ଷୀ (ଧର୍ମ ବକ ଅବତାର) ରୂପରେ ସ୍ୱୟଂ ଯମରାଜ ଏହି କାମ୍ୟକ ବନକୁ ଆସିବାର କାରଣ କ'ଣ ହୋଇପାରେ ?

ଉ. ଦୁର୍ବାସା ଋଷିଙ୍କ ମନ୍ତ୍ର ଜପ କରି କୁନ୍ତୀ ଦେବୀ ଯମରାଜାଙ୍କ ଦର୍ଶନ କଲେ । ତାଙ୍କ ପ୍ରସାଦରୁ ପୁତ୍ର ରୂପେ ଯୁଧିଷ୍ଠିରଙ୍କୁ ପ୍ରାପ୍ତ ହୋଇଥିଲେ । ତେଣୁ ତାଙ୍କର ନାମ ରଖିଲେ ଧର୍ମରାଜ ଯୁଧିଷ୍ଠିର । ସେହି ଯୁଧିଷ୍ଠିର କପଟ ପଶା ଖେଳରେ ହାରି ଚାରି ଭାଇ ଏବଂ ମା' କୁନ୍ତୀଙ୍କ ସହିତ ବନବାସ କାଳରେ ଏହି କାମ୍ୟବନରେ କିଛି ଦିନ ବାସ କରୁଥିଲେ କୁଳ ପୁରୋହିତ ଧୌମ୍ୟଙ୍କ ସହିତ । ଦିନକର କଥା । ତୃଷା ନିବାରଣ ଲାଗି ସେ ସାନ ଭାଇ ନକୁଳଙ୍କୁ ପଠାଇଲେ କିଛି ଜଳ ବ୍ୟବସ୍ଥା କରିବାକୁ । ନକୁଳ ଜଳ ଅନୁସନ୍ଧାନ କରି ପହଞ୍ଚିଲେ ଏହି ବନର ଏହି ଜଳକୁଣ୍ଡ ନିକଟରେ । ନକୁଳ ଜଳପାନ କରିବା ବେଳେ ଧର୍ମ ବକ ବାରଣ କଲେ । ଧର୍ମବକ ରୋକଠୋକ ଜଣାଇଦେଲେ ଯେ ଜୀବନ ସଂପର୍କରେ କିଛି ଗୂଢ଼ ପ୍ରଶ୍ନର ଉତ୍ତର ଦେଇପାରିଲେ ସେ ତାଙ୍କ ଅଧିକୃତ କୁଣ୍ଡରୁ ଜଳପାନର ସୁଯୋଗ ନେଇପାରନ୍ତି । ନଚେତ ତାଙ୍କର ପ୍ରାଣହାନୀ ଘଟିବ । ନକୁଳ କିନ୍ତୁ ହେୟଜ୍ଞାନ କଲେ ତାଙ୍କ କଥାକୁ । ଜଳପାନ କରି ପ୍ରାଣ ହରାଇ ଜଳାଶୟ କୂଳରେ ପଡ଼ିରହିଲେ । ଯୁଧିଷ୍ଠିର ପରେ ସହଦେବ, ଭୀମସେନ ଓ ଅର୍ଜୁନଙ୍କୁ ମଧ୍ୟ ଜଳ ଆଣିବାକୁ ପଠାଇଲେ । ସମସ୍ତେ ଗଲେ କିନ୍ତୁ କେହି ଫେରିଲେ ନାହିଁ । ଶେଷରେ ବାଧ୍ୟ ହୋଇ ଧର୍ମରାଜ ଯୁଧିଷ୍ଠିର ନିଜେ ଗଲେ ଏହି କୁଣ୍ଡ ନିକଟକୁ ।

ଦେଖିଲେ ଚାରି ଭାଇଙ୍କର ପ୍ରାଣହୀନ, ଚେତନାଶୂନ୍ୟ ଶବ ଗୁଡ଼ିକୁ । ମା'ଙ୍କ ଲାଗି ଜଳ ସଂଗ୍ରହ କରିବାକୁ ଉଦ୍ୟମ କରନ୍ତେ ଧର୍ମବକ ତାଙ୍କୁ ମଧ୍ୟ ବାରଣ କଲେ । ପ୍ରଥମେ ପ୍ରଶ୍ନ ମାନଙ୍କର ଉତ୍ତର ଦେଇ ପରେ ଜଳ ନେବାକୁ ପରାମର୍ଶ ଦେଲେ । ମନୁଷ୍ୟ ଜୀବନ ସଂପର୍କୀୟ ଅନେକ ଗୁଡ଼ିଏ ପ୍ରଶ୍ନ ଓ ଉତ୍ତର ଚାଲିଲା ଦୁହିଁଙ୍କ ମଧ୍ୟରେ । ଶେଷରେ ସେହି ଯକ୍ଷ ଚାରୋଟି ଅତି ଉପାଦେୟ କିନ୍ତୁ ରହସ୍ୟଜନକ ପ୍ରଶ୍ନ ପଚାରି ବସିଲେ । ପ୍ରଶ୍ନ ଗୁଡ଼ିକ ହେଲା ୧.ସୁଖୀ କିଏ, ୨. ସବୁଠାରୁ ଆଶ୍ଚର୍ଯ୍ୟ କ'ଣ ?, ୩. ପଥ କ'ଣ ? ୪. ସଂସାର ପାଇଁ ମୂଲ୍ୟବାନ ବାର୍ତ୍ତା କିସ ?

ପ୍ରଥମ ପ୍ରଶ୍ନର ଉତ୍ତରରେ ଯୁଧିଷ୍ଠିର କହିଲେ ଯେ ସଂସାରରେ ଯେଉଁ ବ୍ୟକ୍ତି ଆଦୌ ଧାର କରଜ ନକରି କଷ୍ଟେମଷ୍ଟେ ଶାଗ ପଖାଳ ଖାଇ ଚଳିବାକୁ ପସନ୍ଦ କରନ୍ତି, ନିଜ ନିର୍ମିତ କୁଟୀରରେ ରହନ୍ତି, ଅଧିକ ଧନ ଅର୍ଜନ ଲୋଭରେ ବାଣିଜ୍ୟ କରିବାକୁ ପ୍ରବାସ କରିବାକୁ(ରେଙ୍ଗୁନ, କଲିକତା, ଆମେରିକା) ଯାଆନ୍ତି ନାହିଁ ସେହି ବ୍ୟକ୍ତି ସୁଖୀ । ଅନ୍ୟ ଦୁଇ ପ୍ରଶ୍ନର ଉତ୍ତରରେ କହିଲେ ଯେ ମରଣଶୀଳ ସଂସାରରେ ଜନ୍ମ ହେଉଥିବା ସକଳ ଜୀବ ନିତି ମରୁଛନ୍ତି କିନ୍ତୁ ବଞ୍ଚିଥିଲା ବେଳେ ଆଦୌ ଭାବିପାରୁନାହିଁ

ଯେ ସେ ଦିନେ ମରିଯିବ । ଏହାହିଁ ସବୁଠାରୁ ଆଶ୍ଚର୍ଯ୍ୟ କଥା । ପୁଣି ବେଦ, ବେଦାନ୍ତ ଶାସ୍ତ୍ର ଇତ୍ୟାଦି ବିନା ଗୁରୁରେ ନ ବୁଝି ଚଳିଲେ ପଦେ ପଦେ ବିପଦ । ଅତଏବ ସାଧୁ, ସନ୍ଥ, ବ୍ରାହ୍ମଣ, ବୈଷ୍ଣବ ମାନଙ୍କ ଉପଦିଷ୍ଟ ମାର୍ଗ ନିରାପଦ ପଥ । ଶେଷ ପ୍ରଶ୍ନର ଉତ୍ତରରେ ଧର୍ମରାଜ ଧର୍ମବକଙ୍କୁ କହିଲେ ଯେ ଏ ସମଗ୍ର ସଂସାର ଏକ ଅଜ୍ଞାନ, ଅବିଦ୍ୟା(ମୁଁ ଦେହ)ର ଲୁହା କଢ଼େଇ ବା କଟାହ ଭଳି ପରମାତ୍ମା ନାରାୟଣଙ୍କ ନିର୍ଦ୍ଦେଶରେ ମାସ ଓ ଋତୁମାନଙ୍କୁ ଚଟୁ ରୂପରେ ବ୍ୟବହାର କରି କାଳ (ଯମ) ସକଳ ଜୀବଗଣଙ୍କୁ ସୂର୍ଯ୍ୟ କିରଣରୂପକ ଜାଳେଣି ଜାଳି ପାକ କରୁଛନ୍ତି । ସେହି କାଳ ଆମକୁ ପାଳୁଛି, ପୋଷୁଛି, ରକ୍ଷା କରୁଛି । ଶ୍ରୀମନ ନାରାୟଣଙ୍କ ଆଦେଶ ପାଳନ କରୁଛି । ପାକ ସ୍ୱାଦିଷ୍ଟ ହେଲେ ଭଗବାନଙ୍କୁ ଅର୍ପଣ କରାଯାଉଛି ପ୍ରସାଦ ଲାଗି । ନଚେତ ପୁନଃ ପୁନଃ ସେ କଢ଼େଇରେ ଆସି ପଡୁଛି ବା ସଂସାରରେ ଜନ୍ମ ନେଉଛି । ଘାଣ୍ଟଚକଟର ଶରବ୍ୟ ହୋଇ ତ୍ରାହି ତ୍ରାହି ରଡ଼ି ଛାଡୁଛି ।

ଶେଷରେ ବକରୂପୀ ଯମରାଜ ନିଜ ପରିଚୟ ପ୍ରକଟ କରି କହିଲେ ଯେ ସମଗ୍ର ଭାରତବର୍ଷର ଚକ୍ରବର୍ତ୍ତୀ ସମ୍ରାଟ ହେବା ଲାଗି ତାଙ୍କର ଆବଶ୍ୟକୀୟ ଯୋଗ୍ୟତା ଅଛି । ଆଶୀର୍ବାଦ ଦେଲେ ନିଜ ପୁତ୍ରଙ୍କୁ ଯେ ଠିକ ସମୟରେ ପୁତ୍ର ଯୁଧିଷ୍ଠିର ଭଗବାନ କୃପାପ୍ରାପ୍ତ ହୋଇ ଦିଲ୍ଲୀ ସିଂହାସନ ଲାଭ କରି ନିଜ ଜୀବନ, ଦେଶ ଓ ଦଶକୁ ଧନ୍ୟାତିଧନ୍ୟ କରିବେ । ସେହି ସ୍ଥାନଟି ଆଜିର କାମ୍ୟବନର ଧର୍ମକୁଣ୍ଡ ଅଟେ । ସେହି ଧର୍ମରାଜ ଓ ଧର୍ମକୁଣ୍ଡଙ୍କୁ କୋଟି ନମସ୍କାର କରି ଆମେ ଆଗକୁ ଯିବା ।

## (ଚ) ଦ୍ୱାଦଶ ସରୋବର

### ୧. ଶ୍ରୀକୁସୁମ ସରୋବର ବା ସୁମନ ସରୋବର:

ପ୍ରଶ୍ନ-୬୧: ଶ୍ରୀ ବ୍ରଜମଣ୍ଡଳରେ କୁସୁମ ଶବ୍ଦ ସହିତ ସରୋବର ଶବ୍ଦ ଯୋଡ଼ାଯିବାର ରହସ୍ୟ କ'ଣ ?

ଉ. ଶ୍ରୀ ବୃନ୍ଦାବନ ଧାମରୁ ବାମ ପାର୍ଶ୍ୱରେ ଗାଡ଼ିରେ ଗଲାବେଳେ ଗୋବର୍ଦ୍ଧନ ପରିକ୍ରମା କରିବା ବେଳେ କିଛିବାଟ ଗଲେ ଏହି ବିଶାଳ ସରୋବର ପଡ଼େ । ଶ୍ରୀ ରାଧାକୁଣ୍ଡଠାରୁ ଏହାର ଦୂରତା ମାତ୍ର ୩କି.ମି. । ପରିକ୍ରମା ମାର୍ଗରେ ଦକ୍ଷିଣ ପାର୍ଶ୍ୱରେ କୁସୁମ ସରୋବର ଏବଂ ବାମ ପାର୍ଶ୍ୱରେ ଶ୍ରୀ ନାରଦଙ୍କ ତପସ୍ୟାସ୍ଥଳୀ ନାରଦକୁଣ୍ଡ । ଶ୍ରୀ

ବୃନ୍ଦାବନ ଧାମରେ ଭଗବାନ ଶ୍ରୀ ରସିକ ଚୂଡ଼ାମଣି ଶ୍ରୀକୃଷ୍ଣ ଅସଂଖ୍ୟ ଗୋପୀମାନଙ୍କୁ ନେଇ ମହାରାସ କ୍ରୀଡ଼ା କଲେ । ଦେବର୍ଷି ନାରଦ ଏଥିପାଇଁ ଯୋଗ୍ୟ ବିବେଚିତ ହୋଇ ନ ପାରିବାରୁ ବହୁତ ଦୁଃଖିତ ହେଲେ । ପୌର୍ଣ୍ଣମାସୀ ଦେବୀଙ୍କ ଆନୁଗତ୍ୟରେ ପରେ ଏହି କୁସୁମ ସରୋବରରେ ସପ୍ରେମ ସ୍ନାନ କରି ଗୋପୀ ଦେହ ପ୍ରାପ୍ତ ହେଲେ ଓ କୁସୁମ ସରୋବରଠାରେ ନିତ୍ୟ ମହାରାସ ଅନୁଷ୍ଠିତ ହେଉଥିବା ଦର୍ଶନ କରି ଭାବ ବିହ୍ୱଳ ହୋଇଯାଇଥିଲେ ।

ପାଞ୍ଚ ଶହବର୍ଷ ପୂର୍ବେ ରାଜସ୍ଥାନର ଜଣେ ମହାରାଜଙ୍କ ଦ୍ୱାରା ଏହି ସରୋବରର ଜୀର୍ଣ୍ଣୋଦ୍ଧାର କରାଯାଇଛି । ବଢ଼ିଆ ପାହାଚମାନ ଚତୁର୍ଦ୍ଦିଗରେ ନିର୍ମାଣ କରାଯାଇଛି । ନିକଟରେ ପିଙ୍କ୍ ମାର୍ବଲରେ ଲତାକୁଞ୍ଜ ଗହଳରେ ସୁନ୍ଦର ହର୍ମ୍ୟମାନ ନିର୍ମିତ ହୋଇଛି । ଶ୍ରୀକୃଷ୍ଣ ଭକ୍ତମାନେ ଏ ସ୍ଥାନରେ ପହଞ୍ଚି ନୈସର୍ଗିକ ସୌନ୍ଦର୍ଯ୍ୟ ଦର୍ଶନ କରି ଆତ୍ମହରା ହୋଇଯାଆନ୍ତି । ଶ୍ରୀ କୃପାଳଜୀ ମହାରାଜ ଏହି ସ୍ଥାନରେ ନିଜର ଅଗଣିତ ଶିଷ୍ୟଶିଷ୍ୟା ମାନଙ୍କୁ ନେଇ ଭାବ ବିହ୍ୱଳ ହୋଇ ନୃତ୍ୟ କରିଥିଲେ ଠିକ୍ ଶ୍ରୀ ଚୈତନ୍ୟ ଦେବଙ୍କ ସଦୃଶ ।

ଶ୍ରୀମଦ୍‌ଭାଗବତ ଲୀଳାଗ୍ରନ୍ଥ ଶ୍ରୀଶୁକଦେବ ପରମହଂସ ମହାରାଜା ପରୀକ୍ଷିତଙ୍କୁ ଶୁଣାଇବା ପୂର୍ବରୁ ମହାଜ୍ଞାନୀ ଉଦ୍ଧବ ଏହି ସ୍ଥଳରେ ଲତାକୁଞ୍ଜରୁ ବାହାରି ସ୍ଥୁଳ ଶରୀରରେ ମଥୁରାର ରାଜା ବଜ୍ରନାଭଙ୍କ ସହିତ ସହସ୍ରାଧିକ କୃଷ୍ଣ ପତ୍ନୀ ଓ କୃଷ୍ଣଲୀଳାରେ ଅଗଣିତ କୃଷ୍ଣ ପ୍ରେମୀମାନଙ୍କୁ ଶ୍ରୀମଦ୍‌ଭାଗବତ ପ୍ରବଚନ ପାରାୟଣ କରି ଶୁଣାଇଥିଲେ । ସେମାନେ ସମସ୍ତେ (ବ୍ରଜନାଭଙ୍କ ସହିତ ସାକ୍ଷାତ) ଶ୍ରୀକୃଷ୍ଣଙ୍କ ଚିନ୍ମୟ ଲୀଳା ମଧ୍ୟରେ ନିଜ ନିଜର ଉପସ୍ଥିତି ହୃଦୟଙ୍ଗମ କରି ଜୀବନ୍ମୁକ୍ତିର ସ୍ୱାଦ ପ୍ରାପ୍ତ ହୋଇଥିଲେ । ଭୂମିରେ ମଥା ଲଗାଇ ଏହି ସରୋବରଙ୍କୁ ସଭକ୍ତିକ ପ୍ରଣାମ ଜଣାଇ ଶ୍ରୀ ଗୋବର୍ଦ୍ଧନ ପରିକ୍ରମାର ଶୁଭାରମ୍ଭ କରାଯାଏ ।

## ୨. ଶ୍ରୀ ଗଜରାଜ ସରୋବର:

ପ୍ରଶ୍ନ-୬୨: ଏହି ସରୋବର ବୃନ୍ଦାବନରେ କେଉଁଠି ଓ କାହିଁକି ବିଦ୍ୟମାନ ?

ଉ. ଶ୍ରୀ ବୃନ୍ଦାବନ ଧାମରେ ବସଷ୍ଟାଣ୍ଡ ନିକଟରେ ଏକ ଗଡ଼ ଆକାରରେ ସୁଉଚ୍ଚ ପାଚେରୀ ଘେରା ଭବ୍ୟ ଶ୍ରୀରଙ୍ଗଜୀ ମନ୍ଦିର ବେଢ଼ା ମଧ୍ୟରେ ଏହି ଗଜରାଜ ସରୋବର ବିଦ୍ୟମାନ । ସମଗ୍ର ବ୍ରଜମଣ୍ଡଳରେ ବହୁତ କମ ସ୍ଥାନରେ ଶ୍ରୀ ମହାବିଷ୍ଣୁ ବା ନାରାୟଣଙ୍କ ମନ୍ଦିର ଦେଖା ଯାଆନ୍ତି । ସେମାନଙ୍କ ମଧ୍ୟରୁ ଏହି ସଂପୂର୍ଣ୍ଣ ଦାକ୍ଷିଣାତ୍ୟ

ଶୈଳୀରେ ନିର୍ମିତ ଶ୍ରୀନାରାୟଣ ମନ୍ଦିର ଅନ୍ୟତମ । ଶ୍ରୀ ବ୍ରଜମଣ୍ଡଳ ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟ ଲୀଳାର ଧାମ ହେଲା ବେଳେ ସେ ନାରାୟଣ ରୂପରେ କିଛି ଭକ୍ତଙ୍କୁ ବିଶ୍ୱରୂପ ବା ମହା ବିଶ୍ୱରୂପ ଦର୍ଶନ କରାଇ ଚମତ୍କୃତ କରିଛନ୍ତି ।

ପ୍ରତ୍ୟେକ ବର୍ଷ ଶ୍ରାବଣ ପୂର୍ଣ୍ଣିମା ତିଥିରେ ଏହି ଗଜରାଜ ସରୋବରରେ ଗଜେନ୍ଦ୍ର ମୋକ୍ଷଣ ବା ଗଜ ଉଦ୍ଧାରଣ ଲୀଳା ଖୁବ୍ ଯାକ ଜମକରେ ପାଳିତ ହୁଏ । ଭଗବତ ପ୍ରାପ୍ତିର ଉପାୟ ଶ୍ରବଣ, କୀର୍ତ୍ତନ, ପୂଜନ ସେବା ଆଦି ଭୌତିକ ଦେହରେ ହୋଇଥାଏ । ଏହା ଦ୍ୱାରା ଯେତେ ପରିମାଣରେ ଭକ୍ତି ଉତ୍ପନ୍ନ ହୁଏ ତାହାଠାରୁ ମନରେ ରୂପ ଧ୍ୟାନ, ମନନ ବା ସ୍ମରଣ ଦ୍ୱାରା ଅତି ଅଳ୍ପ ସମୟରେ ହୋଇଥାଏ । ପୁଣି ଏହା ପର ପର ଜନ୍ମ ମାନଙ୍କରେ ମଧ୍ୟ ସାଧକର କାମରେ ଲାଗେ । ଏହା ବୁଝାଇବାକୁ ଶ୍ରୀମଦ୍ଭାଗବତରେ ଏ ଲୀଳା ବର୍ଣ୍ଣିତ ହୋଇଛନ୍ତି । ଗଜେନ୍ଦ୍ର ପୂର୍ବଜନ୍ମରେ ଜଣେ ପାଣ୍ଡ୍ୟବଂଶୀ ରାଜା ଥିଲେ । ସେ ଗୁରୁ ଅଗସ୍ତ୍ୟ ଋଷିଙ୍କ ଅଭିଶାପରେ ପଶୁ ଗଜ ଜନ୍ମ ପ୍ରାପ୍ତ ହେଲେ । କୁମ୍ଭୀର ମଧ୍ୟ ଜଣେ ଅଭିଶପ୍ତ ଗନ୍ଧର୍ବ । ସେ ଦେବଳ ଋଷିଙ୍କ ଅଭିଶାପଗ୍ରସ୍ତ ।

ତତ୍ତ୍ୱଟି ବୁଝିଲେ ପ୍ରତ୍ୟେକ ମନୁଷ୍ୟ ଗୃହ ଜଞ୍ଜାଳରେ ପଡ଼ି ଭଗବାନଙ୍କୁ ଭୁଲିଥିବା ଜଣେ ଜଣେ ଗଜେନ୍ଦ୍ର । ପୂର୍ବ ଜନ୍ମର ସାଧନା ରୂପ ଧ୍ୟାନ ତାଙ୍କର କାମରେ ଲାଗିଛି ଯେତେବେଳେ ତାଙ୍କର କୁଟୁମ୍ବ ପରିଜନ ତାଙ୍କୁ ପରିତ୍ୟାଗ କରି ବନକୁ ପଳାୟନ କରିଛନ୍ତି । କୁମ୍ଭୀର ହେଉଛି ସାଂକେତିକ ରୂପେ କାଳ ବା ମୃତ୍ୟୁ । ଜନ୍ମ ହେବା ଦିନରୁ ପ୍ରତ୍ୟେକ ଜୀବ କାଳ କୁମ୍ଭୀର ଗ୍ରସ୍ତ । ଶ୍ରୀହରିଙ୍କ ନାମ ଉଚ୍ଚାରଣ କରି ନପାରିଲେ ମଧ୍ୟ ଶ୍ରୀମନ୍ ନାରାୟଣଙ୍କ ରୂପ ଧ୍ୟାନ ସେ କରିପାରିଛନ୍ତି । ପ୍ରଭୁଙ୍କ କୃପାରୁ କାଳ କୁମ୍ଭୀର କବଳରୁ ମୁକ୍ତ ହୋଇ ବୈକୁଣ୍ଠ ଲୋକ ଗମନ କରିଛନ୍ତି । ଅତଏବ ଆମ୍ଭେମାନେ ମଧ୍ୟ ନାମ ଜପ କିମ୍ବା କୀର୍ତ୍ତନ କରିବାବେଳେ ମନରେ ରୂପ ଧ୍ୟାନ କରିବା ଜାରି ରଖିଲେ ଅନ୍ତତଃ ପକ୍ଷେ ପରଜନ୍ମରେ ମଧ୍ୟ ତାର ଫଳ ସ୍ୱତଃ ପ୍ରାପ୍ତହେବ । ଜନ୍ମାନ୍ତରେ ଆମର ଜୀବନ ସଫଳ ହୋଇପାରିବ । ଏହି କଥାଟିର ସଂକେତ ଏହି ଗଜ ଉଦ୍ଧାରଣ ଲୀଳା । ଗଜରାଜ ସରୋବରକୁ ପ୍ରଣାମ କରି ଆଗକୁ ବଢ଼ନ୍ତୁ ।

## ୩. ଶ୍ରୀ ଦେହ ସରୋବର ବା ଦେହ କୁଣ୍ଡ:

ପ୍ରଶ୍ନ-୬୩: ପାଞ୍ଚବର୍ଷ ରାଓଲ ଲୀଳା ପରେ ଶ୍ରୀ ବର୍ଷାଣା ବା ଶ୍ରୀବୃଷଭାନୁପୁର ପର୍ବତକୁ ଶ୍ରୀ ରାଧାରାଣୀଙ୍କୁ ସ୍ଥାନାନ୍ତର କରିଥିଲେ ରାଜା ବୃଷଭାନୁ । ଶ୍ରୀ ନନ୍ଦରାଜା ମଧ୍ୟ ନିଜର ସକଳ ପ୍ରଜାଙ୍କୁ ଧରି କଂସ ଅତ୍ୟାଚାର ଓ ଅସୁରଙ୍କ ଉତ୍ପାତରୁ ରକ୍ଷା

ପାଇବାକୁ ଶ୍ରୀ ଗୋକୁଳ ତ୍ୟାଗ କରି ନନ୍ଦଗ୍ରାମକୁ ଚାଲି ଆସିବା ପରେ ଏହି ନିମ୍ନୋକ୍ତ ଘଟଣାଟି ଘଟିଥିଲା । ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣ ପ୍ରେମ ଲୀଳାରେ ମୁଖ୍ୟ ତତ୍ତ୍ୱ ଆତ୍ମା ଦେହ ନୁହେଁ ଏକଥାକୁ ଲୀଳା ମାଧ୍ୟମରେ କିପରି ବୁଝିବାକୁ ହୁଏ ?

ଉ. ଶ୍ରୀ ବର୍ଷାଣା ପର୍ବତ ନିକଟରେ ଲଳିତା ସଖୀଙ୍କର ଜନ୍ମସ୍ଥାନ ଯାହାର ବର୍ତ୍ତମାନ ନାମ ଉଁଚାଗ୍ରାମ । ଏହି ସ୍ଥାନରେ ଅବସ୍ଥିତ ଏକ ବିଶାଳ ସରୋବର ବା କୁଣ୍ଡ ଯେଉଁଠାରେ ଶ୍ରୀଦେହ ସରୋବର ବିହାରୀ ରୂପରେ ଶ୍ରୀରାଧାକୃଷ୍ଣଙ୍କ ମନ୍ଦିର ଅବସ୍ଥିତ । ଏକଦା ଏହି ସରୋବରରେ ଶ୍ରୀରାଧାରାଣୀ ସ୍ନାନ କରିସାରି ଜଣେ ବ୍ରାହ୍ମଣଙ୍କୁ ଦେଖିଲେ । ତାଙ୍କୁ କିଛି ଦାନ କରିବାକୁ ମନେ ମନେ ଭାବିଲେ । ଇଛାମୟ ଶ୍ରୀକୃଷ୍ଣ ଲୀଳା କରିବାକୁ ଖୋଜୁଥିଲେ । ସଙ୍ଗେ ସଙ୍ଗେ ସେଠାରେ ଏକ ବୃଦ୍ଧ ବ୍ରାହ୍ମଣ ବେଶରେ ପ୍ରକଟ ହୋଇ ଦାନ ଦକ୍ଷିଣା ପ୍ରାର୍ଥନା କଲେ । ଦାନରେ ଶ୍ରୀରାଧା ଠାକୁରାଣୀ ସକଳ ଅଳଙ୍କାର ସିନା ପ୍ରଦାନ କଲେ ଦକ୍ଷିଣା ଦେବାକୁ ପାଖରେ କିଛି ନଥାଏ । ମୁରୁକି ହସି ଭଗବାନ କହିଲେ ନାହିଁ କାହିଁକି ତୁମର ସୁବର୍ଣ୍ଣ ଲୋଭନୀୟ ଦେହ ତ ପୁଣି ଅଛି । ସଙ୍ଗେ ସଙ୍ଗେ ମା' ଜଗତଜନନୀ ଜଗତପିତାଙ୍କ ହାତରେ ସେତକ ମଧ୍ୟ ଦକ୍ଷିଣା ରୂପେ ପ୍ରଦାନ କରିଦେଲେ । ବ୍ରାହ୍ମଣ ବାହାରିଲେ ରାଜକୁମାରୀଙ୍କୁ ନିଜ କୁଟୀରକୁ ନେବାକୁ ।

ଶ୍ରୀ ବୃଷଭାନୁ ଜେମାଙ୍କର ପରିସ୍ଥିତି ଜଣେ ସେବକଠାରୁ ଜାଣିପାରି ରାଜା ରାଣୀ ଉଭୟେ ଲୀଳାସ୍ଥଳୀରେ ପହଞ୍ଚିଗଲେ । ବ୍ରାହ୍ମଣଙ୍କୁ ନିଜ କନ୍ୟା ବଦଳରେ ଅନ୍ୟ ଯାହା କିଛି ଏପରିକି ନିଜ ରାଜ ସିଂହାସନ ପର୍ଯ୍ୟନ୍ତ ମାଗିବାକୁ ଅନୁରୋଧ କଲେ । ଭଗବାନ ଟିକିଏ ନରମି ଗଲେ । କହିଲେ ଯେ ତାଙ୍କ କନ୍ୟା ଓଜନର ଶୁଦ୍ଧ ସୁବର୍ଣ୍ଣ ଅଳଙ୍କାର ବଦଳରେ ସେ ନିଜ ଅଲିଅଳି କନ୍ୟାଙ୍କୁ ନେଇ ପାରନ୍ତି । ରାଜା ସଙ୍ଗେ ସଙ୍ଗେ ଭଗବାନଙ୍କ ଇଛା ପୂରଣ କରିଦେଲେ । ରାଜା ସମାନ ଓଜନର ସ୍ୱର୍ଣ୍ଣ ପ୍ରଦାନ କଲେ । ରାଜ କୁମାରୀ ସଖୀମାନଙ୍କ ସହ ରାଜ ଉଆସକୁ ସିନା ଫେରି ଆସିଲେ ହେଲେ ସେ ଲୀଳାର ସ୍ମୃତି ବୈଷ୍ଣବର ଦେହ ଭାବ ଶୂନ୍ୟ ହେବା ଅସଲି କୃଷ୍ଣ ଭକ୍ତି ବୋଲି ଆଜି ମଧ୍ୟ ଘୋଷଣା କରୁଛନ୍ତି ସେହି ସରୋବର ଓ ସେହି ମନ୍ଦିର ରୂପରେ ରହି । ମନ୍ଦିର ପରିସରରେ ଶ୍ରୀରାଧାଙ୍କ ଚରଣ କମଳ ଚିହ୍ନ ଏବେ ମଧ୍ୟ ବିଦ୍ୟମାନ ।

ଶ୍ରୀ ଦେହ ସରୋବର ନିକଟରେ ପାହାଡ଼ ଉପରେ ଶ୍ରୀ ଲଳିତା ସଖୀ ବିବାହ ସ୍ଥଳ, ଅଳତା ପାହାଡ଼, ଚିତ୍ର ବିଚିତ୍ର ଶିଳା ସହିତ ଶ୍ରୀ ବଳଦେବ ଜୀଉଙ୍କ ଭବ୍ୟ ମନ୍ଦିର ଦ୍ରଷ୍ଟବ୍ୟ । ଏହି ଶ୍ରୀ ବଳଦେବ ବିଗ୍ରହଙ୍କୁ ଦାକ୍ଷିଣାତ୍ୟରୁ ଆସିଥିବା ଶ୍ରୀ ନାରାୟଣ ଭଟ୍ଟ

ଗୋସ୍ୱାମୀ ପାଦ ପ୍ରକଟ କରାଇଥିଲେ । ଶ୍ରୀ ଭଟ୍ଟଜୀ ଏହା ପୂର୍ବରୁ ବର୍ଷାଣାଠାରେ ଶ୍ରୀଜୀ ବା ଶ୍ରୀରାଧାଙ୍କ ମଧ୍ୟ ପ୍ରକଟ କରାଇ ଥିଲେ ।

**୪. ଶ୍ରୀ ମାନସୀ ଗଙ୍ଗା ସରୋବର:**

ପ୍ରଶ୍ନ-୬୪: ଶ୍ରୀ ବୃନ୍ଦାବନ ଧାମରେ ମାନସରୋବର ସହିତ ଗଙ୍ଗାନଦୀ ଯୋଡ଼ି ହେଲେ କିପରି ଓ କାହିଁକି ?

ଉ. ଶ୍ରୀ ଗୋବର୍ଦ୍ଧନ ପରିକ୍ରମା ମାର୍ଗରେ କୁସୁମ ସରୋବରଠାରୁ ମାତ୍ର ୩କି.ମି ଦୂରରେ ଏହି ପବିତ୍ର ଲୀଳା ସ୍ଥଳୀ ଦର୍ଶନୀୟ । ଦିନକର କଥା । ବ୍ରଜବାସୀମାନେ ଶ୍ରୀକୃଷ୍ଣଙ୍କ ପ୍ରକଟକାଳରେ ଗଙ୍ଗାସ୍ନାନରେ ବାହାରିଲେ । ସେମାନଙ୍କ ମଧ୍ୟରେ ଭଗବାନଙ୍କର ବୃଦ୍ଧ ପିତା, ମାତା, ଶ୍ରୀନନ୍ଦ ଓ ଶ୍ରୀ ଯଶୋଦା ଆଦି ଥାଆନ୍ତି । ଶ୍ରୀକୃଷ୍ଣ ଦେଖିଲେ ପରିସ୍ଥିତି ଗମ୍ଭୀର । ଜୀବ ବ୍ରଜମଣ୍ଡଳ ତ୍ୟାଗ କରି ଗଙ୍ଗାସ୍ନାନକୁ ବାହାରିବା କେଉଁ ବିବେକର କାମ ? ପରବ୍ରହ୍ମ ପରମାତ୍ମା ଏହି ସ୍ଥାନରେ ଦଣ୍ଡାୟମାନ ହୋଇ ଶ୍ରୀ ଗଙ୍ଗାଦେବୀଙ୍କୁ ସ୍ମରଣ କରିଥିଲେ । ଶ୍ରୀ ଗଙ୍ଗାଦେବୀ ତତ୍‌କ୍ଷଣାତ୍ ସେଇ ସ୍ଥାନରେ ପ୍ରକଟ ହୋଇ ପ୍ରଣାମ ଜଣାଇଲେ । ସବୁଦିନ ଲାଗି ଏହି ତୀର୍ଥରେ ବିରାଜମାନ କରି ଗୋବିନ୍ଦ ଭକ୍ତମାନଙ୍କୁ ଗଙ୍ଗାସ୍ନାନ ଫଳ ପ୍ରଦାନ କରିବାକୁ ଓ କାଳକାଳକୁ ବୈଷ୍ଣବ ସେବା କରି ନିଜ ଜୀବନ ଧନ୍ୟ କରିବାକୁ ଭଗବାନ ଆଦେଶ ଦେଇଥିଲେ । ଶ୍ରୀନନ୍ଦ ଆଦି ସକଳ ବ୍ରଜବାସୀ ପୁତ୍ରର ଏ ଚମତ୍କାର ଦର୍ଶନ କରି ବିହ୍ୱଳ ହୋଇଯାଇଥିଲେ । ସେଇ ପବିତ୍ର ସ୍ଥଳୀଟି ଆଜିର ମାନସୀ ଗଙ୍ଗା ସରୋବର ।

ଏହି ମାନସୀ ଗଙ୍ଗା ସରୋବରରେ ଦିନେ ଅନୁଷ୍ଠିତ ହୋଇଥିଲା ଶ୍ରୀକୃଷ୍ଣ ରୂପୀ ବୁଢ଼ା ନାଉରୀ ଦ୍ୱାରା ଗୋପୀମାନଙ୍କର ଜଳ କେଳି ଲୀଳା । ତତ୍ତ୍ୱତଃ ବୁଝିଲେ ତରଣି କହିଲେ ନୌକାକୁ ବୁଝାଏ । ତରୁଣୀ କହିଲେ ଜଣେ ନାରୀ ଦେହଧାରୀ ଜୀବକୁ ବୁଝିବାକୁ ହେବ । ସଂସାର ବା ଭବ ଏକ ବିରାଟ ଜଳଧି ସଦୃଶ । ସମଗ୍ର ସଂସାର ମାୟା ନିର୍ମିତ । ଏହାକୁ ପାର ହେବାକୁ ନୌକା (ମନୁଷ୍ୟ ଦେହ) ଓ ନାବିକ (ଗୁରୁ ଓ ଭଗବାନ ଉଭୟଙ୍କର ଶରଣାଗତ ହେବା) ଦରକାର । ତରୁଣୀଟିଏ କାମ ସମୁଦ୍ରକୁ ପାର କରାଇପାରେ ପୁରୁଷକୁ । ତରଣି କେବଳ ଜଳଭାଗକୁ ଅତିକ୍ରମଣ କରାଇପାରେ । କାମକୁ ସଂଯମରେ ବା ଆୟତରେ ରଖିବାକୁ ବୈଦିକ ସାହିତ୍ୟରେ ବିବାହର ବ୍ୟବସ୍ଥା ଖଞ୍ଜାଯାଇଛି । ବିବାହର ଉଦ୍ଦେଶ୍ୟ ଆଦୌ କାମ ସୁଖ ଭୋଗ କରିବା ନୁହେଁ ବରଂ କାମକୁ ସଂଯମ କରି ହରି ଗୁରୁଙ୍କ ଆଶ୍ରୟ ନେଇ ଜୀବନ୍ମୁକ୍ତିର ଆନନ୍ଦ ଅନୁଭବ କରିବା । ଗୋପୀ ଗୋପୀନାଥଙ୍କ ଏହି ନୌକାବିଳାସ ଲୀଳାଟି ସେହି ତତ୍ତ୍ୱକୁ ବୁଝାଏ ।

ଶ୍ରୀକୃଷ୍ଣଙ୍କ ମନର ସଂକଳ୍ପ ମାତ୍ରେ ଏହି ସରୋବର ପ୍ରକଟ ହୋଇଥିବାରୁ ପୁଣି ପବିତ୍ର ଗଙ୍ଗାସ୍ନାନର ଫଳ ଦେଉଥିବାରୁ ଏହାଙ୍କର ଏପରି ନାମ ମାନସୀଗଙ୍ଗା ରଖାଯାଇଛି । ଏହାର କୂଳରେ ମାନସୀ ଦେବୀଙ୍କ ମନ୍ଦିର, ଶ୍ରୀ ସନାତନ ଗୋସ୍ୱାମୀଙ୍କର ଭଜନ କୁଟୀର ଦର୍ଶନୀୟ । ଏହାର ପୂର୍ବପଟରେ ଶ୍ରୀମୁଖାରବିନ୍ଦ (ଶ୍ରୀ ଗିରିଗୋବର୍ଦ୍ଧନଜୀ) ଦେବତା ଦେହ ଧାରଣ କରି ବ୍ରଜବାସୀମାନଙ୍କ ରନ୍ଧା ଓ ପରଷା ଅନ୍ନକୂଟ ଖାଇବା ସ୍ଥାନ), ଦକ୍ଷିଣ ପଟରେ ଶ୍ରୀ ହରିଦେଓ ମନ୍ଦିର ଓ ଉତ୍ତର ଦିଗରେ ଶ୍ରୀସିଦ୍ଧ କୃଷ୍ଣ ବାବାଙ୍କ ଆଶ୍ରମ ସହିତ ଶ୍ରୀ ଚକଳେଶ୍ୱର ମହାଦେବ ମନ୍ଦିର ବିଦ୍ୟମାନ ।

ଭଗବାନ ଶ୍ରୀ ଗୋବର୍ଦ୍ଧନଲୀଳା କଲାବେଳେ ଯେଉଁ ନାରାୟଣ ରୂପ ଧାରଣ କରିଥିଲେ ତାହା ଏହି ଶ୍ରୀହରିଦେଓ ମନ୍ଦିରରେ ଦର୍ଶନୀୟ । ଇନ୍ଦ୍ର ବର୍ଷା କଲାବେଳେ ତାଙ୍କ ହସ୍ତରୁ ସୁଦର୍ଶନ ଚକ୍ର ଆସି ସବୁ ଜଳକୁ ପାନ କରି ଶୁଷ୍କ କରିଥିବା ସ୍ଥାନଟି ଏବେ (ଚକ୍ର) ଚକଳେଶ୍ୱର ମହାଦେବଙ୍କ ବିଜେ ମନ୍ଦିରର ସଂକେତ କରନ୍ତି । ତୀର୍ଥ ଶ୍ରେଷ୍ଠ ମାନସୀଗଙ୍ଗାଙ୍କ ସହିତ ଅନ୍ୟାନ୍ୟ ଦେବୀ ଦେବତାଙ୍କୁ ପ୍ରଣାମ ଜଣାଇ ଆମେ ଆଗକୁ ବଢ଼ିବା ।

## ୫. ଶ୍ରୀ ଚନ୍ଦ୍ର ସରୋବର:

ପ୍ରଶ୍ନ-୬୪: ଚନ୍ଦ୍ରବଂଶରେ ଶ୍ରୀକୃଷ୍ଣ ଜନ୍ମ ହୋଇ ବସନ୍ତ ରାସ ଲୀଳା କଲାବେଳେ ଚନ୍ଦ୍ରଦେବତା ନିଜେ ଏଥିରେ ଯୋଗଦାନ କରି ଧନ୍ୟ ହୋଇଥିଲେ କି ?

ଉ. ଶ୍ରୀ ବୃନ୍ଦାବନ ଧାମରେ ଶ୍ରୀ ଯମୁନା କୂଳରେ ଆଶ୍ୱିନ ପୂର୍ଣ୍ଣିମା ନିଶାର୍ଦ୍ଧରେ ହୋଇଥିବା ମହାରାସକୁ ଶରଦ ରାସ କୁହାଯାଏ । ଶ୍ରୀ ଗୋବର୍ଦ୍ଧନ ପରିକ୍ରମା କରିବାବେଳେ ଗୋବିନ୍ଦ କୁଣ୍ଡ ନିକଟରେ ବିଦ୍ୟମାନ ଏହି ମହାନ ଚନ୍ଦ୍ରସରୋବର । ଏହି ସ୍ଥଳରେ ଭଗବାନ କରିଥିଲେ ବସନ୍ତ ରାସ ଲୀଳା । ଏହି ରାସ କ୍ରୀଡ଼ା ମଧ୍ୟ ନିଶାର୍ଦ୍ଧରେ ହୋଇଥିଲା । ଚନ୍ଦ୍ରଦେବତା ଗୋପୀ ଓ ଗୋପୀନାଥଙ୍କ ରାସକ୍ରୀଡ଼ାରେ ସେବା ସହଯୋଗର ହାତ ବଢ଼ାଇ ଧନ୍ୟ ହୋଇଥିଲେ ଏହି ସ୍ଥାନରେ ପ୍ରକଟ ହୋଇ । ସୁତରାଂ ଏହି ସରୋବରର ନାମ ଚନ୍ଦ୍ର ସରୋବର ରଖାଯାଇଛି ।

ରାସକ୍ରୀଡ଼ା ରୂପକ ଦିବ୍ୟ ଲୀଳା କରିବା ବେଳେ ଠାକୁରଜୀ କିଛି ସମୟ ଲାଗି ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ସେତେବେଳେ ସେ ଶ୍ରୀ ଗୋବର୍ଦ୍ଧନ ପର୍ବତସ୍ଥିତ ଏକ ଗୁମ୍ଫା ମଧ୍ୟରେ ନିଜକୁ ଗୋପନ ରଖିଥିଲେ । ତାହା ପୁଣି ଚତୁର୍ଭୁଜ ନାରାୟଣ ସ୍ୱରୂପରେ । କିଛି ଗୋପାଙ୍ଗନା ଏହି ଗୁମ୍ଫା ମଧ୍ୟରେ ଶ୍ରୀକୃଷ୍ଣଙ୍କୁ ନାରାୟଣ ରୂପରେ

ଦର୍ଶନ କରି ତାଙ୍କ ପ୍ରିୟ ନନ୍ଦନନ୍ଦନ କୃଷ୍ଣ ବୋଲି ଗ୍ରହଣ କରି ନଥିଲେ । ବରଂ ଭୟ କଲେ ପାଖକୁ ଯିବା ପାଇଁ । ତାଙ୍କୁ ଦର୍ଶନ ସ୍ପର୍ଶ ଆଦି କଲେ ତାଙ୍କର କୃଷ୍ଣ ପ୍ରେମ କାଳେ କଳଙ୍କିତ ହୋଇଯିବ । ସେମାନେ କୃଷ୍ଣଙ୍କୁ ଏବଂ କେବଳ କୃଷ୍ଣଙ୍କୁ ନିଜ ଚିତ୍ତ ସମର୍ପଣ କରିଛନ୍ତି । କସ୍ମିନ କାଳେ ସେ କୃଷ୍ଣ ଭିନ୍ନ ଅନ୍ୟ କାହାକୁ ନିଜ ନିଜର ଚିତ୍ତ ଦେଇପାରିବେ ନାହିଁ । ସୁତରାଂ ସେମାନେ କୃଷ୍ଣଙ୍କୁ କେଉଁଠାରେ ହେଲେ ନ ପାଇ ବାହାରେ ଏ କଥା ପ୍ରଘଟ କରିଦେଲେ । ଖବର ପାଇ ଶ୍ରୀ ବୃଷଭାନୁ ନନ୍ଦିନୀ ରାଧାରାଣୀ ଗୁମ୍ଫା ମଧ୍ୟରେ ପ୍ରବେଶ କଲେ । ଦର୍ଶନ କଲେ ଚତୁର୍ଭୁଜଧାରୀ ଶ୍ରୀମନ୍ ନାରାୟଣଙ୍କୁ । କିନ୍ତୁ ଆଶ୍ଚର୍ଯ୍ୟର କଥା ଶ୍ରୀରାଧାଙ୍କ ଦିବ୍ୟ ମାଧୁର୍ଯ୍ୟର ତେଜରେ ଶ୍ରୀ ନାରାୟଣଙ୍କର ଐଶ୍ୱର୍ଯ୍ୟ ତରଳିଗଲା । ତାଙ୍କର ଦୁଇ ହାତ ଲୁଚିଗଲେ । ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରୀ ଶ୍ରୀ ନାରାୟଣ ଦେବ ସକଳ ଐଶ୍ୱର୍ଯ୍ୟଙ୍କୁ ଆତ୍ମଗୋପନ କଲେ । ପରମ ମାଧୁର୍ଯ୍ୟ ରୂପରେ କୃଷ୍ଣ ବିଗ୍ରହରେ ରୂପାନ୍ତରିତ ହୋଇ ମୁରଲୀର ସ୍ୱର ତୋଳିଲେ । ଗୋପୀମାନେ ଆଉ କରନ୍ତେ କଅଣ ? ତୁରନ୍ତ ସେଠାରେ ପହଞ୍ଚି ରାଧା ଗୋବିନ୍ଦଙ୍କ ଯୁଗଳ ମିଳନ ଦର୍ଶନ କରି ଆନନ୍ଦ ସାଗରରେ ବୁଡି ଗଲେ । ସେଇ ପବିତ୍ର ସ୍ଥଳୀର ନାମ ଆଜି ଚନ୍ଦ୍ର ସରୋବର ।

## ୬. ଶ୍ରୀ ମାନ ସରୋବର:

ପ୍ରଶ୍ନ-୬୬: ଶ୍ରୀ ବୃନ୍ଦାବନ ଧାମର କେଉଁ ସ୍ଥାନରେ ଓ କାହିଁକି ମାନସରୋବରଙ୍କର ପ୍ରାକଟ୍ୟ ହେଲା ?

ଉ. ଏହି ପବିତ୍ର ଲୀଳାସ୍ଥଳୀ ଶ୍ରୀ ଯମୁନା ନଦୀଙ୍କର ପୂର୍ବ ତଟରେ ବେଲବନଠାରୁ ପାଞ୍ଚ କି.ମି. ଦୂରରେ ଅବସ୍ଥିତ । ଶ୍ରୀ ବୃନ୍ଦାବନ ନିକଟରେ ରମଣରେତିଠାରେ ମହାରାସ ଲୀଳା ଚାଲିଥାଏ । ନିଶାର୍ଦ୍ଧ ସମୟ । ଗୋପ ଲଳନାମାନଙ୍କର ମନରେ ସାମାନ୍ୟ ଅହଂକାରର ବୀଜ ଉତ୍ପନ୍ନ ହେଲା । ସେମାନେ ଠାକୁରଜୀଙ୍କ ଆଡ଼କୁ ଦୃଷ୍ଟି ନଦେଇ ନିଜ ନିଜ ଆଡ଼କୁ ଦୃଷ୍ଟି ଦେଲେ । ସମସ୍ତେ ନିଜକୁ ଅତ୍ୟନ୍ତ ଭାଗ୍ୟବତୀ ବୋଲି ମନେ କଲେ । ଗର୍ବ ଗଞ୍ଜନ ନରହରି । ଗର୍ବ ନ ସହନ୍ତି କାହାରି । ଶରଣାଗତ ଭକ୍ତଜନଙ୍କୁ କୃପା କରିବା ନିମିତ୍ତ ରସିକ ଶେଖର ଶ୍ରୀକୃଷ୍ଣ ଗୋପୀମାନଙ୍କଠାରୁ ଅଲକ୍ଷିତ(ଅଦୃଶ୍ୟ) ହୋଇଗଲେ । ସେତେବେଳେକୁ ଶ୍ରୀରାଧାରାଣୀ ଗୋପୀମାନଙ୍କ ସହିତ ତାଙ୍କୁ ମଧ୍ୟ ସମବ୍ୟବହାର କଲେ ବୋଲି ଗୋପୀନାଥଙ୍କୁ ତ୍ୟାଗ କରି ରାସମଣ୍ଡଳ ବାହାରକୁ ଚାଲି ଆସିଥାଆନ୍ତି । ଭଗବାନ ଖୋଜି ଖୋଜି ତାଙ୍କ

ପାଖରେ ପହଞ୍ଚିଲେ । ତାଙ୍କୁ ପ୍ରସନ୍ନ କରିବାକୁ ତାଙ୍କ ଲାଗି ଫୁଲ ତୋଳିଲେ । ତାଙ୍କ ପାଖରେ ବସିଲେ । ତାଙ୍କ କେଶ ଶୃଙ୍ଗାର କଲେ । (ଶୃଙ୍ଗାର ବଟଠାରେ) । ତାଙ୍କ ଜୁଡ଼ା ବାନ୍ଧି ଦେଲେ । ଫୁଲରେ ଗଭା ମଣ୍ଡିଦେଲେ । ସାମନାରେ ଦର୍ପଣ ଦେଖାଇଲେ ।

ମାଆ ଶ୍ରୀରାଧାରାଣୀ କହିଲେ, "ହେ ମାଧବ, ମୁଁ ଅତ୍ୟନ୍ତ ଶ୍ରାନ୍ତ ଏବଂ କ୍ଳାନ୍ତ । ମୁଁ ଚାଲିବାରେ ଏବେ ଅସମର୍ଥ । ମୋତେ ନେବାକୁ ଚାହୁଁଥିଲେ ନେବା ବ୍ୟବସ୍ଥା କର ।" ଭଗବାନ କାନ୍ଧରେ ବସ କହି କାନ୍ଧ ପାତିଲେ । ଶ୍ରୀରାଧାରାଣୀ ବସିବାକୁ ଉପକ୍ରମ କଲାବେଳକୁ ଭଗବାନ ଉଡ଼ନ ଛୁ । ମାରିଲେ ଡ଼ିଆଁ । ପୁଣି ଯାଇ ରାସକ୍ରୀଡ଼ାସ୍ଥଳୀରେ ହାଜର । ମୁଣ୍ଡରେ ପୀତାମ୍ବର ଘୋଡ଼େଇ ଦଣ୍ଡାୟମାନ ହୋଇଗଲେ । ଏଣେ ଶ୍ରୀରାଧା କୃଷ୍ଣ ବିରହ ବିଳାପରେ ଦଗ୍ଧିଭୂତ ହୋଇ ଏହି ମାନସରୋବର ସ୍ଥାନରେ ବସି ଅଶ୍ରୁ ବିସର୍ଜନ କରୁଥିଲେ । ତାଙ୍କ ମାନ ବା ଅଭିମାନ ଜନିତ ଦିବ୍ୟ ଅଶ୍ରୁ ଧାରାରୁ ସୃଷ୍ଟି ହେଲା ଏହି ଦିବ୍ୟ ମାନସ ସରୋବର ଜଳାଶୟ । ଗୋପୀମାନେ ଖୋଜି ଖୋଜି ଶ୍ରୀରାଧାଙ୍କୁ ଏହି ଠାରେ ଆବିଷ୍କାର କଲେ । ଶ୍ରୀରାଧା ବୁଝାଇ କହିଲେ ଯେ ପ୍ରିୟତମଙ୍କୁ ପାଇବାକୁ ହେଲେ ତାଙ୍କୁ ବାହାରେ ବଣ ଜଙ୍ଗଲରେ ଖୋଜିବା ଅନାବଶ୍ୟକ । ବରଂ ଗୋଟିଏ ସ୍ଥାନରେ ବସି କରୁଣ କ୍ରନ୍ଦନ କଲେ ସେ ସ୍ୱତଃ ଆସି ଦର୍ଶନ ଦେବେ କୃତାର୍ଥ କରିବେ ବୋଲି ଉପାୟ ବତାଇ ଦେଲେ । ଆଜି ସେହି ମାନସସରୋବର ସ୍ଥାନରେ ସରୋବର ସହିତ ମାନବିହାରୀ ଠାକୁର ଦର୍ଶନୀୟ ।

**୭. ଶ୍ରୀ ପାବନ ସରୋବର:**

ପ୍ରଶ୍ନ-୬୭: ପାବନ ବ୍ରଜମଣ୍ଡଳର କେଉଁ ସ୍ଥାନରେ ଏହି ସରୋବର ରହି କାହାକୁ ପାବନ କରୁଛନ୍ତି ?

ଉ. ସଂସ୍କୃତରେ ପାବନ ଶବ୍ଦର ଅର୍ଥ ପବିତ୍ର । ବର୍ଷାଣା ଧାମ ନିକଟରେ ଓ ନନ୍ଦଗ୍ରାମ ନିକଟରେ ଏହି ପାବନ ସରୋବର ଉପସ୍ଥିତ ରହି ରାଧା କୃଷ୍ଣ ପ୍ରେମକୁ ବାସ୍ତବରେ ପାବନ କରୁଛନ୍ତି । ନନ୍ଦଗ୍ରାମ ଓ ବର୍ଷାଣା ଉଭୟଙ୍କର ମାହାତ୍ମ୍ୟ ବର୍ଦ୍ଧନ କରୁଅଛନ୍ତି । ସମଗ୍ର ବ୍ରଜମଣ୍ଡଳରେ କୁସୁମ ସରୋବରକୁ ଛାଡ଼ି ଅନ୍ୟ କୌଣସି ସରୋବର ଆଜିଯାଏଁ ଏତେ ସର୍ବଜନପ୍ରିୟ ହୋଇପାରିନାହାନ୍ତି ।

ନନ୍ଦୀଶ୍ୱର ପର୍ବତର ଉତ୍ତର ଦିଗରେ ଏହି ପାବନ ସରୋବର ବିଦ୍ୟମାନ । ଶ୍ରୀ ରାଧାରାଣୀଙ୍କର ଅଷ୍ଟ ମହାସଖୀମାନଙ୍କ ମଧ୍ୟରେ ଶ୍ରୀ ବିଶାଖାଙ୍କ ନାମ ଦୁଇ ନମ୍ବରରେ ଗଣା । କୁଞ୍ଜଲୀଳା ଓ ନିକୁଞ୍ଜଲୀଳା ଉଭୟରେ ସେ ଶ୍ରୀ ବୃଷଭାନୁ ନନ୍ଦିନୀ

ଓ ଶ୍ରୀ ନନ୍ଦ ନନ୍ଦନଙ୍କ ଯୁଗଳ ମିଳନ ବେଳେ ସଦା ସର୍ବଦା ପାଖେ ପାଖେ ରହନ୍ତି । ତାଙ୍କର ସକଳ ସେବା କିଭଳି ନିର୍ଭୁଲ ଭାବରେ ସଂପାଦିତ ହେବ ସେଥିପାଇଁ ସେ ସଦା ତତ୍ପର । ଶ୍ରୀ ବିଶାଖାଙ୍କ ପିତାଙ୍କର ନାମ ପାବନ । ସେ ମଧ୍ୟ ଗୋପାଳନ ବିଦ୍ୟାରେ ଧୁରନ୍ଧର ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ଓ ସମର୍ପିତ କୃଷ୍ଣଭକ୍ତ । ଜୀବନ କାଳରେ ବହୁ ଅର୍ଥ ବ୍ୟୟ କରି ଓ ନିଜର ସକଳ ଶ୍ରମ, ଉଦ୍‌ଯୋଗ, ଶକ୍ତି ଏବଂ ସାମର୍ଥ୍ୟ ବ୍ୟୟ କରି ଏହି ଭବ୍ୟ ସରୋବରଟିର ନିର୍ମାଣ କରାଇଥିଲେ । ସୁତରାଂ ତାଙ୍କ ନାମ ଅନୁସାରେ ପାବନ ସରୋବର ନାମରେ ନାମିତ ହୋଇ ଆଜି ପର୍ଯ୍ୟନ୍ତ ସେ ବାପ ଝିଅ ଦୁହିଁଙ୍କର କୀର୍ତ୍ତିଗାନ କରୁଛନ୍ତି ।

ଏହି ସରୋବରଟି ନନ୍ଦ ଗ୍ରାମ ଓ ବର୍ଷାଣା ଉଭୟର ସମାନ ଦୂରତାରେ ଥିବାରୁ ଏବଂ କାମ୍ୟବନ ମଧ୍ୟରେ ଅବସ୍ଥିତ ହୋଇଥିବାରୁ ଏହି ସରୋବର ଅନେକ ବିରଳ, ରହସ୍ୟମୟ ଜଳବିହାର ବନ ବିହାର, ଉପବନ ବିହାର ଆଦି ଲୀଳାର ମୂକସାକ୍ଷୀ ହୋଇ ରହିଗଲେ । ପାଞ୍ଚ ଶହ ବର୍ଷ ପୂର୍ବେ ଶ୍ରୀ ସନାତନ ଗୋସ୍ୱାମୀ ଓ ଶ୍ରୀ ରୂପ ଗୋସ୍ୱାମୀ ଦୁଇଭାଇ ଏହାର ନୈସର୍ଗିକତାରେ ମୁଗ୍ଧ ହୋଇ ଦୁଇ ଭାଇ ଦୁଇଟି ବୃକ୍ଷମୂଳରେ ଭଜନ, କୀର୍ତ୍ତନ, ସାଧନ କରୁଥିଲେ । ଶ୍ରୀ ସନାତନ ଗୋସ୍ୱାମୀ ଭଜନବେଳେ ଭୋଜନ କଥା ପାଶୋରି ଯାଆନ୍ତି । ଥରେ ତିନିଦିନ ପର୍ଯ୍ୟନ୍ତ ସେ ମଧୁକରୀ ପାଇଁ ନ ଯିବାରୁ ସ୍ୱୟଂ ଶ୍ରୀକୃଷ୍ଣ ଏକ ଗୋପ ବାଳକ ବେଶରେ ଆସି ତାଙ୍କୁ ଏକ କଟୋରାରେ ଦୁଗ୍ଧ ଦେଇ ଅପ୍ରକଟ ହୋଇଯାଇଥିଲେ । ଏକଥା ବ୍ରଜବାସୀମାନେ ମଧ୍ୟ ଜାଣିଗଲେ । ଆଖପାଖର ଗ୍ରାମବାସୀମାନେ ସେମାନଙ୍କର କୃଷ୍ଣଭକ୍ତିକୁ ସମ୍ମାନ ଜଣାଇ ଦୁଇଟି ସୁନ୍ଦର ଭଜନ କୁଟୀର ନିର୍ମାଣ କରିଥିଲେ । ଆଜି ମଧ୍ୟ ସେଇ ଭଜନକୁଟୀର ଦ୍ୱୟ ସେଠାରେ ଆମ ଆଖିରେ ପଡ଼ନ୍ତି । ପାବନ ସରୋବରକୁ ଦଣ୍ଡବତ ପ୍ରଣାମ କରି ଆସନ୍ତୁ ପରବର୍ତ୍ତୀ ଲୀଳାସ୍ଥଳୀକୁ ଯିବା ।

## ୮. ଶ୍ରୀ ସୂର୍ଯ୍ୟ ସରୋବର:

ପ୍ରଶ୍ନ-୬୮ : ଚନ୍ଦ୍ରବଂଶ ପ୍ରକଟିତ ଶ୍ରୀକୃଷ୍ଣ ଲୀଳାରେ ଶ୍ରୀସୂର୍ଯ୍ୟ ସରୋବରଙ୍କର ଭୂମିକା କ'ଣ ?

ଉ. ଶ୍ରୀରାଧାକୁଣ୍ଡଠାରୁ ଆଠ କି.ମି. ଦୂରରେ ଶ୍ରୀ ବ୍ରଜମଣ୍ଡଳ ଚୌରାଶୀ କ୍ରୋଶ ପରିକ୍ରମା ମାର୍ଗରେ ଦର୍ଶନୀୟ ଏକ ଭବ୍ୟ ସୂର୍ଯ୍ୟ ମନ୍ଦିର ସହିତ ଏହି ସୂର୍ଯ୍ୟ ସରୋବର । ଭଗବାନଙ୍କର ବାଳଲୀଳା, କିଶୋର ଲୀଳା, ମଥୁରା ଲୀଳା ସହିତ

ଦ୍ୱାରକା ଆଦି ସକଳ ଲୀଳାରେ ଭାଗନେବାର ଶ୍ରେୟ ମିଳିଥିଲା କେବଳ ଶ୍ରୀ ଯମୁନାଙ୍କୁ । ଭୌତିକ ରୂପରେ ଯେ ଯମୁନାନଦୀ, ଅଧ୍ୟାତ୍ମରୂପରେ ସେ ହିଁ କୃଷ୍ଣ ପାଟମହିଷୀ କାଳିନ୍ଦୀ । ସେ ଶ୍ରୀ ସୂର୍ଯ୍ୟନାରାୟଣଙ୍କ ଆଦରଣୀୟା କନ୍ୟା ପୁଣି ଯମରାଜାଙ୍କ ଭଗିନୀ ମଧ୍ୟ ।

ଜନ୍ମ ପରେ ପରେ ଶ୍ରୀ ସୂର୍ଯ୍ୟଦେବତା କନ୍ୟା ଯମୁନା ଓ ପୁତ୍ର ଯମଙ୍କୁ କୃଷ୍ଣ ଭକ୍ତି କରି ଜୀବନ ଧନ୍ୟ କରିବାକୁ ଆଦେଶ ଦେଇଥିଲେ । ଯମ ହେଲେ ମୃତ୍ୟୁ ଦେବତା ଓ ଦ୍ୱାଦଶ ମହାଭାଗବତ (ଶ୍ରୀମଦ୍ଭାଗବତର ରହସ୍ୟ ଜାଣିଥିବା ମହାପୁରୁଷ) ମଧ୍ୟରୁ ଅନ୍ୟତମ । ଅପରପକ୍ଷେ ଶ୍ରୀ ଯମୁନା ମଧ୍ୟ ଅଷ୍ଟପାଟ ମହିଷୀ ମଧ୍ୟରେ ସର୍ବଶ୍ରେଷ୍ଠ ମାନ୍ୟତା ପ୍ରାପ୍ତ । କୃଷ୍ଣପ୍ରେମ ଆସ୍ୱାଦନ କାରିଣୀ । ଶ୍ରୀ ଯମୁନା ଦେବୀ ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବରଣ ପରେ ଦ୍ୱାରକାବାସୀ, ମଥୁରାବାସୀ ଓ ବ୍ରଜବାସୀମାନଙ୍କୁ କୁସୁମ ସରୋବର ଠାରେ ଉଦ୍ଧବଜୀଙ୍କ ଦ୍ୱାରା ଭାଗବତ ପ୍ରବଚନ ଶ୍ରବଣ କରାଇ ଜୀବନମୁକ୍ତ କରାଇଥିଲେ । ଏହି ଶ୍ରୀଯମୁନା ମହାରାଣୀ ଉପଯୁକ୍ତ ପିତାଙ୍କର ଉପଯୁକ୍ତ ସନ୍ତାନ ହିସାବରେ ନିଜକୁ ଧନ୍ୟ କରିଥିଲେ ।

ଏହି ସ୍ଥଳରେ ଶ୍ରୀ ସୂର୍ଯ୍ୟଦେବତାଙ୍କୁ ଧ୍ୟାନ କରି ତାଙ୍କର ସେବା ପୂଜା କରି ପ୍ରସନ୍ନ କରିଥିଲେ ଦ୍ୱାପର ଯୁଗରେ ଶ୍ରୀ ସତ୍ରାଜିତ । ପ୍ରାପ୍ତ ସ୍ୟମନ୍ତକ ମଣି ସହିତ ଅଲିଅଳି କନ୍ୟା ସତ୍ୟଭାମାଙ୍କୁ ମଧ୍ୟ ଶ୍ରୀକୃଷ୍ଣଙ୍କୁ ସେ ଅର୍ପଣ କରିଥିଲେ । ସେ ଭକ୍ତି ଧାରାରେ ବହି ଯାଇ ଶ୍ରୀରାଧାଙ୍କ ଶାଶୁ ଜଟିଳା ମଧ୍ୟ ନିଜ ସଂପତ୍ତି, ଶକ୍ତି, ସାମର୍ଥ୍ୟର ଅଭିବୃଦ୍ଧି ଲାଗି ବୋହୂକୁ ଏହି ସ୍ଥାନକୁ ପଠାଇ ସୂର୍ଯ୍ୟ ପୂଜା କରାଉଥିଲେ । ସାଙ୍ଗରେ ପଠାନ୍ତି ସଖୀ କୁନ୍ଦଲତାଙ୍କୁ । ଠାକୁରଜୀ ମଧ୍ୟ ଏ ସୁଯୋଗର ଫାଇଦା ଉଠାନ୍ତି । ଗୋପାଳ ବାଳକ ମାନଙ୍କୁ ଧରି ପହଞ୍ଚି ଯାଆନ୍ତି ଏହି ସରୋବର କୂଳରେ । ଜଳକ୍ରୀଡ଼ା, ରାସ କ୍ରୀଡ଼ା, ଗୋଚାରଣ ଇତ୍ୟାଦି ମାଧ୍ୟମରେ ଗୋପୀ ଗୋପାଳମାନଙ୍କ ସହିତ ଶ୍ରୀକୃଷ୍ଣଭାନୁ ନନ୍ଦିନୀ ଓ ନନ୍ଦ ନନ୍ଦନଙ୍କର ଅପୂର୍ବ ମିଳନ ହୁଏ । ସେହି ସ୍ଥାନରେ ଏବେ ଗୋଟିଏ ଦିବ୍ୟ ଶିଳା ଦର୍ଶନୀୟ ଯେଉଁଥିରେ ଶ୍ରୀରାଧାରାଣୀଙ୍କୁ ମୁକୁଟ ସ୍ପର୍ଶର ସଙ୍କେତ ମିଳେ । ସେହି ଶ୍ରୀ ସୂର୍ଯ୍ୟ ସରୋବରଙ୍କୁ କୋଟି ଜୁହାର ।

## ୯. ଶ୍ରୀ ଶାନ୍ତନୁ ସରୋବର:

ପ୍ରଶ୍ନ-୬୯: ମହାଭାରତ ଯୁଗର ରାଜା ଶାନ୍ତନୁଙ୍କ ସହିତ ଏ ସରୋବର କିଭଳି ସମ୍ବନ୍ଧିତ ?

ଉ. ମଥୁରା ସହରଠାରୁ ମାତ୍ର ୪କି.ମି ଦୂରରେ ଆଗ୍ରା ଦିଲ୍ଲୀ ମୁଖ୍ୟ ସଡ଼କ କଡ଼ରେ ସାତୋହା ବା ସାତୋୟା ନାମକ ଏକ ଗ୍ରାମ ମଧ୍ୟରେ ଏହି ଶାନ୍ତନୁ ସରୋବର ଅବସ୍ଥିତ । ଏହା ଯୁଗେ ଯୁଗେ ଏକ ତପସ୍ୟାର ସ୍ଥଳୀ ହୋଇ ଅଶେଷ ଖ୍ୟାତି ଲାଭ କରିଛି । ଏକ ବିରାଟ ସରୋବର ମଝିରେ ଏକ ସୁଉଚ୍ଚ ପାହାଡ଼ ଅବସ୍ଥିତ । ପାହାଡ଼ ଉପରେ ଶ୍ରୀ ଶାନ୍ତନୁ ବିହାରୀ ଠାକୁର ପୂଜା ପାଉଛନ୍ତି । ଗାଁରୁ ମନ୍ଦିରକୁ ଯିବା ଲାଗି ଏକ ପୋଲ ଓ ପକ୍‌କା ପାହାଚ ସହିତ ହାତରେ ଧରି ଉଠିବା ଲାଗି ଲୁହା ପାଇପର ହ୍ୟାଣ୍ଡ ରେଲର ବ୍ୟବସ୍ଥା ହୋଇଛି ।

ମାଆ ଯଶୋଦାରାଣୀ ଶ୍ରୀକୃଷ୍ଣଙ୍କୁ ପାଇବା ଲାଗି ଦ୍ୱାପର ଯୁଗରେ ଏହିଠାରେ ଅନେକ ଦିନ ଧରି ତପସ୍ୟା କରିଥିଲେ । ଭଗବାନ ପ୍ରସନ୍ନ ହୋଇ ପ୍ରକଟ ହେବା ଲାଗି ଆଶିର୍ବାଦ କଲେ । ପୂର୍ବେ ଚନ୍ଦ୍ରବଂଶୀୟ ରାଜା ଶ୍ରୀ ଶାନ୍ତନୁ ଦିଲ୍ଲୀ ସିଂହାସନର ଅଧୀଶ୍ୱର ହୋଇ ନିଃସନ୍ତାନ ହେଲେ । କୁଳ ପୁରୋହିତଙ୍କ ପରାମର୍ଶରେ ସେ ଏହି ସ୍ଥାନରେ କଠିନ ତପସ୍ୟା କରି ଏକ ଅଲୌକିକ ସିଦ୍ଧି ସହିତ ଦେବବ୍ରତ ନାମକ (ଗଙ୍ଗାଙ୍କ ଗର୍ଭରୁ ଜାତ) ପୁତ୍ର ପ୍ରାପ୍ତ ହୋଇଥିଲେ । ଅଲୌକିକ ସିଦ୍ଧି ବଳରେ ଯେ ତାଙ୍କ ଦର୍ଶନ କିମ୍ବା ସ୍ପର୍ଶ କରୁଥିଲା ତାଙ୍କୁ ସ୍ୱତଃ ଶାନ୍ତି ପ୍ରାପ୍ତି ହେଉଥିଲା । ତେଣୁ ରାଜ୍ୟବାସୀମାନେ ତାଙ୍କୁ ଶାନ୍ତନୁ ନାମ ଦେଇଥିଲେ । ଦେବ ବା ଶ୍ରୀ ନାରାୟଣଙ୍କୁ ତପସ୍ୟାରେ ପ୍ରସନ୍ନ କରିବା ବ୍ରତ ତାଙ୍କ ପୁତ୍ର ନେଇଥିବାରୁ ପୁତ୍ରଙ୍କ ନାମ ଦେବବ୍ରତ ରଖାଯାଇଥିଲା । ସେହି ଦେବବ୍ରତ ପିତା ଶାନ୍ତନୁଙ୍କ ପୁର୍ନବିବାହ ଲାଗି କନ୍ୟା ଦରକାର ପଡ଼ିବାବେଳେ ଭୀଷଣ ପ୍ରତିଜ୍ଞା କରିଥିଲେ ସେ ଆଜୀବନ ବ୍ରହ୍ମଚାରୀ ରହିବେ । ଆଦୌ ବିବାହ କରିବେ ନାହିଁ । ସେହିଦିନଠାରୁ ତାଙ୍କର ନାମ ଭୀଷ୍ମ ରହିଲା । ଆଜିର ଏହି ସ୍ଥାନଟି ସେଦିନର ଶାନ୍ତନୁ ମହାରାଜାଙ୍କ ତପସ୍ୟାସ୍ଥଳୀ ଅଟେ । ସେହି ଦିନରୁ ସେହି ସରୋବରର ନାମ ରହିଛି ଶାନ୍ତନୁ ସରୋବର ।

କଳିଯୁଗରେ କାଶୀ ବନାରସର ଗୋଟିଏ ବ୍ରାହ୍ମଣ ଦମ୍ପତ୍ତି ଏହି ଗ୍ରାମର ଇଷ୍ଟଦେବ ଶ୍ରୀ ଶାନ୍ତନୁ ବିହାରୀଙ୍କୁ ପୂଜା ଆରାଧନା କରି ପ୍ରସନ୍ନ କଲେ । କଠିନ ବ୍ରତ ଆଚରଣ କରି ପୁତ୍ର ମଧ୍ୟ ପ୍ରାପ୍ତ ହେଲେ । ନାମ ରଖିଲେ ଶ୍ରୀ ଶାନ୍ତନୁ ବିହାରୀ ଦ୍ୱିବେଦୀ କର କପାଳ କୋଷ୍ଠି ଗଣନାରୁ ଜଣା ଗଲା ପୁତ୍ରର ଆୟୁଷ ମାତ୍ର ୧୯ବର୍ଷ । ୧୭ବର୍ଷରୁ ପିତା ମାତାଙ୍କର ଭାଳେଣି ପଡ଼ିଲା ଆଉ ମାତ୍ର ଦୁଇ ବର୍ଷରେ ସନ୍ତାନ ବିୟୋଗ ଘଟିବ । ତରବରରେ ତାଙ୍କର ବିବାହ କରିଦେଲେ । ହେଲେ କ'ଣ ହେବ ? ପରେ

ପରେ ଦେଖିଲେ ଏବେ ଦୁଇଟି ଜୀବନର ଦୁଃଖ ତାଙ୍କ ସମ୍ମୁଖରେ । ଗଭୀର ଚିନ୍ତା ଏବଂ ଭୟରେ ପତି ପତ୍ନୀ ବୁଡି଼ ଗଲେ । ପୁତ୍ର ଶାନ୍ତନୁ ଜାଣିପାରିଲେ ପିତାମାତାଙ୍କର ଚିନ୍ତାର କାରଣ ତାଙ୍କର ଅକାଳ ମୃତ୍ୟୁ ।

ଶାନ୍ତନୁ ଏବେ ଚାଲିଲେ ଭଗବାନଙ୍କର ବିଖ୍ୟାତ ମଥୁରା ବୃନ୍ଦାବନ ଧାମ । ଅଗଣିତ ସାଧୁ ସନ୍ଥଙ୍କର ବିଚରଣ ସ୍ଥଳୀ । ଶାନ୍ତନୁ ସବୁଦିନ ଲାଗି ଘର ଛାଡ଼ିଲେ । ଅନେକ ସାଧୁ ସନ୍ଥଙ୍କ ପାଖରେ ପିତାମାତାଙ୍କ ଦୁଃଖ କାହାଣୀ କହିଲେ । ସମସ୍ତେ ନିରୁତ୍ତର । ଦିନେ ମଥୁରାରେ ବୁଲୁ ବୁଲୁ ଜଣେ ସାଧୁ କହିଲେ, "ହେ ଯୁବକ. ଉପାୟ ଅଛି । ତୁମେ ପ୍ରତିଜ୍ଞା କଲେ ବତାଇ ଦେବି ।" ଶାନ୍ତନୁ ହଁ କଲେ । ପ୍ରତିଜ୍ଞା ମଧ କଲେ । ସାଧୁ ସର୍ତ୍ତ ରଖିଲେ ଆଜିଠାରୁ ସାରା ଜୀବନ କୃଷ୍ଣ ପ୍ରୀତି ଅର୍ଥେ କର୍ମ କରି, କାୟ ମନୋ ବାକ୍ୟରେ କୃଷ୍ଣଙ୍କ ଶରଣ ପଶିଲେ ଆୟୁଷ ଦୁଇଗୁଣ ହୋଇଯିବ । ଯୁବକ ଆଶ୍ଚର୍ଯ୍ୟରେ କହିଲେ "ଦୁଇଗୁଣ ହୋଇଯିବ!!!" ସନ୍ଥ କହିଲେ ଯେ ତିନିଗୁଣ ହେଲେ ଖୁସି ହେବ କି ? ଯୁବକ ତଥାପି ନିରୁତ୍ତର ଦେଖି ଆୟୁଷ ଚାରି ଗୁଣ ହେବାକୁ ଆଶିର୍ବାଦ କଲେ । ସନ୍ଥଙ୍କ ଭରଷାରେ ସେହି ଭାଗ୍ୟବାନ ଯୁବକ ଗୃହକୁ ନ ଫେରି ସନ୍ଥଙ୍କ ସାଙ୍ଗରେ ବୃନ୍ଦାବନ ଚାଲିଗଲେ । ତାଙ୍କୁ ସଦ୍‌ଗୁରୁ ମାନି ସାଧନା ମଗ୍ନ ହେଲେ ।

ସେ ଦିନର ସେହି ଯୁବକ ପରେ ହେଲେ ଶ୍ରୀ ଶାନ୍ତନୁ ବିହାରୀ ଦ୍ୱିବେଦୀରୁ ଶ୍ରୀ ଶ୍ରୀ ସ୍ୱାମୀ ଅଖଣ୍ଡାନନ୍ଦ ସରସ୍ୱତୀ । ମଥୁରା କୃଷ୍ଣ ଜନ୍ମଭୂମି ମନ୍ଦିରରେ ଶ୍ରୀ ମଦନ ମୋହନ ମାଲବ୍ୟଙ୍କ ସହିତ ଆଜି ତାଙ୍କର ମାର୍ବଲ ମୂର୍ତ୍ତି ଦର୍ଶନୀୟ । ସବୁଠାରୁ ଆଶ୍ଚର୍ଯ୍ୟର କଥା ସେ ଠିକ ୧୯ବର୍ଷର ଚାରିଗୁଣ ଅର୍ଥାତ୍ ସମାନ ୭୬ବର୍ଷରେ ଦେହ ଛାଡ଼ିଲେ ସେହି ବୃନ୍ଦାବନ ଧାମରେ ତାଙ୍କ ନିଜ ଆଶ୍ରମରେ ଯାହାର ନାମ ଆନନ୍ଦ ବୃନ୍ଦାବନ ଆଶ୍ରମ । ଯାହା ଆଜି ବୃନ୍ଦାବନର ଇସ୍‌କନ ମନ୍ଦିର ଠାରୁ ଅଳ୍ପ ଦୂର ମୋତିଝୀଲଠାରେ ଦର୍ଶନୀୟ । ଶାନ୍ତନୁ ସରୋବର, ଶାନ୍ତନୁ ବିହାରୀ ଠାକୁର ଓ ଶ୍ରୀ ଶାନ୍ତନୁ ବିହାରୀ ଦ୍ୱିବେଦୀଙ୍କୁ ଅନେକ, ଅନେକ ଦୂରରୁ ଜୁହାର ।

## ୧୦. ଶ୍ରୀ ଶେଷଶାୟୀ ସରୋବର ବା କ୍ଷୀର ସାଗର:

ପ୍ରଶ୍ନ-୭୦: ବୈକୁଣ୍ଠ ଧାମର ଶ୍ରୀ ଶେଷଶାୟୀ ଓ କ୍ଷୀର ସାଗରଙ୍କ ଉପସ୍ଥିତି ଶ୍ରୀ ବୃନ୍ଦାବନରେ କାହିଁକି ?

ଉ. ଶ୍ରୀ ଖଦିର ବନରେ ଥିବା ନନ୍ଦଗ୍ରାମ ପାଖରେ ଏହି ପବିତ୍ର ସରୋବର ବିଦ୍ୟମାନ । ଦିନେ ଶ୍ରୀରାଧା ଗୋବିନ୍ଦ ନିଜ ନିଜ ସଖା ସଖୀମାନଙ୍କ ସହିତ ଏହି ସରୋବର ପାଖରେ ପହଞ୍ଚିଲେ । ଠାକୁରଜୀ ସମସ୍ତଙ୍କୁ ମନେ ପକାଇଦେଲେ ଶ୍ରୀ ଲକ୍ଷ୍ମୀ ନାରାୟଣଙ୍କ କ୍ଷୀର ସାଗର ଲୀଳା କଥା । ଶ୍ରୀ ରାଧା ଆଗ୍ରହ ପ୍ରକାଶ କଲେ ସେ ଲୀଳା ଏଠାରେ ପ୍ରକଟ କରାଇବା ଲାଗି । ନନ୍ଦନନ୍ଦନ ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ଯୋଗମାୟାଙ୍କୁ ସ୍ମରଣ କଲେ । ସେଇ ସରୋବର ମଧ୍ୟରେ ଅନନ୍ତ ଶୟନରେ ଆବିର୍ଭାବ ହେଲେ ଭଗବାନ ଶ୍ରୀକୃଷ୍ଣ । ଶ୍ରୀ ରାଧାଙ୍କ ସଖୀ ଓ ମଞ୍ଜରୀମାନେ ଅନୁରୋଧ କଲେ ଶ୍ରୀରାଧାଙ୍କ ନିକଟକୁ ସେ ଯାଇ ଠାକୁରଙ୍କର ପାଦସେବା କରିବାକୁ । ଶ୍ରୀ ବୃଷଭାନୁ ନନ୍ଦିନୀ କିନ୍ତୁ ମନା କଲେ ଶ୍ରୀ ନାରାୟଣଙ୍କ ପାଦ ସେବା କରିବାକୁ ।

ଭଗବାନ ଶ୍ରୀକୃଷ୍ଣ ଲୀଳାମୟ । ନୂଆ ନୂଆ ଲୀଳା କରିବା ତାଙ୍କର ସ୍ୱଭାବ । ସୁତରାଂ ସେ ଅବିଳମ୍ବେ ଦୁଇ ହସ୍ତ ଏବଂ ଶଙ୍ଖ, ଚକ୍ର, ଗଦା, ପଦ୍ମ ଗୁପ୍ତ କରି ଦୁଇ କରକମଳରେ ମୁରଲୀ ଧାରଣ କଲେ । ଏବେ ରାଧାରାଣୀ ଅନନ୍ୟ ଉପାୟ ହୋଇ ଠାକୁରଜୀଙ୍କ ନିକଟକୁ ଯିବାକୁ ବାଧ୍ୟ ହେଲେ । ଚରଣ କମଳ ପାଖରେ ବସିଲେ । ହସି ହସି ପାଦସେବା କରିବାରେ ଲାଗିଲେ । ଦର୍ଶକମାନେ ତାଳିମାରି ହରିବୋଲ ହୁଳହୁଳି ଦେଲେ । ଉଭୟଙ୍କ ଉପରେ ଗୋପାଙ୍ଗନା ଓ ଗୋପାଳମାନେ ଦୁର୍ବା, ଅକ୍ଷତ, ପୁଷ୍ପ ପାଖୁଡ଼ାମାନ ବର୍ଷଣ କରି ମଜା ଲୁଟି ଥିଲେ ।

ଏହି ସ୍ଥଳରେ ଏବେ ଶେଷଶାୟୀ ଅନନ୍ତ ନାରାୟଣ ମନ୍ଦିର ସେବିତ ହେଉଛନ୍ତି । ତାଙ୍କୁ ସଭକ୍ତିକ ନମସ୍କାର କରି ଆସନ୍ତୁ ଅନ୍ୟ ଲୀଳାସ୍ଥଳୀ ଆଡ଼କୁ ଅଗ୍ରସର ହେବା ।

## ୧୧. ଶ୍ରୀ ଗୋପୀ ସରୋବର:

ପ୍ରଶ୍ନ-୭୧: ଶ୍ରୀ ଗୋପୀ ସରୋବରକୁ କାହିଁକି କାମ୍ୟ ବନର ଧଡ଼କନ୍ କୁହାଯାଏ ?

ଉ. ଶ୍ରୀ କାମ୍ୟ ବନର ମଧ୍ୟ ଭାଗରେ ଏହି ଗୋପୀ ସରୋବର ବିଦ୍ୟମାନ । ଶ୍ରୀ ବ୍ରଜମଣ୍ଡଳର ୨୪ବନ ମଧ୍ୟରୁ ଶ୍ରେଷ୍ଠତମ ଏହି କାମ୍ୟବନରେ କେବଳ ଅତ୍ୟନ୍ତ ଗୋପନୀୟ ଲୀଳାମାନ ଅନୁଷ୍ଠିତ ହୁଏ । ଆଜି ମଧ୍ୟ ହେଉଛି । ଏହା ଏପରି ଏକ ବନ ଯେଉଁଠାରେ ଘନ ଜଙ୍ଗଲ ମଧ୍ୟରେ ବାଘ, ଭାଲୁ ଓ ସିଂହ ଆଦି ଅତି ହିଂସ୍ର ପଶୁ ଗହଣରେ ଏବେ ବି ମନ୍ଦିର, ମଠ ଓ ଆଶ୍ରମ ସ୍ଥାପନ କରି କୃଷ୍ଣ ଭକ୍ତମାନେ ସାଧନ ଭଜନ କରୁଛନ୍ତି ।

ଏହି ସରୋବର ନିକଟରେ ପୌର୍ଣ୍ଣମାସୀ ଦେବୀଙ୍କ ପୂର୍ଣ୍ଣ ସହଯୋଗରେ ଗୋପୀ ଗୋପୀନାଥଙ୍କର ରହସ୍ୟମୟ ରାସକ୍ରୀଡ଼ା ସଦା ସର୍ବଦା ଚାଲିଥାଏ । ସଂସାରୀ ବସ୍ତୁ ବ୍ୟକ୍ତି, ପରିସ୍ଥିତି ପ୍ରତି ଆକର୍ଷଣକୁ କାମ କୁହାଯାଏ । ଏହି ରାସକ୍ରୀଡ଼ା ବର୍ଣ୍ଣିତ କୃଷ୍ଣ ଓ କୃଷ୍ଣପ୍ରେମ ପ୍ରତି ମନୁଷ୍ୟର ଇନ୍ଦ୍ରିୟ ଆକର୍ଷଣକୁ କ'ଅଣ କୁହାଯାଏ ବୈଦିକ ଶାସ୍ତ୍ରରେ ?

**ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ତାକୁ ବୋଲି କାମ ।**
**କୃଷ୍ଣେନ୍ଦ୍ରିୟ ପ୍ରୀତି ବାଞ୍ଛା ଧରେ ପ୍ରେମ ନାମ ।**
**କାମର ତାତ୍ପର୍ଯ୍ୟ ନିଜ ସମ୍ଭୋଗ କେବଳ ।**
**କୃଷ୍ଣ ସୁଖ ତାତ୍ପର୍ଯ୍ୟ ମାତ୍ର ପ୍ରେମ ହିଁ ପ୍ରବଳ ॥**

ଉ. ଗୋପାଙ୍ଗନାମାନଙ୍କର କୃଷ୍ଣପ୍ରେମ କାମନାକୁ ଏହି କାମ୍ୟବନ ପୂରଣ କରନ୍ତି ବୋଲି ତାଙ୍କର ଏପରି ନାମ କରଣ ହୋଇଛି । ରାସକ୍ରୀଡ଼ା ବେଳେ ଗୋପ ଲଳନାମାନେ ରାଧାକୃଷ୍ଣଙ୍କ ଦିବ୍ୟ ପ୍ରେମ ଆସ୍ୱାଦନରେ ମଜ୍ଜିଗଲେ ଓ ହଜିଗଲେ । ସ୍ୱର୍ଗ ଧାମରୁ ଦେବୀ ଦେବତାମାନେ ଏହାର ଖବର ପାଇ ପହଞ୍ଚିଗଲେ । ଗୋପୀଦେହ ଧାରଣ କରି ମଜା ଲୁଟିବାକୁ ସେମାନଙ୍କର ଲାଳସା ଜାଗ୍ରତ ହୋଇଥିଲା । କୈଳାସ ପତି ଶ୍ରୀ ଶଙ୍କରଜୀ ମଧ୍ୟ ନିଜ ଯୋଗ ଶକ୍ତି ବଳରେ ତୁରନ୍ତ ଦେହ ବଦଳାଇ ଏହି ସରୋବରରେ ସ୍ନାନ କରି ଗୋପୀ ଶରୀର ଧାରଣ କରି ରାସକ୍ରୀଡ଼ାର ଆନନ୍ଦ ଲୁଟିପାରିଲେ । ସେହି ଦିନଠାରୁ ସେ ଗୋପୀଶ୍ୱର ନାମ ଧାରଣ କରି ଏହି କାମ୍ୟ ବନରେ ଏକ ବିଗ୍ରହ ସ୍ୱରୂପରେ ସେବିତ ହେଉଛନ୍ତି । ଘଟଣାଟିକୁ ସ୍ମରଣ କରାଇବାକୁ ଆଜି ସେ ସ୍ଥଳୀରେ ଗୋପୀଶ୍ୱର, ଗୋପୀନାଥ ଓ ଗୋପୀ ସରୋବର ବିଦ୍ୟମାନ । ସମସ୍ତଙ୍କୁ ବିନମ୍ର ନମସ୍କାର ।

## ୧୨. ଶ୍ରୀ ପ୍ରେମ ସରୋବର:

ପ୍ରଶ୍ନ-୭୨: ଶ୍ରୀକୃଷ୍ଣ ଲୀଳାରେ ଦଶରସରେ ସର୍ବୋତ୍ତମ ରସ ଏହି ପ୍ରେମ ରସର ସରୋବର କେଉଁଠି ଓ କିପରି ଅବସ୍ଥିତ ?

ଉ. ଶ୍ରୀ ବର୍ଷାଣା ପର୍ବତର ପାଦଦେଶରେ ଶ୍ରୀ ନନ୍ଦଗାଁ ଯିବା ରାସ୍ତା କଡ଼ରେ ଅବସ୍ଥିତ ଏହି ପ୍ରେମ ସରୋବର । ଶ୍ରୀରାମ ଭକ୍ତମାନଙ୍କ ଲାଗି କେବଳ ମିଳନ ହିଁ ପ୍ରେମ ଅଟେ । ମାତ୍ର କୃଷ୍ଣଭକ୍ତଙ୍କ ପାଇଁ ମିଳନଠାରୁ ବିରହ ଅଧିକ ପ୍ରେମ ଉତ୍ପାଦକ । ଏହାର ପ୍ରମାଣ ଏହି ଅଲୌକିକ ପ୍ରେମ ସରୋବର ।

ଦିନକର କଥା । ନିଶାର୍ଦ୍ଧ ସମୟରେ ଶ୍ରୀକାମ୍ୟ ବନର ଏହି ନିରୋଳା ସ୍ଥାନରେ ଶ୍ରୀଯୁଗଳ ସରକାର କେତେକ ଅନ୍ତରଙ୍ଗ ସଖା ସଖୀମାନଙ୍କ ସହିତ ବସିଥାନ୍ତି । ଶ୍ରୀରାଧା ଦିବ୍ୟ ପ୍ରେମ ଆବେଶରେ ଗୋଡ଼ ଲମ୍ବାଇ ବସିଥିବା ବେଳେ ଠାକୁରଜୀ ତାଙ୍କ କୋଳରେ ମୁଣ୍ଡଦେଇ ଶୋଇଥାଆନ୍ତି । ଏହି ସମୟରେ କାହୁଁ ଏକ ଦୁଷ୍ଟ ଭ୍ରମର ଉଡ଼ି ଆସି ଠାକୁରାଣୀଙ୍କ ଶ୍ରୀମୁଖ ଚାରି ପାଖରେ ଚକ୍ରାକାରରେ ଉଡ଼ିବୁଲିଲା । ସତେକି ସେ ତାଙ୍କ ମୁଖ ସୌନ୍ଦର୍ଯ୍ୟ ପାନ କରିବ । ଶ୍ରୀ ବୃଷଭାନୁ ନନ୍ଦିନୀ ବ୍ୟାକୁଳ ହୋଇ ଭ୍ରମରକୁ ଘଉଡ଼େଇବାକୁ ଅନେକ ଚେଷ୍ଟା କଲେ । ଆଦୌ ପାରିଲେନି । ପାଖରେ ଥାଇ କୃଷ୍ଣ ସଖା ମଧୁ ମଙ୍ଗଳ ନିଜ ଲଗୁଡ଼ (ବାଉଁଶ ବାଡ଼ି) ହଲାଇ ଭ୍ରମରକୁ ଦୂରକୁ ପଠାଇଦେଲେ । କହିଲେ, ''ଗୋ ରାଧେ, ମୁଁ ଭ୍ରମରକୁ ଘଉଡ଼େଇ ଦେଇଛି । ସେ ମଧୁସୂଦନ ଆଉ ମଧୁପାନ କରିବା ଲୋଭରେ ଏଠାକୁ ଆସିବ ନାହିଁ ।'' ଶ୍ରୀରାଧା କିନ୍ତୁ ଭ୍ରମରରୂପଧାରୀ ଶ୍ରୀକୃଷ୍ଣଙ୍କର ଲୀଳାର ଅସଲି ରହସ୍ୟ ବୁଝିପାରି ବ୍ୟାକୁଳିତ ହେଲେ ।

ମିଳନ ଅବସ୍ଥାରେ ପ୍ରେମୀ ପ୍ରେମାସ୍ପଦ ଉଭୟେ ପ୍ରେମର ସ୍ୱାଦ ପାଆନ୍ତି ଅବଶ୍ୟ କିନ୍ତୁ ଦିନେ ନା ଦିନେ ହରାଇବାର ଭୟ ରହେ ଉଭୟଙ୍କର ମନରେ । ତାକୁ ନିବାରଣ କରିବାକୁ ହେଲେ ଉଭୟେ ବିରହରେ ମଧ ନିରନ୍ତର ଉଭୟଙ୍କର ଚିନ୍ତନ କରିବାକୁ ବାଧ ହୁଅନ୍ତି । ନିରନ୍ତର ନିର୍ବୋଧ ଭାବରେ ଜୀବ କୃଷ୍ଣ ଚିନ୍ତନ କରିବା ହିଁ ତ ଅସଲି କୃଷ୍ଣପ୍ରେମ । ବର୍ତ୍ତମାନ ଶ୍ରୀ ରାଧା ଓ ଶ୍ରୀକୃଷ୍ଣ ଉଭୟେ ଉଭୟଙ୍କର ବିରହ ଚିନ୍ତନ କରି କରି ଅଜସ୍ର ଅଶ୍ରୁ ଗଡ଼ାଇ ଚାଲିଲେ । ସେ ଦିନର ସେଇ ଦିବ୍ୟ ଅଶ୍ରୁରେ ପ୍ରକଟ ହେଲେ ଆଜିର ଏହି ପ୍ରେମ ସରୋବର । ସେତେବେଳେ ପାଖରେ ଉପସ୍ଥିତ ସେମାନଙ୍କର ଅନ୍ତରଙ୍ଗ ସଖା ଓ ସଖୀଗଣ ସମସ୍ତେ ମୂର୍ଚ୍ଛିତ ହୋଇଗଲେ । କୁଞ୍ଜରେ ଦୁଇଟି ଶୁଆ ଶାରୀ ଥିଲେ । ଶୁକ ରାଧା ରାଧା ଗାଆନ୍ତେ କୃଷ୍ଣ ଓ କୃଷ୍ଣ ସଖାମାନେ ଚେତନା ଲାଭକଲେ । ଶାରୀ ଶ୍ୟାମ ଶ୍ୟାମ ଗାନ କଲା । ଏବେ ଶ୍ରୀରାଧା ଓ ତାଙ୍କ ସଖୀଗଣ ଚେତନା ପ୍ରାପ୍ତ ହେଲେ । ସମସ୍ତେ ମିଶି ଯୁଗଳ ସରକାରଙ୍କ ଦୋଳିରେ ବସାଇ ଦୋଳି ଝୁଲାଇଥିଲେ । ପରମ ଆନନ୍ଦରେ ସମସ୍ତେ ବୁଡ଼ବ ମାରିଲେ । ସେଇ ପ୍ରେମ ସରୋବରକୁ ନିକଟରୁ ବା ଦୂରରୁ ହେଉ ପ୍ରଣାମ ।

# (ଛ) ଦ୍ୱାଦଶ ବ୍ରଜମଣ୍ଡଳ ମହାପୁରୁଷ

## ୧. ମହାକବି ଶ୍ରୀଜୟଦେବ ଗୋସ୍ୱାମୀ:

ପ୍ରଶ୍ନ-୭୩: ଓଡ଼ିଶା ମାଟିରେ ଜନ୍ମିତ କେଉଁ ମହାପୁରୁଷଙ୍କ ସମାଧି ଆଜି ବ୍ରଜଧାମରେ ପ୍ରାଚୀନତମ ଓଡ଼ିଆ ଭକ୍ତ ସମାଧି ବୋଲି ସ୍ୱୀକୃତ ହୋଇଛି ?

ଉ. ଦ୍ୱାଦଶ ଶତାବ୍ଦୀ(ସମ୍ଭବତଃ ୧୧୩୦ଖ୍ରୀ)ରେ ଓଡ଼ିଶାର ପ୍ରାଚୀନଦୀ କୂଳରେ କେନ୍ଦୁବିଲ୍ୱ ବା କେନ୍ଦୁଲି ଗ୍ରାମର ଏହି ମହାପୁରୁଷଙ୍କ ନାମ ଶ୍ରୀ ଜୟଦେବ ଗୋସ୍ୱାମୀ । ବୃନ୍ଦାବନ ଧାମରେ ଶ୍ରୀରାଧା ଗୋକୁଳାନନ୍ଦ ମନ୍ଦିର ନିକଟରେ ଯମୁନାକୂଳରେ ତାଙ୍କର ସମାଧିକୁ ଆଜି ଭାରତଭୂମିରେ ସକଳ ସଂସ୍କୃତପ୍ରେମୀ ନତମସ୍ତକ ହୋଇ ପ୍ରଣାମ କରି ନିଜକୁ ଧନ୍ୟ ମନେ କରନ୍ତି । ତାଙ୍କ ସେବିତ ବିଗ୍ରହ ରାଧାମାଧବ ଦେବ ପୂଜା ପାଉଥିବା ଯମୁନା କୂଳରେ ଶ୍ରୀଯୁଗଳ କିଶୋର ମନ୍ଦିର ବିଧର୍ମୀଙ୍କ ଦ୍ୱାରା ଅପବିତ୍ର ହୋଇଛନ୍ତି । ତାଙ୍କର ସେଇ ପ୍ରାଚୀନ ଶ୍ରୀବିଗ୍ରହ ଆଜି ସ୍ଥାନାନ୍ତରିତ ହୋଇ ରାଜସ୍ଥାନର ଜୟପୁର ସହରରେ ପୂଜା ପାଉଛନ୍ତି । ଅନ୍ୟ ଦୁଇ ପ୍ରତିଭୂ ବିଗ୍ରହ ମଧ୍ୟରୁ ଗୋଟିଏ ତାଙ୍କ ଜନ୍ମସ୍ଥାନ କେନ୍ଦୁଲି ଗ୍ରାମରେ ଏବଂ ଅନ୍ୟଟି ବୃନ୍ଦାବନର ଶ୍ରୀରାଧା ଦାମୋଦର ମନ୍ଦିର ସେବିତ ହେଉଛନ୍ତି ।

### ମହାକବିଙ୍କ ବାଳ ଲୀଳା

ପିତା ଭୋଜଦେବ ଓ ମାତା ବାମାଦେବୀଙ୍କ କୋଳ ମଣ୍ଡନ କଲେ ଦିନେ ଓଡ଼ିଶା ମାଟିରେ ଏହି ଜୟଦେବ ଗୋସ୍ୱାମୀ । ତାଙ୍କର ପିତା ଗ୍ରାମଦେବତା ଶ୍ରୀମୁକ୍ତେଶ୍ୱର ମହାଦେବଙ୍କୁ ପୂଜା ପାଠରେ ପ୍ରସନ୍ନ କରି ପାଇଥିଲେ ତାଙ୍କୁ । ସୁପୁତ୍ରକୁ ସଂସାରକୁ ଆଣି ଆଠ ବର୍ଷ ନପୁରୁଣୁ ପିତାମାତା ଉଭୟେ ପରଲୋକ ଗମନ କଲେ । ପିତାଙ୍କ ବନ୍ଧୁ ରତ୍ନାକର ମିଶ୍ରଙ୍କ ଗୃହରେ ଆଶ୍ରୟ ମିଳିଲା ବାଳକ ଜୟଦେବଙ୍କୁ । ପିଲାଦିନୁ ସଂସ୍କୃତ ଅନୁରାଗୀ ଜୟଦେବ କୁଳଦେବତା ଶ୍ରୀ ଶାଳଗ୍ରାମ ମୂର୍ତ୍ତିଙ୍କୁ ସେବା ପୂଜା କରି ଚାଲିଲେ । ୧୪ବର୍ଷ ବେଳେ ରତ୍ନାକର ମିଶ୍ର ମଧ୍ୟ ଦେହତ୍ୟାଗ କଲେ । ତଥାପି ରତ୍ନାକରଙ୍କର ପୁତ୍ର ପରାଶର ତାଙ୍କଠାରୁ ବୟସରେ ଦୁଇବର୍ଷ ବଡ଼ ଥିବାରୁ ତାଙ୍କ ସ୍ନେହ ପ୍ରେମ ଡ଼ୋରିରେ ବନ୍ଧା ହୋଇ ତାଙ୍କ ପ୍ରେରଣାରେ ଜୟଦେବ ନିଜ ଜୀବନର କୈଶୋର ଅବସ୍ଥାରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଭଗବତ୍ ସାଧନାରେ ଅଗ୍ରସର ହେଲେ ।

ଅବସ୍ଥା ଚକ୍ରରେ ପ୍ରାଚୀନଦୀ ଜଳମଧ୍ୟରୁ ସ୍ୱପ୍ନ ଆଦେଶ ମୁତାବକ କବି

ଜୟଦେବ ଚିନ୍ମୟ ରାଧାମାଧବ ବିଗ୍ରହ ପ୍ରାପ୍ତହେଲେ । ଜଳ ତୁଳସୀ ସେବାରେ ଶ୍ରୀ ମାଧବ କୃପାଜଳ ବର୍ଷା କରି ଚାଲିଲେ ମହାକବିଙ୍କ ଜୀବନରେ । କେତେବେଳେ ବାଘ, ଭାଲୁ ଅବତାରରେ ପୁଣି କେତେବେଳେ ସାନ ବାଳକ, ସନ୍ନ୍ୟାସୀ ବେଶରେ ତାଙ୍କୁ ଦର୍ଶନ ଦେଉଥାଆନ୍ତି । ତାଳପତ୍ର ଖେଦା ଓ ଲେଖନୀ ଧରି ସେଇ କେନ୍ଦୁଲି ଗ୍ରାମରେ ସେ ପ୍ରସିଦ୍ଧ ଗୀତ ଗୋବିନ୍ଦ ମହାଗ୍ରନ୍ଥର ମଙ୍ଗଳାଚରଣ ଶ୍ଳୋକ ସହିତ ଦଶଅବତାର ଶ୍ଳୋକକୁ ରୂପ ଦେଲେ ।

ଶ୍ରୀଜଗନ୍ନାଥଙ୍କ ଇଛାରେ ଜୟଦେବ ପହଞ୍ଚିଲେ ପବିତ୍ର ପୁରୁଷୋତ୍ତମ ଧାମ । ମହାଗ୍ରନ୍ଥର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସର୍ଗ ଲେଖି ଚାଲିଲେ ଶ୍ରୀମନ୍ଦିର ପରିସରରେ ଅକ୍ଷୟବଟ ତଳେ କୁଟୀରରେ ବସି ଧ୍ୟାନ କରୁ କରୁ । ଦୈବଯୋଗକୁ ଦାକ୍ଷିଣାତ୍ୟ ପ୍ରଦେଶ କାଞ୍ଚି ରାଜ୍ୟରୁ ଦେବଶର୍ମା ନାମରେ ଜଣେ ବ୍ରାହ୍ମଣ ତାଙ୍କ ପତ୍ନୀ ଅପର୍ଣ୍ଣା ଆସିଲେ ପୁରୀ ଶ୍ରୀଜଗନ୍ନାଥ ଦର୍ଶନରେ । ସାଙ୍ଗରେ ଆଣିଥିଲେ ଅଲିଅଳି ୧୭ବର୍ଷର ଯୁବତୀ କନ୍ୟା ପଦ୍ମାବତୀଙ୍କୁ । ମନେ ମନେ ଭାବୁଥାନ୍ତି ଜଗନ୍ନାଥଙ୍କ ଠାରୁ ପ୍ରାର୍ଥନା କରି ତାଙ୍କ କୃପାରୁ ପାଇଥିବା କନ୍ୟାରତ୍ନଙ୍କୁ ମହାପ୍ରଭୁଙ୍କୁ ଦେବଦାସୀ ରୂପରେ ବିବାହ ଦେଇ ନିଶ୍ଚିନ୍ତ ହେବେ ସେ । ବିଧିର ବିଧାନ କିନ୍ତୁ ବିଚିତ୍ର । ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ଦେଇ କହିଲେ ଯେ ସେ ବ୍ରାହ୍ମଣ ତାଙ୍କ କନ୍ୟାଙ୍କୁ ତାଙ୍କରି ପରମ ଭକ୍ତ ଜୟଦେବଙ୍କୁ ସମର୍ପଣ କରନ୍ତୁ । ସେ ଶ୍ରୀରାଧା ଗୋବିନ୍ଦଙ୍କର ଅଲୌକିକ ପ୍ରେମ କାହାଣୀ(ବସନ୍ତ ରାସ କଥା) ଲେଖୁଛନ୍ତି ସେ ଝିଅ ତାର ନୃତ୍ୟ ଏବଂ ଗାନ କରିବା ଶିଖୁ । ସଙ୍ଗୀତର, ବାଦ୍ୟର, ସ୍ୱର, ତାଳ, ଲୟରେ ନୃତ୍ୟ କରି କେବଳ ଶ୍ରୀଜଗନ୍ନାଥ ମନ୍ଦିର କାହିଁକି ଓଡ଼ିଶା ଓ ଭାରତରେ ଅବସ୍ଥିତ ବିଭିନ୍ନ ଦେବୀ ଦେବତା ମନ୍ଦିର ମାନଙ୍କରେ ଦେବଗଣଙ୍କୁ ଓ ମାନବ ଗଣଙ୍କୁ କୃଷ୍ଣପ୍ରେମ ସ୍ୱାଦ ଚଖାଇ ଜଗତକୁ ଧନ୍ୟ କରୁ । ଏହା ଶ୍ରୀଜଗନ୍ନାଥଙ୍କର ଏକାନ୍ତ ଇଛା ଓ ଆଦେଶ ମଧ୍ୟ । ଦେବଶର୍ମାଙ୍କ ଚିନ୍ତା ଅକ୍ଳେଶରେ ଦୂର କଲେ ଠାକୁର ।

ଠାକୁରଙ୍କୁ ଆଦେଶ ଦେବଶର୍ମା ଓ ଜୟଦେବ ଉଭୟେ ମସ୍ତକ ନତ କରି ମାନିନେଲେ ତତ୍‌କାଳୀନ ଓଡ଼ିଶାର ଗଜପତି ଶ୍ରୀ ଅନଙ୍ଗଭୀମଦେବ ୨ୟଙ୍କ ଉପସ୍ଥିତିରେ । ଗୀତ ଗୋବିନ୍ଦ ଅବଶିଷ୍ଟ ସର୍ଗ ରଚନା ସହିତ, ନାଚ, ଗୀତର ମଧୁର ଆସର ଶ୍ରୀ ମନ୍ଦିରରେ ଶ୍ରୀ ଜଗନ୍ନାଥ ତାଙ୍କ ଭକ୍ତଗଣଙ୍କ ସହିତ ଆସ୍ୱାଦନ କଲେ । ମାଧବଙ୍କ ଇଛାରେ କେନ୍ଦୁଲିରେ ଦ୍ୱାଦଶ ସର୍ଗ ଲେଖା, ପାରାୟଣ, ଅଭିନୟ, ଘୃତ

ଯଜ୍ଞ ଓ ଅନ୍ନ ଭୋଜନ ମହୋତ୍ସବରେ ପୂର୍ଣ୍ଣତା ପ୍ରାପ୍ତ ହେଲା । ଦିନରେ ତିନି ତିନି ଥର ଶ୍ରୀଜଗନ୍ନାଥ ମନ୍ଦିରରେ ଦେବଦାସୀମାନଙ୍କ ନୃତ୍ୟ ସହିତ ଗୀତଗୋବିନ୍ଦ ପରିବେଷିତ ହେଲା ।

**ବଙ୍ଗଳା ପ୍ରଦେଶ ଲକ୍ଷ୍ମଣ ସେନଙ୍କ ଦରବାରରେ ଜୟଦେବ**

ଥରେ ରାଜା ଲକ୍ଷ୍ମଣ ସେନ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବାକୁ ଆସିଥିଲେ । ଶ୍ରୀମନ୍ଦିରରେ ମହାକବି ଜୟଦେବଙ୍କ ଗୀତ ଗୋବିନ୍ଦ ଲେଖା ଓ ଅଭିନୟ ଦର୍ଶନ କରି ଅତ୍ୟନ୍ତ ମୁଗ୍ଧ ହେଲେ । ବିନୀତ ଅନୁରୋଧ କରି ତାଙ୍କୁ ବଙ୍ଗଳା ଡ଼କାଇ ନେଲେ । ରାଜା ନିଜ ଇଷ୍ଟ ଶ୍ରୀରାଧା ମୋହନ ଠାକୁରଙ୍କ ଆଗରେ ଆଳତି ପରେ ପରେ ଗୀତଗୋବିନ୍ଦ ଗାନ କରାଇ ଧନ୍ୟ ହେଲେ । ଗ୍ରନ୍ଥର ବଙ୍ଗଳା ଅନୁବାଦ କରାଇ ଅନେକ ମୂଲ୍ୟବାନ ଉପହାର ଦେଇ ଜୟଦେବଙ୍କୁ ବିଦାୟ ଦେଇଥିଲେ ।

ଗୀତଗୋବିନ୍ଦ ଶ୍ରବଣ କରି ଶ୍ରୀମନ୍ଦିର ମଧ୍ୟରେ ଶ୍ରୀଜଗନ୍ନାଥ ବା ଗୋବିନ୍ଦ ଆଉ ତାଙ୍କ ବିଗ୍ରହ ନିଜକୁ ସ୍ଥିର କରି ରଖି ପାରୁନଥାନ୍ତି । ଥରେ କେନ୍ଦୁଲି ଗ୍ରାମରେ ଝିଅଟିଏ ରାତିରେ ଗୀତ ଗୋବିନ୍ଦ ଗାନ କରି କଣ୍ଟାଯୁକ୍ତ ଗଛରେ ଫଳିଥିବା ବାଇଗଣ ତୋଳୁଥାଏ । ଆମ ରସିକ ପ୍ରଭୁ ଶ୍ରୀଜଗନ୍ନାଥ ପୁରୀ ମନ୍ଦିର ଛାଡ଼ି ଯାଇ ସେଠାରେ ହାଜର । ଲକ୍ଷ୍ୟ କେବଳ ଭକ୍ତର ଗୀତଗୋବିନ୍ଦ ଗାନରେ ଚିତ୍ତ ତନ୍ମୟତା ଦେଖିବେ ସେ । ପିଲାଟି ପଛକୁ ବୁଲି ଚାହିଁ ଦିଅନ୍ତେ ସେ ଦୌଡ଼ି ପଳାଇ ଆସିଲେ ଶ୍ରୀମନ୍ଦିର । ପରେ ଗଜପତି ରାଜା ଜାଣିଲେ ଠାକୁରଙ୍କ ପାଟବସ୍ତ୍ର ଚିରିଯିବା, ସେଥିରେ ବାଇଗଣ କଣ୍ଟା ଫୋଡ଼ା ହୋଇଥିବା ରହସ୍ୟ ।

ଗଜପତି ରାଜା ଜୟଦେବଙ୍କୁ ପ୍ରସନ୍ନ କରିବାକୁ ଗୁଣ୍ଡିଚା ବାଡ଼ିରେ ନିର୍ମାଣ କଲେ ଦଶାବତାର ଜୟଦେବ ମଠ । ତାଙ୍କୁ ମହା ଆଡ଼ମ୍ବରରେ ପ୍ରତିଷ୍ଠା କରି ମହାକବିଙ୍କୁ ସସମ୍ମାନେ ସେଠାରେ ଥଇଥାନ କଲେ । କବି ଜୟଦେବ ପଦ୍ମାବତୀଙ୍କ ସହିତ ଦେବସେବାରେ ମନ, ପ୍ରାଣ ସହିତ ସ୍ୱ ସ୍ୱ ହୃଦୟ ମଧ୍ୟ ଅର୍ପଣ କରିଦେଲେ । ଅବସ୍ଥା ସେତେବେଳେ ଏପରି ହୋଇଥିଲା ଯେ କବି ଗୀତ ଗୋବିନ୍ଦ ଲେଖିବା ବେଳେ କିଛି ପ୍ରଣୟ ରସ ବର୍ଣ୍ଣନାରେ ସଙ୍କୋଚ କଲେ ସ୍ୱୟଂ ଶ୍ରୀଜଗନ୍ନାଥ ଜୟଦେବ ରୂପରେ ଯାଇ ପଦ ପୂରଣ କରିଦେଉଥିଲେ । ଯଥା **ଦେହି ପଦ ପଲ୍ଲବ ମୁଦାରଂ** ।

**ମହାରାଷ୍ଟ୍ରର ବିଦର୍ଭ ରାଜ୍ୟରେ ଜୟଦେବ**

ପୁରୀ ଗଜପତି ଲକ୍ଷେ ରାଜାର ମଉଡ଼ମଣି । ତାଙ୍କ ଗୀତଗୋବିନ୍ଦ ପ୍ରୀତି,

ପ୍ରଚାର, ପ୍ରସାର ଦାଣ୍ଡରେ ପଡ଼ି ହାଟରେ ଗଡ଼ିଲା । ସୁଦୂର ବିଦର୍ଭ ରାଜ୍ୟ(କୃଷ୍ଣପତ୍ନୀ ରୁକ୍ମିଣୀଙ୍କ ଜନ୍ମ ରାଇଜ) ରାଜାଙ୍କ ନିମନ୍ତ୍ରଣରେ ପହଞ୍ଚିଲେ କବି ଶ୍ରୀ ଜୟଦେବ । ରାଜାଙ୍କ ସେବିତ ରାଧାଗୋବିନ୍ଦଙ୍କର ଚଳନ୍ତି ପ୍ରତିମାଙ୍କ ସମ୍ମୁଖରେ ଗୀତ ଗୋବିନ୍ଦ ଗାନ କରି ପ୍ରସନ୍ନ କଲେ ଭକ୍ତ ରାଜା ଓ ଭଗବାନ ଉଭୟଙ୍କୁ । ମହାକବି ଶ୍ରୀକ୍ଷେତ୍ର ଫେରିବା ପୂର୍ବରୁ ପୁଣି ନିମନ୍ତ୍ରଣ ପାଇଲେ ବିହାର ପ୍ରଦେଶର ମଗଧ(ଜରାସନ୍ଧଙ୍କ ରାଜ୍ୟ)ର ମହାରାଜାଙ୍କ ଠାରୁ ।

## ବିହାର ରାଜ୍ୟର ମଗଧ ରାଜ ଦରବାରରେ ଜୟଦେବ

ଅଶ୍ୱଟଣା ରଥ ଆରୋହଣ କରି ଜୟଦେବ ପହଞ୍ଚିଲେ ମଗଧ ରାଜ ଦରବାରରେ । ରାଜା ରାଣୀ ଓ ରାଜନ୍ୟବର୍ଗ ସମସ୍ତେ ଠାକୁରଙ୍କ ସାମନାରେ ଗୀତଗୋବିନ୍ଦ ଗାନ ଶ୍ରବଣ କରି ମନ୍ତ୍ର ମୁଗ୍ଧ ହେଲେ । ପାଞ୍ଚଦିନ ମଧ୍ୟରେ ନିଜ ଭାଷାରେ ଅର୍ଥ, ଅନୁବାଦ ଲେଖାଇ ରଖିଲେ । ପୁରସ୍କାର ସ୍ୱରୂପ ଅନେକ ସ୍ୱର୍ଣ୍ଣ ଅଳଙ୍କାର ଓ ପାଟ ପୀତାମ୍ବର ଦେଇ ମହାକବିଙ୍କୁ ବିଦର୍ଭ ପହଞ୍ଚାଇ ଦେଲେ । ବିଦର୍ଭର ରାଜା ରାଣୀ ପ୍ରଚୁର ଉପଢ଼ୌକନ ଶ୍ରୀଜଗନ୍ନାଥ, ରାଧାମାଧବ ଓ ଗଜପତିଙ୍କ ଲାଗି ନିବେଦନ କରି ଅଶ୍ରୁପୂର୍ଣ୍ଣ ନେତ୍ରରେ ବିଦାୟଦେଲେ ପରମ ଭକ୍ତ ଜୟଦେବଙ୍କୁ ।

ଜୟଦେବ ନିଜ ଗ୍ରାମର ପବିତ୍ର ସ୍ମୃତି ରକ୍ଷା କଥା ଚିନ୍ତା କଲେ । କେନ୍ଦୁବିଲରେ ଶରଦ ରାସ ଅଭିନୟ କରାଇଲେ । ଘୃତ ଯଜ୍ଞ, ଅନ୍ନ ଯଜ୍ଞ, ନାମ ଯଜ୍ଞ ସହିତ ଗୀତଗୋବିନ୍ଦ ପାରାୟଣ, ପ୍ରବଚନ ସହିତ ଅଭିନୟ କରାଇଲେ । ରାଧା ମାଧବଙ୍କ ସୁନ୍ଦର ନୂତନ ବିଗ୍ରହ ନିର୍ମାଣ କରାଇ ଗ୍ରାମରେ ପ୍ରତିଷ୍ଠା ଓ ସେବା ପୂଜା ବ୍ୟବସ୍ଥା କରାଇଲେ । ଗାଁ ଲୋକଙ୍କୁ ବୁଝାଇ ଗୀତଗୋବିନ୍ଦ କାବ୍ୟ ଲେଖାଥିବା ଖଣ୍ଡୁଆ ପାଟ ନିର୍ମାଣ କରାଇଲେ । ଓଢ଼ଣୀ ଷଷ୍ଠୀ ତିଥିରେ ଶ୍ରୀମନ୍ଦିରରେ ତିନି ଠାକୁରଙ୍କୁ ଘୋଡ଼େଇ ଭଗବାନଙ୍କ ଶୀତ କଷ୍ଟ ଦୂର କଲେ । ଶ୍ରୀମନ୍ଦିରରେ ଏହି ମହାନ ପରମ୍ପରା ଏବେ ମଧ୍ୟ ଚାଲୁ ରହିଛି ।

## ଦକ୍ଷିଣ ଭାରତ କାଞ୍ଚି ରାଜ୍ୟରେ ସପତ୍ନୀକ ଜୟଦେବ

ପତ୍ନୀଙ୍କ ଆଗ୍ରହରେ ମହାକବି ଦାକ୍ଷିଣାତ୍ୟ ଭ୍ରମଣରେ ଯାଇ ଅନେକ ଦେବୀଦେବୀତାଙ୍କୁ ଗୀତ ଗୋବିନ୍ଦ ଶୁଣାଇ ପ୍ରଶଂସାରେ ବୁଡ଼ିଯାଉଥାଆନ୍ତି । ସେହିଦିନୁ ଦକ୍ଷିଣଭାରତର ମନ୍ଦିର ମାନଙ୍କରେ ଦେବଦାସୀ ପ୍ରଥା ଚାଲି ଆସୁଛି । ପଦ୍ମାବତୀଙ୍କୁ ପିତ୍ରାଳୟ ଦର୍ଶନ କରାଇ ଜୟଦେବ ଶ୍ରୀକ୍ଷେତ୍ର ଫେରିଲେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ବୃନ୍ଦାବନରେ ଜୟଦେବଙ୍କ ସମାଧି

ଅନ୍ତିମ ଜୀବନରେ କବିଶ୍ରେଷ୍ଠ ଜୟଦେବ ରାଧାମାଧବ ବିଗ୍ରହଙ୍କୁ ଧରି ପହଞ୍ଚିଲେ ସେମାନଙ୍କ ଲୀଳାକ୍ଷେତ୍ର ପବିତ୍ର ବୃନ୍ଦାବନ ଧାମ । ସେବା ପୂଜା କରି କରି ସେହି ଧାମରେ ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କର ସମାଧି ବୃନ୍ଦାବନର ଶ୍ରୀରାଧା ଗୋକୁଳାନନ୍ଦ ଧାମରେ ଦର୍ଶନୀୟ ଓ ନମସ୍କରଣୀୟ ଆମ ସମସ୍ତଙ୍କର ।

## ୨. କଳିଯୁଗର ପାବନ ଅବତାର ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ:

ପ୍ରଶ୍ନ-୭୪: ଖ୍ରୀ.ପୂ ୩୧୩୯ ରେ ମହାଭାରତ ମହାସଂଗ୍ରାମ ଶେଷ ହେଲା । ଦିଲ୍ଲୀ ସିଂହାସନରେ ୩୭ବର୍ଷ ମହାରାଜା ଯୁଧିଷ୍ଠିର ବସି ଖ୍ରୀ.ପୂ.୩୧୦୨ରେ ମହାପ୍ରସ୍ଥାନରେ ଚାଲିଲେ । ଠିକ୍ ସେତିକି ବେଳେ ଭଗବାନ ଶ୍ରୀକୃଷ୍ଣ ଲୀଳା ସମ୍ବରଣ କରିଥିଲେ । ଅର୍ଥାତ୍ ଆଜକୁ ୫୧୧୬ବର୍ଷ (ଖ୍ରୀ.୨୦୧୪ ବେଳକୁ) ଧରି ମଥୁରା, ବୃନ୍ଦାବନ ଆଦି ସମଗ୍ର ବ୍ରଜମଣ୍ଡଳ ପ୍ରକୃତିର ଘାତ ପ୍ରତିଘାତ, ବୈଦେଶିକ ଆକ୍ରମଣ ସହିତ ବିଧର୍ମୀମାନଙ୍କର ଅତ୍ୟାଚାରର ଶିକାର ହୋଇଆସିଛି । ପାଞ୍ଚ ଶତ ବର୍ଷ ତଳେ ଶ୍ରୀମନ୍ ମହାପ୍ରଭୁ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ବୃନ୍ଦାବନ ଧାମରେ ପହଞ୍ଚିଲେ ପୁରୀରୁ ପାଦରେ ଚାଲି ଚାଲି । ଦେଖିଲେ ବ୍ରଜମଣ୍ଡଳର ଅଧିକାଂଶ ଭାଗ କଣ୍ଟା ବଣବୁଦା ଜଙ୍ଗଲରେ ଭରା । ୫ହଜାର ବର୍ଷର ନନ୍ଦ ମହଲ, ବୃଷଭାନୁ ମହଲ କଂସ ଦରବାର ସବୁ ଗୋଟିଏ ଗୋଟିଏ ଭଗ୍ନ ସ୍ତୁପ କେବଳ । ତେବେ କେଉଁ କେଉଁ ଐତିହାସିକ ପ୍ରମାଣ ଆଧାରରେ ଶ୍ରୀ ଶ୍ରୀ ଚୈତନ୍ୟ ଦେବ ସାବ୍ୟସ୍ତ କଲେ ସେହି ଭୂଖଣ୍ଡକୁ ଦ୍ୱାପର ଯୁଗର ଶ୍ରୀକୃଷ୍ଣ ଲୀଳାସ୍ଥଳୀ ବୋଲି ?

ଉତ୍ତର: ଆଜିର ମଥୁରା, ବୃନ୍ଦାବନ ସହର, ନନ୍ଦଗ୍ରାମ, ବର୍ଷାଣା ପର୍ବତ, ଶ୍ରୀ ଗିରିରାଜ ଗୋବର୍ଦ୍ଧନ, ମାନସୀ ଗଙ୍ଗାଙ୍କ ସହିତ ଶ୍ରୀଯମୁନା ନଦୀ ସଙ୍କେତ ଦ୍ୱାରା ଚିହ୍ନାଇଦେଲେ ମହାପ୍ରଭୁଙ୍କୁ **କି ଥିଲା ଏ ରାଜ୍ୟ କି ହୋଇଛି ଆଜ ।** ମହାପ୍ରଭୁ ତାଙ୍କ ଆଲୌକିକ ଦୃଷ୍ଟି ବଳରେ ବ୍ରଜମଣ୍ଡଳ ପରିକ୍ରମା କରି ସାଙ୍ଗରେ ଥିବା ଭକ୍ତମାନଙ୍କୁ ନିର୍ଦ୍ଦେଶ କଲେ ଶ୍ରୀରାଧା କୁଣ୍ଡ, ଶ୍ୟାମକୁଣ୍ଡ, ବଂଶୀବଟ କାମ୍ୟବନ, ଖଦିରବନ, ବେହୁଲାବନ, ବିଶ୍ରାମ ଘାଟ, କେଶୀଘାଟ, ବଂଶୀବଟ, ମାନସରୋବର, ବେଲବନର ଶ୍ରୀ ମହାଲକ୍ଷ୍ମୀ ମନ୍ଦିର, ଇମଲି ତାଲା, ଶୃଙ୍ଗାର ଘାଟ, ଧୀର ସମୀର ଆଦିର ଅବସ୍ଥିତି । ପରେ ତାଙ୍କ ଇଛାକୁ ସମ୍ମାନ ଦେଇ ରୂପ ଗୋସ୍ୱାମୀଙ୍କ ନିର୍ଦ୍ଦେଶରେ ରାଜସ୍ଥାନର ଜୟପୁରର ରାଜା ମାନସିଂହ ନିର୍ମାଣ କଲେ ସାତ ମହଲା ଉଚ୍ଚ ଶ୍ରୀ ଗୋବିନ୍ଦଜୀ

ମନ୍ଦିର । ସମ୍ରାଟ୍ ଆକବର ମଧ୍ୟ ସଙ୍ଗୀତଜ୍ଞ ତାନସେନଙ୍କ ସହ ୧୫୭୦ମସିହାରେ ବୃନ୍ଦାବନ ଦର୍ଶନ କରି ଏହି ମହାନ ଲୁପ୍ତ ତୀର୍ଥସ୍ଥଳୀ ଜୀର୍ଣ୍ଣୋଦ୍ଧାରରେ ସାହାଯ୍ୟ କଲେ । ସେ ରାଜସ୍ଥାନର ତତ୍କାଳୀନ ଅନେକ ରାଜା ମହାରାଜା ମାନଙ୍କୁ ସକ୍ରିୟ ସାହାଯ୍ୟ, ସହାନୁଭୂତି ଯୋଗାଇ ଦେଲେ । ଗୋବର୍ଦ୍ଧନର ହରିଦେଓ ମନ୍ଦିର, କୁସୁମ ସରୋବର ବୃନ୍ଦାବନର ଶ୍ରୀମଦନ ମୋହନ ମନ୍ଦିର, ଶ୍ରୀ ଯୁଗଳ କିଶୋର ମନ୍ଦିର, ଶ୍ରୀ ଗୋପୀନାଥ ମନ୍ଦିର, ଶ୍ରୀରାଧା ରମଣ ମନ୍ଦିର ନିର୍ମାଣ ଆଦି ଅନ୍ୟାନ୍ୟ ଅନେକ ବ୍ୟୟବହୁଳ ପ୍ରୋଜେକ୍ଟ, ବ୍ରଜମଣ୍ଡଳର ଅନେକ ସରୋବର, କୁଣ୍ଡ ଖନନ ପଙ୍କୋଦ୍ଧାର ଆଦି ସଂପୂର୍ଣ୍ଣ ହୋଇଥିଲା ।

ପରବର୍ତ୍ତୀ କାଳରେ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ତାଙ୍କର ଏକାନ୍ତ ଭକ୍ତଜନ ଗୋସ୍ୱାମୀ ଓ ପ୍ରିୟ ପାର୍ଷଦମାନଙ୍କୁ ପ୍ରେରଣ କଲେ ଶ୍ରୀ ବ୍ରଜମଣ୍ଡଳକୁ । ସ୍ୱୟଂ ମହାପ୍ରଭୁଙ୍କର ଏବଂ ତାଙ୍କ ଭକ୍ତମାନଙ୍କର ଅକ୍ଳାନ୍ତ ଅବିରାମ ଉଦ୍ୟମର ଫଳ ହେଉଛି ଆଜିର ଏହି ଭବ୍ୟ ଶ୍ରୀବୃନ୍ଦାବନ ଧାମ ଓ ଶ୍ରୀବ୍ରଜମଣ୍ଡଳ ଧାମ । ମହାପ୍ରଭୁଙ୍କର ୪୮ବର୍ଷର ଲୀଳା କାଳ ମଧ୍ୟରେ ୨୪ବର୍ଷ ନଦିଆ ନବଦ୍ୱୀପରେ ଶେଷ ହେବା ପରେ ଅବଶିଷ୍ଟ ୨୪ବର୍ଷରୁ ସୁଦୀର୍ଘ ଅଠର ବର୍ଷ ଶ୍ରୀକ୍ଷେତ୍ରର କାଶୀ ମିଶ୍ର ଆଳୟ ଶ୍ରୀ ଗମ୍ଭୀରାରେ ବାସ କରିଥିଲେ । ବାକି ଛଅ ବର୍ଷରେ ଥରେ ନବଦ୍ୱୀପ, ଥରେ ଦାକ୍ଷିଣାତ୍ୟ ଭ୍ରମଣ ସହିତ ଥରେ ଶ୍ରୀବୃନ୍ଦାବନ ଓ ବ୍ରଜମଣ୍ଡଳ ପରିକ୍ରମା ଲୀଳା କରିଥିଲେ ।

## ଜନ୍ମ-ଜନକ-ଜନନୀ

ଓଡ଼ିଶାର ଯାଜପୁର ନଗ୍ରରୁ ନୈଷ୍ଠିକ ବ୍ରାହ୍ମଣ ଜଗନ୍ନାଥ ମିଶ୍ରଙ୍କ ପିତା ଉଠିଯାଇ ପଶ୍ଚିମବଙ୍ଗର ନଦିଆ ନବଦ୍ୱୀପ ଧାମରେ ବସବାସ କରି ରହୁଥିଲେ । ଜଗନ୍ନାଥଙ୍କ ପତ୍ନୀ ଶଚିଦେବୀଙ୍କ ଗର୍ଭରେ ଆଠ କନ୍ୟା ଜନ୍ମ ହୋଇ ପରପାରିକୁ ଗଲେ । ନବମ ପୁତ୍ର ସନ୍ତାନ ବିଶ୍ୱରୂପ ପ୍ରକଟ ହୋଇ ଯୁବକ ଅବସ୍ଥାରେ ୧୬ବର୍ଷରେ ସନ୍ୟାସ ନେଇ ଚାଲିଗଲେ । ରହିଲେ ମହାରାଷ୍ଟ୍ରର ପଣ୍ଢରପୁର ଶ୍ରୀ ବିଠଳ ନାଥ ଧାମରେ । ଶେଷରେ ଶ୍ରୀଚୈତନ୍ୟ ଦେବ ୧୪୮୬ ମସିହା ଫାଲ୍ଗୁନ ମାସ ପୂର୍ଣ୍ଣିମା ତିଥିରେ ପୂର୍ଣ୍ଣଗ୍ରାସ ଚନ୍ଦ୍ରଗ୍ରହଣର ଶୁଭବେଳାରେ ପ୍ରକଟ ହେଲେ ତାଙ୍କ ଦଶମ ଗର୍ଭରେ ଏକ ନିମ ବୃକ୍ଷମୂଳରେ । ମା ଶଚିଦେବୀ ପୁତ୍ରର ଅପର୍ତ୍ତିଆ, ଅଲକ୍ଷଣା ନାମ ରଖିଲେ ନିମେଇ ବୋଲି ଯମ ରାଜାଙ୍କ ଭୟରେ । ରଙ୍ଗରେ ଅତି ଗୋରା ଥିବାରୁ ସାଇ ପଡ଼ିଶା ଡ଼ାକିଲେ ତାଙ୍କୁ ଗୋରା ବା ଗୌର ବୋଲି । ସର୍ବଦା ହରି ନାମ କହୁଥିବାରୁ କେହି କେହି ଗୌରହରି ମଧ୍ୟ ଡ଼ାକିଲେ । ପରବର୍ତ୍ତୀ ଜୀବନରେ କୃଷ୍ଣ ଚେତନଶୀଳ ବୋଲି

ସନ୍ନ୍ୟାସ ନାମ ହେଲା ଶ୍ରୀକୃଷ୍ଣ ଚୈତନ୍ୟ ।

## ପିଲାଦିନର ପାଠପଢ଼ା

ସଂସ୍କୃତ ସାହିତ୍ୟ, ଅଳଙ୍କାର, ବ୍ୟାକରଣ ଆଦିରେ ଅଲୌକିକ ରୁଚି ଦେଖି ଗୁରୁ ବାସୁଦେବ ସାର୍ବଭୌମ ତାଙ୍କୁ ଅତି କଠିନ ନ୍ୟାୟ ଦର୍ଶନ ପଢ଼ାଇଲେ । ଷୋଳ ବର୍ଷରେ ସେ ନିଜେ ଏକ ସଂସ୍କୃତ ଟୋଲ ଖୋଲି ଅଧ୍ୟାପନା ଦାୟିତ୍ୱ ସମ୍ଭାଳିଲେ । ସୀମିତ ପୈତୃକ ସଂପତ୍ତିରେ ଘର ଚଳାଇବା ଅତ୍ୟନ୍ତ କଷ୍ଟକର ମନେ ହେଉଥିଲା ତାଙ୍କ ମା ଶଚି ଦେବୀଙ୍କୁ । ସେ ନିଜେ କିନ୍ତୁ ଥିଲେ ନିଦା ବିଷ୍ଣୁ । ସେ ଜଣେ ପକ୍‌କା ସନ୍ନ୍ୟାସୀ, ଧୁରନ୍ଧର ଗୃହସ୍ଥ ଏବଂ ଲୀଳା ଅଭିନୟକାରୀ ଶ୍ରୀରାଧା କୃଷ୍ଣଙ୍କର ମିଳିତ ଅବତାର ।

## ସଂସାର ବୋଝ ଦୁଇ ଦୁଇଟା ବିବାହ

ଅଳ୍ପ ବୟସରେ ତାଙ୍କର ପିତୃ ବିୟୋଗ ଘଟିଲା । ମାତା ପୁତ୍ରର ହାତକୁ ଦ୍ୱିହାତ କରିବାକୁ ତରବର ହେଲେ । ଘରକୁ ଆସିଲେ ଲକ୍ଷ୍ମୀପ୍ରିୟା । ଦିନେ ସର୍ପାଘାତରେ ତାଙ୍କ ଜୀବନ ଗଲା । ପୁଣି ମା'ବିଷ୍ଣୁପ୍ରିୟା ଆସିଲେ ଗୃହିଣୀ ଦାୟିତ୍ୱ ସମ୍ଭାଳିବାକୁ ।

## ଜୀବନ ମୋଡ଼ ବଦଳିଗଲା

୧୫୦୯ ମସିହାରେ ସେ ଗୟା ଯାଇଥିଲେ ପିତୃଶ୍ରାଦ୍ଧ କରିବାକୁ । ଭେଟିଲେ ବୈଷ୍ଣବ ସନ୍ନ୍ୟାସୀ ଶ୍ରୀ ଈଶ୍ୱର ପୁରୀଙ୍କୁ । ତାଙ୍କ ଠାରୁ କୃଷ୍ଣମନ୍ତ୍ର ଦୀକ୍ଷା ନେଲେ । ହରିବୋଲ, ଶ୍ରୀକୃଷ୍ଣ, ଶ୍ରୀକୃଷ୍ଣ କହି ନାଚିଲେ, କୁଦିଲେ, ଅଜସ୍ର ଲୁହ ଗଡ଼ାଇ ଭୂଇଁରେ ଗଡ଼ିଲେ । ବାରମ୍ବାର ଅଚେତ ହେଲେ । ଖାଇବା, ଶୋଇବା, ସଂସାର ଚଳାଇବା ତାଙ୍କ ପାଇଁ ଅସମ୍ଭବ ମନେ ହେଲା । ଚକ୍ଷୁରୁ କୃଷ୍ଣ ବିରହ ହେତୁ ଲୁହ ଧାର ଶୁଖୁ ନଥାଏ । କି ଘର ସଂସାର କରିବେ ? କୃଷ୍ଣପ୍ରେମ ନାବର ମଙ୍ଗ ଖୋଜୁଥାଆନ୍ତି ସେ ।

## ଅବଧୂତ ସନ୍ନ୍ୟାସୀ ନିତାଇଙ୍କ ସହ ଭେଟ

ରାଢ଼ ଦେଶରେ କୃଷ୍ଣଲୀଳାର ଶ୍ରୀବଳରାମଜୀ ଏବେ ନିତ୍ୟାନନ୍ଦ ନାମରେ ଜନ୍ମ ହୋଇ ବାର ବର୍ଷ ବୟସରେ ସନ୍ନ୍ୟାସ ଦୀକ୍ଷା ନେଇ ଗୁରୁଙ୍କ ସଙ୍ଗେ ଭାରତ ଦର୍ଶନ କରିଥାନ୍ତି । ବୃନ୍ଦାବନରେ ଶ୍ରୀମାଧବେନ୍ଦ୍ର ପୁରୀଙ୍କୁ ଭେଟି ସେ ପଚାରିଲେ କୃଷ୍ଣଦର୍ଶନ ହେବ କିପରି ? ଶୂନ୍ୟବାଣୀ ହେଲା ବୃନ୍ଦାବନ ଧାମରେ । ଯେ କୃଷ୍ଣ ସେଇ ଏବେ ନଦିଆ ନବ ଦ୍ୱୀପରେ ଶ୍ରୀ ଗୌରାଙ୍ଗ ରୂପରେ ପ୍ରକଟିତ ହେଲେଣି । ନିତ୍ୟାନନ୍ଦ କାଳ ବିଳମ୍ବ ନକରି ଧାଇଁ ଆସିଲେ ନବଦ୍ୱୀପ । ଭେଟିଲେ ମହାପ୍ରଭୁଙ୍କୁ ତାଙ୍କ ଘରେ ।

ଶ୍ରୀ ଗୌରାଙ୍ଗ ଡ଼ାକ ଛାଡ଼ିଲେ ଯେ ମାଆ ହେଇ ଦେଖ ତୁମ ବଡ଼ ପୁଅ ଆସିଲାଣି । ଗଙ୍ଗା ଯମୁନା ନଦୀର ଦୁଇ ପବିତ୍ର ଧାରା ନିତାଇ ଗୌର ମିଳନରେ ହରିବୋଲ, ହୁଳହୁଳି, ମହାମନ୍ତ୍ର ଧ୍ୱନିରେ ନବଦ୍ୱୀପ ଧାମ ଗଗନ ପବନ ପଡ଼ିଲା ଉଠିଲା ।

## ହରିନାମ ସଂକୀର୍ତ୍ତନର ଶୁଭାରମ୍ଭ

ଦୁହିଙ୍କର କୃଷ୍ଣପ୍ରେମ ତରଙ୍ଗରେ ଭାସିଲେ ଅନେକ ହରିନାମ ଭଜନକାରୀ । ଶ୍ରୀବାସ ଅଙ୍ଗନରେ ରାତି ସାରା କୀର୍ତ୍ତନ ଚାଲିଲା । କ୍ରମେ ଗ୍ରାମ ଗ୍ରାମାନ୍ତର ନଗର ସଂକୀର୍ତ୍ତନ ମୁଖର ହେଲା । ଏପରିକି ମହାପାପୀ ମଦ ବ୍ୟାପାରୀ ଜଗାଇ ମାଧାଇଙ୍କ ଉଦ୍ଧାର ହେଲା । ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟ, ଗଦାଧର ପଣ୍ଡିତ ଆଦିଙ୍କ ସହିତ ଇଷ୍ଟଗୋଷ୍ଠୀ ହେଲା । ପୁଣ୍ଡରୀକ ଗୋସ୍ୱାମୀଙ୍କ ସହିତ ଭେଟ ହେଲା । ମୁସଲମାନ ଶାସକ କାଜି ହରି ନାମ ସଂକୀର୍ତ୍ତନର ବିରୋଧ କଲେ । ସେମାନଙ୍କ ସଂକୀର୍ତ୍ତନର ମୃଦଙ୍ଗ ଭାଙ୍ଗି ପକାଇଲେ । ରାତିରେ ନୃସିଂହ ମହାପ୍ରଭୁ ତାଙ୍କ ବକ୍ଷରେ ଗଭୀର ନଖ କ୍ଷତ କରନ୍ତେ ସେ ଭୟରେ ଶ୍ରୀ ଚୈତନ୍ୟ ଦେବଙ୍କ ଶରଣ ପଶିଲେ । ଚାନ୍ଦ କାଜିଙ୍କ ସମାଧି ଏବେ ନବଦ୍ୱୀପରେ ଦର୍ଶନୀୟ । ବୋଧହୁଏ ସେ ସଂସାରର ପ୍ରଥମ ଇସ୍‌ଲାମ ବୈଷ୍ଣବ । ଅବଶ୍ୟ ପରବର୍ତ୍ତୀ ସାଧକ ହରିଦାସ ଠାକୁର ଓ ବୃନ୍ଦାବନର ରସ ଖାଁ ଇତ୍ୟାଦି ପରମ ବୈଷ୍ଣବ ହୋଇପାରିଲେ ।

## ଚବିଶ ବର୍ଷରେ ସନ୍ୟାସ ସହିତ ଗୃହତ୍ୟାଗ

ଅଦ୍ୱୈତ ମାର୍ଗୀ ଗୁରୁ ଶ୍ରୀ କେଶବ ଭାରତୀଙ୍କଠାରୁ ସନ୍ୟାସ ନେଲେ ମହାପ୍ରଭୁ । ଲଣ୍ଡିତ ମସ୍ତକ ହୋଇ ବଙ୍ଗଳା ରାଜ୍ୟରେ ସଂକୀର୍ତ୍ତନ କରି ପହଞ୍ଚନ୍ତେ ମାତା ଶଚିଦେବୀ କିନ୍ତୁ ଘର ଭାଙ୍ଗିବା ଦୁଃଖରେ ଭାଙ୍ଗି ପଡ଼ିଲେ । ମହାପ୍ରଭୁ ତାଙ୍କୁ ସାନ୍ତ୍ୱନା ବାଣୀ ଶୁଣାଇଲେ ଯେ ତାଙ୍କର ଉଦ୍ଧାର ନିଶ୍ଚୟ ହେବ । ସେ ନାରୀ ମୁଖ ଚାହିଁବେ ନି ବୋଲି ସଂକଳ୍ପ କଲେ । ଯୁବତୀ ପତ୍ନୀ ବିଷ୍ଣୁପ୍ରିୟାଙ୍କ ଠାରୁ ରାତି ଅଧରେ ବିଦାୟ ନେଇ ମା'ଙ୍କ ଆଦେଶରେ ପହଞ୍ଚିଲେ ନୀଳାଚଳଧାମ । ଶ୍ରୀ ଜଗନ୍ନାଥ ଦର୍ଶନରେ ଚେତା ହରାଇ ଭୂମିରେ ପଡ଼ିଲେ । ମହାଜ୍ଞାନୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଶ୍ରୀଚୈତନ୍ୟଙ୍କ ଭାବ ଅବସ୍ଥା ବୁଝି ନେଇଗଲେ ନିଜ ଗୃହକୁ । ଶ୍ରୀ ଗୌରାଙ୍ଗ କୃପାକରି ତାଙ୍କ ଜ୍ଞାନ ଅହଂକାର ନଷ୍ଟ କଲେ । ବଦଳରେ ତାଙ୍କୁ ଭକ୍ତି ଶକ୍ତି ପ୍ରଦାନ କଲେ । ଷଡ଼ଭୁଜ ଗୌରାଙ୍ଗ ରୂପ ଦର୍ଶନ କରାଇଲେ । ସେଇ ଷଡ଼ଭୁଜ ରୂପର ଝଲକ ଆମେ ଆଜି ବୃନ୍ଦାବନ ଧାମର ନିଧିବନ ପାଚେରୀ ନିକଟରେ ଶ୍ରୀ ଗୋପାଳଜୀ ଓଡ଼ିଆ ମଠରେ ଦର୍ଶନ କରିପାରିବା ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

## ଛଅ ବର୍ଷ ତୀର୍ଥ ପର୍ଯ୍ୟଟନ ଲୀଳା

କଳିଯୁଗର ଧର୍ମ ନାମ ସଂକୀର୍ତ୍ତନ । ମହାପ୍ରଭୁ କଳିଯୁଗର ପାବନ ଅବତାର । ଦାକ୍ଷିଣାତ୍ୟ ପ୍ରଦେଶକୁ ସେ ପ୍ରଥମେ ସଂକୀର୍ତ୍ତନ ପ୍ରଚାରକୁ ଚାଲିଲେ । ସିଂହାଚଳ ବା ସୀମାଚଳରେ ଶ୍ରୀନୃସିଂହ ବିଗ୍ରହ ଦର୍ଶନ କରି ସେ ନୃତ୍ୟ କରିବାରେ ଲାଗିଲେ । ରାଜମହେନ୍ଦ୍ରୀରେ ପହଞ୍ଚି ଗୋଦାବରୀ ନଦୀ କୂଳରେ ଭେଟିଲେ ଓଡ଼ିଶାର ଗଜପତି ରାଜାଙ୍କର ପ୍ରଧାନମନ୍ତ୍ରୀ ରାୟରାମାନନ୍ଦଙ୍କୁ । ଜ୍ଞାନ ଭକ୍ତିର ମଧୁର ମିଳନ ଲକ୍ଷ୍ୟ କଲେ ତାଙ୍କଠାରେ । ତାଙ୍କୁ ନୀଳାଚଳ ଆସିବାକୁ ନିର୍ଦ୍ଦେଶ ଦେଇଗଲେ ତିରୁପତି ବାଲାଜୀ, କାଞ୍ଚିପୁର ଓ କାବେରୀ ନଦୀ କୂଳ ସ୍ଥିତ ଶ୍ରୀରଙ୍ଗ ପୀଠକୁ । ଚାତୁର୍ମାସ୍ୟ ହେତୁ ଚାରିମାସ ସେ ରାମାନୁଜୀ ଭକ୍ତ ଶ୍ରୀ ଭେଙ୍କଟ ଭଟ୍ଟଙ୍କ ଗୃହରେ ରହିଲେ । ଗମ୍ଭୀରତତ୍ତ୍ୱ ଆଲୋଚନା ମାଧ୍ୟମରେ ତାଙ୍କୁ ମାଧ୍ୱଗୌଡ଼ୀୟଦ୍ୱୈତ ଭାବରେ ପରିବର୍ତ୍ତିତ କଲେ । ତାଙ୍କ ଭାଇ ପ୍ରବୋଧାନନ୍ଦ ସରସ୍ୱତୀଙ୍କୁ ମଧ୍ୟ ବେଦାନ୍ତର ଦ୍ୱୈତ ମତ ଶିକ୍ଷା ଦେଲେ । ଯାହା ଫଳରେ ସେ ପରେ ବୃନ୍ଦାବନ ଆସି ବୃନ୍ଦାବନ ମାହାତ୍ମ୍ୟ ରଚନା କଲେ । ତାଙ୍କର ସମାଧି ଏବେ ବୃନ୍ଦାବନ ଧାମର କାଳିଦହଘାଟ ଠାରେ ବିଦ୍ୟମାନ । ମହାପ୍ରଭୁ ଭେଙ୍କଟ ଭଟ୍ଟଙ୍କ ବାଳକ ପୁତ୍ର ଗୋପାଳ ଭଟ୍ଟଙ୍କୁ କୃଷ୍ଣପ୍ରେମ ଦାନ କଲେ ଓ ତାଙ୍କୁ ପ୍ରଥମେ ନୀଳାଚଳ ଓ ପରେ ବୃନ୍ଦାବନ ଆସିବାକୁ ନିର୍ଦ୍ଦେଶ ଦେଲେ ।

ଶ୍ରୀମାନ୍ ମହାପ୍ରଭୁ ପହଞ୍ଚିଲେ ମଦୁରାଇ, ରାମେଶ୍ୱରମ୍, କନ୍ୟାକୁମାରୀ ଦେଇ ପଣ୍ଢରପୁର ଧାମରେ । ଦର୍ଶନ କଲେ ଶ୍ରୀ ବିଠଲନାଥ । ଖୋଜିଲେ ତାଙ୍କ ବଡ଼ ଭାଇ ବିଶ୍ୱରୂପଙ୍କୁ । ସେତେବେଳକୁ ବିଶ୍ୱରୂପ ଦେହ ତ୍ୟାଗ କରି ସାରିଥାଆନ୍ତି । ଫେରି ଆସିଲେ ପୁରୁଷୋତ୍ତମ ଧାମ । ପୁଣି ଚାଲିଲେ ବୃନ୍ଦାବନ ଧାମ ଅଭିମୁଖେ । ଭକ୍ତମାନେ କିନ୍ତୁ ତାଙ୍କ ପାଗଳ ଅବସ୍ଥା ଦେଖି ତାଙ୍କୁ ବୃନ୍ଦାବନ ନ ନେଇ ନେଲେ ନଦିଆ ନବଦ୍ୱୀପ ଧାମକୁ । ଠାକୁରଙ୍କୁ ଯମୁନା ନଦୀ ଦେଖନ୍ତୁ ବୋଲି କହିଲେ । ଠାକୁର କିନ୍ତୁ ଓଲଟି ଗଙ୍ଗାନଦୀକୁ କାହିଁକି ଯମୁନା କହୁଛ ବୋଲି ବ୍ୟଙ୍ଗ ହାଣିଲେ । ସେ ଯାହା ହେଉ ମହାପ୍ରଭୁ ତାଙ୍କର ନିତ୍ୟ ପାର୍ଷଦ ରୂପ ଓ ସନାତନଙ୍କୁ ବିଧର୍ମୀ ସୁଲତାନ ସେବା ତ୍ୟାଗ କରି ପ୍ରଥମେ ନୀଳାଚଳ ପରେ ବୃନ୍ଦାବନ ଆସିବାକୁ କହି ପୁରୀ ଫେରି ଆସିଲେ ।

ଏଥର କେବଳ ଜଣେ ମାତ୍ର ସେବକ ବଳଭଦ୍ରଙ୍କୁ ସାଙ୍ଗରେ ଧରି ବୃନ୍ଦାବନ ଧାମ ଚାଲିଲେ । କାଶୀଠାରେ ଭେଟିଲେ ରୂପ ଗୋସ୍ୱାମୀଙ୍କୁ । ତାଙ୍କ ହୃଦୟରେ

ପ୍ରେମ ସଞ୍ଚାର କରି ବୃନ୍ଦାବନ ପଠାଇଲେ ଭକ୍ତି ଗ୍ରନ୍ଥ ରଚନା, ଲୁପ୍ତ ତୀର୍ଥ ଉଦ୍ଧାର ଏବଂ ମନ୍ଦିର ନିର୍ମାଣ ଆଦି କୃଷ୍ଣସେବା କର୍ମାନୁଷ୍ଠାନ ନିମିତ୍ତ । ତୀର୍ଥ ରାଜ ପ୍ରୟାଗଠାରେ ପରମବୈଷ୍ଣବ ତପନ ମିଶ୍ରଙ୍କ ଆତିଥ୍ୟ ଗ୍ରହଣ କଲେ । ଦଶହଜାର ଶିଷ୍ୟଙ୍କୁ ଅଦ୍ୱୈତ ବେଦାନ୍ତ ପଢ଼ାଉଥିବା ପ୍ରକାଶାନନ୍ଦ ସରସ୍ୱତୀଙ୍କୁ ଦ୍ୱୈତ ଜ୍ଞାନର ମାହାତ୍ମ୍ୟ ବୁଝାଇ ଭକ୍ତିମାର୍ଗ ଦର୍ଶନ କରାଇଲେ ।

## ଶ୍ରୀବୃନ୍ଦାବନ ଧାମ ଲୀଳା

ସନ ୧୫୧୫ମସିହାରେ ଶ୍ରୀ ଚୈତନ୍ୟ ଦେବ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ପହଞ୍ଚିଲେ ଶ୍ରୀଧାମ ବୃନ୍ଦାବନରେ । ମଥୁରାର ଜଣେ ବ୍ରାହ୍ମଣଙ୍କ ଘରେ ବିଶ୍ରାମ ନେଲେ । ପରଦିନ ଗଲେ ଅକ୍ରୂର ବୈଠକ ବା ଅକ୍ରୂର ତୀର୍ଥ ଯେଉଁଠାରେ ଅକ୍ରୂର ଭଗବାନଙ୍କ ଚରଣ ଚିହ୍ନ ଦର୍ଶନ କରି ସେଇ ରଜରେ ଲୋଟପୋଟ ହୋଇଯାଇଥିଲେ । ମହାପ୍ରଭୁ ସେହି ସ୍ଥାନରେ ରହି କ୍ରମେ ବୃନ୍ଦାବନର ଇମଲି ତାଲା ଘାଟ, ବଂଶୀବଟ, ଶୃଙ୍ଗାରବଟ, ଅଦ୍ୱୈତ ବଟ, ଗୋପୀଶ୍ୱର ମନ୍ଦିର, କେଶୀ ଘାଟ ଇତ୍ୟାଦି ଚିହ୍ନଟ କଲେ ତାଙ୍କ ଭକ୍ତମାନଙ୍କୁ । ବଲ୍ଲଭ ଆଚାର୍ଯ୍ୟଙ୍କୁ ବାତ୍ସଲ୍ୟପ୍ରେମ ଓ ମଧୁର ପ୍ରେମର ତାରତମ୍ୟ କଥା ବୁଝାଇଦେଲେ ।

ବ୍ରଜମଣ୍ଡଳ ମଧ୍ୟରେ ଦର୍ଶନ କଲେ ବର୍ଷାଣା ଧାମ, ନନ୍ଦଗ୍ରାମ, ଗିରିଗୋବର୍ଦ୍ଧନ, ମୁଖାରବିନ୍ଦ, ମାନସୀ ଗଙ୍ଗା ସହିତ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ । ସେତେବେଳେ ସମଗ୍ର ବ୍ରଜମଣ୍ଡଳ ଘନ ଜଙ୍ଗଲ କଣ୍ଟା ବୁଦା ପୂର୍ଣ୍ଣ ଥିଲାବେଳେ ଆଜିର ରାଧାକୁଣ୍ଡ, ଶ୍ୟାମକୁଣ୍ଡ ଦୁଇଟି ଧାନ କିଆରୀ ସହିତ ଦୁଇଟି ସାନ ସାନ କୁଣ୍ଡ ମାତ୍ର ଥିଲେ । ନାମ କିନ୍ତୁ ଥିଲା ଶ୍ୟାମ କୁଣ୍ଡର କାଳି କିଆରୀ ଓ ରାଧାକୁଣ୍ଡର ନାମ ଥିଲା ଗୌରୀ କିଆରୀ । ପରିଶେଷରେ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଫେରି ଆସିଲେ ଶ୍ରୀକ୍ଷେତ୍ର ପୁରୀ ଧାମକୁ ।

## ଅଠର ବର୍ଷ ପୁରୁଷୋତ୍ତମ ଧାମ (ଗମ୍ଭୀରା) ଲୀଳା

ପୁରୀରେ ଗଜପତି ରାଜାଙ୍କ କୁଳ ପୁରୋହିତ ବୈଷ୍ଣବ ଭକ୍ତ କାଶୀ ମିଶ୍ର ଆଳୟକୁ ସେତେବେଳେ ଗମ୍ଭୀରା କୁହାଯାଉଥିଲା । ମହାପ୍ରଭୁ ତାଙ୍କ ପାରିଷଦ ମାନଙ୍କ ସହିତ ସେଠାରେ ଜ୍ଞାନ ଆଲୋଚନା, ପ୍ରବଚନ ସହିତ ଅହୋରାତ୍ର ଦୀପ ପ୍ରଜ୍ୱଳନ ଓ ଅଖଣ୍ଡ ନାମ ସଂକୀର୍ତ୍ତନ ଯଜ୍ଞର ଶୁଭାରମ୍ଭ କଲେ । ଦୂର ଦୁରାନ୍ତରୁ ଅଗଣିତ ଭକ୍ତ ଆସିଲେ । କୃଷ୍ଣପ୍ରେମର ସୁଖ ଚାଖିଲେ । କୃଷ୍ଣନାମ, କୃଷ୍ଣଲୀଳା କୀର୍ତ୍ତନରେ ଅପୂର୍ବ ସ୍ୱାଦ ଅନୁଭବ କଲେ । ମତୁଆଲା ହେଲେ । ଶହ ଶହ ବର୍ଷ ଧରି ଚାଲୁଥିବା ସେଇ

ସଂକୀର୍ତ୍ତନ ଯଜ୍ଞର ସ୍ୱାଦ ଆଜି ମଧ୍ୟ ଉତ୍କଳର ପୁର, ପଲ୍ଲୀମାନଙ୍କରେ ଧ୍ୱନିତ ହେଉଛି । ପୁରୀ ଗଜପତିଙ୍କ ରାଜ୍ୟ ରାଜମହେନ୍ଦ୍ରୀରୁ ପ୍ରଧାନମନ୍ତ୍ରୀ ପଦ ଛାଡ଼ି ରାୟରାମାନନ୍ଦ ପୁରୀ ଗମ୍ଭୀରାରେ ପହଞ୍ଚିଲେ । ସ୍ୱରୂପ ଦାମୋଦର, ଭକ୍ତ ଗଦାଧର, ସନାତନ ଗୋସ୍ୱାମୀ, ଗୋପାଳଭଟ୍ଟ ଗୋସ୍ୱାମୀ, ରଘୁନାଥ ଦାସ ଗୋସ୍ୱାମୀ ମଧ୍ୟ ଆସନ୍ତି । କୃଷ୍ଣ ପ୍ରେମ ରସ ହୃଦୟରେ ଧରି ସଂକୀର୍ତ୍ତନ ପ୍ରଚାର ପ୍ରସାର ପାଇଁ ବଙ୍ଗଳା, ବିହାର, ବୃନ୍ଦାବନ ଆଦି ଯାଆନ୍ତି ।

ସେତେବେଳେ ଜଗନ୍ନାଥ ଧାମରେ ଜ୍ଞାନ ମିଶ୍ରା ଭକ୍ତିର ଆଦର ବେଶୀ ଥାଏ । ପଞ୍ଚ ସଖାମାନଙ୍କ ମଧ୍ୟରେ ମୁଖ୍ୟ ଓଡ଼ିଆ ଭାଗବତ ଲେଖକ ଶ୍ରୀଜଗନ୍ନାଥ ଦାସ ଶ୍ରୀମନ୍ଦିରର ବଟ ଗଣେଶଙ୍କ ପାଖରେ ଭାଗବତ ଶୁଣାନ୍ତି ବୈଷ୍ଣବ ଭକ୍ତମାନଙ୍କୁ । ଶ୍ରୀମନ୍ ମହାପ୍ରଭୁଙ୍କ ବଙ୍ଗଳାରୁ ଆନୀତ ଗୌଡ଼ୀୟ ବୈଷ୍ଣବମାନେ କିନ୍ତୁ ଜ୍ଞାନ ଶୂନ୍ୟା ଭକ୍ତିର ପ୍ରଚାରକ ଥିଲେ । ଗୌଡ଼ୀୟ ବୈଷ୍ଣବମାନେ ଉତ୍କଳୀୟ ବୈଷ୍ଣବମାନଙ୍କ ଢ଼ଙ୍ଗ, ରଙ୍ଗ, ମତବାଦକୁ ନାପସନ୍ଦ କଲେ । ମହାପ୍ରଭୁଙ୍କୁ ସାଙ୍ଗରେ ନେଇ ନବଦ୍ୱୀପ ଫେରିବାକୁ ବାହାରିଲେ । ଆଶ୍ଚର୍ଯ୍ୟର କଥା ମହାପ୍ରଭୁ କିନ୍ତୁ ଶ୍ରୀଜଗନ୍ନାଥ ଦାସଙ୍କୁ ଛାଡ଼ିବାକୁ ରୋକଠୋକ ମନା କରିଦେଲେ । ଫଳରେ ସେମାନେ ପୁରୀ ଛାଡ଼ି ନବଦ୍ୱୀପ ଚାଲିଗଲେ । ଶ୍ରୀ ଚୈତନ୍ୟଦେବଙ୍କ ନିର୍ଦ୍ଦେଶରେ ସେମାନେ ସମସ୍ତେ କିନ୍ତୁ ପ୍ରତିବର୍ଷ ଗୁଣ୍ଡିଚା ରଥଯାତ୍ରାକୁ ଆସନ୍ତି । ସଂକୀର୍ତ୍ତନ ରସ ଆସ୍ୱାଦନ କରି କରାଇ ପୁଣି ବାହୁଡ଼ା ଯାତ୍ରା ପରେ ନବଦ୍ୱୀପ ଫେରି ଯାଆନ୍ତି । ବର୍ଷକୁ ବର୍ଷ ଏହି ଲୀଳା ଚାଲୁ ରହିଲା ।

**ବ୍ରଜମଣ୍ଡଳ ବା ବୃନ୍ଦାବନ ପରିକ୍ରମାର ଶୁଭାରମ୍ଭ**

ଗୋସ୍ୱାମୀମାନଙ୍କ ମଧ୍ୟରେ ପ୍ରଥମେ ଶ୍ରୀ ଲୋକନାଥ ଗୋସ୍ୱାମୀ, ଭୁଗର୍ଭ ଗୋସ୍ୱାମୀ ଓ ଶ୍ରୀନିବାସ ଆଚାର୍ଯ୍ୟ ଆଦି ବୃନ୍ଦାବନରେ ପହଞ୍ଚି ଜୀବ ଗୋସ୍ୱାମୀଙ୍କ ଆଦେଶରେ ଚଉରାଅଶୀ କୋଶ ପରିକ୍ରମା ଆରମ୍ଭ କରିଥିଲେ । ପରେ ପରେ ପରିକ୍ରମା ସମ୍ବନ୍ଧୀୟ ବିଧି ବିଧାନ ଖଞ୍ଜା ଯାଇଥିଲା । ଯାହା ଫଳରେ ଆଜି ସେହି ବ୍ରଜ ପରିକ୍ରମାରେ ହଜାର ହଜାର ଭକ୍ତ ଲାଭ ଉଠାଉଛନ୍ତି ।

**ଲୀଳା ସମ୍ବରଣ ପର୍ବ**

ଶ୍ରୀମନ୍ ମହାପ୍ରଭୁ ଉତ୍କଳର ଶ୍ରୀ ପୁରୁଷୋତ୍ତମ ଧାମରେ ୧୫୩୪ମସିହାରେ ଅପ୍ରକଟ ହୋଇଗଲେ । ତାଙ୍କର ଚିନ୍ମୟ ଦେହର ଏକ ଅଂଶ କଳିଯୁଗର ଦାରୁବ୍ରହ୍ମ ଅବତାର ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଶ୍ରୀ ଅଙ୍ଗରେ ବିଲୀନ ହେଲେ । ପୁଣି ଅନ୍ୟ ଏକ

ଅଂଶରେ ସେ ସେହି ପୁରୀ ଧାମର ଟୋଟାଗୋପୀନାଥଙ୍କ ବିଗ୍ରହ(ତାଙ୍କର ଅତି ପ୍ରିୟ ଭକ୍ତ ଶ୍ରୀ ଗଦାଧର ପଣ୍ଡିତଙ୍କ ସେବିତ) ରେ ବିଶ୍ରାମ ଲାଭ କଲେ । ସେଇ ବିଗ୍ରହରେ ଆଜି ମଧ ତାଙ୍କ ସେବକ ତାଙ୍କ ପ୍ରବେଶର ସଙ୍କେତ(ଦାଗ) ଦେଖାଇ ଥାଆନ୍ତି ବିଶ୍ୱାସୀ ଗୌରଭକ୍ତମାନଙ୍କୁ । ଗୌରଲୀଳାର ଅବଶିଷ୍ଟାଂଶ ଲୀଳା ସଂକୀର୍ତ୍ତନ ଆକାରରେ ଶ୍ରୀ ଶ୍ରୀ ଜଗଦଗୁରୁ କୃପାଳୁଜୀ ମହାରାଜ ପରିବେଷଣ କଲେ ବିଂଶ-ଏକବିଂଶ ଶତାବ୍ଦୀରେ ସନ ୨୦୧୩ମସିହା ପର୍ଯ୍ୟନ୍ତ ।

ଭକ୍ତ-ଭକ୍ତି-ଭଗବାନ-ଗୁରୁଦେବଙ୍କ ଜୟ ହେଉ ।

## ୩. ବିଶ୍ୱନାଥ ଚକ୍ରବର୍ତ୍ତୀ(ବୃନ୍ଦାବନ)

ପ୍ରଶ୍ନ-୭୫: ଶ୍ରୀମଦ୍ ଭାଗବତ ଗ୍ରନ୍ଥର ଅଚିନ୍ତ୍ୟ ଭେଦାଭେଦ ମୂଳକ ଟୀକା କିଏ ପ୍ରଣୟନ କରି ଶ୍ରୀବୃନ୍ଦାବନ ଧାମର ଗୌରବ ବୃଦ୍ଧି କରିଥିଲେ ?

ଉ. ପଶ୍ଚିମବଙ୍ଗର ନଦିଆ ଜିଲାରେ ଦେବ ଗ୍ରାମରେ ୧୬୨୬ଖ୍ରୀଷ୍ଟାବ୍ଦରେ ଜନ୍ମ ନେଇଥିଲେ ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ ପାଦ । ସେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ପ୍ରସିଦ୍ଧ ରାଗାନୁଗା ସଂକୀର୍ତ୍ତନ ପ୍ରିୟ ଭକ୍ତ ନରୋତ୍ତମ ଠାକୁରଙ୍କର ଚତୁର୍ଥ ପୁରୁଷ । ଜଣେ ଅତ୍ୟନ୍ତ ଉଚ୍ଚକୋଟୀର ବୈଷ୍ଣବ । ସଂସ୍କୃତ ଲିଖିତ ଶ୍ରୀମତ୍ ଭାଗବତ ଗ୍ରନ୍ଥଙ୍କର ଶ୍ରୀଧର ସ୍ୱାମୀଙ୍କ ବିଶେଷ ବିଶ୍ଳେଷଣ ମୂଳକ ସାରାର୍ଥ ଦର୍ଶନୀ ଟୀକା ଏହି ମହାଶୟଙ୍କ ଅମୂଲ୍ୟ ଅବଦାନ । ସେ ଶୈଶବ କାଳରୁ ସଂସାର ଭୋଗ ବିଳାସ ବିମୁଖ ଉଦାସୀନ ଥିଲେ । ସଂସ୍କୃତ ଭାଷାରେ କିନ୍ତୁ ପ୍ରବଳ ଅନୁରାଗୀ । ବାଳକ ଅବସ୍ଥାରୁ କଠିନ ବ୍ୟାକରଣ ଓ ଅଳଙ୍କାର ଶାସ୍ତ୍ର ଅଧ୍ୟୟନରେ ଥିଲା ତାଙ୍କର ଅସାମାନ୍ୟ ଅଗ୍ରହ । ଛାତ୍ର ଅବସ୍ଥାରେ ନଦିଆ ନବଦ୍ୱୀପର ଜଣେ ବିଖ୍ୟାତ ସଂସ୍କୃତ ପଣ୍ଡିତଙ୍କୁ ବ୍ୟାକରଣ ଓ ଅଳଙ୍କାର ଶାସ୍ତ୍ରରେ ତର୍କ କରି ହରାଇ ଦେଇଥିଲେ ସେ ।

ଗୁରୁ ଗୃହରେ ରହି ଶ୍ରୀମଭାଗବତ ଅଧ୍ୟୟନ କଲା ବେଳେ ଗୁରୁଦେବ ତାଙ୍କଠାରେ ଅଚିନ୍ତ୍ୟ ଅଲୌକିକ ଶକ୍ତି ଦର୍ଶନ କରି ଗଭୀର ପ୍ରଭାବିତ ହୋଇଥିଲେ । ଦିନେ ସେ ଗୁରୁ ଗୃହ ଅଗଣାରେ ବସି ଭାଗବତ ଗ୍ରନ୍ଥ ଉପରେ କିଛି ଲେଖା ଲେଖୁ ଥାଆନ୍ତି । ହଠାତ୍ ପ୍ରବଳ ବର୍ଷା ଆସିଗଲା । ସେ ଲେଖାରେ ସଂପୂର୍ଣ୍ଣ ତନ୍ମୟ ତତ୍ଲୀନ ଥାଆନ୍ତି । ଗୁରୁଦେବ ବାହାରକୁ ଆସି ଦେଖନ୍ତି ଅଗଣାରେ ବର୍ଷା ଢ଼ାଳୁଛି । ତାଙ୍କର ଏହି ଶିଷ୍ୟ ଦେହରେ କିନ୍ତୁ ଟୋପାଏ ଜଳ ପଡୁ ନାହିଁ । ଲେଖା କାଗଜ ଓଦା ହେଉ ନାହିଁ । ବର୍ଷା ଜଳ ତାଙ୍କ ଦେହ କିମ୍ବା ଲୁଗାକୁ ସ୍ପର୍ଶ ନ କରି ନିମ୍ନକୁ ଗଡ଼ି ଚାଲିଛି ।

ଗୁରୁଦେବ ଦୌଡ଼ିଯାଇ ପ୍ରିୟ ଶିଷ୍ୟ ବିଶ୍ୱନାଥଙ୍କୁ ଆଲିଙ୍ଗନ କରି ବୃନ୍ଦାବନ ଧାମର ଜଣେ ମହାପୁରୁଷ ହେବାକୁ ଆଶିର୍ବାଦ କରିଥିଲେ ।

ଅଳ୍ପ ବୟସରେ ପିତାମାତା ପୁତ୍ରର ବିଷୟ ବୈରାଗ୍ୟ ଦେଖି ଆତଙ୍କିତ ହେଲେ । ଗଳାରେ ଛନ୍ଦି ଦେଲେ ସୁନ୍ଦରୀ ବଙ୍ଗାଳୀ କନ୍ୟାଟିଏ । ସେଥିରେ ବିଶ୍ୱନାଥଙ୍କର ସଂସାର ବୈରାଗ୍ୟ ଅଗ୍ନିର ଦୀପ ଶିଖା କାହିଁକି ଅବା ଲିଭନ୍ତା ? ଘରଦ୍ୱାର, ପିତାମାତା, ବିବାହିତା ସୁନ୍ଦରୀ ଯୁବତୀ ପତ୍ନୀର ସକଳ ଆକର୍ଷଣ ତ୍ୟାଗ କରି ସେ ଚାଲିଲେ ଶ୍ରୀବୃନ୍ଦାବନ ଧାମ । ରାଧାକୁଣ୍ଡ ତଟରେ ସେତେବେଳ ପ୍ରସିଦ୍ଧ କୃଷ୍ଣଦାସ ବାବାଜୀଙ୍କ କୁଟୀରରେ ଆଶ୍ରୟ ନେଲେ । ତାଙ୍କ ଠାରୁ କୃଷ୍ଣ ମନ୍ତ୍ର, ସହିତ ନାମ ଦୀକ୍ଷା ନେଲେ । ବ୍ରତ, ଉପବାସ, ବୈଷ୍ଣବ ସେବା ସହିତ ତାଙ୍କ ଭକ୍ତି ସାଧନାରେ ଦିନକୁ ଦିନ ଅଗ୍ରସର ହେଉଥାଆନ୍ତି । ଗୁରୁଦେବଙ୍କ ଆଶିର୍ବାଦରୁ ସକଳ ଗୋସ୍ୱାମୀ ଗ୍ରନ୍ଥମାନଙ୍କର ଗମ୍ଭୀର ଅଧ୍ୟୟନ କରିପାରିଲେ । ପ୍ରଥମେ ହରି ବଲ୍ଲଭ ବୋଲି ଛଦ୍ମ ନାମରେ ସେ ତାଙ୍କ ଲେଖାମାନ ପ୍ରକାଶ କଲେ । ପରେ ବ୍ରଜବାସୀମାନେ ଚିହ୍ନିଗଲେ ତାଙ୍କୁ । ସେବା, ଆଦର ଯତ୍ନରେ ଅଭାବ ହେଲାନି ବିଶ୍ୱନାଥଙ୍କର ।

ଶ୍ରୀରାଧା ଗୋକୁଳାନନ୍ଦ ବିଗ୍ରହ ସ୍ଥାପନା କରି ଅତ୍ୟନ୍ତ ଶ୍ରଦ୍ଧା ବିଶ୍ୱାସର ସହିତ ସେ ତାଙ୍କ ଆରାଧନାରେ ଲାଗି ପଡ଼ିଲେ । ତତ୍‌କାଳୀନ ବ୍ରଜମଣ୍ଡଳରେ ବିଦ୍ୱତ୍ ସମାଜରେ ତାଙ୍କର ଖ୍ୟାତି ଦିନକୁ ଦିନ ବୃଦ୍ଧି ପାଇଲା । ସେମାନଙ୍କ ଆଦେଶରେ ସେ ଗ୍ରନ୍ଥରାଜ ସାରାର୍ଥ ଦର୍ଶନୀ ଭାଗବତଟୀକା ଲେଖିଲେ । ଶ୍ରୀ ବୃନ୍ଦାବନର ଗୋସ୍ୱାମୀ ସମାଜ ତାଙ୍କୁ ଭକ୍ତମଣ୍ଡଳୀ ମଧ୍ୟରେ ଚକ୍ରବର୍ତ୍ତୀ (ସର୍ବଶ୍ରେଷ୍ଠ) ବୋଲି ଉପାଧି ପ୍ରଦାନ କଲେ । ଜୀବନର ଶେଷ ଭାଗରେ ସେ ଯମୁନା କୂଳରେ କେଶୀଘାଟ ନିକଟରେ ଭଜନ କୁଟୀର (ଆଜିର ଶ୍ରୀ ଗୋକୁଳାନନ୍ଦ ମନ୍ଦିର) ସ୍ଥାପନ କରିଥିଲେ । ଶ୍ରୀମନ୍ ମହାପ୍ରଭୁଙ୍କ ପ୍ରଣୀତ ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱର ସର୍ବୋଚ୍ଚ ବିକାଶ ତାଙ୍କ ମସ୍ତିଷ୍କ ଓ ହୃଦୟ ଉଭୟରେ ହୋଇପାରିଥିଲା ।

ଶ୍ରୀ ଚକ୍ରବର୍ତ୍ତୀ ପାଦଙ୍କର ଅଗଣିତ ଶିଷ୍ୟମାନଙ୍କ ମଧ୍ୟରେ ଜଣେ ଶ୍ରେଷ୍ଠ ଶିଷ୍ୟର ନାମ ଶ୍ରୀ ବଳଦେବ ବିଦ୍ୟାଭୂଷଣ । ଶ୍ରୀମତ୍ ଭଗବତ ଗୀତା, ଦଶ ଉପନିଷଦ ଓ ବେଦାନ୍ତ ଗ୍ରନ୍ଥର ଭାଷ୍ୟ ରଚନା ନ କରିପାରିଲେ ତାହା ପଣ୍ଡିତ ମଣ୍ଡଳୀଦ୍ୱାରା ଏକ ସ୍ୱତନ୍ତ୍ର ପରମ୍ପରା ବା ବାଦ ଭାବରେ ସ୍ୱୀକୃତ ହେଉ ନଥିଲା । ସେହି କାରଣରୁ ରାଜସ୍ଥାନ ଜୟପୁରରେ ଶ୍ରୀରାଧା ଗୋବିନ୍ଦ ବିଗ୍ରହଙ୍କୁ ଗୌଡ଼ୀୟ ବୈଷ୍ଣବମାନଙ୍କୁ ପୂଜା

ଅଧିକାର ଦେବାକୁ କୁଣ୍ଠିତ ହେଉଥିଲେ ଶ୍ରୀବଲ୍ଲଭ ସଂପ୍ରଦାୟର ଆଚାର୍ଯ୍ୟମାନେ । ଶ୍ରୀ ଚକ୍ରବର୍ତ୍ତୀ ମହାଶୟ ନିଜର ଏହି ପ୍ରିୟ ଶିଷ୍ୟଙ୍କୁ ଜୟପୁର ପଠାଇଲେ । ତାଙ୍କ ଦ୍ୱାରା ବେଦାନ୍ତ ଓ ଗୀତା ଗ୍ରନ୍ଥଙ୍କର ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱମୂଳକ ଭାଷ୍ୟ ରଚନା କରାଇ ଅତି ଅଳ୍ପ ବୟସରେ ନିଜ ଶିଷ୍ୟଙ୍କୁ ମଧ୍ୟ ଅମର କରାଇଥିଲେ । ସେ ନିଜେ ମଧ୍ୟ ଅନେକ ଅବୋଧ୍ୟ ଗ୍ରନ୍ଥମାନଙ୍କର ସରଳ ଟୀକା, ଟିପ୍‌ପଣୀ, ଭାଷ୍ୟ ଆଦି ରଚନା କରିଥିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ଶ୍ରୀମଭାଗବତଙ୍କର ବିଶାଳ ରସାଳ ସାରାର୍ଥ ଦର୍ଶନୀ ଟୀକା । ଗୀତାଙ୍କର ସାରାର୍ଥ ବର୍ଷିଣୀ ଟିକା । ବ୍ରହ୍ମସଂହିତା ଟୀକା । ପୁଣି ଦାନ କେଳି କୌମୁଦୀ ଟୀକା, ସ୍ତବାମୃତ ଲହରୀ, ଅଳଙ୍କାର କୌସ୍ତୁଭ ଉପରେ ସୁବୋଧିନୀ ଟୀକା ଇତ୍ୟାଦିଙ୍କ ସହିତ ଅନେକ ମୂଲ୍ୟବାନ ମୌଳିକ ଭକ୍ତି ଅମୃତ ଗ୍ରନ୍ଥ ରଚନା ମଧ୍ୟ ସେ ଛାଡ଼ିଯାଇଛନ୍ତି ।

ସାହିତ୍ୟ ସାଧନା କରୁ କରୁ ଠାକୁର ପୂଜାରେ ସେ ଆଦୌ ଅବହେଳା କରି ନାହାନ୍ତି । ତାଙ୍କର ସେବିତ ବିଗ୍ରହଙ୍କର ନାମ ଦେଇଥିଲେ ସେ ରାଧା ଗୋକୁଳାନନ୍ଦ ।

ଶ୍ରୀବୃନ୍ଦାବନ ଧାମର ଶ୍ରୀରାଧାରମଣ ଘେରା ନିକଟରେ ତାଙ୍କର ସେବିତ ବିଗ୍ରହ, ତାଙ୍କର ସମାଧି ଥିବା ପବିତ୍ର ଧାମଟି ଏବେ ଶ୍ରୀରାଧା ଗୋକୁଳାନନ୍ଦ ମନ୍ଦିର ରୂପରେ ଦର୍ଶନୀୟ । ପୁରୁଷାନୁକ୍ରମେ ଅଗଣିତ ଓଡ଼ିଆ ବଙ୍ଗାଳୀ ବୈଷ୍ଣବଗଣ ସେଇ ସ୍ଥାନରେ ସାଧନା କରି ଆସୁଛନ୍ତି । ୧୭୧୮ ମସିହାରେ ପବିତ୍ର ଶ୍ରୀ ପଞ୍ଚମୀ ତିଥିରେ ସେ ସେହି ମଠରେ ଥାଇ ଲୀଳା ପ୍ରବେଶ କରିଥିଲେ ।

## ୪. ଶ୍ରୀ ସିଦ୍ଧ କୃଷ୍ଣଦାସ ବାବାଜୀ(ଗୋବର୍ଦ୍ଧନ)

ପ୍ରଶ୍ନ-*୭୬*: ଅତୀତରେ ଅନେକ ବୈଷ୍ଣବ ଓଡ଼ିଶାରୁ ଯାଇ ବୃନ୍ଦାବନ ଧାମରେ ରହି ଉତ୍କଳମାତାଙ୍କର ଅଶେଷ ଗୌରବ ବର୍ଦ୍ଧନ କରିଛନ୍ତି । ପ୍ରାୟ ଦୁଇଶହ ବର୍ଷ ତଳେ ସେହିଭଳି ଜଣେ ଓଡ଼ିଆ ବୈଷ୍ଣବ ଗିରିଗୋବର୍ଦ୍ଧନର ଗୋବିନ୍ଦକୁଣ୍ଡ ନିକଟରେ ସିଦ୍ଧ କୃଷ୍ଣଦାସ ବାବା ନାମରେ ସିଦ୍ଧି ବା ଚମତ୍କାର ପ୍ରଦର୍ଶନରେ ଅତ୍ୟନ୍ତ ବିଖ୍ୟାତ ହୋଇଥିଲେ । ଭକ୍ତି ଧର୍ମରେ ମୁକ୍ତି ଓ ସିଦ୍ଧିକୁ ଦୂର ଦୂର ମାର ମାର କରନ୍ତି । କୃଷ୍ଣଦାସ ବାବାଜୀଙ୍କୁ କିନ୍ତୁ ସିଦ୍ଧ ମହାତ୍ମା କହିବା ପଛରେ କ'ଣ କାରଣ ଥାଇପାରେ ?

ଉ. ଭକ୍ତି ଧର୍ମରେ ଏହା ଏକ ଅତ୍ୟନ୍ତ ରହସ୍ୟଜନକ କଥା । ଯୋଗମାର୍ଗର ସିଦ୍ଧିକାମୀ ସାଧକମାନେ ଧ୍ୟାନ କରି କରି କିଛି ସିଦ୍ଧି ପ୍ରାପ୍ତ ହେଲେ ତାର ଖୁବ୍ ଧେଣ୍ଡୁରା ପିଟନ୍ତି । ସେସବୁର ପ୍ରଦର୍ଶନ କରି ଲୋକଙ୍କୁ ଉଦ୍‌ବିଗ୍ନ କରନ୍ତି । ଶୁଦ୍ଧ ମନ ବୁଦ୍ଧି ଥିବା

ବୈଷ୍ଣବମାନଙ୍କୁ ଶ୍ରୀରାଧାରାଣୀ ଅଯାଚିତ ଭାବରେ ନ ମାଗିଲେ ମଧ୍ୟ ସିଦ୍ଧିମାନଙ୍କୁ ଯୋଗାଇ ଦିଅନ୍ତି ସାଧୁଙ୍କ ସେବା କରିବା ନିମିତ୍ତ । ବୈଷ୍ଣବମାନେ ଆଦୌ ଚାହାନ୍ତି ନାହିଁ ସେହି ସବୁ ସିଦ୍ଧିକୁ ଆଶ୍ରୟ କରି ନିଜେ ଭୋଗରେ ମାତିବାକୁ । କୃଷ୍ଣଭକ୍ତ ସେବା କେବଳ ସେମାନଙ୍କର ଏକମାତ୍ର ଆଶ୍ରୟ । ଉଦ୍ଦେଶ୍ୟ ମଧ୍ୟ ।

## ଅଲୌକିକ ବଂଶଗାରିମା

ଆଜକୁ ପ୍ରାୟ ଦୁଇଶହ ବର୍ଷ ତଳେ ଓଡ଼ିଶା ନିବାସୀ ସନାତନ କାନୁନ୍‌ଗୋଙ୍କର ତିନି ପୁତ୍ର ହେଲେ । ସନାତନ ନରୋତ୍ତମ ଦାସ ଠାକୁରଙ୍କ ପରମ୍ପରା ଅନୁଗତ ପରମ ବୈଷ୍ଣବ ସାଧକ ଥିଲେ । ତାଙ୍କ ଦାହ ସଂସ୍କାରବେଳେ ତାଙ୍କ ପତ୍ନୀ ସ୍ୱାମୀଙ୍କ ଚିତାଗ୍ନିରେ ଜଳି ସ୍ୱେଚ୍ଛାରେ ସତୀ ହୋଇଯାଇଥିଲେ । ତା'ପୂର୍ବରୁ ତାଙ୍କ ତିନି ପୁତ୍ରଙ୍କୁ ଡ଼ାକି କିଛି କିଛି ଉପଦେଶ ଦେଇଥିଲେ । ସାନପୁଅ ବଟକୃଷ୍ଣଙ୍କୁ ଶ୍ରୀବୃନ୍ଦାବନ ଧାମ ଯାଇ ଭଜନ କରିବାକୁ କହିଥିଲେ । ତାଙ୍କ ଇଛା ଅନୁସାରେ ବଟକୃଷ୍ଣ (ଆଜିର ସିଦ୍ଧକୃଷ୍ଣ ଦାସ ବାବାଜୀ) ଅଳ୍ପ ବୃନ୍ଦାବନରେ ପହଞ୍ଚିଲେ । ଦୁଇବର୍ଷ ପରେ ଉଚ୍ଚତର ସାଧନା କରିବା ନିମିତ୍ତ ରାଜସ୍ଥାନ ଜୟପୁର ଚାଲିଗଲେ । ସେଠାକାର ମହାରାଜାଙ୍କ ଆଦେଶରେ ଶ୍ରୀ ଗୋବିନ୍ଦ ଦେବଙ୍କର ସେବା ପୂଜାର ସୁଯୋଗ ପାଇଲେ । ସେ ମହାଶୟ ଶ୍ରୀ ଗୋବିନ୍ଦ ଦେବଙ୍କ ପ୍ରସାଦ ଗ୍ରହଣ କରି ମଧ୍ୟ ଗମ୍ଭୀର ରୂପେ କାମ ପୀଡ଼ିତ ହେଲେ । କାମପୀଡ଼ାର କାରଣ ଜାଣିବାକୁ ସେ ଆସି ପହଞ୍ଚିଲେ ବ୍ରଜମଣ୍ଡଳର କାମ୍ୟବନସ୍ଥିତ ଶ୍ରୀଜୟକୃଷ୍ଣ ଦାସ ବାବାଜୀଙ୍କ ନିକଟରେ । ବୁଝିଲେ ଯେ କେବେ ବି ରାଜାଙ୍କର ଅନ୍ନ ଶୁଦ୍ଧ ନୁହେଁ । ସେ ଅନ୍ନର ସଂସ୍କାର ଦୂଷିତ । ଦୃଷ୍ଟାନ୍ତରେ କହିଲେ ଶ୍ରୀମନ୍ ମହାପ୍ରଭୁ କହିଥିଲେ **''ବିଷୟୀର ଅନ୍ନ ହୟ ରାଜସ ନିମନ୍ତ୍ରଣ ।''** ଠାକୁରଙ୍କ ପ୍ରସାଦ ହେଲେ ମଧ୍ୟ ଯଦି ତାହା ବିଷୟୀ ଲୋକର ଧନରେ ପ୍ରସ୍ତୁତ ତେବେ ତାହା ବୈଷ୍ଣବର ସର୍ବାଦୌ ବର୍ଜନୀୟ । ଏବେ ସନ୍ଦେହ ମୁକ୍ତ ହେଲେ ବାବାଜୀ ମହାଶୟ । ଆଉ ଜୟପୁର ଗଲେ ନାହିଁ । ନନ୍ଦଗାଁଓ ଦୋମନ ବନରେ ବସି ଭଜନ କୀର୍ତ୍ତନ ସହିତ ଗୁରୁଙ୍କ ଆଦେଶରେ ରାଧାକୃଷ୍ଣଙ୍କର ମାନସିକ ସେବାରେ ଲାଗିଲେ । ଦିନକରେ ଥରେ ସେ ମାଧୁକରୀ କରି ଅଟା କିଛି ଆଣନ୍ତି । ସେଥିରେ ନିମପତ୍ର ମିଶାଇ ଜଳଦେଇ ଚକଟନ୍ତି । କେତେବେଳେ କଞ୍ଚା ତ ପୁଣି କେତେବେଳେ ନିଆଁରେ ସେକି ସେବନ କରନ୍ତି । କିଛିଦିନ ପରେ ଉପଯୁକ୍ତ ଖାଦ୍ୟ ଅଭାବରେ ବାବା ଦୁର୍ବଳ ହୋଇଗଲେ । ଚକ୍ଷୁର ଦୃଷ୍ଟି ଶକ୍ତି ହରାଇ ବସିଲେ । ତାଙ୍କର ଠାକୁର ଭଜନ କିନ୍ତୁ ଅହରହ ଚାଲିଥାଏ ।

ଶ୍ରୀରାଧା ରାଣୀ ଦେଖିଲେ । ବାବାଙ୍କୁ ବୈରାଗ୍ୟ ପ୍ରସାଦ ସେବନ କରାଇଲେ । ବାବାଙ୍କର ଦୃଷ୍ଟି ଶକ୍ତି ମଧ୍ୟ ଫେରାଇଦେଲେ । ପୁଣି ବାବାଙ୍କୁ ସାକ୍ଷାତ୍‌ଦର୍ଶନ ମଧ୍ୟ ଦେଲେ । ଅଯାଚିତ ଆଶିର୍ବାଦ କଲେ । ଅମାପ ଶକ୍ତି ସଞ୍ଚାର ମଧ୍ୟ କଲେ । ଏଣିକି ବାବା ହେଲେ ସିଦ୍ଧ କୃଷ୍ଣଦାସ ବାବାଜୀ । ତାଙ୍କ ଅନିଛା ସତ୍ତ୍ୱେ ସିଦ୍ଧିଗୁଡ଼ିକ ତାଙ୍କ ଲୀଳାରେ ସ୍ୱତଃ ପ୍ରକଟିତ ହେଉଥିଲେ । କାରଣ ପାଖରେ କିଛି ଥାଉ କି ନଥାଉ ବୈଷ୍ଣବ ସେବା ଥିଲା ତାଙ୍କର ବ୍ରତ । ସିଦ୍ଧି ନହେଲେ ଚଳିବ କେମିତି ?

## ବ୍ରଜର ହୋଲି ଖେଳରେ ବାବାଜୀ

ଦିନକର କଥା । ନିଜ ଆଶ୍ରମରେ ବସି ହୋଲି ଖେଳର ମାନସିକ ଚିନ୍ତନ କରୁଥାନ୍ତି । ଚିତ୍ ଜଗତର ହୋରି ଖେଳରେ ପଶିଲେ ବାବା । ସେଠାରେ ଦିବ୍ୟ କସ୍ତୁରୀ, କୁଙ୍କୁମ, ପୁଷ୍ପ କଳିକା, ଚନ୍ଦନ ଇତ୍ୟାଦି ଅନ୍ୟମାନଙ୍କୁ ଫିଙ୍ଗିଲେ । ଦିନେ ରଙ୍ଗମାଡ଼ ଖାଇଲେ । ବେଳେବେଳେ ବାବାଜୀ ଆନନ୍ଦରେ ବାଃ ବାଃ ଶବ୍ଦ କରୁଥାଆନ୍ତି । ହାତ ଗୋଡ଼ ଏଣେ ତେଣେ ଛାଟୁ ଥାଆନ୍ତି । ଖେଳରୁ ବାହାରିଲେ ବାବା । ଧ୍ୟାନ ଭାଙ୍ଗିଲା । ଆଶ୍ରମର ଶିଷ୍ୟଗଣ ସାଧୁ ସନ୍ନ୍ୟାସୀମାନେ ତାଙ୍କ ଦେହର ସୁଗନ୍ଧରେ ମୋହିତ ହୋଇଗଲେ । ଏଣୁ ତେଣୁ ଗୁଡ଼େଇ ତୁଡ଼େଇ ପ୍ରଶ୍ନ କଲେ । ବାବା ହସି ହସି ସେ ସବୁ କେବଳ ରାଧାରାଣୀଙ୍କ କୃପା ବୋଲି କହି ନୀରବ ହୋଇଗଲେ ।

## ଅତର ଶିଶି ଖସି ପଡ଼ିଲା ହାତରୁ

ବାବା ଥରେ ମାନସୀ ଗଙ୍ଗାକୁ ସ୍ନାନ କରିବାକୁ ଆସି ପହଞ୍ଚିଲେ । କୂଳରେ ଠିଆ ହୋଇ ମାନସିକ ସେବାରେ ମଜ୍ଜିଗଲେ । ଚିନ୍ମୟ ଜଗତର ଲୀଳାରେ ପ୍ରବେଶ କରି ଦେଖିଲେ ଯେ ଲଳିତା ବିଶାଖା ଆଦି ସଖିମାନେ ପ୍ରିୟା-ପ୍ରିୟତମଙ୍କ ସାଧନ ସାମଗ୍ରୀ ଏକତ୍ର କରୁଛନ୍ତି । ସେ ତାଙ୍କ ହାତର ଅତର ଶିଶିକୁ ମଧ୍ୟ ବଢ଼ାଇ ଦେଲେ । ସେବାରେ ଲାଗୁ ବୋଲି । ଏଣେ ବାହାରେ ଲୋକେ ଦେଖିଲେ ବାବାଙ୍କ ହାତରୁ ଅତର ଶିଶି ଖସିପଡ଼ିଲାଣି । ଦର୍ଶକମାନେ ହାଃ ହାଃ କଲେ । ବାବାଙ୍କ ଧ୍ୟାନ ଭାଙ୍ଗିଗଲା । ଭକ୍ତମାନେ ପଚାରିଲେ ବାବାଙ୍କୁ, ଅତର ଶିଶି ପକାଇ ଦେବାର କାରଣ । କୃଷ୍ଣଦାସ ବାବା ହସି ହସି କହିଲେ, ''ଭାଇ, ମୁଁ ଅପଦାର୍ଥ । ଯୁଗଳ ସରକାରଙ୍କ ସେବାରେ ଲଗାଇ ପାରିଲିନି ଅତର ଟିକକ । ଧିକ୍ ମୋ ଜୀବନ ।'' ଭୌତିକ ଜଗତର ଲୋକେ କାହୁଁ ବୁଝିବେ ସିଦ୍ଧ ବାବାଙ୍କ ଚିତ୍‌ଜଗତର ଖେଳ କୌତୁକର ଭାଷା ! !

।। ଅପଣ୍ଡିତ ଦାମୋଦର ବଳୀୟାରସିଂହ ।।

## ମାନସୀ ଗଙ୍ଗାରେ ସାତ ଦିନ ସାତ ରାତି

ଆଉ ଦିନେ ବାବାଜୀ ପିତଳ ଗଡୁଟିଏ ଧରି ମାନସୀ ଗଙ୍ଗାଜଳରେ ବୁଡ଼ିଲେ । ଶିଷ୍ୟମାନେ ଦେଖିଲେ ବାବା ଆଉ ଉପରକୁ ଉଠୁ ନାହାନ୍ତି । ପାଳି କରି ଜଗି ବସିଲେ । ଦୀର୍ଘ ସାତ ଦିନ ପରେ ବାବା ଉଠିଲେ । ହାତରେ ଥାଏ ସେଇ ପିତଳ ଗଡୁ । ଶିଷ୍ୟ ମାନେ ପଚାରିଲେ ବାବାଙ୍କୁ ସାତ ଦିନ ଯାଏଁ ଥିଲେ କେଉଁଠି ? ବାବା ସିଧା ସଳଖ ଉତ୍ତର ଦେଲେ, ମୁଁ ପରା ହେଇ ସ୍ନାନ କରି ଉଠୁଛି । ଏ ଭିତରେ ତୁମେ ସାତଦିନ ବିତିଗଲାଣି ବୋଲି କେମିତି କହୁଛ ?'' ବାବା ହସିଲେ । ପିଲାଏ ମଧ୍ୟ ହସିଲେ ।

## ଭାଗବତ ଗ୍ରନ୍ଥ ଶ୍ରବଣରେ ତନ୍ମୟତା

ଶ୍ରୀଳ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ଲିଖିତ ଭାଗବତ ଟୀକା ବଛା ବଛା ବୈଷ୍ଣବ ମୁଖରୁ ଶ୍ରବଣ କରି ସେ ଏପରି ପ୍ରେମାବିଷ୍ଟ ହୋଇ ଯାଆନ୍ତି ଯେ ତାଙ୍କ ନେତ୍ରର ଅବିରଳ ଅଶ୍ରୁ ସହିତ ମୁଖର ଲାଳ ଓ ନାସିକାର ଶ୍ଲେଷ୍ମା ବିଗଳିତ ହୁଏ । ଦୁଇପଟେ ଦୁଇଜଣ ଶିଷ୍ୟ ଦୁଇ ଦୁଇ ହାତରେ ପୋଛିବାକୁ ତର ସହେ ନାହିଁ । ଠିକ୍ ରୂପେ ପୋଛି ପାରନ୍ତି ନାହିଁ । ମାନସିକ ସେବା ଶିକ୍ଷା ଦେବାରେ ସମଗ୍ର ବ୍ରଜମଣ୍ଡଳରେ ସେ ଥିଲେ ଜଣେ ଅସାମାନ୍ୟ ସିଦ୍ଧ ଭଜନାନନ୍ଦୀ ସାଧକ । ତାଙ୍କ ଚରଣ କମଳକୁ ବାରମ୍ବାର ନମସ୍କାର ।

## ୫. ସିଦ୍ଧ ଶ୍ରୀଜଗନ୍ନାଥ ଦାସ ବାବାଜୀ(ବୃନ୍ଦବାନ ଓ ନବଦ୍ୱୀପ)

ପ୍ରଶ୍ନ-୭୭: ଭାରତ ବର୍ଷରେ ହିନ୍ଦୁଧର୍ମ ଅବଲମ୍ବୀମାନେ ବାଲ୍ୟକାଳ ଯୁବକ କାଳ କିମ୍ବା ବୃଦ୍ଧ ବୃଦ୍ଧା ସମୟରେ ଭକ୍ତମାନେ ଶ୍ରୀବୃନ୍ଦାବନ ଧାମରେ ଭଜନ କରି କରି ଦେହ ତ୍ୟାଗ କରିବାକୁ ଇଚ୍ଛା କରନ୍ତି । ବର୍ଷରେ ଛଅମାସ ବୃନ୍ଦବାନ ଓ ଅନ୍ୟ ଛଅ ମାସ ଶ୍ରୀଧାମ ନଦିଆ ନବଦ୍ୱୀପରେ ରହି ୧୧୫ବର୍ଷ ବୟସରେ କେଉଁ କୃଷ୍ଣଭକ୍ତ ଆହୁରି ୩୨ବର୍ଷ ନବଦ୍ୱୀପ ଭଜନରେ କଟାଇ ୧୪୭ବର୍ଷ ବୟସରେ କାହିଁକି ସେଠାରେ ଦେହ ତ୍ୟାଗ କରିବାକୁ ଇଚ୍ଛା କଲେ ?

ଉ. ସେ ମହାତ୍ମା ଜଣକ ପ୍ରାୟ ଦୁଇଶହ ବର୍ଷ ତଳେ ଜନ୍ମ ଗ୍ରହଣ କରିଥିବା ସିଦ୍ଧ ଶ୍ରୀଜଗନ୍ନାଥ ଦାସ ବାବାଜୀ । ସାରା ବ୍ରଜମଣ୍ଡଳରେ ସମସ୍ତେ ଜାଣନ୍ତି ବାବା ଜଣେ ସିଦ୍ଧ ମହାପୁରୁଷ । ସେ ବେଳେବେଳେ ବଡ଼ ବଡ଼ ଚମତ୍କାର ଦେଖାନ୍ତି । ମହାପୁରୁଷମାନେ ପ୍ରାୟତଃ ଚମତ୍କାର ଦେଖାନ୍ତି ନାହିଁ କଳିକାଳ ଜୀବମାନଙ୍କୁ । କିନ୍ତୁ ବେଳେବେଳେ ଦେଖାଇବାକୁ ବାଧ୍ୟ ହୁଅନ୍ତି ହୁଏତ ସଂସାର ମୋହ ମାୟା ଆସକ୍ତିରୁ ଖସି ଆସି କୃଷ୍ଣ ଭଜନରେ ମନ ପ୍ରାଣ ଲଗାଇ ଦେବେ ପରା !

## ଯମରାଜ ଫେରିଲେ ଖାଲି ହାତରେ

ସେତେବେଳେ ବାବାଙ୍କ ଚମତ୍କାର ସିଦ୍ଧି ସବୁ ଦେଖି ଜଣେ ବ୍ରଜବାସୀ ତାଙ୍କ ଆଜୀବନ ଶିଷ୍ୟ ହୋଇଗଲେ । ପଣ କଲେ ବାବାଙ୍କ ପାଖେ ପାଖେ ରହି ତାଙ୍କ ସେବା କରିବେ । କଲେ ବି । ବାବାଙ୍କୁ ଠାକୁର ସେବାରେ ସାହାଯ୍ୟ କରନ୍ତି । ବାବା ଓ ଠାକୁରଙ୍କ ପାଇଁ ରୋଷେଇ କରନ୍ତି । କୌଣସି ଜାଗାକୁ ଯିବାକୁ ଦରକାର ପଡ଼ିଲେ ଗୋଟିଏ ଝୁଡ଼ିରେ ତାଙ୍କୁ ବସାଇ କାନ୍ଧରେ ବୋହି ନିଅନ୍ତି । ବୃନ୍ଦାବନର ସେଇ ସେବକ ଶିଷ୍ୟଙ୍କ ନାମ ବିହାରୀ ଦାସ ବାବା । ଥରେ ନବଦ୍ୱୀପରେ ଜଗନ୍ନାଥ ଦାସ ବାବା ଥାଆନ୍ତି । ସେବକ ତାଙ୍କର ଭୟଙ୍କର ବେମାରରେ ପଡ଼ିଲେ । ଅନେକ ଡ଼ାକ୍ତରୀ ଚିକିତ୍ସା ଚାଲିଲା । ସବୁ ବେକାର ଗଲା । ଶେଷର ଜଣେ ବିଶେଷଜ୍ଞ ଡ଼ାକ୍ତର ସନ୍ଧ୍ୟାବେଳେ ଆସି ତାଙ୍କ ଅସହାୟତା ଘୋଷଣା କଲେ । ବାବା ଦେଖିଲେ ଯେ ପରିସ୍ଥିତି ଅତ୍ୟନ୍ତ ଗମ୍ଭୀର । ରାତି ପାହିବା ପୂର୍ବରୁ ବିଚରା ନିଶ୍ଚୟ ଇହଧାମ ଛାଡ଼ିଯିବ । ବାବା ସଙ୍କଳ୍ପ କଲେ ଯେ ସେ ନିଜେ ଚିକିତ୍ସା କରିବେ । ଠାକୁରଜୀଙ୍କ ପାଦତଳୁ ଛଡ଼ା ତୁଳସୀ ଆଣି ଶିଷ୍ୟର ମୁଖରେ ଦେଲେ । ହଳେ ଗିନି ଧରି ରାତି ସାରା ହରିନାମ କୀର୍ତ୍ତନ କଲେ । ଅନେକ ଲୋକ ଜମା ହେଲେ । ତାଳି ଧରିଲେ । ବାବା କହୁଥାନ୍ତି, "ଦେଖିବା, କିଏ ଆସି ମୋ ଠାରୁ ମୋ ପିଲାକୁ ଛଡ଼ାଇ ନେବ ?" ସତକୁ ସତ ସକାଳ ପାହିବା ବେଳକୁ ବିହାରୀ ବାବା ଝାଡ଼ି ଝୁଡ଼ି ହୋଇ ବସିଲେ । ପିଇବାକୁ ପାଣି ମାଗିଲେ । ଯମରାଜାଙ୍କ ଦୂତ ଦୁଇଜଣ ଖାଲି ହାତରେ ଫେରିଗଲେ । ଜଣେ ସିଦ୍ଧ ବୈଷ୍ଣବଙ୍କ ସଂକଳ୍ପ ପାଖରେ ଯମରାଜାଙ୍କ ନିୟମ କାନୁନ୍ କାଟୁ କଲାନି । ବ୍ରଜବାସୀମାନେ ବହୁତ ପ୍ରଶଂସା କଲେ ସିଦ୍ଧ ଜଗନ୍ନାଥ ଦାସ ବାବାଙ୍କ ଚମତ୍କାରକୁ ।

## ଶେଷ ଜୀବନରେ ବାବା ଶୁଣିଲେ ଚୈତନ୍ୟ ଚରିତାମୃତ

ଥରେ ସିଦ୍ଧ ଶ୍ରୀଜଗନ୍ନାଥ ବାବା ଶିଷ୍ୟକୁ ମୃଦଙ୍ଗ ବଜାଇବା ଶିକ୍ଷା ଦେଲେ । ବଙ୍ଗଳା ଭାଷା ମଧ୍ୟ ପଢ଼ିବା ବତେଇ ଦେଲେ । ଦିନରାତି ବିହାରୀ ଦାସ ସୁନ୍ଦର ସ୍ୱରରେ କୃଷ୍ଣଦାସ କବିରାଜଙ୍କ ଲିଖିତ ଶ୍ରୀ ମହାପ୍ରଭୁଙ୍କ ଚୈତନ୍ୟ ଚରିତାମୃତ ଗାନ କରନ୍ତି । ମୃଦଙ୍ଗରେ ତାଳ ଧରି ଗୁରୁଦେବଙ୍କୁ ଭଜନ କୀର୍ତ୍ତନ ଭାବ ପୂର୍ଣ୍ଣ ଢ଼ଙ୍ଗରେ ଶୁଣାନ୍ତି । କେତେବେଳେ ଦିନ ହୁଏ କେତେବେଳେ ରାତି ପାହିଯାଏ ଦୁହେଁ ଜାଣି ପାରୁନଥାନ୍ତି ।

## ବାବା କଦଳୀପତ୍ର ଖାଇଗଲେ

ସିଦ୍ଧ ବାବା ମହାପ୍ରଭୁଙ୍କର ଗୁରୁଙ୍କ ବାସସ୍ଥାନ ପଶ୍ଚିମ ବଙ୍ଗଳାର ପୂର୍ଣ୍ଣିଆ ଧାମ । ବାବା ଦିନେ ପହଞ୍ଚିଲେ ଗୁରୁ ଗୃହରେ । ଗୃହରେ ଗୁରୁଦେବ ନଥାନ୍ତି । ବାବା ଗୁରୁ ଗୋସ୍ୱାମୀନୀଙ୍କୁ ଦଣ୍ଡବତ ପ୍ରଣାମ କଲେ ଭୂମିଷ୍ଠ ହୋଇ । ମା'ରୋଷେଇ କଲେ ଅତି ଶ୍ରଦ୍ଧାରେ । ସେ ଜାଣନ୍ତି ଯେ ଏହି ବାବା ଜଣେ ସିଦ୍ଧ ବୈଷ୍ଣବ । ଭୋଜନ ପରଷି ଚାଲିଲେ । ବାବା ଖାଇ ଚାଲିଲେ । ବାବା ଦେଖିଲେ ପରିସ୍ଥିତି ଗମ୍ଭୀର । ଗୁରୁମା ପରଷିବା ବନ୍ଦ କରୁ ନାହାନ୍ତି । ଉଦ୍ଦେଶ୍ୟ ତାଙ୍କର ପତ୍ରରେ ଶିଷ୍ୟ କିଛି ଭୋଜନ ଅବଶେଷ(ଅଇଁଠା) ଛାଡ଼ିଗଲେ ସେ ପାଇବେ । ତେଣୁ ବାବା ଏକ ଚମତ୍କାର ଦେଖାଇଲେ । ସେ ପରଷା ଯାଉଥିବା କଞ୍ଚା କଦଳୀ ପତ୍ରକୁ ମୋଡ଼ି ମାଡ଼ି ତରବର ହୋଇ ଖାଇଦେଲେ । ମା' ଆସିଦେଖିଲେ ପତ୍ର ଖଣ୍ଡକ ମଧ୍ୟ ନାହିଁ । ନିଜ ପ୍ରିୟ ଶିଷ୍ୟର ସିଦ୍ଧି ଦେଖି ହସି ହସି ସମସ୍ତଙ୍କ ସମ୍ମୁଖରେ ପ୍ରଶଂସା ନକରି ରହିପାରିଲେ ନାହିଁ ।

## ପ୍ରଥମେ କୃଷ୍ଣ ଲୀଳା ବୁଝିଲେ ପରେ ଗୌରଲୀଳା ବୁଝି ହୁଏ

ସୁଦୂର ପଶ୍ଚିମ ବଙ୍ଗରୁ ଜଣେ କୃଷ୍ଣଭକ୍ତ ବୃନ୍ଦାବନ ଆସିଥାନ୍ତି । ସେ ଦିନେ ସିଦ୍ଧ ବାବାଙ୍କୁ ଭେଟିଲେ । ପ୍ରଣାମ କରି ପଚାରିଲେ, ''ବାବା, କୃଷ୍ଣଲୀଳା କିଛି କିଛି ବୁଝି ହେଉଛି । ହେଲେ ଗୌର ଲୀଳା କାହିଁକି କିଛି ବୁଝି ହେଉନାହିଁ ?'' ବାବା ତୁରନ୍ତ ଉତ୍ତର ଦେଲେ । କହିଲେ, ''ଗୌର ଲୀଳା କ'ଣ ଏତେ ସହଜ ଯେ ବୁଝିପାରିବ ? ପ୍ରଥମେ ରାଧାକୃଷ୍ଣ ଲୀଳାରେ ବୁଡ଼ି ଯାଅ । ନିଜକୁ ହରାଇ ବସ । ଉଠିଲା ପରେ ଦେଖିବ ରାଧା-କୃଷ୍ଣ ମିଶି ଗୌରାଙ୍ଗ ହୋଇଛନ୍ତି ।'' ଭକ୍ତ ଜଣକ ବାରମ୍ବାର ତାଙ୍କ ପାଦତଳେ ପଡ଼ି ଦଣ୍ଡବତ ପ୍ରଣାମ କରି ବିଦାୟ ନେଲେ । ନିଜକୁ ଧନ୍ୟ ମନେ କଲେ ।

## ଗୌର ଭଜନରେ ଲାଭ ଅଧିକ କେମିତି ?

ବାବା ତାଙ୍କ ଶିଷ୍ୟମାନଙ୍କୁ ବୁଝାଉଥିଲେ ବୃନ୍ଦାବନରେ ରାଧାକୃଷ୍ଣ ଭଜନରେ ଅପରାଧ ଦେଖାଯାଏ । ଦୋଷ କଲେ ଦଣ୍ଡ ଭୋଗିବାକୁ ପଡ଼େ । ରାଧା କୃଷ୍ଣ ଲୀଳା ଅବତାର ବୋଲି । ଗୌରାଙ୍ଗ ମହାପ୍ରଭୁ କିନ୍ତୁ ଔଦାର୍ଯ୍ୟ ଅବତାର । ତେଣୁ ତାଙ୍କ ଠାରେ ଅପରାଧର ବାଛ ବିଚାର କିଛି ବି ନଥାଏ । କୃଷ୍ଣ ଲୀଳାରେ କିନ୍ତୁ ଭଗବାନଙ୍କୁ ମଧ୍ୟ ଦଣ୍ଡ ଭୋଗିବାକୁ ପଡ଼େ । ଦି ପଇସାର ମାଟି ହାଣ୍ଡିଟେ ଗୋବିନ୍ଦ ପିଲା କାଳେ ଭାଙ୍ଗି ଦେଲେ ବୋଲି ମା'ଯଶୋଦା କ୍ଷମା କରି ନଥିଲେ । ଗାଈ ବନ୍ଧା ପଘାରେ ବାଳ

କୃଷ୍ଣଙ୍କୁ ବାନ୍ଧିଦେଲେ । ଧମକ ଚମକ ଦେଖେଇଲେ । ଛାଟିଆ ଧରି ମାରି ଗୋଡ଼େଇଲେ । ବାଃ ବାଃରେ ଗୋବିନ୍ଦ ! ଧନ୍ୟ ତୁମେ ଭକ୍ତ ବତ୍ସଳ ଭଗବାନ । ପୁଣି ଧନ୍ୟ ତୁମ ଭକ୍ତ ସେଇ ବାତ୍ସଲ୍ୟମୟୀ ଯଶୋଦା !!

ଏବେ ଗୌରଲୀଳାରେ ଦେଖ, ଗୌରାଙ୍ଗ ଦେବ ପିଲାଦିନ, ରୋଷେଇ ଘରେ ପଶି ଦିନେ ସବୁ ହାଣ୍ଡି କଢ଼େଇ ଭାଙ୍ଗିଦେଲେ । ଶଚି ମାତା କିନ୍ତୁ ପାଟି ଫିଟେଇଲେ ନାହିଁ । ଓଲଟି ପିଲାଟା କହି କୋଳେଇ ନେଲେ । ଅତଏବ ହେ କୃଷ୍ଣ ଭକ୍ତ, ହେ ଗୌରଭକ୍ତ, ସମସ୍ତେ ମିଳିମିଶି ଆସ ଗାଇବା-

**ଶ୍ରୀକୃଷ୍ଣ ଚୈତନ୍ୟ ପ୍ରଭୁ ନିତ୍ୟାନନ୍ଦ**
**ଶ୍ରୀ ଅଦ୍ୱୈତ ଗଦାଧର ଶ୍ରୀବାସାଦି ଗୌରଭକ୍ତ ବୃନ୍ଦ**

## ନଅ ଦିନରେ ନବଦ୍ୱୀପରେ ପହଞ୍ଚିଲେ ଶ୍ରୀବୃନ୍ଦାବନରୁ ପାଦରେ ଚାଲି ଚାଲି

ଦିନେ ବାବା ସେବକକୁ କହିଲେ, ''ବିହାରୀ, ଚାଲ ଯିବା ନବଦ୍ୱୀପ । ଆଜି ପୁଣି ଏହି କ୍ଷଣି । ଯେମିତି ଗୁରୁଙ୍କୁ ସେମିତି ଶିଷ୍ୟ । ବିହାରୀ ଦାସ ଗୁରୁଙ୍କୁ ବେତ ଝୁଡ଼ିରେ ପୁରାଇ କାନ୍ଧରେ ଥୋଇ ଚାଲିଲେ । ବାଟ ଚାଲିଲା ବେଳକୁ ଫୁଲ ଭଳି ହାଲୁକା ଲାଗିଲା ବୋଝ । ବିହାରୀ ଦାଧ ବୁଝିଗଲେ ଗୁରୁଦେବଙ୍କ ସିଦ୍ଧିର ରହସ୍ୟ । ଗୁରୁ କୃପା ଓ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଆଶ୍ରୟର କରାମତି ଏ ସବୁ । ଜଙ୍ଗଲ ବାଟରେ ଯାଉ ଯାଉ ବିହାରୀ ହଠାତ୍ ଅଟକି ଗଲେ । ବାବା ପଚାରିଲେ, ''ବିହାରୀ, କ'ଣ ହେଲା ରେ ? କଅଣ ଦେଖିଲୁ କି ?'' ବିହାରୀ ଡ଼ରିମରି କହିଲେ ଭୟଙ୍କର ବାଘ ବୋଲି । ବାବା କହିଲେ, ''ନାଇଁ ମ ସେ ଶ୍ରୀଗୌରାଙ୍ଗଙ୍କ ପାର୍ଷଦ । ଆମ ମୁଖରୁ ନାମ ଶୁଣିବାକୁ ପ୍ରକଟ ହୋଇଛନ୍ତି । ସତକୁ ସତ ସେ ବାଘ ଗୌରପାର୍ଷଦ ତତ୍କ୍ଷଣାତ ହୋଇଗଲା ।

## ଷଡ଼୍ଭୁଜ ଗୌରାଙ୍ଗ ବିଗ୍ରହ ସେବା

ଥରେ ସୂର୍ଯ୍ୟକୁଣ୍ଡଠାରେ ଥିବା ବେଳେ ବାବା ଆଦେଶ ଦେଲେ ରାଧାକୁଣ୍ଡ ଯାଇ ଗୌରସୁନ୍ଦର ଠାକୁରଙ୍କ ବିଗ୍ରହ ଆଣିବାକୁ । ଯନ୍ତ୍ର ଚାଳିତ ଭଳି ବିହାରୀ ବାବା ଚାଲିଗଲେ । ରାଧାକୁଣ୍ଡ ନିକଟରେ ମୁଖରା ନାମକ ଏକ ଗାଁରେ ପହଞ୍ଚିଲେ । ସେଠାରେ ଜଣେ ମଣିପୁର ବାବାଙ୍କ ଆଶ୍ରମ ଥାଏ । ସେ ଆଶ୍ରମର ଗୋଶାଳାରେ ପହଞ୍ଚିଲେ । କେଉଁ ଅଦୃଶ୍ୟ ଶକ୍ତି ନିର୍ଦ୍ଦେଶରେ ଗାଈ ଦାନା ଥିବା ଏକ ବସ୍ତା ଦରାଣ୍ଡି ଷଡ଼୍ଭୁଜ ଗୌରାଙ୍ଗ ମୂର୍ତ୍ତି ଦେଖି ଆଶ୍ଚର୍ଯ୍ୟ ହେଲେ । ଅତ୍ୟନ୍ତ ଆଗ୍ରହରେ ଶ୍ରୀ ବିଗ୍ରହଙ୍କୁ ଧରି

ଆସିଲେ । ବାବାଙ୍କୁ ଦେଖାଇଲେ । ସିଦ୍ଧ ବାବା ଶ୍ରୀ ବିଗ୍ରହଙ୍କୁ ଶୁଦ୍ଧ, ଶୌଚ, ଅଭିଷେକ କରାଇ କୁଟୀର ମଧ୍ୟରେ ସିଂହାସନରେ ବସାଇଦେଲେ । ଦୁଇବର୍ଷ ପର୍ଯ୍ୟନ୍ତ ବାବା ଶ୍ରୀ ବିଗ୍ରହର ସଶ୍ରଦ୍ଧ ସେବା କଲେ । ଦିନେ ପୁଣି କହିଲେ, ''ବିହାରୀ ! ବୃନ୍ଦାବନର । କୌଣସି ମଠକୁ ଯାଅ । ପ୍ରଭୁଙ୍କୁ ଦେଇ ଆସିବ । ମୁଁ ଏବେ ନବଦ୍ୱୀପ ଧାମ ଚାଲିଯିବି ।'' ସଙ୍ଗେ ସଙ୍ଗେ ବିହାରୀ ଦାସ ନିଧିବନ ଗଳିରେ ଗୋପାଳପୁର ମଠର ଅଧିକାରୀ ଶ୍ରୀ ନରୋତ୍ତମ ଦାସଙ୍କୁ ଠାକୁରଙ୍କୁ ଦେଇ ଆସିଲେ । ଆଜି ମଧ୍ୟ ସେହି ମନ୍ଦିରରେ ଷଡ଼ଭୁଜ ଗୌରାଙ୍ଗ ବିଗ୍ରହ ଜଣେ ଓଡ଼ିଆ ମହନ୍ତଙ୍କ ଦ୍ୱାରା ସେବିତ ହେଉଛନ୍ତି । ସେଇ ଠାକୁରଙ୍କୁ ଆସନ୍ତୁ ନମସ୍କାର କରିବା ।

## ୬. ଶ୍ରୀଅଓ୍ୱଧ ଦାସ ବାବାଜୀ(ବୃନ୍ଦାବନ)

ପ୍ରଶ୍ନ-୭୮: ସନ୍ଥ ତୁଳସୀ ଦାସ ତାଙ୍କ ଜୀବନରେ ପ୍ରମାଣ କରିଥିଲେ ଯେ ରାମଙ୍କଠାରୁ ରାମ ନାମ ବଡ଼ ବୋଲି । ବୃନ୍ଦାବନର କେଉଁ ମହାପୁରୁଷ ପ୍ରମାଣ କରିଗଲେ ଯେ କୃଷ୍ଣଙ୍କଠାରୁ କୃଷ୍ଣ କଥା ବଡ଼ ବୋଲି ?

## ଅଲୌକିକ ଗୁରୁକୃପା

ଉ. ବିହାର ରାଜ୍ୟର ଭାଗଲପୁର ଜିଲାରେ ୧୮୨୬ମସିହାରେ ଏକ ମୈଥିଳ ବ୍ରାହ୍ମଣ ପରିବାରରେ ଜନ୍ମ ନେଇଥିଲେ ଆମର ଏହି ଅଓ୍ୱଧଦାସ ବାବାଜୀ । ମାତ୍ର ୧୦-୧୨ବର୍ଷ ବୟସରେ ସେ ଗୃହତ୍ୟାଗୀ ହେଲେ । ମିଥିଳାରେ ପହଞ୍ଚି ଦର୍ଶନ କଲେ ସେ ସମୟର ମିଥିଳା ପୁରୀର ସର୍ବୋଚ୍ଚ ଭାଗବତ ତତ୍ତ୍ୱଜ୍ଞ ପୁରୁଷ ଶ୍ରୀହରି କିଙ୍କରଜୀଙ୍କର । ଗୁରୁଦେବ ସଙ୍ଗେ ସଙ୍ଗେ ଚିହ୍ନିଗଲେ ତାଙ୍କ ଜନ୍ମ-ଜନ୍ମାନ୍ତରର ଶିଷ୍ୟକୁ । ତାଙ୍କୁ ମନ୍ତ୍ର ଦୀକ୍ଷା ଦେଲେ । ଆଶ୍ରମରେ ରଖିଲେ । କୃପାକରି ଶିଷ୍ୟ ହୃଦୟରେ ଅଧ୍ୟାତ୍ମ ଶକ୍ତି ସଞ୍ଚାର କରିଦେଲେ । ଶିଷ୍ୟ ଦେଖିଲେ ଗୁରୁ କୃପାର ଚମତ୍କାରୀ ପ୍ରଭାବ । ସମଗ୍ର ଭାଗବତ ଗ୍ରନ୍ଥ ତାଙ୍କର କଣ୍ଠସ୍ଥ ହୋଇଗଲା ।

## ଭାଗବତ କେବଳ ଗ୍ରନ୍ଥ ନୁହନ୍ତି ସ୍ୱୟଂ ଭଗବାନ

ଗୁରୁଦେବଙ୍କ ଆଜ୍ଞାରେ ସେ ବୃନ୍ଦାବନ ଆସିଗଲେ । ସେତେବେଳକୁ ୪୦ବର୍ଷ ବୟସ ତାଙ୍କର । ବୃନ୍ଦାବନର ଧୋବୋ ଗଳିରେ ଆଶ୍ରମ ବନେଇଲେ । ତାଙ୍କର ସକଳ ସାଧନା କିନ୍ତୁ ଭାଗବତ ଗ୍ରନ୍ଥ କୈନ୍ଦ୍ରିକ ଥିଲା । ସେ ଗ୍ରନ୍ଥରାଜ ଭାଗବତଙ୍କୁ ଭଗବାନଙ୍କ ସାକ୍ଷାତ ବିଗ୍ରହ ମାନୁଥିଲେ । ତାଙ୍କୁ ସୁନ୍ଦର ମୂଲ୍ୟବାନ ରେଶମି ବସ୍ତ୍ରରେ ଗୁଡ଼ାଇ ସିଂହାସନରେ ବିରାଜମାନ କରାଉଥିଲେ । ଷୋଡ଼ଶ ଉପଚାରରେ ଭାଗବତ

ଗ୍ରନ୍ଥଙ୍କର ପୂଜା କରୁଥିଲେ । ଧୂପ, ଦୀପ, ନୈବେଦ୍ୟ ତାଙ୍କୁ ଅର୍ପଣ କରୁଥିଲେ । ଗରମ ଦିନେ ତାଙ୍କ ପାଖରେ ବସି ପଙ୍ଖା କରୁଥିଲେ । ଶୀତଦିନେ ଗ୍ରନ୍ଥ ଠାକୁରଙ୍କୁ ରେଜେଇ ଘୋଡ଼େଇ ଦେଉଥିଲେ । ଶ୍ରାବଣ ମାସରେ ତାଙ୍କୁ ଭାଗବତ ଶ୍ଲୋକ ଗାଇ ଦୋଳିରେ ଝୁଲାଉଥିଲେ । ନିଜ ହାତରେ ପ୍ରସାଦ ରାନ୍ଧି ତାଙ୍କୁ ପ୍ରଥମେ ଭୋଗ ଲଗାଇ ପରେ ସେ ପ୍ରସାଦ ପାଉଥିଲେ ।

ଦିନ ସାରା ଭାଗବତ ପଠନ, ପାଠନ, ପ୍ରବଚନ, ଶ୍ରବଣ ଓ କୀର୍ତ୍ତନ ଥିଲା ତାଙ୍କର ଜୀବନ ଚର୍ଯ୍ୟା । ତାଙ୍କ ପାଖକୁ କେହି ଆସିଲେ ସେ ଆଗନ୍ତୁକଙ୍କ ସହିତ କେବଳ ଭାଗବତ ବିଷୟ ଆଲୋଚନା କରୁଥିଲେ । ଅନ୍ୟ କିଛି ତାଙ୍କୁ କହୁ ନଥିଲେ କିମ୍ବା ତାଙ୍କଠାରୁ ଅନ୍ୟ ପ୍ରସଙ୍ଗ କିଛି ଶୁଣୁ ବି ନଥିଲେ । ଦିନେ ଭାଗବତ ଶୁଣିବାକୁ ତାଙ୍କ ଆଶ୍ରମକୁ ସାଧ୍ୱୀ ଶ୍ରୀ ଆନନ୍ଦ ବାଇଜୀ, ଶ୍ରୀହଂସ ଦାସଜୀଙ୍କ ସହିତ ଶ୍ରୀ ବାଙ୍କେ ବିହାରୀ ମନ୍ଦିରର ମୁଖ୍ୟ ପୂଜାରୀ ମଧ ଆସିଥିଲେ । ଗମ୍ଭୀର, ରସାଳ ଭାଗବତ ଆଲୋଚନାରେ ଚାରିଜଣ ଭକ୍ତ ପୁରାପୁରି ମଜ୍ଜିଗଲେ । କେତେବେଳେ ଦିନ ଦ୍ୱିପ୍ରହର ଗତ ହୋଇ ରାତି ଆଠ ଘଣ୍ଟା ହେଲାଣି କାହାରି ନିଘା ନାହିଁ । ଏଣେ ଗୋସ୍ୱାମୀଙ୍କ ଅଣ୍ଟାରେ ବିହାରୀଜୀଙ୍କ ମନ୍ଦିରର ଚାବି କାଠି । ସେଦିନ ଶ୍ରୀ ବାଙ୍କେ ବିହାରୀଙ୍କ ସଂଧ୍ୟା ଆରତି ବନ୍ଦ ହୋଇଗଲାଣି । ତାଙ୍କୁ ଖୋଜି ଖୋଜି ଭକ୍ତମାନେ ଦେଖିଲେ ଯେ ଅଓ୍ୱଧ ଦାସଜୀଙ୍କ ଠାରୁ ସେ ଭାଗବତ ଆଲୋଚନା ଶୁଣିବାରେ ଆତ୍ମ ବିସ୍ମୃତ । ବାହାରୁ ରାଧେ ରାଧେ ଶବ୍ଦ ଶୁଣି ତାଙ୍କ ବାହ୍ୟ ଜ୍ଞାନ ହେଲା । ଗୋସ୍ୱାମୀ ମହାଶୟ ଏକ ମୁହାଁ ହୋଇ ଦୌଡ଼ିଲେ ମନ୍ଦିରକୁ ।

## ଅନ୍ନପୂର୍ଣ୍ଣା ମନ୍ତ୍ରସିଦ୍ଧିର ସଦୁପଯୋଗ

ସିଦ୍ଧ ବାବାଙ୍କର ଅନ୍ନପୂର୍ଣ୍ଣା ମନ୍ତ୍ର ସିଦ୍ଧି ହୋଇଥାଏ । ଥରେ ତାଙ୍କର ଜଣେ ଶିଷ୍ୟର ଦୀକ୍ଷା ମହୋତ୍ସବ ହେବାର ଥାଏ । ଶିଷ୍ୟ ବିଚରା ଅତ୍ୟନ୍ତ ଗରିବ । ତାଙ୍କ ପଇସାରେ କଷ୍ଟେ ମଷ୍ଟେ ଦଶ ଜଣ ବୈଷ୍ଣବଙ୍କ ପାଇଁ ଆଶ୍ରମରେ ରୋଷେଇ ହୋଇଥାଏ । ପାଞ୍ଚ ଦିନ ମଧ୍ୟରେ ଯେତେ ଲୋକ ଆସନ୍ତି ଆଶ୍ରମକୁ ବାବା ସମସ୍ତଙ୍କୁ ନିମନ୍ତ୍ରଣ କରିଦେଲେ । ସେଦିନ ମହୋତ୍ସବ ଆରମ୍ଭ ହେଲା । ରୋଷେଇ ହେଲା ଦଶଜଣଙ୍କ ଭୋଜନ ଲାଗି । ବାବାଙ୍କ ନିମନ୍ତ୍ରଣ ପାଇ ଆସି ପହଞ୍ଚିଲେ ପ୍ରାୟ ଶହେଜଣ ବୈଷ୍ଣବ । ବାବା ବିନା ସଂକୋଚରେ ସମସ୍ତଙ୍କୁ ପତ୍ର ପକାଇ ବସାଇଦେଲେ । ନିଜେ ବସି ପରଷିବାକୁ ଆଦେଶ ଦେଲେ । ଶିଷ୍ୟ ଦେଖିଲେ ଏବେ ଲାଜରା ହେବାକୁ ପଡ଼ିବ ।

ବାବା ତାଙ୍କୁ ମଧ୍ୟ ହାତ ଧରି ବସାଇ ଦେଲେ । ସମସ୍ତଙ୍କ ଭର ପେଟ ଭୋଜନ ପରେ ଆହୁରି କିଛି ପ୍ରସାଦ ବଳିଥାଏ । ଶିଷ୍ୟ କିନ୍ତୁ ଅର୍ଦ୍ଧାହାର ଥିଲେ ଡ଼ରରେ । ବାବା ତାଙ୍କୁ ପୁଣି ଆଉଥରେ ସାଙ୍ଗରେ ବସି ପ୍ରସାଦ ଖୁଆଇଲେ । ଶିଷ୍ୟ ବୁଝିଗଲେ ଏ କେବଳ ଗୁରୁ ନୁହନ୍ତି ଜଗଦ୍‌ଗୁରୁ ସ୍ୱୟଂ ଶ୍ରୀକୃଷ୍ଣ ଭଗବାନ ! ! !

## ସଦ୍‌ଗୁରୁଙ୍କ ଉଚ୍ଛିଷ୍ଟ ଭୋଜନ ମାହାତ୍ମ୍ୟ

ଥରେ ତାଙ୍କ ନାମ ଶୁଣି ପ୍ରୟାଗରୁ ଜଣେ ସାଧକ ଆସି ଖୋଜି ଖୋଜି ବାବାଙ୍କ ଆଶ୍ରମରେ ପହଞ୍ଚିଲେ । ପଚାରିଲେ, ‘‘ବାବା କାହାନ୍ତି ?’’ ବାବା ସେତେବେଳକୁ ପ୍ରସାଦ ପାଉଥାଆନ୍ତି । ଶିଷ୍ୟମାନେ କହିଲେ, ‘ଅପେକ୍ଷା କରନ୍ତୁ । ବାବାଙ୍କ ଭୋଜନ ସରିଲେ ଦେଖା କରିବେ ।’ ସେ କିନ୍ତୁ ଶୁଣି ଆସିଥାଆନ୍ତି ଯେ ସିଦ୍ଧ ବୈଷ୍ଣବଙ୍କ ଉଚ୍ଛିଷ୍ଟ ଭୋଜନ ସେବନ କଲେ ରାଧା ମାଧବ ଦର୍ଶନ ହୁଏ । ତେଣୁ ସେତେବେଳେ ସେ କିଛି ମାନିଲେନି । ସମସ୍ତଙ୍କୁ ଠେଲିପେଲି ଯାଇ ବସି ପଡ଼ିଲେ ବାବାଙ୍କ ସମ୍ମୁଖରେ । ପ୍ରଥମେ ବାବାଙ୍କୁ ପ୍ରସାଦ ମାଗିଲେ । ଅଓ୍ୱଧ ବାବାଜୀ କିନ୍ତୁ ସେତେବେଳେ ଶ୍ରୀ କୃଷ୍ଣଙ୍କର ଲୀଳାର ମାନସିକ ଚିନ୍ତନ କରୁଥିଲେ । ତାଙ୍କର ବାହ୍ୟ ଜ୍ଞାନ ନ ଥିଲା । ସେ କିଛି ଶୁଣି ପାରିଲେ ନାହିଁ । ଏବେ ସେ ଆଗନ୍ତୁକ ସାଧକ ହଠାତ୍ ବାବାଙ୍କ ପତ୍ରରୁ ପୁଳାଏ ପ୍ରସାଦ ଧରି ଖାଇବାକୁ ଉଦ୍ୟମ କଲେ । ବାବା କିନ୍ତୁ ସାଙ୍ଗେ ସାଙ୍ଗେ ତାଙ୍କ ହାତକୁ ଧରି ପକାଇଲେ । ଅଡୁଆ ପରିସ୍ଥିତି ହେଲା । ସାଧକ କିନ୍ତୁ ଛାଡ଼ିବା ଲୋକ ନୁହନ୍ତି । ସେ ତାଙ୍କର ଅନ୍ୟ ହାତରେ ପ୍ରସାଦ ନେଇ ନିଜ ମୁଖରେ ଭରି ଦେଲେ । ସଙ୍ଗେ ସଙ୍ଗେ ଚିତ୍କାର କରି ଭୂମିରେ ପଡ଼ିଗଲେ । ଚେତନା ହରାଇ ସେହି ସ୍ଥାନରେ ପଡ଼ି ରହିଲେ । ସମୟ ବିତିଚାଲିଲା । ଆଶ୍ରମରେ ପ୍ରବଚନ ପାରାୟଣ ସତ୍‌ସଙ୍ଗ ଆରମ୍ଭ ହେଲା ।

ଅନେକ ରାତି ହେଲା । ଭାଗବତ ପାରାୟଣ ପ୍ରବଚନ ସରିଲା । ପ୍ରସାଦ ପାଇବା ବେଳକୁ ବାବା ତାଙ୍କୁ ସ୍ପର୍ଶ କରି ଭୂମିରୁ ନିଜ ହାତରେ ଉଠାଇଲେ । ସେ ଆଖି ମଳି ମଳି ଚାହିଁଲେ । ବାବାଙ୍କ ପାଦ ଧରି କାନ୍ଦି କାନ୍ଦି ଗଡ଼ିଗଲେ । ବାବା ତାଙ୍କୁ କେବଳ କ୍ଷମା କଲେ ନାହିଁ । ଶିଷ୍ୟ ଭାବରେ ଗ୍ରହଣ କଲେ । ଦୀକ୍ଷା ବି ଦେଲେ । ଆଶ୍ରମରେ ରଖି ଭଜନ କୀର୍ତ୍ତନ ଶିକ୍ଷା ଦେଲ । ଅନ୍ୟାନ୍ୟ ଶିଷ୍ୟମାନେ ପଚାରନ୍ତେ ସେ ନୂତନ ଶିଷ୍ୟ ଖୋଲି କହିଦେଲେ, ‘‘ଭାଇ, ମୁଁ ସେଦିନ ବାବାଙ୍କ ଉଚ୍ଛିଷ୍ଟ ପ୍ରସାଦ ଖାଇ ଚେତା ହରାଇ ଦେଖିଲି ଅପୂର୍ବ କଥା । ଗୋବିନ୍ଦ ଓ ଗୋପାଳମାନଙ୍କର ବଣ ଭୋଜି

ଲୀଳା ଚାଲିଛି । ବାବା ଓ ଶ୍ରୀକୃଷ୍ଣ ଦୁହେଁ ମଝିରେ ବସି ଛଡ଼ା ଛଡ଼ି ହୋଇ ପରସ୍ପରର ଉଚ୍ଛିଷ୍ଟ ଭୋଜନ କରୁଛନ୍ତି । ଚାରିପଟେ ଘେରି ବସି ଗୋପାଳ ବାଳକମାନେ ହସୁଛନ୍ତି ।'' ଅନ୍ୟ ଶିଷ୍ୟମାନେ ବୁଝିଗଲେ ଗୁରୁଦେବ ଅନେକ ସମୟ ଧରି ବେଳେବେଳେ ତେବେ ସେଇ ଚିନ୍ମୟ ଜଗତରେ କଟାଉଛନ୍ତି ! ! !

## ସଦ୍‌ଗୁରୁଙ୍କ କୃପାରେ ମର୍କଟ ଜନ୍ମ

ଥରେ ବାଇଙ୍କର ଜଣେ ଶିଷ୍ୟ କଥା ନ ମାନି ଆଶ୍ରମ ତ୍ୟାଗ କରି ଅନ୍ୟତ୍ର ଚାଲିଗଲେ । ବାବା କହିଥିଲେ, ''ସାଧନ ନକରି ମର୍କଟ ପରି ଘୂରିଲେ କି ଲାଭ ?'' ତଥାପି ମଧ୍ୟ କିଛି ନ ଶୁଣି ସେ ଚାଲିଗଲେ । ମଲାପରେ ମର୍କଟ ଜନ୍ମ ପାଇଲେ । ଦିନେ ଶିଶୁ ମର୍କଟଟିଏ ଆସି ଆଶ୍ରମରେ ବାବାଙ୍କ ପାଦ ସ୍ପର୍ଶ କଲା । ବାବା ଚିହ୍ନିଗଲେ ସେ ତାଙ୍କର ସେଇ ଅମାନିଆ ଶିଷ୍ୟ । ତାକୁ କୋଳକୁ ନେଲେ । ଆଶିର୍ବାଦ କରି କହିଲେ, ''ବେଟା, ଆଶ୍ରମ ପାଖାପାଖି ରହ । କୁଆଡ଼େ ହେଲେ ଯାଆ ନାହିଁ ଆଶ୍ରମରୁ । ଦୁଇ ଓଳି ପ୍ରସାଦ ପାଅ । ପ୍ରବଚନ ସତ୍‌ସଙ୍ଗ ଶୁଣୁ ଥାଅ, କଲ୍ୟାଣ ହେବ ।'' ମର୍କଟ ଶିଷ୍ୟ ଦୁଇଦିନ ହେଲା କାହିଁ ଦେଖା ଯାଉନାହାନ୍ତି ବୋଲି ଦିନେ କହିଲେ ବାବା । ଶିଷ୍ୟମାନେ କୋଠା ଉପରକୁ ଯାଇ ଦେଖିଲେ ସେ ମର୍କଟ ଦେହ ଛାଡ଼ି ସାରିଲେଣି । ବାବାଙ୍କ ନିର୍ଦ୍ଦେଶରେ ତାଙ୍କର ପାର୍ଥିବ ଦେହକୁ ସଂକୀର୍ତ୍ତନ ସହିତ ବ୍ରଜଧାମ ବୁଲାଇ ଦାହ ସଂସ୍କାର କରାଗଲା । ଶୁଦ୍ଧି କ୍ରିୟା ସହିତ ମହୋତ୍ସବ ଭଣ୍ଡାରା କରାଗଲା । ସଦ୍‌ଗୁରୁ ଆଶ୍ରୟ କରିଥିଲେ ବୋଲି ମର୍କଟ ଜନ୍ମରେ ମଧ ସେ ଲୀଳା ପ୍ରବେଶ କଲେ ।

## ଭଗବାନ ମଧ୍ୟ ଭାଗବତ ଶୁଣନ୍ତି ଓ ଦକ୍ଷିଣା ଦିଅନ୍ତି

ଦିନେ ଭାଗବତ ପ୍ରବଚନ ବେଳେ ବାବା ଦେଖିଲେ ଦୁଇ ଜଣ ବାଳକ ବାଳିକା ତାଙ୍କ ସମ୍ମୁଖରେ ରଖା ଯାଇଥିବା ଭାଗବତ ଗ୍ରନ୍ଥ ସହିତ ତାଙ୍କୁ ପରିକ୍ରମା କରୁଛନ୍ତି । ବାବା କୌତୁହଳି ହୋଇ ଚକ୍ଷୁ ମୁଦ୍ରିତ କଲେ । ଦେଖିଲେ ସେ ଦୁଇଜଣ ପ୍ରିୟା-ପ୍ରିୟତମଙ୍କ ଚିନ୍ମୟ ସ୍ୱରୂପ । ପୁଣି ଚକ୍ଷୁ ଖୋଲି ଦେଖିଲେ ଦୁଇଟି ସାଧାରଣ ବାଳକ ବାଳିକା । ଏବେ ଚକ୍ଷୁ ବନ୍ଦ କରି ଦେଖିଲେ ସେଇ ଦୁଇ ଚିନ୍ମୟ ବିଗ୍ରହଙ୍କୁ । ଆସନରୁ ଉଠିପଡ଼ି ଦୁହିଁଙ୍କୁ ଦଣ୍ଡବତ ପ୍ରଣାମ କଲେ । ମୁଣ୍ଡ ଟେକି ଦେଖନ୍ତି ଦୁହେଁ ଅନ୍ତର୍ଦ୍ଧାନ ! ! ବାବାଙ୍କର ପୁଣି ପ୍ରବଚନ ଆରମ୍ଭ ହେଲା । ଶ୍ରୀ ଅଓ୍ୱଧ ବାବଜୀ ସତ୍‌ସଙ୍ଗରେ ଘୋଷଣା କରି କହିଲେ, ''ଆମ ପ୍ରବଚନ ଶୁଣିବାକୁ ପ୍ରତ୍ୟେକ ଦିନ ଶ୍ୟାମ-ଶ୍ୟାମା ଉଭୟେ କୌଣସି ନା କୌଣସି ରୂପରେ ଆସୁଛନ୍ତି । ଆଜି ମୁଁ ଜାଣିଲି ଏ କଥା

ପ୍ରତ୍ୟକ୍ଷରେ । ଭାବୁଛି ଭାଗବତ ପ୍ରବଚନ ଶୁଣି ସମସ୍ତଙ୍କର କିଛି ଦକ୍ଷିଣା ଦେବା କଥା । ତାଙ୍କ ପାଖରେ ସେଦିନ  କିଛି ପାର୍ଥିବ ଧନ ନଥିଲା । ତେଣୁ ଦକ୍ଷିଣା ରୂପରେ ଅଲୌକିକ ଦର୍ଶନ ଦେଇ ସେ ମୋତେ କୃତାର୍ଥ କଲେ । ସଂସାରକୁ ଜଣାଇଦେଲେ କୃଷ୍ଣଙ୍କ ଠାରୁ କୃଷ୍ଣପ୍ରେମର ମାଧୁର୍ଯ୍ୟ ଏବଂ କୃଷ୍ଣ କଥା ଶ୍ରବଣ କୀର୍ତ୍ତନ ଅଧିକ ପ୍ରେମପ୍ରଦାନକାରୀ । ସବୁବେଳେ ସେ ସ୍ୱରୂପାନନ୍ଦରେ ମଗ୍ନ ଥିଲେ ମଧ୍ୟ କେଉଁଠି କଥା କୀର୍ତ୍ତନ ହେଲେ ସେ ସବୁ ପାଇଟି ଛାଡ଼ି ଧାଇଁ ଆସନ୍ତି । ସତ୍‌ସଙ୍ଗରେ ଯୋଗ ଦିଅନ୍ତି । ସେଥିପାଇଁ ସିନା ସେ ମହର୍ଷି ନାରଦଙ୍କୁ କହିଥିଲେ-ମଦ୍‌ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ । ଅହଂ ଭକ୍ତ ପରାଧୀନ ହି-ଅସ୍ୱତନ୍ତ୍ର ଇବ ଦ୍ୱିଜ । ଇତ୍ୟାଦି ।''

ଅଓ୍ୱଧ ବାବାଙ୍କ ଆୟୁ ୧୧୧ବର୍ଷ ହେଲା । ଦିନେ ସନ୍ ୧୮୩୭ମସିହାରେ ବାବା ତାଙ୍କର ଅନୁଗତ ଆଶ୍ରିତ ଶିଷ୍ୟମାନଙ୍କୁ ପାଖକୁ ଡ଼କାଇଲେ । ତାଙ୍କୁ ସେ ପୁରରୁ ଡ଼ାକରା ଆସିଲାଣି ବୋଲି କହିଲେ । ତାଙ୍କ ଆଦେଶ ଅନୁସାରେ  ଶ୍ରୀବୃନ୍ଦାବନ ଧାମର ଜ୍ଞାନ ଗୁଦୁଡ଼ି ଠାରୁ ବ୍ରଜ ରଜ ଅଣାଗଲା । ଆଶ୍ରମ ଆଙ୍ଗନରେ ବିଛି ଦିଆଗଲା । ବାବାଙ୍କୁ ବ୍ରଜରଜ ଉପରେ ଫୁଲ ବିଛି ଶୋଇ ଦିଆଗଲା । ତାଙ୍କର ଓଠ ହଲୁଥାଏ । ଦୁଇ ଚକ୍ଷୁ ଅର୍ଦ୍ଧ ମୁଦ୍ରିତ ଥାଏ । ଭାଗବତ ଶ୍ଳୋକ ଉଚ୍ଚାରଣ କରି କରି ବାବା ଡ଼ାକରା ସ୍ଥାନକୁ ଚାଲିଗଲେ । ପିଲାମାନେ ଗୁରୁଦେବଙ୍କ ଅଲୌକିକ ଲୀଳା ପ୍ରବେଶ ଦର୍ଶନ କରି ଗୁରୁ-ଗୋବିନ୍ଦ-ଭାଗବତ-ଭକ୍ତି ଧର୍ମର ଜୟଗାନ କଲେ । ସଂସାର ବୁଝିଲା ଯେ କୃଷ୍ଣଙ୍କ ଠାରୁ ନିଶ୍ଚୟ କୃଷ୍ଣ କଥା ଶ୍ରବଣ ସାଧକ ଲାଗି ଅଧିକ ମୂଲ୍ୟବାନ!!!

## ୭. ଶ୍ରୀ ମାଧବ ଦାସ ବାବାଜୀ(ଟୋପୀ କୁଞ୍ଜ, ବୃନ୍ଦାବନ)

ପ୍ରଶ୍ନ-୭୯ : ଶ୍ରୀ ବ୍ରଜ ମଣ୍ଡଳରେ ଜନ୍ମ ନେଇଥିବା କେଉଁ ମହାପୁରୁଷ ନୀଳାଚଳ ଧାମରେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବାବେଳେ ମହାପ୍ରଭୁ ତାଙ୍କୁ ଶ୍ରୀବୃନ୍ଦାବନ ଫେରିଯାଇ ଭକ୍ତମାଳ ଗ୍ରନ୍ଥ ପଢ଼ି ବ୍ରଜବାସୀଙ୍କୁ ଶୁଣାଇବାକୁ ଆଦେଶ ଦେଇଥିଲେ ?

ଉ. ଶ୍ରୀ ନୀଳାଚଳ ଧାମ ମୁକ୍ତି ଧାମ । ଶ୍ରୀ ବୃନ୍ଦାବନ୍ ଧାମ ପ୍ରେମ ଧାମ । ଉଭୟ ଧାମର ଆପେକ୍ଷିକ ଗୁରୁତ୍ୱର ସୁନ୍ଦର ସମାଧାନ କରିଥିଲେ ଷୋଡ଼ଶ ଶତାବ୍ଦୀ ଆରମ୍ଭରେ ଶ୍ରୀ ଗୌରସୁନ୍ଦର ମହାପ୍ରଭୁ । ଭଗବାନଙ୍କର ଶ୍ରୀ ବିଗ୍ରହ ସେବା କିମ୍ବା ଭଗବାନଙ୍କ ଚରିତ ଶ୍ରବଣ କୀର୍ତ୍ତନରେ କାଳାନ୍ତରେ(ଅନେକ ବିଳମ୍ବରେ) ପ୍ରେମଫଳ ପ୍ରାପ୍ତିହୁଏ । ଶ୍ରୀ ଜଗନ୍ନାଥଙ୍କ ମତରେ ଭଗବାନଙ୍କ ଭକ୍ତ(ବୈଷ୍ଣବ) ସେବାରେ କିମ୍ବା ଭକ୍ତ ଚରିତ ଶ୍ରବଣ କୀର୍ତ୍ତନରେ ସଙ୍ଗେ ସଙ୍ଗେ କିନ୍ତୁ ପ୍ରେମ ଫଳ ପ୍ରାପ୍ତି ହୁଏ ।

ସେଥିପାଇଁ ଶ୍ରୀ ଜଗନ୍ନାଥ ମହାପ୍ରଭୁ ଶ୍ରୀ ମାଧବ ଦାସ ବାବାଜୀଙ୍କୁ ଶ୍ରୀ ବ୍ରଜମଣ୍ଡଳର ଡ଼ୀଗ୍ ନାମକ ସ୍ଥାନରେ ସନ ୧୮୬୨ମସିହାରେ ଜନ୍ମ ଦେଲେ । ବାଳକ ମାଧବ ଦାସ ଆଜନ୍ମ ବୈରାଗୀ । କିଶୋର ଅବସ୍ଥାରେ ତାଙ୍କର ପିତାଙ୍କ ପରଲୋକ ଗମନ ହେଲା । ମାଆ କିନ୍ତୁ ପୁଅକୁ ଧରି ପହଞ୍ଚିଲେ ପୁରୁଷୋତ୍ତମ ଧାମ ।

## ନୀଳାଚଳ ଧାମରେ ମାଧବ ଦାସ

ମାଧବ ଦାସ ନିଜ ମା'ସହିତ ପୁରୀରେ ରହି ଖୁବ୍ ସତ୍‌ସଙ୍ଗ କଲେ ଅନେକ ମହାତ୍ମାଙ୍କ ସାନ୍ନିଧ୍ୟରେ ରହି । ପୁଅ ମନ କିନ୍ତୁ କେବଳ ଭଜନରେ ରହିଲା । ମାଧବ ଦାସ ଦିନେ ଠାକୁର ଦର୍ଶନ ବେଳେ ପ୍ରାର୍ଥନା କରି ଜଣାକଲେ, "ପ୍ରଭୁ, ମୋ ମାଆ ଥିବାରୁ ସିନା ମୁଁ ଆପଣଙ୍କ ନିରନ୍ତର ଭଜନ କରିପାରୁନାହିଁ । ଏଥିକୁ କିଛି ଉପାୟ କରନ୍ତୁ ।" ମହାପ୍ରଭୁ ସେଇ ଦିନ ରାତିରେ ସ୍ୱପ୍ନରେ ଜଣାଇଦେଲେ ମାଧବ ଦାସଙ୍କୁ ଯେ ଅଳ୍ପଦିନରେ ତାଙ୍କ ମା'ଙ୍କୁ ଠାକୁରେ ତାଙ୍କ ଧାମକୁ ନେଇଯିବା ଯୋଗାଡ଼ରେ ଅଛନ୍ତି । ସେ ବିଷୟରେ ସେ ଚିନ୍ତା ନକରି ବରଂ ତୁରନ୍ତ ବୃନ୍ଦାବନ ଫେରିଯାଇ ଭକ୍ତମାଳ ଗ୍ରନ୍ଥ ପଠନ, ପାଠନ, ଶ୍ରବଣ କୀର୍ତ୍ତନ କରନ୍ତୁ । ଯଦି ସକାଳେ ସେ ଜଣେ ପଣ୍ଡାଙ୍କ ହାତରୁ ପଦ୍ମଫୁଲଟିଏ ପାଇବେ ତେବେ ଜାଣି ରଖିବେ ଏହା ସ୍ୱପ୍ନ ନୁହେଁ ବରଂ ଶ୍ରୀ ଜଗନ୍ନାଥଙ୍କର ଆଜ୍ଞା । ବାସ୍ତବରେ ଭକ୍ତଶ୍ରେଷ୍ଠ ମାଧବ ଦାସ ପରଦିନ ପ୍ରତ୍ୟୁଷରେ ଶ୍ରୀ ମନ୍ଦିର ମଧ୍ୟରେ ଠାକୁର ଦର୍ଶନ କରୁଥାଆନ୍ତି । ସେବକ ଜଣେ ଭଗବାନଙ୍କର ଛଡ଼ା ପଦ୍ମଫୁଲଟିଏ ତାଙ୍କ ହାତରେ ଧରାଇ ଦେଇ ମୁଣ୍ଡରେ ହାତ ଥାପି ଦେଲେ । ମାଧବ ଦାସଙ୍କ ଆନନ୍ଦ ଆକାଶ ଛୁଇଁଲା ।

## ବୃନ୍ଦାବନ ଧାମରେ ଭକ୍ତମାଳ ପ୍ରବଚନ

ମାଧବ ଦାସ ପରଦିନ ଚାଲିଲେ ଶ୍ରୀବୃନ୍ଦାବନ ମା'ଙ୍କୁ ସାଙ୍ଗରେ ଧରି । ବାଟରେ ମା'ଙ୍କୁ ମହାପ୍ରଭୁ ଲୀଳା ପ୍ରବେଶ କରାଇଦେଲେ । ଏବେ ମାଧବ ଚିନ୍ତାଶୂନ୍ୟ । ୨୪ବର୍ଷ ବୟସରେ ସେ ବୃନ୍ଦାବନର ଟୋପୀ କୁଞ୍ଜରେ କଲ୍ୟାଣ ଦାସଜୀଙ୍କ ଠାରୁ ମନ୍ତ୍ର ଦୀକ୍ଷା ନେଲେ । ଗୋପାଳ ଦାସଜୀଙ୍କ ଠାରୁ ଭକ୍ତମାଳ କଥା ଉତ୍ତମରୂପେ ଅଧ୍ୟୟନ କଲେ । ଏବେ ବୁଲି ବୁଲି ବ୍ରଜମଣ୍ଡଳରେ ଭକ୍ତମାଳ କଥା ପ୍ରବଚନ କଲେ । ଏତେ ସୁନ୍ଦର ଭାବରେ ସେ ଭକ୍ତ ଚରିତ ସବୁକୁ ଶ୍ରୀବୃନ୍ଦାବନର ଭକ୍ତମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଥିଲେ ଯେ ଅନେକ ନବୀନ ସନ୍ନ୍ୟାସୀ ତାଙ୍କଠାରୁ ଭକ୍ତମାଳ କଥା ପ୍ରବଚନ ଶିକ୍ଷା କରି ପରବର୍ତ୍ତୀ ସମୟରେ ନିଜେ ନିଜେ କଥା ବାଚକ ହେଲେ ।

## ପଶୁପକ୍ଷୀ ମଧ୍ୟ ହରିକଥା ଶ୍ରବଣରେ ଆଗ୍ରହୀ

ଗୁରୁ ଶ୍ରୀ କଲ୍ୟାଣ ଦାସଜୀଙ୍କ ଦେହାନ୍ତପରେ ସେ ଟୋପୀ କୁଞ୍ଜ ମଠର ମଠାଧୀଶ ହେଲେ । ବୃକ୍ଷତଳେ ରହିବା ଏବଂ ଭକ୍ତମାଳ କଥା କହିବାରେ ତାଙ୍କର ଦିନର ଅଧିକାଂଶ ଭାଗ କଟୁଥାଏ । ବର୍ଷକ ମଧ୍ୟରେ ମଠରେ ରହନ୍ତି ଅଳ୍ପ କେଇଦିନ । ତାଙ୍କ କଥା ଶୁଣିବାକୁ ବନରେ ବୁଲୁଥିବା ଗାଇ, ଶୁକ, ଶାରୀ, ମୟୂର ଓ ମୃଗ ଆଦି ପଶୁପକ୍ଷୀମାନେ ତାଙ୍କ ପାଖରେ ଆସି ଜମା ହୁଅନ୍ତି । କଥା ଶେଷରେ ମାଧବ ବାବା ସେମାନଙ୍କୁ ନିଜ ହାତରେ ଠାକୁରଙ୍କ ପ୍ରସାଦ ଖୁଆନ୍ତି । କୌଣସି ମହୋତ୍ସବ ବେଳେ ମିଷ୍ଟ ଅନ୍ନ, ଲଡ୍ଡୁ, ପୁରୀ ଓ ମାଲପୁଆ ଆଦି ଆଗରୁ ହଣ୍ଡାହାଣ୍ଡିରୁ କାଢ଼ି ନେଇ ଖୁଆନ୍ତି । ପରେ ଅନ୍ୟ ସାଧୁ ବୈଷ୍ଣବଙ୍କୁ ଖୁଆନ୍ତି । ବିଗ୍ରହ ସେବା ଅପେକ୍ଷା ସାଧୁ ସନ୍ଥ ସେବାରେ ତାଙ୍କର ବିଶେଷ ରୁଚି ଥାଏ । ମଠରେ ପ୍ରାୟ ନିତ୍ୟ ପ୍ରତିଦିନ ଭଣ୍ଡାରା କରନ୍ତି । ପଇସା ପାଖରେ ଥାଉ କି ନ ଥାଉ । ସାହୁକାରଙ୍କ ଠାରୁ ଧାର କରଜ କରି ଡ଼ାଲି, ଚାଉଳ ଧରି ଆସନ୍ତି । ଏସବୁ ଦେଖି କେହି ନା କେହି ଭକ୍ତ ତାଙ୍କ ଧାର କରଜ ଦୋକାନୀଙ୍କୁ ପରିଶୋଧ କରି ଦିଅନ୍ତି । ତାଙ୍କ ପାଶରେ ଏକ ସିଦ୍ଧ ପିତ୍ତଳ କମଣ୍ଡଳୁ ଥାଏ । ପଙ୍ଗତ ପରେ ସେ ସେଥିରୁ ଦକ୍ଷିଣା ଦିଅନ୍ତି । ହଜାର ହଜାର ସାଧୁ ଦକ୍ଷିଣା ନେଇ ଯାଆନ୍ତି । ବାବା ହାତ ପୁରାଇଲେ ସେ କମଣ୍ଡଳରୁ କେବେ ମଧ୍ୟ ପଇସା ସରେ ନାହିଁ!!! ଏ ଚମତ୍କାର କମଣ୍ଡଳୁକୁ ଭକ୍ତମାନେ ମସ୍ତକ ଲଗାଇ ଦଣ୍ଡବତ ପ୍ରଣାମ କରନ୍ତି ।

## ବକ୍ତା ଭକ୍ତ ଓ ଶ୍ରୋତା ଭଗବାନ

କେବେ କେହି ବାବାଙ୍କୁ ଯେବେ ସେଇ ପଇସାକୁ ସଞ୍ଚୟ କରି ନୂତନ ମନ୍ଦିରଟିଏ ନିର୍ମାଣ କରିବାକୁ କହନ୍ତି । ସେ ତୁରନ୍ତ ଉତ୍ତର ଦିଅନ୍ତି, ‘‘ଠାକୁରଜୀ ନିଜ ସେବାଠାରୁ ନିଜ ଭକ୍ତ ସେବାରେ ଅଧିକ ପ୍ରସନ୍ନ ହୁଅନ୍ତି । ଦେଖୁ ନାହଁ କଥା ଶୁଣିବାକୁ କେତେ ଭିନ୍ନ ଭିନ୍ନ ପଶୁପକ୍ଷୀ ରୂପ ଧରି କାହିଁ କେଉଁଠାରୁ ଆସି କଥା ସ୍ଥଳରେ ବସି ପଡୁଛନ୍ତି!!! ବେଳେ ବେଳେ ବାବା ଘରର କବାଟ ଝରକା ବନ୍ଦ କରି ନିବୁଜ କୋଠରୀରେ ସେବିତ ବିଗ୍ରହ ଠାକୁରଙ୍କୁ ମଧ୍ୟ ଭକ୍ତମାଳ କଥା ଶୁଣାନ୍ତି । ଠାକୁରେ ହୁଁ ମାରୁଥାଆନ୍ତି । ତାଙ୍କର ଅନେକ ଶିଷ୍ୟ ଏ କଥା ଲକ୍ଷ୍ୟ କରିଛନ୍ତି ।

## ବକ୍ତା ଶୁକ ଓ ଶ୍ରୋତା ଶୁକ

ବାବାଙ୍କର ବୟସ ଏବେ ୯୦ବର୍ଷ ଡ଼େଇଁଲା । ବାବାଙ୍କ ମୁଖରୁ ଭକ୍ତମାଳ କଥା ଶ୍ରବଣ କରିବାକୁ ଅନେକ ସମୟରେ ବ୍ରଜମଣ୍ଡଳରୁ ଶ୍ରୀ ଗୌରାଙ୍ଗ ଦାସ ବାବାଜୀ ଓ ଜଗନ୍ନାଥ ଦାସ ବାବାଜୀ ଆଦି ବଡ଼ ବଡ଼ ସିଦ୍ଧ ଭକ୍ତଗଣ ଆସି ଭିଡ଼ ଜମାନ୍ତି । ସନ ୧୯୫୪ମସିହାରେ ୯୨ବର୍ଷ ବୟସରେ ଦିନେ ବାବା ଭକ୍ତମାଳ କଥା କହୁଥାଆନ୍ତି । ଶ୍ରୋତା ନିଜେ ଗୌରାଙ୍ଗ ଦାସ ବାବାଜୀ ଆଦି ଅନେକ ସାଧୁ ସନ୍ଥ । ହଠାତ୍ ବାବା ନିକଟରେ ଥିବା ଏକ କଦମ୍ବ ବୃକ୍ଷକୁ ଏକ ଲୟରେ ଚାହିଁ ରହିଲେ । କଥା କୀର୍ତ୍ତନ ବନ୍ଦ ହୋଇଗଲା । ଶ୍ରୀ ଗୌରାଙ୍ଗ ଦାସ ବାବା ଜଣେ ଭକ୍ତକୁ ପଠାଇଲେ ବୁଝିବାକୁ ଯେ ବୃକ୍ଷ ଉପରେ କ'ଣ ଦେଖୁଛନ୍ତି ମାଧବ ଦାସ ବାବା । ବାହାରକୁ ଯାଇ ସେ ଶିଷ୍ୟ ଜଣକ ବହୁତ ନିରେଖି ଦେଖିଲେ । ବୃକ୍ଷରେ ଚଢ଼ିବାକୁ ଉଦ୍ୟମ କଲେ । ଏହି ସମୟରେ ଶୁକ ପକ୍ଷୀଟିଏ ସେ ବୃକ୍ଷରୁ ଉଡ଼ିଗଲା । ଏଣେ ମାଧବ ଦାସଙ୍କ ପ୍ରାଣପକ୍ଷୀ ମଧ୍ୟ ଠିକ୍ ସେହି ସମୟରେ ଉଡ଼ିଗଲା । ସମସ୍ତେ ହରିବୋଲ, ମାଧବ ଦାସଙ୍କ ଜୟଗାନ ଓ ଶୁକଦେବ ଗୋସ୍ୱାମୀଙ୍କ ଜୟଗାନ କଲେ । ଏକଥା ବୁଝାଇବାକୁ ଆଉ ବାକି ରହିଲା ନାହିଁ ଯେ କଥା କହୁଥିବା ଜୀବ ଶୁକ, ଶୁଣୁଥିବା ଶୁଣାଉଥିବା ଜୀବ ଓ ମାଧବ ଦାସ ବାବା ସେଦିନର ଶୁକ ସେଇ ସ୍ୱୟଂ ଶ୍ରୀଜଗନ୍ନାଥ ମହାପ୍ରଭୁ । କେବଳ ଫରକ ଏତିକି ଯେ ସେ ଶ୍ରୀବୃନ୍ଦାବନ ଧାମରେ । ଭିନ୍ନ ଭିନ୍ନ ରୂପ ଧରି ଭକ୍ତମାଳ କଥା କହୁଥିଲେ, ଶୁଣୁଥିଲେ ଓ ଶୁଣାଉଥିଲେ ମଧ୍ୟ । ପ୍ରମାଣିତ ହେଲା ନୀଳଚଳେ ଯେ ଜଗନ୍ନାଥ । ବୃନ୍ଦାବନର ସେ ଗୋପୀନାଥ । ସଂଯୋଗ କାରୀ ସେଇ କୃଷ୍ଣ କଥା !!!

## ୮. ଶ୍ରୀ ନିତ୍ୟାନନ୍ଦ ଦାସ ବାବାଜୀ(ନନ୍ଦଗ୍ରାମ)

ପ୍ରଶ୍ନ-୮୦: ଗଞ୍ଜାମ ଜିଲ୍ଲାର ଧରାକୋଟରେ କେଉଁ ମହାପୁରୁଷ ଜନ୍ମହୋଇ ଶ୍ରୀ ମଥୁରା ଧାମରେ ନାମ ସଂକୀର୍ତ୍ତନ ଲୀଳା କଲେ, ଶ୍ରୀ ବୃନ୍ଦାବନ ଧାମରେ ପାର୍ଥିବ ଦେହ ତ୍ୟାଗ କଲେ ଏବଂ ଯାହାଙ୍କ ଦେହ ନନ୍ଦଗାଁରେ ଦାହ କଲା ପରେ ବ୍ରଜବାସୀମାନେ ତାଙ୍କ ଚିତାଭସ୍ମକୁ ତିଳକ କରି ମସ୍ତକରେ ଲଗାଇଥିଲେ ?

## ବାବାଙ୍କ ଜନ୍ମଜାତକ

ଉ. ନିତ୍ୟାନନ୍ଦ ଦାସ ନାମରେ ଜଣେ ବାଳକ ଧରାକୋଟରେ ପ୍ରାୟ ୧୮୮୦ ମସିହାରେ ପ୍ରକଟ ହୋଇଥିଲେ ସଂସ୍କୃତ ଭାଷାରୁ ଓଡ଼ିଆ ମହାଭାରତ ଅନୁବାଦ କରିଥିବା ଶ୍ରୀକୃଷ୍ଣସିଂହଙ୍କ ରାଜ ବଂଶରେ । ରାଜପରିବାରର ବୈଷ୍ଣବ ଗୃହରେ ଥାଇ

ଶୈଶବ କାଳରୁ ସଂସାର ସଂପତ୍ତି ବୈରାଗ୍ୟ ତାଙ୍କ ମନରେ ବସା ବାନ୍ଧିଲା । ଦଶମ ଶ୍ରେଣୀରୁ ପାଠ ପଢ଼ାରେ ଡ଼ୋରି । ବାଳକ ଅବସ୍ଥାରେ ସେ ଚାଲି ଚାଲି ଦିନେ ପହଞ୍ଚିଲେ ବ୍ରହ୍ମଗିରି ଅଲାରନାଥ ମନ୍ଦିରରେ । ପଥର ଉପରେ ଶ୍ରୀମନ୍ ମହାପ୍ରଭୁଙ୍କର ଅଷ୍ଟାଙ୍ଗ ପ୍ରଣିପାତ ଚରଣ ଚିହ୍ନ ଦେଖୁ ଦେଖୁ ମୂର୍ଚ୍ଛା ଗଲେ । ଚେତନା ପାଇ ଚାଲିଲେ ନୀଳାଚଳ ଧାମ । ଶ୍ରୀ ଜଗନ୍ନାଥ ଦର୍ଶନ କଲେ । ଦୁଇ ହାତ ଯୋଡ଼ି ଠାକୁରଙ୍କୁ ବିନୀତ ପ୍ରାର୍ଥନା କଲେ । ନିଜ ସଦ୍‌ଗୁରୁଙ୍କ ଠିକଣା ପଚାରିଲେ । ହଠାତ୍ ଦେଖିଲେ ଯେ ରତ୍ନ ମଣ୍ଡପରେ ବଳଦେବ ସୁଭଦ୍ରା ଦୁହେଁ ଅଦୃଶ୍ୟ । କେବଳ ମହାପ୍ରଭୁ କିନ୍ତୁ ଦୃଶ୍ୟମାନ । କିନ୍ତୁ ଏ କଅଣ ? ଶ୍ରୀ ଜଗନ୍ନାଥ ମହାପ୍ରଭୁ ସ୍ୱୟଂ କାନ୍ଦୁଛନ୍ତି ! ! !

## ସଦ୍‌ଗୁରୁ ଅନୁସନ୍ଧାନ ପର୍ବ ଆରମ୍ଭ

ଶ୍ରୀ ମନ୍ଦିରରୁ ବାହାରି ପଶିଲେ ଶ୍ରୀ ବିମଳାଙ୍କ ମନ୍ଦିରରେ । ମା'କିନ୍ତୁ ନିରାଶ କଲେନି । ନିତ୍ୟାନନ୍ଦ ଦାସ ବାବା ଦେଖିଲେ ମା' ତାଙ୍କୁ ଅଙ୍ଗୁଳି ଦେଖାଇ ଉତ୍ତର ଦିଗକୁ ଯିବାକୁ ନିର୍ଦ୍ଦେଶ କରୁଛନ୍ତି । ବାବା ସଳଖେ ଚାଲି ଚାଲି ପହଞ୍ଚିଲେ ନବଦ୍ୱୀପ ଧାମ । ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ବିଗ୍ରହ ଦର୍ଶନ କରୁ କରୁ ତାଙ୍କର ଏକ ଆଶ୍ଚର୍ଯ୍ୟ ଅନୁଭବ ହେଲା । ମହାପ୍ରଭୁଙ୍କ ବିଗ୍ରହରେ ସେ ଗୋଟିଏ ପରେ ଗୋଟିଏ ଥର ଥର କରି ତିନି ବିଗ୍ରହ ଦର୍ଶନ କଲେ । ପ୍ରଥମେ ଶ୍ରୀକୃଷ୍ଣ ପରେ ଶ୍ରୀରାଧା ଓ ପରେ ଶ୍ରୀ ଲଳିତା ମହାସଖୀ ଦର୍ଶନ ଦେଲେ ବୋଲି ଭକ୍ତ ନିତ୍ୟାନନ୍ଦ ବୁଝିଗଲେ । ତାଙ୍କର ଗୁରୁ ତେବେ ଶ୍ରୀ ଲଳିତା । ପୁଣି ରେଳଗାଡ଼ିରେ ବସି ପହଞ୍ଚିଲେ ମଥୁରା ।

ନିତ୍ୟାନନ୍ଦ ଦେଖିଲେ ତାଙ୍କୁ ଷ୍ଟେସନରୁ ପାଛୋଟି ନେବାକୁ ଜଣେ ତେଜୀୟାନ ବୈଷ୍ଣବ ସାଧୁ ଆସିଛନ୍ତି । ନାମ ତାଙ୍କର ଶ୍ୟାମଚରଣ ବାବାଜୀ । ଦୁହିଁଙ୍କୁ ଦୁହେଁ ଦର୍ଶନ କରୁ କରୁ ରୋମାଞ୍ଚିତ ହୋଇ ହସି ହସି ପରସ୍ପରକୁ ନିବିଡ଼ ଆଲିଙ୍ଗନ କଲେ । ସତେ ଯେମିତି ସେମାନେ ଯୁଗ ଯୁଗର ଚିହ୍ନା ପରିଚିତ ବ୍ୟକ୍ତି କି ଆଉ ! ! ଦୁହେଁ ପହଞ୍ଚିଲେ ଶ୍ରୀ ଗୋବର୍ଦ୍ଧନ । ବାଳକ ନିତ୍ୟାନନ୍ଦଙ୍କର ଦୀକ୍ଷା ଗ୍ରହଣ ପର୍ବ ସମାପ୍ତ ହେଲା । ପ୍ରେମ ମାର୍ଗରେ ଭଜନ କୀର୍ତ୍ତନ ଧ୍ୟାନ ଅବିରତ ଚାଲିଲା । ଦିନେ ନିତ୍ୟାନନ୍ଦ ଗୁରୁଦେବଙ୍କୁ ଫଟୋଟିଏ ମାଗିଲେ । ମଠରେ ଗୁରୁଦେବଙ୍କର ଫଟୋଟିଏ ନଥାଏ । ସେ ବୃନ୍ଦାବନର ଗୋପୀନାଥ ବଜାର ଫଟୋଗ୍ରାଫରଙ୍କୁ ଡ଼କାଇ ଆଣିଲେ । ବାବାଙ୍କୁ କ୍ୟାମେରା ସାମନାରେ ବସାଗଲା । ଗୁରୁଦେବ କହିଲେ, ''ନିତ୍ୟାନନ୍ଦ, ଦେଖ ତ ଫଟୋ ଠିକ୍ ଫୋକ୍‌ସ ହୋଇଛି କି ନାହିଁ ?''

## ସଦ୍‌ଗୁରୁ ଗ୍ରହଣ ପର୍ବର ପରିସମାପ୍ତି

ନିତ୍ୟାନନ୍ଦ କଳା କପଡ଼ା ଟେକି କ୍ୟାମେରା ଲେନ୍‌ସରେ ଦେଖିଲେ ଏକ ଆଶ୍ଚର୍ଯ୍ୟ କଥା । କ୍ୟାମେରାରେ ଗୁରୁଦେବ ଦିଶୁ ନାହାନ୍ତି । ଦିଶୁଛନ୍ତି ନବଦ୍ୱୀପ ଧାମରେ ଶ୍ରୀ ଗୌରାଙ୍ଗ ମୂର୍ତ୍ତିରେ ଦର୍ଶନ କରିଥିବା ସେଇ ଲଳିତା ସଖୀ ଜଣକ । ପୁଣି ଥରେ କ୍ୟାମେରା ଲେନ୍‌ସରେ ଦେଖିଲେ ଭିତରେ ସେହି ଲଳିତା ସଖୀ । ବାହାରେ ଅଛନ୍ତି ତାଙ୍କ ଗୁରୁଦେବ । ଏଥର ଗୁରୁଦେବ ହସି ହସି କହିଲେ, "ହଉ ଆସ ନିତ୍ୟାନନ୍ଦ । ଏଥର ଫଟୋ ଉଠାଯାଉ ।" ନିତ୍ୟାନନ୍ଦଙ୍କୁ ଏ ରହସ୍ୟ ବୁଝିବାକୁ ଆଉ ଡ଼େରି ଲାଗିଲା ନାହିଁ । ଗୌରାଙ୍ଗ ମୂର୍ତ୍ତିରେ ଦେଖିଥିବା ଲଳିତାଙ୍କ ରୂପ ଧରିଥିବା ଗୁରୁଦେବଙ୍କର ଅପାର କୃପାହେଲା । ସେ ବୁଝିଲେ ସେହି ଲଳିତା ହିଁ ଗୁରୁଭାବରେ ଧରାକୋଟରେ ଜନ୍ମଦେବା ବାଲା, ଅଲାର ନାଥ, ଜଗନ୍ନାଥ, ବିମଳାଦେବୀ ଓ ଶ୍ରୀ ଗୌରାଙ୍ଗ ମୂର୍ତ୍ତି ଦର୍ଶନ କରାଇବା ବାଲା ଏବଂ ରାଧା-କୃଷ୍ଣ ଲୀଳା ପ୍ରକଟର ଚିନ୍ମୟ ସୂତ୍ରଧର । ବାରମ୍ବାର ପଡ଼ ଉଠ ହୋଇ ଗୁରୁଙ୍କୁ ଅନେକ ନମସ୍କାର କଲେ ଓ ସାରା ଜୀବନ ତାଙ୍କ ଶରଣରେ ରହି ତାଙ୍କ ଆଜ୍ଞା ପାଳନ କରିବାକୁ ସଂକଳ୍ପ ନେଲେ ।

## ନାମ ସଂକୀର୍ତ୍ତନ ଯଜ୍ଞର ଶୁଭାରମ୍ଭ

ନିତ୍ୟାନନ୍ଦଙ୍କ ଦେହରେ ଗୁରୁଙ୍କ କୃପାରୁ ବୈଷ୍ଣବୀ ଶକ୍ତିର ପରିପ୍ରକାଶ ଘଟିଲା । ସେ ବ୍ରଜମଣ୍ଡଳର ଗାଁ ଗାଁ ବୁଲି ହରିନାମ ସଂକୀର୍ତ୍ତନ ପ୍ରଚାରରେ ମାତିଗଲେ । ମଥୁରା ସହର ହେଲା ତାଙ୍କ ସଂକୀର୍ତ୍ତନ ପ୍ରଚାରର ମୁଖ୍ୟ କେନ୍ଦ୍ର । ନନ୍ଦଗାଓଁ, ବର୍ଷାଣା ଓ ବୃନ୍ଦାବନ ଧାମରେ ବୁଲି ବୁଲି ଅନେକ ଶିଷ୍ୟ, ଶିଷ୍ୟାଙ୍କୁ କୃଷ୍ଣପ୍ରେମ ରସ ପ୍ରଦାନ କରି ନିତ୍ୟାନନ୍ଦ ବାବା କୃତାର୍ଥ କରୁଥାଆନ୍ତି । ଥରେ ସେ ଅନେକ ବ୍ରଜବାସୀଙ୍କୁ ଧରି ପହଞ୍ଚିଲେ ନୀଳାଚଳ ଧାମ ରଥଯାତ୍ରା ମହୋତ୍ସବରେ । ସେତେବେଳେ ସେ ମନ ଭରି ପାର୍ଷଦମାନଙ୍କ ମେଳରେ ଭାବ ପୂର୍ଣ୍ଣ ନୃତ୍ୟ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ କୃତଜ୍ଞତା ଜଣାଇଥିଲେ । କୁମ୍ଭମେଳା ବେଳେ ପ୍ରୟାଗ ଧାମ ଓ ହରିଦ୍ୱାର ଆଦି ସ୍ଥାନ ମାନଙ୍କୁ ଯାଇ ସଂକୀର୍ତ୍ତନ ସହିତ ଉଦ୍ଦଣ୍ଡ ନୃତ୍ୟ ନିଜେ କରି ଅନ୍ୟମାନଙ୍କୁ କରାଇ ଗଗନ ପବନ କମ୍ପମାନ କରି ପକାନ୍ତି । କୁହାଯାଏ ଯେ ତାଙ୍କ ଉଦ୍ଦଣ୍ଡ କୀର୍ତ୍ତନରେ ସାଧୁ ସନ୍ଥ ଋଷିମୁନିମାନଙ୍କର ଏହି ଦେଶ ଭାରତ ଭୂମି ଗର୍ବ ଗୌରବରେ ଫାଟି ପଡ଼ିଲା ।

## ଶ୍ରୀବୃନ୍ଦାବନ ଧାମରେ କୁମ୍ଭମେଳା ମହୋତ୍ସବ

ପ୍ରତି ବାରବର୍ଷରେ ପ୍ରୟାଗ, ହରିଦ୍ୱାର, ନାସିକ ଓ ଉଜ୍ଜୟିନୀରେ ମହାକୁମ୍ଭମେଳା ହୁଏ । ଯେତେବେଳେ ହରିଦ୍ୱାର କୁମ୍ଭମେଳା ହୁଏ ଠିକ୍ ତା ପୂର୍ବ ବର୍ଷରେ ଶ୍ରୀବୃନ୍ଦାବନ ଧାମରେ ଶ୍ରୀ ଯମୁନା ନଦୀ କୂଳରେ ମଧ୍ୟ ହୁଏ ଶ୍ରୀ ବୃନ୍ଦାବନଧାମ କୁମ୍ଭମେଳା । ବାବା ଏଥର ନିଜେ ଅଣ୍ଟା ଭିଡ଼ିଲେ ବୃନ୍ଦାବନର କୁମ୍ଭମେଳା ଆୟୋଜନ ଲାଗି । ମହା ସମାରୋହରେ ଅତ୍ୟନ୍ତ ଆଡ଼ମ୍ବର ସହକାରେ ନାମ ଯଜ୍ଞ, ଘୃତ ଯଜ୍ଞ, ଅନ୍ନ ଯଜ୍ଞ ସହିତ ଶ୍ରୀମଦ୍ ଭାଗବତ ଜ୍ଞାନ ଯଜ୍ଞ କରାଇଲେ ବାବା । କାନପୁରର ଜଣେ ସେଠଜୀଙ୍କୁ ଶ୍ରୀରାଧା ଗୋବିନ୍ଦ ସ୍ୱପ୍ନାଦେଶ କଲେ । କହିଲେ, ‘‘ସେଠଜୀ, ବୃନ୍ଦାବନରେ ନିତ୍ୟାନନ୍ଦ ବାବା ଭଣ୍ଡାରା କରୁଛନ୍ତି । କୁମ୍ଭମେଳାରେ ଶହେ ଟିଣ ଗୋଘୃତ ସହିତ ଦରକାର ମୁତାବକ ଅନ୍ୟାନ୍ୟ ଦ୍ରବ୍ୟସବୁ (ଡ଼ାଲି, ଚାଉଳ, ପନିପରିବା, ମସଲା, ବସ୍ତ୍ର ଆଦି) ନିଜେ ଯାଇ ଦେଇ ଆସ ।’’ ସେ ବର୍ଷ ଅଦ୍ଭୁତପୂର୍ବ ଢ଼ଙ୍ଗରେ ବୈଷ୍ଣବ ସାଧୁ ସେବା ଯଜ୍ଞ ଶ୍ରୀବୃନ୍ଦାବନରେ ସଂପନ୍ନ ହେଲା । କଲେ ନିତ୍ୟାନନ୍ଦ ବାବା । କରାଇଲେ ଶ୍ରୀରାଧା ଗୋବିନ୍ଦଜୀ । ମାଧ୍ୟମ ଥିଲା ନାମ ସଂକୀର୍ତ୍ତନ ଯଜ୍ଞ ।

## ଭକ୍ତି ଧର୍ମର ମର୍ମ କଥା

ହାଥରସ୍, ଆଲିଗଡ଼ ଓ ଓଡ଼ିଶାର ବାଲେଶ୍ୱର କଟକ ଆଦି ସ୍ଥାନରେ ବୁଲି ବୁଲି ବାବା ସଂକୀର୍ତ୍ତନ ସହିତ ଶ୍ରୀମଦ୍ଭାଗବତ ସାପ୍ତାହିକ ଜ୍ଞାନ ଯଜ୍ଞ ଆଦି ଅନେକ ଥର କରାଇଲେ । ସେ ଭକ୍ତିର ୫ ସେବା ଅଙ୍ଗ ମଧ୍ୟରୁ (୧) ନାମ ସଂକୀର୍ତ୍ତନ, (୨) ଶ୍ରୀ ବିଗ୍ରହ ସେବା, (୩) ବୈଷ୍ଣବ ସେବା, (୪) ବ୍ରଜବାସ ଓ (୫) ନିତ୍ୟ ଭାଗବତ ଶ୍ରବଣକୁ ମୁଖ୍ୟ ବୋଲି କହୁଥିଲେ । ତାଙ୍କ ମତରେ ନାମ ସେବା ଦୁଇ ପ୍ରକାରର ହୁଏ । ନବୀନ ସାଧକମାନଙ୍କୁ ନାମ ଆଗ୍ରହୀ ଓ ସିଦ୍ଧ ସାଧକମାନଙ୍କୁ ସେ ନାମ ଆଶ୍ରୟୀ ବୋଲି କହି ଉଭୟ ସାଧକଙ୍କୁ ସମ୍ମାନ ଜଣାଉଥିଲେ । ଅନେକ ନବୀନ ସାଧକଙ୍କୁ ସିଦ୍ଧ ଭୂମିକାରେ ମଧ୍ୟ ପହଞ୍ଚାଇ ପାରୁଥିଲେ ।

## ବାବାଙ୍କ ମାନସୀ ସେବା

ସିଦ୍ଧ ସାଧକମାନଙ୍କୁ ବାବା ମାନସୀ ସେବା ଶିକ୍ଷା ଦେଉଥିଲେ । କହୁଥିଲେ ଏହା ଅତ୍ୟନ୍ତ କଷ୍ଟକର ହେଲେ ମଧ୍ୟ ସିଦ୍ଧ ବୈଷ୍ଣବମାନଙ୍କର ଅବଶ୍ୟ କରଣୀୟ । ଥରେ ବୃନ୍ଦାବନରେ ନିଜେ ବାବା ମାନସୀ ସେବା କଲାବେଳେ ଠାକୁରଙ୍କୁ ପାନପିକ ପକାଇବା ଲାଗି ମନେ ମନେ ପିକଦାନୀଟିଏ ଅର୍ପଣ କରି ନଥିଲେ । ସେ ସେବାଟି

କର୍ମ ବ୍ୟସ୍ତତା ଭିତରେ ଭୁଲିଯାଇଥିଲେ । ସକାଳୁ ସକାଳୁ ଯାଇ ବୃନ୍ଦାବନର ସେବା କୁଞ୍ଜରେ ଦେଖିଲେ ମନ୍ଦିର ମଧ୍ୟରେ ଯାଗା ଯାଗାରେ ପାନ ଛେପ ଚିହ୍ନ । କାରଣ ସେଦିନ ସେ ଠାକୁରଙ୍କ ପିକଦାନୀ ବ୍ୟବସ୍ଥା କରିନାହାନ୍ତି ! ବାବାଙ୍କ ମନ ଦୁଃଖରେ ଭରିଗଲା । ଏ ସବୁ ଗୋବିନ୍ଦଙ୍କର କାଣ୍ଡ । ଆସି ଶିଷ୍ୟମାନଙ୍କୁ ଡ଼କାଇ ଏକଥା କହିଲେ ଏବଂ ସତର୍କ କରାଇ ଦେଲେ ଯେ ଯଦି କେହି ମାନସୀସେବା କରୁଛ ତେବେ ଠିକ୍ ଠିକ୍ କରିବ । ଭୁଲିବ ନାହିଁ । ପ୍ରିୟା ପ୍ରିୟତମଙ୍କୁ ଅସୁବିଧାରେ ପକାଇବ ନାହିଁ ।

## ଶ୍ରୀ ରାଧାକୁଣ୍ଡ ସଂସ୍କାର କାର୍ଯ୍ୟକ୍ରମ

ଊନବିଂଶ ଶତାବ୍ଦୀ ଶେଷ ବେଳକୁ ଶ୍ରୀରାଧାକୁଣ୍ଡ ଉପଯୁକ୍ତ ଦେଖ ରେଖ ଅଭାବରୁ ଦୂଷିତ ଜଳରେ ପୂର୍ଣ୍ଣ ହୋଇ ଯାଇଥିଲା । ସେ ଜଳରେ ସ୍ନାନ ଆଚମନ କରିବାକୁ ବୈଷ୍ଣବମାନେ ସଙ୍କୋଚ କରୁଥିଲେ । ଏତେବଡ଼ ସରୋବର ଜୀର୍ଣ୍ଣ ସଂସ୍କାର ଭଳି ଏକ ବ୍ୟୟବହୁଳ କାମ ମଧ୍ୟ ନିତ୍ୟାନନ୍ଦ ବାବା ହାତକୁ ନେଲେ । ନିଖୁଣ ଭାବରେ ସେହି କାର୍ଯ୍ୟ ସେ ସଂପନ୍ନ କରିପାରିଥିଲେ ।

## ବାବାଙ୍କ ଅନ୍ତିମ ଇଛା

ପାର୍ଥିବ ଶରୀର ତ୍ୟାଗ ପୂର୍ବରୁ ନିତ୍ୟାନନ୍ଦ ବାବା ନନ୍ଦଗାଓଁ ଠାରେ ଜଣେ ଶିଷ୍ୟାଙ୍କୁ କହି ଏକ ଶ୍ମଶାନ ସ୍ଥାନକୁ ସଂସ୍କାର କରି ବ୍ରଜ ମଣ୍ଡଳର ଗାଈମାନଙ୍କ ଗୋବରରେ ଲିପି ପୋଛି ପ୍ରସ୍ତୁତ କରି ରଖିନେଲେ । ନନ୍ଦଗାଓଁ ବାସୀମାନଙ୍କୁ କହିଗଲେ, ''ମୁଁ ଯାଉଛି ମୋ ଗୁରୁ ସ୍ଥାନରେ(ନିଧିବନ ନିକଟସ୍ଥ ଗୋପାଳଗୁରୁ ଆଶ୍ରମରେ)ଦେହ ତ୍ୟାଗ କରିବି । ମୋର ପିଲାମାନେ ମୋ ଦେହକୁ ଏଠାକୁ ଆଣିଲେ ତାଙ୍କୁ ଏହି ସ୍ଥାନଟି ଦେଖାଇ ଦେବ । ମୋର ଦାହ ସଂସ୍କାର କରିବ । ବାବାଙ୍କ ଇଛା ଅନୁସାରେ ସେ ୧୯୬୪ମସିହାରେ ୮୪ବର୍ଷରେ ଦେହ ତ୍ୟାଗ କଲା ପରେ ତାଙ୍କ ପାର୍ଥିବ ଶରୀରକୁ ସେଠାକୁ ଅଣାଯାଇ ବିଧିବଦ୍ଧ ଭାବରେ ଦାହ ସଂସ୍କାର କ୍ରିୟା କର୍ମ ଆଦି ବିଧିବଦ୍ଧ ଭାବରେ କରାଯାଇଥିଲା । ତାଙ୍କର ଶ୍ମଶାନ ଭସ୍ମକୁ ନନ୍ଦଗାଓଁ ସାରା ବ୍ରଜବାସୀମାନେ ତିଲକ କଲେ ଓ ବଳକା ଅଂଶକୁ ନନ୍ଦଗାଓଁ ଧାମରେ ନାମସଂକୀର୍ତ୍ତନ କରି କରି ବ୍ରଜ ରଜ ସହିତ ମିଶାଇ ଦିଆଗଲା । ଧନ୍ୟ ନାମ ନିତ୍ୟାନନ୍ଦ ବାବା, ଧନ୍ୟ ସଂକୀର୍ତ୍ତନ ଯଜ୍ଞ ଏବଂ ଧନ୍ୟ ସେଇ ବ୍ରଜ ରଜ ।

## ୯. ଶ୍ରୀହରି ବାବାଜୀ (ବୃନ୍ଦାବନ)

ପ୍ରଶ୍ନ-୮୧ : ବିଂଶ ଶତାବ୍ଦୀରେ କେଉଁ ମହାପୁରୁଷ ଶ୍ରୀ ବୃନ୍ଦାବନରେ ରହି ଶ୍ରୀ ଓଡ଼ିଆ ବାବା, ସ୍ୱାମୀ ଅଖଣ୍ଡ ଆନନ୍ଦ ସରସ୍ୱତୀ ଓ ଶ୍ରୀଜଗନ୍ନାଥ ଦାସ ଭକ୍ତମାଳିଜୀ ଇତ୍ୟାଦି ପରମଜ୍ଞାନୀ ଓ ସିଦ୍ଧ କୃଷ୍ଣ ଭକ୍ତମାନଙ୍କୁ ଶ୍ରୀ ଗୌରପ୍ରେମ ରସ ଆସ୍ୱାଦନ କରାଇ ଏକ ସୂତ୍ରରେ ବାନ୍ଧି ପାରିଥିଲେ ?

### ପାଠପଢ଼ା ପାହାଚ

ଉ. ସେ ଭାଗ୍ୟବାନ ସାଧକ ହେଉଛନ୍ତି ଶ୍ରୀ ହରି ବାବା ମହାରାଜ । ୧୮୮୪ ମସିହାରେ ପଞ୍ଜାବର ହୋସିଆରପୁରରେ ଏକ ବୈଷ୍ଣବ ପରିବାରରେ ସେ ପ୍ରକଟ ହୋଇଥିଲେ । ପିତା ତାଙ୍କର ପେଶାରେ ଜଣେ ପଟ୍ଓ୍ୱାରୀ । ପରମ ବୈଷ୍ଣବ ଢ଼ଙ୍ଗରେ, ରଙ୍ଗରେ ଓ ସ୍ୱଭାବରେ । ଶିଖ ପରିବାରରେ ଜନ୍ମ ହେବାରୁ ହରିବାବାଙ୍କ ପ୍ରଥମ ନାମ ରହିଥିଲା ଦିଓ୍ୱାନ ସିଂହ । ମନ ଦେଇ ସେ ପାଠ ପଢ଼ିଲେ । ହୋସିଆରପୁର ହାଇସ୍କୁଲରୁ ମାଟ୍ରିକ ପାସ କରି ଗଲେ ଲାହୋର ସହର । ଇଣ୍ଟର ପରେ ମେଡ଼ିକାଲ କଲେଜରେ ନାମ ଲେଖାଇଲେ । ପିଲାଦିନୁ ସେ ଘର ପାଖରେ ରହୁଥିବା ଜଣେ ଅଦ୍ୱୈତ ବେଦାନ୍ତୀ ସନ୍ଥ ଶ୍ରୀ ସଚ୍ଚିଦାନନ୍ଦ ଗିରିଙ୍କ ସଂପର୍କରେ ଆସିଲେ । ତାଙ୍କୁ ଗୁରୁ ମାନିଲେ । ତାଙ୍କର ବହୁତ ସେବା କଲେ । ନିର୍ମଳ ନିଷ୍କପଟ ଗୁରୁସେବା ହେତୁ ପରା ବୈରାଗ୍ୟର ଅଙ୍କୁର ଦେଖାଗଲା ତାଙ୍କ ହୃଦୟରେ । କ୍ରମେ ତାଙ୍କର ସଂସାର ବୈରାଗ୍ୟ ପାକଳ ହେଲା । ସଂସାର ଭୋଗ ଲାଳସାରେ ସ୍ୱାଭାବିକ ଅରୁଚି ହେଲା ।

### ଜ୍ଞାନ ସାଧନରେ ବାବା

ଦିଓ୍ୱାନ ସିଂହ ଡ଼ାକ୍ତରୀ ପାଠ ଛାଡ଼ିଦେଲେ । ଆସିଗଲେ ଜ୍ଞାନ ଭୂମି କାଶୀକ୍ଷେତ୍ର । ନିଜର ସବୁ ଜିନିଷ ଦୀନ ଦୁଃଖୀଙ୍କୁ ବାଣ୍ଟି ଦେଲେ । କାଶୀରେ କୁଡ଼ିଆ ଖଣ୍ଡେ କରି ରହିଲେ । ଭିକ୍ଷା ମାଗି ଚଳିଲେ । ଦୀର୍ଘ ତିନି ବର୍ଷ କଠୋର ସାଧନା କରି ଫେରିଲେ ଗୁରୁଦେବଙ୍କ ପାଖକୁ । ଗୁରୁ ଦେଖି ଆଶ୍ଚର୍ଯ୍ୟ ହେଲେ । କହିଲେ, 'ଦିଓ୍ୱାନ୍, ତୁମେ ନିଜେ ନିଜେ ପକ୍‌କା ଜ୍ଞାନୀ ସନ୍ନ୍ୟାସୀ ହୋଇସାରିଛ । ତୁମ ନାମ ରହିଲା ସ୍ୱତଃ ପ୍ରକାଶ । ତୁମେ ଆହୁରି ଜ୍ଞାନ ସଂଗ୍ରହରେ ଲାଗି ପଡ଼ ।' ଗୁରୁଙ୍କ ଆଶିର୍ବାଦ ନେଇ ସେ ପହଞ୍ଚିଲେ ଗଙ୍ଗା ତଟସ୍ଥିତ ଭୃଗୁ କ୍ଷେତ୍ର । ଭେଟିଲେ ମହାପୁରୁଷ ଓଡ଼ିଆ ବାବାଙ୍କ ସାନ୍ନିଧ୍ୟରେ ଥିବା ଅଚ୍ୟୁତ ମୁନିଙ୍କୁ । ଯାହାଙ୍କ ଅପାର କୃପାରୁ ସେ ଅଦ୍ୱୈତ ବେଦାନ୍ତୀ ପଣ୍ଡିତ ବୋଲାଇଲେ । ତଥାପି ସେ ଶୁଷ୍କ ଜ୍ଞାନ ସାଧନାରେ ଅତୃପ୍ତ ଅସନ୍ତୁଷ୍ଟ ରହୁଥାଆନ୍ତି ।

## ଭକ୍ତି ସାଧନରେ ସୁଖୀ

ଦିନେ ଓ୍ୱାର୍ଦ୍ଧା ସହରରେ ପହଞ୍ଚି **ଶ୍ରୀରାମ ଜୟରାମ ଜୟ ଜୟ ରାମ** ମନ୍ତ୍ରର ଅଖଣ୍ଡ କୀର୍ତ୍ତନରେ ଯୋଗ ଦେଲେ । ସେଦିନ ଆକଣ୍ଠ ହରି ରସ ପାନ କରି ସୌଭାଗ୍ୟକୁ ଭେଟିଲେ ଜଣେ ରସିକ ସନ୍ଥ ପରାଂଜପେଙ୍କୁ । ତାଙ୍କ ନିର୍ଦ୍ଦେଶରେ ପଢ଼ିଲେ ଖଣ୍ଡେ ଇଂରାଜୀ ପୁସ୍ତକ ଲର୍ଡ଼ ଗୌରାଙ୍ଗ । ସେହି ବହି ଖଣ୍ଡକ ତାଙ୍କ ଜୀବନର ଗତିପଥ ସଂପୂର୍ଣ୍ଣ ବଦଳାଇ ଦେଲା । ଏଣିକି ଧ୍ୟାନ ଛାଡ଼ି ସେ ନାମ ସଂକୀର୍ତ୍ତନ କଲେ । ଶୁଷ୍କ ବେଦାନ୍ତ ଜ୍ଞାନ ଉପରେ ଭକ୍ତିର ପୁଟ ଚଢ଼ିଗଲା । ଅଦ୍ୱୈତ ସିଦ୍ଧି ପରେ ଦ୍ୱୈତର ମାଦକତା ଓ ରସ ବୈଲକ୍ଷଣ ସେ ନିଜେ ଅନୁଭବ କଲେ । ବ୍ରହ୍ମାନନ୍ଦର ସମାଧିର ସ୍ୱାଦ ରହିଗଲା କାହିଁ କେତେ ପଛରେ । ଚାଖିଲେ ସେ ଗୌରପ୍ରେମାନନ୍ଦର ସ୍ୱାଦୁ ।

## ଜ୍ଞାନୀ ଗୁରୁଙ୍କ ଗଞ୍ଜଣା

ସେ ଦିନେ ଗୁରୁ ଅଚ୍ୟୁତାମୁନିଙ୍କୁ ଯାଇ ଭୃଗୁ କ୍ଷେତ୍ରରେ ଦେଖାକଲେ । ଗୁରୁ ମନ ଇଛା ତାଙ୍କୁ ଅନେକ ଗାଳି ମନ୍ଦ କଲେ । କହିଲେ, 'ବାବୁ, ତୁମେ ମୋ ଠାରୁ ବେଦାନ୍ତ ଶିଖିଲ । ପୁଣି କାହାଠାରୁ କୀର୍ତ୍ତନ ଶିଖି ନର୍ତ୍ତକୀ ହେଲଣି । ତୁମେ ବେଦାନ୍ତ ପଢ଼ା ଛାଡ଼ କିମ୍ୱା କୀର୍ତ୍ତନ କରି ନର୍ତ୍ତକୀ ହେବା ଛାଡ଼ ।' ସ୍ୱତଃ ପ୍ରକାଶ ଗୁରୁଙ୍କୁ ସଭକ୍ତିକ ପ୍ରଣାମ କରି ଶ୍ରୀବୃନ୍ଦାବନକୁ ଆସିଲେ । ଓଡ଼ିଆ ବାବାଙ୍କ ଆଶ୍ରମରେ ରହି ତାଙ୍କ ସାନିଧ୍ୟରେ ଜ୍ଞାନ-ପ୍ରେମର ଅଦ୍ଭୁତ ସମନ୍ୱୟ ଶିକ୍ଷା କଲେ । ରାଧାକୃଷ୍ଣ ପ୍ରେମ ସହିତ ଗୌର ନିତାଇ ପ୍ରେମ ସଂକୀର୍ତ୍ତନ କରିବୁଲିଲେ । ଛାଡ଼ିଲେ ବେଦାନ୍ତ । ଧରିଲେ ଗୌର ପ୍ରେମ ।

## ନାମ ପ୍ରେମର ସ୍ୱାଦ

ହୃଦୟରେ ତାଙ୍କର ଏତେ ପ୍ରେମର ଉଦ୍ରେକ ହେଲା ଯେ ସେହି ଗୌରପ୍ରେମ ତାଙ୍କ ଜୀବନ ବାହାରେ ମଧ୍ୟ ଉଛୁଳି ପଡ଼ିଲା । ଥରେ ସେ ବାଟରେ ଦେଖିଲେ ଜଣେ ବୃଦ୍ଧ ହାଣ୍ଡି କୁଣ୍ଢେଇ ମୁଣ୍ଡେଇ ଏକାକୀ ଯାଉଛି । ତାକୁ କହିଲେ, 'ବାବା, କେତେ କଷ୍ଟ ସହୁଛ ? ମୁଁ ଜଣେ ସମର୍ଥବାନ ଲୋକ । ବୋଝ ମୁଣ୍ଡେଇ ମୁଁ ଚାଲୁଛି । ତୁମ କାମ ମୁଁ କରୁଛି । ତୁମେ ମୋ ସହଜିଆ କାମଟେ କର । ହରେକୃଷ୍ଣ ମହାମନ୍ତ୍ର କୀର୍ତ୍ତନ କରି ମୋ ପଛେ ପଛେ ଆସ ।' ପ୍ରଥମେ ନା ନା କରି ବୃଦ୍ଧ ତାଙ୍କ କଥାକୁ ମାନିଲେ । ହରିନାମ କଲେ । ତିନି କି.ମି. ବାଟ ଶେଷ ହେଲା । ବାବା ଏବେ ବୃଦ୍ଧଙ୍କୁ ବୋଝ ଦେଇ କହିଲେ, 'ମହାଶୟ, ମୁଁ ତୁମ ଗଣ୍ଠିଲି ବୋହିଲି । ପଇସା ନେଲି ନାହିଁ । ଏଣିକି

ସବୁ ଦିନ ସେ ବାବଦରେ କିଛି ସମୟ ଲେଖାଏଁ ଏହି କୀର୍ତ୍ତନ ନିଜେ କର ଏବଂ ଅନ୍ୟଙ୍କୁ କରାଅ ।' ଏଣିକି ସ୍ୱତଃ ପ୍ରକାଶ କେବେକେବେ କାହା ହାତରୁ ଲଙ୍ଗଳ ଛଡ଼ାଇ, କେଉଁ ଧୋବା ହାତରୁ ଲୁଗା କାଚିବା ଛଡ଼ାଇ ପୁଣି କେଉଁ ବୃଦ୍ଧା ପାଇଁ ଗୋବର ଘଷି ବନେଇବା କାମ ଛଡ଼େଇ ନିଅନ୍ତି । ହରି ନାମ ହରି କୀର୍ତ୍ତନ ଶିକ୍ଷା ଦେବାରେ ଆନନ୍ଦ ପାଆନ୍ତି । ଉତ୍ତର ପ୍ରଦେଶର ଅନୁପ ସହରଠାରେ ଗଙ୍ଗାନଦୀର ବନ୍ୟା ଦାଉରୁ ଅନେକ ଗ୍ରାମକୁ ରକ୍ଷା କରିବାକୁ ଏକ ବିରାଟ ନଦୀବନ୍ଧ ନିର୍ମାଣ କରିପାରିଥିଲେ । ସାଧନ କେବଳ ଦିନରାତି ହରିନାମ ସଂକୀର୍ତ୍ତନ । ପ୍ରତ୍ୟେକ ବର୍ଷ ଭଜନ, କୀର୍ତ୍ତନ, ପ୍ରବଚନ କରି ବାର୍ଷିକ ଉତ୍ସବ ଏବେ ମଧ୍ୟ ପାଳନ ହେଉଛି ସେଠାରେ ।

## ସିଦ୍ଧିମାନେ ଶରଣ ପଶିଲେ ବାବାଙ୍କ ପାଖରେ

ତାଙ୍କ ପାଇଁ ହରି ନାମର ପ୍ରଚାର ପ୍ରସାର ଏଣିକି ଚେର ଧରିଲା । ବାବାଙ୍କ ଅଜ୍ଞାତରେ ସିଦ୍ଧିମାନେ ତାଙ୍କ ଜୀବନରେ ଚମତ୍କାର ଦେଖାଇଲେ । ଥରେ ଯାଉ ଯାଉ ସେ ବ୍ରଜମଣ୍ଡଳର ଗୋଟେ ଗାଁରେ ପହଞ୍ଚିଲେ । ଚାଷୀ ଭାଇମାନେ ତାଙ୍କ ଦୁଃଖ ଜଣାଇଲେ । ଗାଁରେ ଅନାବୃଷ୍ଟି ହେତୁ ଫସଲ ନଷ୍ଟ । ବାବା କହିଲେ, 'ଭାଇମାନେ, ପରୁଆ କରନା । ଆସ ମୋ ସାଙ୍ଗରେ ମିଶି ସାତ ଜଣ ଦିନ ରାତ୍ରି ଗାଁ ଦାଣ୍ଡରେ କୀର୍ତ୍ତନ କରି ବୁଲ । ନାମ ଉପରେ ଭରସା ରଖ । ଗୌର କୀର୍ତ୍ତନର ଫଳ ନିଶ୍ଚୟ ଫଳିବ । ଶେଷ ଦିନ ମହୋତ୍ସବ କରି ଭୋଜି ଖାଇବା ଗାଁ ଯାକ ଲୋକ ।' ତାଙ୍କ କଥା ମାନିଲେ ଅନେକ ଗ୍ରାମବାସୀ । ସାତଦିନ ପୁରିଲା ବେଳକୁ ଗାଁ ସାରା ଲୋକ କୀର୍ତ୍ତନରେ ମାତିଲେଣି । ରାତି ଅର୍ଦ୍ଧବେଳକୁ କାହିଁ କୁଆଡୁ କଳା ମେଘ ଘୋଟି ଆସିଲା । ଆଖ ପାଖ ଦଶ ଖଣ୍ଡ ଗାଆଁ ଜଳରେ ଭାସିଲା । ଜଗତ ଜାଣିଲା ହରିନାମ କୀର୍ତ୍ତନର ଫଳ ।

## ମହାତ୍ମାମାନଙ୍କର ମହାତ୍ମା

ହରିବାବା କୀର୍ତ୍ତନ କରି କାହାର ଦୁରାରୋଗ୍ୟ ଭଲ କରିଦେଲେ ତ ପୁଣି କାହାଘରେ ସଂକୀର୍ତ୍ତନ କରାଇ ଭୁତ ଯୋନି, ପଶୁଯୋନିରୁ କାହାର ଉଦ୍ଧାର କରି ଚାଲିଲେ । ଲୋକେ ଭୁଲିଗଲେ ସ୍ୱତଃ ପ୍ରକାଶଙ୍କୁ । ତାଙ୍କ ନାମ ହେଲା ଏଣିକି 'ହରିବାବା' । ସେ ବୁଲି ବୁଲି ଶ୍ରୀବୃନ୍ଦାବନ, କାମ୍ୟବନ, ନନ୍ଦଗାଉଁ, ବର୍ଷାଣା ଆଦି ସ୍ଥାନରେ ଗୌରକୀର୍ତ୍ତନ କଲେ ଓ କରାଇଲେ । ହରିବାବାଙ୍କ ସଂସ୍ପର୍ଶରୁ ଶ୍ରୀ ଆନନ୍ଦମୟୀ ମା' ମଧ୍ୟ ଗୌରପ୍ରେମ ରସର ସ୍ୱାଦୁ ଚାଖିଲେ । ସେ କହି ବୁଲିଲେ ହରିବାବାଙ୍କ ଯୋଗୁ ତାଙ୍କ ଜୀବନ ଧନ୍ୟ ହେଲା ।

|| ଅପଣ୍ଡିତ ଦାମୋଦର ବଳିୟାରସିଂହ ||

ଓଡ଼ିଆ ବାବା ବୃନ୍ଦାବନ ମୋତିଝିଲରେ ତାଙ୍କ ଆଶ୍ରମରେ ହରିବାବାଙ୍କ ପାଇଁ ଏକ ସ୍ୱତନ୍ତ୍ର କୋଠରୀ ନିର୍ମାଣ କଲେ । ହରିବାବାଙ୍କୁ ସେଠାରେ ରଖାଇଲେ । ଦିନ ରାତି ସଂକୀର୍ତ୍ତନ ଖୁବ୍ ଜମିଲା । ହରିବାବା ପ୍ରମାଣ କରି ଦେଖାଇଦେଲେ ଯେ ଗୌରଲୀଳା ସାଧନ ହେଲେ କୃଷ୍ଣଲୀଳା ସାଧ । ଗୌରଲୀଳା ଆମକୁ ଶ୍ରୀକୃଷ୍ଣଙ୍କ ପାଇଁ କାନ୍ଦିବା ଶିଖାଉଛି । ଆମ ହୃଦୟରେ କୃଷ୍ଣ ପ୍ରାପ୍ତିର ଲାଳସା ଉତ୍ପାଦନ କରୁଛି । ଛଟପଟ କରିବା ଶିକ୍ଷା ଦେଉଛି । ସଂସାରରେ ଯାବତୀୟ ଦୁଃଖକଷ୍ଟ ଯାତନା ଭୁଲିବାକୁ ଗୌରଲୀଳା ଏକ ବଢ଼ିଆ ଉପାୟ । ଜ୍ଞାନ, ବୈରାଗ୍ୟ, ଗବେଷଣା କିଛି ଲୋଡ଼ା ପଡ଼େନା ଏଥିରେ । ଗୌର ଭକ୍ତ ସଙ୍ଗ କରି ଅହରହ ହରି କୀର୍ତ୍ତନ କରି ଡ଼ିଆଁକୁଦା କର । ଜ୍ଞାନ ବୈରାଗ୍ୟ ଇତ୍ୟାଦି ସବୁକିଛି ସାଧକ ପଛେ ପଛେ ଦୌଡ଼ିବେ ।

## ବୈରାଗ୍ୟର ଦୀପଶିଖା ବାବା

ହରିବାବାଙ୍କର ଜୀବନର ବୈଚିତ୍ର୍ୟ ହେଲା ଯେ ସାରା ଜୀବନରେ କେବେ ବି ଖୁସିରେ ପେଟ ପୁରାଇ ସେ ଗଣ୍ଡେ ଖାଇନାହାନ୍ତି । ମନ ପୁରେଇ ଦିନେ ନରମ ଶେଜରେ ସୁଖରେ ଶୋଇନାହାନ୍ତି । ସେ ସାରା ଜୀବନ କିନ୍ତୁ ଗୌର ପ୍ରେମାନନ୍ଦ ମଦିରାକୁ ଆକଣ୍ଠ ପାନ କରି ମତୁଆଲା ହୋଇଛନ୍ତି । ସେ କହନ୍ତି ଆନନ୍ଦ ହୃଦୟର ବସ୍ତୁ । ସଂସାରୀ ସୁଖ, ବିଳାସ ସବୁ ମନର ବସ୍ତୁ । ହୃଦୟ ଆନନ୍ଦ ନିକଟରେ ମନର ସୁଖ ସୁବିଧା ସବୁ ସୁଅ ମୁହଁରେ କୁଟା କାଠି ପରି । ସେ ତାଙ୍କ ଜୀବନରେ ଜଣେ ହେଲେ କାହାକୁ ଶିଷ୍ୟ କରିନଥିଲେ । କେହି ଅନୁରୋଧ କଲେ କହୁଥିଲେ, ''ଭାଇ, ମୁଁ ଜୀବନରେ କାହାରି ଭଲ ଶିଷ୍ୟଟେ ହୋଇପାରିଲିନି । ନିଜ ଗୁରୁଙ୍କ ଠାରୁ ଗାଳି, ମନ୍ଦ ଓ ଅପମାନ ଖାଇଲି । ମୁଁ ପୁଣି ଗୁରୁ ହେବି କେମିତି ?''

ଅତଏବ ଏକ ବାକ୍ୟରେ କହିଲେ ସଂସାର ବୈରାଗ୍ୟ ଓ ଦୀନତାର ପ୍ରତିମୂର୍ତ୍ତି ଥିଲେ ହରିବାବା । ସେହି ମହାପୁରୁଷ ୧୯୭୦ ମସିହାରେ କାଶୀ କ୍ଷେତ୍ରରେ ନିଜର ପାର୍ଥିବ ଶରୀର ତ୍ୟାଗ କଲେ । ଗୌର ପାର୍ଷଦ ରୂପେ ନିତ୍ୟ ଗୌର ଲୀଳାରେ ପ୍ରବେଶ କରିଗଲେ । ନାମ ସଂକୀର୍ତ୍ତନରେ ଜୟ ହେଉ । ହରିବାବାଙ୍କର ଜୟ ହେଉ ରାଧା-କୃଷ୍ଣ ଓ ଗୌର-ନିତାଇଙ୍କର ଜୟ ହେଉ ।

## ୧୦. ଶ୍ରୀ ଗୌରାଙ୍ଗ ଦାସ ବାବାଜୀ(ବୃନ୍ଦାବନ)

ପ୍ରଶ୍ନ-୮୨ : ଶ୍ରୀରାମ ଅବତାରରେ ଶବରୀ ଉଚ୍ଛିଷ୍ଟ ଭୋଜନ କଥା ବାଲ୍ମିକୀ ରାମାୟଣ କହନ୍ତି । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଉଚ୍ଛିଷ୍ଟ ପ୍ରଥମେ ମା'ବିମଳା ପାଆନ୍ତି ।

ପୁଣି ସେହି ଉଚ୍ଛିଷ୍ଟ ମହାପ୍ରସାଦଙ୍କୁ ସକଳ ଦେବୀ ଦେବତା ଦାନବ ମାନବ ସମସ୍ତେ ପ୍ରସାଦ ରୂପରେ ଗ୍ରହଣ କରନ୍ତି । ଶ୍ରୀଜଗନ୍ନାଥ କିନ୍ତୁ କେଉଁ ମହାପୁରୁଷଙ୍କର ଉଚ୍ଛିଷ୍ଟ ଗ୍ରହଣ କରିବାକୁ ଲାଳାୟିତ ହେଲେ ?

## ସାଧନାର ପ୍ରଥମ ପାହାଚ

ଉ. ସନ ୧୮୮୭ ମସିହାରେ ବଙ୍ଗ ଦେଶରେ ଚବିଶ ପ୍ରଗଣା ଜିଲାରେ ଧୀରେନ୍ଦ୍ର ନାଥ ଚକ୍ରବର୍ତ୍ତୀ ନାମରେ ପିତା ଭୂପେନ୍ଦ୍ର ଓ ମାତା ଚଣ୍ଡୀଦେବୀଙ୍କ କୋଳରେ ସେ ଭାଗ୍ୟବାନ ମହାପୁରୁଷ ପ୍ରକଟ ହୋଇଥିଲେ । ପରବର୍ତ୍ତୀ ନାମ ତାଙ୍କର ଗୌରାଙ୍ଗ ଦାସ ବାବାଜୀ । ସେ ଦାର୍ଜିଲିଂରେ ମାଟ୍ରିକ ପ୍ରଥମ ଶ୍ରେଣୀରେ ପାସ୍ କରି କଲିକତା ସହରରେ ସଂସ୍କୃତ ଶିକ୍ଷା କରିଥିଲେ । ସଂସାରର ସକଳ ଜାଗତିକ ସୁଖ ସୁବିଧା, ପିତାମାତା ଗୁରୁଜନଙ୍କ ସ୍ନେହ ଓ ଲୋଭନୀୟ ପ୍ରକାଣ୍ଡ ମେଧାଶକ୍ତି ତାଙ୍କୁ ମିଳିଥିଲା । ତଥାପି କିଛି ଅଲୌକିକ ବସ୍ତୁ(ଈଶ୍ୱରୀୟ ପ୍ରେମ)ର ଅଭାବ ସେ ସର୍ବଦା ଅନୁଭବ କରୁଥିଲେ । ଜୀବନରେ ଅନେକ ଜ୍ଞାନ ମାର୍ଗୀ ସିଦ୍ଧ ପୁରୁଷଙ୍କୁ ସେ ଭେଟିଥିଲେ । ସେମାନଙ୍କର ଶୁଷ୍କ ସମାଧି ଆନନ୍ଦ ବା ଜ୍ଞାନ ଯୋଗ ସାଧନା ତାଙ୍କୁ ଆଦୌ ଆକୃଷ୍ଟ କରି ପାରିନଥିଲା ।

## ମନ୍ତ୍ର ଦୀକ୍ଷାବେଳେ ସମାଧିସ୍ଥ:

ପୂର୍ବ ଜୀବନର ବୈଷ୍ଣବ ସାଧନାର ଫଳ ତାଙ୍କୁ ଶେଷରେ ମିଳିଗଲା । ଶ୍ରୀରାଧାରମଣ ଚରଣ ଦାସ(ବଡ଼ ବାବାଜୀ)ଙ୍କର ଶିଷ୍ୟ ଶ୍ରୀରାମଦାସଜୀ ମହାରାଜଙ୍କ ଦର୍ଶନ ସେ ପ୍ରାପ୍ତହେଲେ । ଗୁରୁ ପଦରେ ତାଙ୍କୁ ହିଁ ବରଣ କଲେ । ଦୀକ୍ଷାମନ୍ତ୍ର ତାଙ୍କ କାନରେ ପ୍ରବେଶ କରୁ କରୁ ସେ ମୂର୍ଚ୍ଛିତ ହୋଇଗଲେ । ସମାଧିରେ ଦୀର୍ଘ ଆଠଘଣ୍ଟା କାଳ ଚିନ୍ମୟ ଜଗତରେ ବୁଲି ବୁଲି ଫେରିଲେ ପୁଣି ଏ ଜଗତରେ ଗୁରୁଙ୍କ ଆଶ୍ରମକୁ । ତାଙ୍କର ଦିବ୍ୟ ଅଭିଜ୍ଞତା ବର୍ଣ୍ଣନାକରି ସେ କହିଲେ ଯେ ସେ ନିଜକୁ ଏକ ସୁନ୍ଦରୀ ଗୋପବାଳିକା ବେଶରେ ଯମୁନା କୂଳ ଉପବନରେ କିଛି ଫୁଲର ମାଳ କରି ସାଙ୍ଗରେ ଧରି ଶ୍ରୀରାଧାଙ୍କ ବେଣୀରେ ସଜାଇବାକୁ ଯାଉଥିବା ଦେଖିଲେ । ଚେତନା ସିନା ତାଙ୍କର ଫେରିଲା ହେଲେ ମନ ତାଙ୍କର ସେ ଜଗତରେ ପ୍ରାୟତଃ ଲାଖି ରହିଯାଇଥିଲା । ଏ ଜଗତର ଚିଜ ସବୁ ସେ ଦେଖି ମଧ ଦେଖୁନଥିଲେ । କଥା ସବୁ ଶୁଣି ମଧ ଶୁଣୁ ନଥିଲେ । କାରଣ ତାଙ୍କର ମନର ମୁଖ୍ୟ ଅଂଶ ସେ ଅଲୌକିକ ଜଗତ କଥା ଚିନ୍ତନ କରିବାରେ ବ୍ୟସ୍ତ ରହୁଥିଲା । ମନର ବିନା ସହଯୋଗରେ ତାଙ୍କର ଇନ୍ଦ୍ରିୟମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ସଂପୂର୍ଣ୍ଣ ଶିଥିଳ ହୋଇଗଲେ ।

## ନୀଳାଚଳ ଧାମରେ ଗୁରୁଙ୍କ ସହ

କିଛି ଦିନ ପରେ ସେ ପ୍ରକୃତିସ୍ଥ ହେଲେ । ପାଠରେ, ଖେଳରେ, କୁସ୍ତିରେ, ସଙ୍ଗୀତରେ, ଚିତ୍ରାଙ୍କନ ଇତ୍ୟାଦି ସକଳ ଜାଗତିକ ବିଦ୍ୟାରେ ସର୍ବଦା ଧୀରେନ୍ଦ୍ର(ଗୌରାଙ୍ଗ ଦାସ ବାବାଜୀ) ପ୍ରଥମ ସ୍ଥାନରେ ହିଁ ରହିଲେ । ବିବାହ କରିବା ପ୍ରସଙ୍ଗ କିନ୍ତୁ ତାଙ୍କ ମନ ରାଇଜରୁ ହଟିଗଲା । ସୁଖ ସମୃଦ୍ଧିପୂର୍ଣ୍ଣ ସଂସାର ଗଢ଼ିବାର ସମ୍ଭାବନାକୁ ଜଳାଞ୍ଜଳି ଦେଇ ସେ ଦିନେ ତ୍ୟାଗ ବୈରାଗ୍ୟର କଣ୍ଟକାକୀର୍ଣ୍ଣ ପଥରେ ବାହାରି ପଡ଼ିଲେ । ସେ ଆଷାଢ଼ ମାସରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବାହୁଡ଼ା ଯାତ୍ରାବେଳେ ଗୁରୁଦେବଙ୍କ ସହିତ ଆସି ପହଞ୍ଚିଗଲେ ପୁରୀ ନୀଳାଚଳ ଧାମରେ । ବାହୁଡ଼ା ଯାତ୍ରା ଶେଷ ହେଉଥାଏ । ରଥ ଉପରେ ଠାକୁରଙ୍କ ଅଧର ପଣା ଭୋଗ ଲାଗୁଥାଏ । ଧୀରେନ୍ଦ୍ରଙ୍କର ଲାଳସା ହେଲା ସେହି ଅଧର ପଣା ପ୍ରସାଦ ପାଇବାକୁ । ଠିକଣା ସମୟରେ ରଥ ଉପରେ ହାଣ୍ଡି ଭଙ୍ଗା ହେଲା । ସେ ଆଞ୍ଜୁଳା ଆଞ୍ଜୁଳା ପ୍ରସାଦ ସାଉଁଟି ଆଣି ପାଇଲେ । ସେଥିରେ ତାଙ୍କର ମନ ହୃଦୟ ପ୍ରଭୁ ପ୍ରେମରେ ପରିପୂର୍ଣ୍ଣ ହୋଇଗଲା । ରହିଗଲେ କିଛି ଦିନ ପୁରୀରେ ।

ଦିନେ ଧୀରେନ୍ଦ୍ର ପୁରୀରେ ମହାପ୍ରଭୁଙ୍କ ସ୍ନାନ ମଣ୍ଡପରେ ଏକାକୀ ବସି ମହାପ୍ରସାଦ ସେବନ କରୁଥାଆନ୍ତି । ଦର୍ଶନ କଲେ କାହିଁ କେତେ ବଡ଼ ସୁନାର ହାତ ଲମ୍ବି ଆସିଛି ତାଙ୍କ ଖଲି ଉପରକୁ । ସେ ସଙ୍କୋଚରେ ନିଜ ହାତକୁ ଉଠାଇନେଲେ । ଥରକୁ ଥର ସେ ହାତ ତାଙ୍କ ଉଚ୍ଛିଷ୍ଟକୁ ନେବାରେ ଲାଗିଛି । ତାଙ୍କର ଦୁଇ ଚକ୍ଷୁରୁ ଲୋତକ ଝରି ଆସିଲା । ଠପ୍ ଠପ୍ ହୋଇ ତାଙ୍କ ଅଶ୍ରୁ ଖଲିରେ ପଡ଼ିଲା । ସେ ବୁଝିଗଲେ ଶ୍ରୀଜଗନ୍ନାଥଙ୍କ କୃପା ତାଙ୍କ ଉପରେ ଅଯାଚିତ ଭାବେ ବର୍ଷା ହୋଇଛି । ସେ ଆଉ କାଳ ବିଳମ୍ବ ନକରି ପ୍ରଭୁଙ୍କର ଅଧରାମୃତ ସଂଶ୍ଲିଷ୍ଟ ଭୁକ୍ତ ଅବଶେଷକୁ ଚାଟି ଚୁଟି ସଫା କରି ଦେଲେ । ଧନ୍ୟ ହେଲା ତାଙ୍କ ମଣିଷ ଜୀବନ । ସଫଳ ହେଲା ତାଙ୍କ ଗୁରୁଦେବଙ୍କ ସହ ସେ ବର୍ଷର ରଥ ଯାତ୍ରା ଦର୍ଶନ ।

## ମାନସୀ ସେବାରେ ମନ ଲାଗିଲା

ରଥଯାତ୍ରା ଦର୍ଶନ କରି ଧୀରେନ୍ଦ୍ର କଲିକତା ଫେରି ଆସିଲେ । ଗୁରୁ ଆଜ୍ଞାରେ ଗଲେ ନବଦ୍ୱୀପ ଧାମ । ନବଦ୍ୱୀପରେ ସେତେବେଳେ ବଡ଼ ବାବାଜୀ ଶ୍ରୀ ରାଧାରମଣ ଚରଣ ଦାସଜୀଙ୍କ ପ୍ରଧାନ କୃପାପାତ୍ରୀ ରୂପରେ ବିଶେଷ ଜଣାଶୁଣା ସାଧକ ଲଳିତା ଦାସୀ ଥାଆନ୍ତି । ତାଙ୍କର ପୂର୍ବନାମ ଗୋପାଳ ଦାସ । ଶ୍ରୀଜଗନ୍ନାଥ ଧାମରେ ଅଲୌକିକ

ଭାବରେ ପାଟଶାଢ଼ୀ ଓ ଚିଠିପାଇ. ସେ ବଡ଼ ବାବାଜୀଙ୍କ ପାଖରେ ରହି .ଗୋପୀ ଭାବରେ ସାଧନା କରୁଥାଆନ୍ତି । ଧୀରେନ୍ଦ୍ର .ତାଙ୍କ ଠାରୁ ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥର ଅତ୍ୟନ୍ତ ଗମ୍ଭୀର ଅଧ୍ୟୟନ କଲେ । ଏବେ ଗୁରୁ ଆଦେଶରେ ପହଞ୍ଚିଲେ ଶ୍ରୀବୃନ୍ଦାବନ ଧାମରେ । ରହିଲେ କାଳୀୟ ହ୍ରଦ ନିକଟରେ ଶ୍ରୀ ଜଗଦୀଶ ବାବାଜୀଙ୍କ ସେବାରେ । ତାଙ୍କଠାରୁ ଅଷ୍ଟକାଳୀୟ ସେବା ଶିକ୍ଷା କଲେ । ଦିବସ ରାତି ମାନସିକ ସେବାରେ ଗୁରୁ ଶିଷ୍ୟ ଦୁହେଁ ବୁଡ଼ି ଯାଉଥିଲେ । ଧୀରେନ୍ଦ୍ରଙ୍କ ନାମ ବଦଳି ଏବେ ଗୋପାଳ ରଖାଗଲା ।

କିଛିଦିନ ପରେ ଶ୍ରୀ ଜଗଦୀଶ ବାବାଜୀ ଗୋପାଳଙ୍କୁ ଗୋବର୍ଦ୍ଧନ ପଠାଇଲେ । ସେଠାରେ ଗୋପାଳ ପଣ୍ଡିତ ରାମକୃଷ୍ଣ ଦାସ ବାବାଙ୍କ ଠାରୁ ଜୀବ ଗୋସ୍ୱାମୀ ପାଦଙ୍କ ଲିଖିତ ଷଟ୍ ସନ୍ଦର୍ଭ ସହିତ ଶ୍ରୀମଦ୍‌ଭାଗବତ ଗ୍ରନ୍ଥମାନଙ୍କର ମର୍ମ ଜ୍ଞାତ ହେଲେ । ତାଙ୍କ ପ୍ରଖର ମେଧାଶକ୍ତି ବ୍ରଜ ଭାଷା ଲିଖିତ ବୈଷ୍ଣବ ଗ୍ରନ୍ଥମାନଙ୍କର ରସାଳ ରଚନାକୁ ମଧ୍ୟ ଆତ୍ମସାତ କରାଇବାରେ ସାହାଯ୍ୟ କଲା । ବେଦ, ବେଦାନ୍ତ, ଭାଗବତ ଇତ୍ୟାଦି ମନ୍ତ୍ର ଶ୍ଳୋକ ସବୁକୁ ସେ ଅନର୍ଗଳ ଭାବରେ ଚକ୍ଷୁ ମୁଦ୍ରିତ କରି ସୁନ୍ଦର ବ୍ୟାଖ୍ୟା କରି ସାଧୁ ସମାଜଙ୍କୁ ଅଲୌକିକ ଭାବରେ ପ୍ରଭାବିତ କରିପାରୁଥିଲେ । ତାଙ୍କ ସତ୍‌ସଙ୍ଗ ମଧ୍ୟରେ ବକ୍ତା ଶ୍ରୋତା ଉଭୟ ପ୍ରବଚନ ସମୟରେ ଅଷ୍ଟ ସାତ୍ତ୍ୱିକ ଭାବରେ ଭାବ ସମାଧି ପ୍ରାପ୍ତ ହୋଇ ନିଜ ନିଜ ଜୀବନକୁ ଧନ୍ୟ କଲେ । ପଣ୍ଡିତ ବାବାଙ୍କ ଠାରୁ ଶେଷରେ ଅସଲି ସଂସାର ବୈରାଗ୍ୟ ଶିକ୍ଷା କରି ସେ ସନ୍ନ୍ୟାସୀ ହୋଇଗଲେ । ପୁଣି ଗୋପାଳ ନାମ ମଧ୍ୟ ବଦଳିଗଲା । ଏବେ ସେ ହେଲେ ଶ୍ରୀ ଗୌରାଙ୍ଗ ଦାସ ବାବାଜୀ ।

## ଗୋଆଲା ପୋଖରୀରେ ଗୋବିନ୍ଦ ପ୍ରାପ୍ତି

ବାବାଙ୍କ ହୃଦୟରେ ପ୍ରିୟା ପ୍ରିୟତମଙ୍କର ଆସନ ଜମି ଉଠିଲା । ଗୋବର୍ଦ୍ଧନରେ ଥିବାବେଳେ ଥରେ ରାତିରେ ସେ ସ୍ୱପ୍ନରେ ଏକ ଦିବ୍ୟ ବିଗ୍ରହ ଦର୍ଶନ କଲେ । ସକାଳେ ଗୋଆଲ ପୋଖରୀରେ ସ୍ନାନ କରୁ କରୁ ପାଦରେ କିଛି କଠିନ ବସ୍ତୁ ଲାଗିବାର ଅନୁଭବ କଲେ । ହାତରେ ଉଠାଇ ଆଣି ଦେଖନ୍ତି ସେ ତାଙ୍କ ସ୍ୱପ୍ନ ଦୃଷ୍ଟ ଦିବ୍ୟ ବିଗ୍ରହ । ବିଗ୍ରହ ପ୍ରାପ୍ତିର ଆନନ୍ଦ ସହିତ ଏକ ଅଦ୍ଭୁତ ସଂକଟ ଦେଖାଦେଲା ତାଙ୍କ ମନରେ । ସେ ବିଚାର କଲେ ଯେ ସେ ଜଣେ ଅକିଂଚନ ବୈଷ୍ଣବ । ସମ୍ପତ୍ତି କହିଲେ ଦୁଇଖଣ୍ଡ କୌପୀନ, ଦୁଇଖଣ୍ଡ ବହିର୍ବାସ ଓ ଗୋଟିଏ ପିତଳ ଲୋଟାରେ କିଛି ବ୍ରଜରଜ । ବାସ୍ ସେତିକି । ଏ ବିଗ୍ରହ ତ ବିଳାସ ପ୍ରିୟ । ତାଙ୍କର ବେଶ, ପୋଷାକ, ଭୋଜନ

ଶୃଙ୍ଗାର ପାଇଁ ଲୋଡ଼ା ପଡ଼ିବ କେତେ କ'ଣ? ରେଶମୀ ବସ୍ତ୍ର, ରୂପାର ବଂଶୀ, ସୁନାର ମୁକୁଟ, ସୁଗନ୍ଧିତ ପୁଷ୍ପମାଲ୍ୟ, ଦାମୀ ଅତର ସହିତ ନିତି ନିତି ନୂତନ କ୍ଷୀରି, ପୁରି, ମାଲପୁଆ ଆଉ ମିଷ୍ଟାନ୍ନ । ଅଡୁଆରେ ପଡ଼ିଗଲେ ଶ୍ରୀ ଗୌରାଙ୍ଗ ଦାସ ବାବା । ମାଳିକୁ ଛେଳି ଅଡୁଆ ନୀତି । ମନେ ପଡ଼ିଲା ଅତୀତରେ ଶ୍ରୀ ସନାତନ ଗୋସ୍ୱାମୀ ଥରେ ଏଭଳି ପରିସ୍ଥିତିରେ ପଡ଼ି ଶ୍ରୀମଦନ ମୋହନଙ୍କୁ ଖରି ଖୋଟି ଶୁଣାଇବା କଥା । ସେତେବେଳେ ଠାକୁର ତାଙ୍କ ନିଜ ଲାଗି ରାମଦାସ କପୁର ନାମକ ଦିଲ୍ଲୀର ଏକ ବ୍ୟାପାରୀ ହାତରେ ଭବ୍ୟ ମନ୍ଦିର (ରାଧା ମୋହନ)ନିର୍ମାଣ କଲେ । ଭକ୍ତ ସନାତନ ସେଇ ଦିନରୁ ବୃନ୍ଦାବନର ସେହି ପ୍ରିୟ ମନ୍ଦିର ଛାଡ଼ି ପଳାୟନ କଲେ । ପ୍ରିୟ ଶିଷ୍ୟ ହାତରେ ଠାକୁର ଓ ତାଙ୍କ ସେବା ଦାୟିତ୍ୱ ଦେଲେ । ନିଜେ କିନ୍ତୁ ସାରା ବ୍ରଜ ମଣ୍ଡଳ ବୁଲି ବୁଲି ଭଜନ କରିଥିଲେ ।

## ବିଗ୍ରହ ସେବାଠାରୁ ମାନସୀ ସେବାରେ ଅଧିକ ଆନନ୍ଦ

ସନାତନ ଗୋସ୍ୱାମୀ ଦେଖିଥିଲେ ଯେ ସିଧା ସଳଖ ମୂର୍ତ୍ତି ପୂଜା କରିବାଠାରୁ ମାନସୀ ସେବାରେ ଠାକୁର ଅଧିକ ପ୍ରସନ୍ନ ହୁଅନ୍ତି । ବ୍ରଜପ୍ରେମ ରସିକମାନେ କହନ୍ତି ଯଶୋଦା ମାଆ ଠାକୁରଜୀଙ୍କ ସ୍ତନ୍ୟପାନ ଲୀଳା ବନ୍ଦ କରି ଉଠି ପଡିଲେ ଚୁଲିରେ ବସିଥିବା ଆଉଟା ଦୁଧ ସମ୍ଭାଳିବାକୁ । ତାଙ୍କ ମନ ସେ କଥା ଭାବୁଥିଲା ଯେ ଦୁଧ ଉତୁରି ପଡ଼ିଲେ ଛୁଆ ଖାଇବ କିସ! ତାହା ହିଁ ମାନସୀ ସେବା । ସେତେବେଳେ ଠାକୁରଙ୍କ ଠେକି ଭାଙ୍ଗି ଉଦୁଖଳରେ ବନ୍ଧା ହେବା ତାଙ୍କର କ୍ରୋଧ କିମ୍ବା ବିରକ୍ତି ଜନିତ ନୁହେଁ ବରଂ ତାଙ୍କର ବାତ୍ସଲ୍ୟ ପ୍ରେମ ଜନିତ । ସୁତରାଂ ସେ ମାଗି ଯାଚି ବିଗ୍ରହ ସେବା କରିବାକୁ ନା ପସନ୍ଦ କଲେ । ମାନସୀ ଚିନ୍ତନରେ ନିତି ନିତି ଦିବ୍ୟ ପୂଜା ଉପକରଣରେ ସେବା କରିବାରେ ଆଗ୍ରହ ପ୍ରକାଶ କଲେ । ରସମୟୀ ରାଗାନୁଗା ରୂପୀ ବଡ଼ ସେବା ପାଇଲେ ବୈଧୀ ଭକ୍ତିରେ କ୍ଷୁଦ୍ରତର ସେବାକୁ ଛାଡ଼ିବାକୁ ହୁଏ ।

## ଘନ ଜଙ୍ଗଲରେ ଭାଗବତ ପ୍ରବଚନ

ବର୍ତ୍ତମାନ ଜଣେ ବ୍ରଜବାସୀଙ୍କ ହସ୍ତରେ ଗୌରାଙ୍ଗ ଦାସ ବାବା ମଧ୍ୟ ପ୍ରାପ୍ତ ବିଗ୍ରହ ଜଣେ ସାଧୁଙ୍କ ହସ୍ତରେ ସମର୍ପଣ କରିଦେଲେ । ଏଣିକି ପୁରା ମସ୍ତିରେ ସାରା ବ୍ରଜମଣ୍ଡଳ ବୁଲି ମାନସୀ ସେବାରେ ମନ ଦେଲେ । ସଦା ସର୍ବଦା ମାନସୀ ସେବା କରି କରି ବାବା ଏବେ ଦିବ୍ୟ ଉନ୍ମାଦ ଅବସ୍ଥାରେ ପହଞ୍ଚିଲେ । ଦିନେ ନଗ୍ନ ଅବସ୍ଥାରେ ମାଧୁକରୀରେ ଯାଇ ଗାଳି ଖାଇଲେ । ଶେଷରେ ବ୍ରଜ ବସ୍ତି ଅଞ୍ଚଳ ଛାଡ଼ି ଘନ

ଜଙ୍ଗଲରେ ପ୍ରବେଶ କଲେ । ତାଙ୍କର ହୃଦୟରେ ଦିବ୍ୟ ଆନନ୍ଦର ସ୍ଫୁର୍ତ୍ତି ହେଲା । ସେ ବଣ ଜଙ୍ଗଲିରେ ବୃକ୍ଷ, ଲତା, ପଶୁ ପକ୍ଷୀଙ୍କ ମଧ୍ୟରେ ପ୍ରିୟା-ପ୍ରିୟତମଙ୍କୁ ଦର୍ଶନ କଲେ । ସେମାନଙ୍କୁ ଘନ ଜଙ୍ଗଲରେ ଭାଗବତ ପ୍ରବଚନ ଶୁଣାଇଲେ । ବୃକ୍ଷମୂଳେ ହରିଗୁଣ ଗାନ କରନ୍ତେ ଶୁକ, ଶାରୀ ସେ ବୃକ୍ଷ ଉପରେ ବସନ୍ତି । ମୟୂରମାନେ ଆସି ତାଙ୍କ ସମ୍ମୁଖରେ ପୁଚ୍ଛ ଟେକି ନୃତ୍ୟ କରନ୍ତି । ବୃକ୍ଷମାନଙ୍କର ପରସ୍ପର କଥାବାର୍ତ୍ତା ମଧ୍ୟ ବାବା କ୍ରମେ ବୁଝିପାରିଲେ । ବେଳେବେଳେ ସେମାନେ ବାବାଙ୍କୁ ଭାଗବତଙ୍କର କିଛି ନିର୍ଦ୍ଦିଷ୍ଟ ଲୀଳା ଶୁଣାଇବାକୁ ମଧ୍ୟ ବରାଦ କରନ୍ତି ।

## ଠାକୁରଙ୍କ ବରାଦ ପ୍ରବଚନ

ଶ୍ରୀ ଗୌରାଙ୍ଗ ଦାସଙ୍କ ନିମିତ୍ତ ବ୍ରଜର ବୃକ୍ଷମାନେ ସାବ୍ୟସ୍ତ କଲେ ଯେ ସେମାନେ ମୃତ୍ୟୁ ଲୋକର ସାମାନ୍ୟ ବୃକ୍ଷଲତା ନୁହନ୍ତି ବରଂ ସମସ୍ତେ ଗୋଟିଏ ଗୋଟିଏ କଳ୍ପତରୁ ବା ବାଞ୍ଛାବୃକ୍ଷ । ଦିନେ ଗୋଟିଏ ମନ୍ଦିରର ବିଗ୍ରହ ବରାଦ କଲେ ଶ୍ରୀ ବୃନ୍ଦାବନର ମହିମାମୃତ ବର୍ଣ୍ଣନା କରିବାକୁ । ପ୍ରବଚନ ଶେଷରେ ତାଙ୍କୁ ପ୍ରଥମେ ଭିକ୍ଷା ଦେବାକୁ ଶ୍ରୀରାଧା ଓ ଶ୍ରୀଗୋବିନ୍ଦଙ୍କ ମଧ୍ୟରେ ପ୍ରତିଯୋଗିତା ମଧ୍ୟ ହେଲା । ଥରେ ଶୋଇଥିବା ଅବସ୍ଥାରେ ବାବାଙ୍କ ବକ୍ଷରେ ସର୍ପ ଆସି କୁଣ୍ଡଳି ବାନ୍ଧି ଫଣାଟେକି ରହିଲା । ବାବା ତାଙ୍କୁ ମଧ୍ୟ ଭକ୍ତି ସାହିତ୍ୟ ଶୁଣାଇ ପ୍ରସନ୍ନ କଲେ ।

## ନାମୀଙ୍କ ଠାରୁ ନାମ ବଡ଼

ଦିନେ ବାବାଙ୍କର ପ୍ରଥମ ଗୁରୁଦେବ ଶ୍ରୀରାମ ଦାସ ବାବାଜୀଙ୍କୁ ଦର୍ଶନ କରିବାକୁ ସେ କଲିକତା ଗଲେ । ପ୍ରବଚନରେ ବାବା ହରି ନାମ ମହାତ୍ମ୍ୟ ଶୁଣାଉ ଶୁଣାଉ କହିଲେ, 'ନାମଙ୍କର ଶକ୍ତି ନାମୀଙ୍କ ଠାରୁ ମଧ୍ୟ ଅଧିକ ବଳୀୟାନ । ମଲା ଜୀବକୁ ଜୀବନ ଦେଇପାରନ୍ତି ହରି ନାମ ।'' ଠିକ୍ ଏତିକିବେଳେ ବୃକ୍ଷ ଉପରୁ ଚଢ଼େଇଟିଏ ମରି ତଳେ ପଡ଼ିଲା । ସତେ କି ସ୍ୱୟଂ ଯମରାଜ ବାବାଙ୍କୁ ପରୀକ୍ଷା କରିବାକୁ ଅଣ୍ଟା ଭିଡ଼ିଛନ୍ତି ! ଶ୍ରୋତା ଜଣେ ଯାଇ ଦେଖିଲେ ପକ୍ଷୀଟି ପ୍ରାଣ ଶୂନ୍ୟ । ବାବା କିନ୍ତୁ ସମସ୍ତଙ୍କୁ କହିଲେ ନାମ ସଂକୀର୍ତ୍ତନ କରାଯାଉ । ପ୍ରବଚନ ବନ୍ଦ ହେଲା । ନାମ ସଂକୀର୍ତ୍ତନ ଚାଲିଲା । ସତକୁ ସତ କିଛି ସମୟ ପରେ ପକ୍ଷୀଟି ଉଠି ବସିଲା । ଝାଡ଼ି ଝୁଡ଼ି ହୋଇ ପୁଣି ଆକାଶରେ ଉଡ଼ିଗଲା । ଜିଣିଲେ ନାମ ଭଗବାନ । ହାରିଲେ ଯମ ଦେବତା ।

ବାବା ନିଜେ ସଦା ସର୍ବଦା ସିଦ୍ଧି କିମ୍ବା ଚମତ୍କାର ଦେଖାଇବାଠାରୁ ଦୂରରେ ରହୁଥିଲେ । ସକଳ ସିଦ୍ଧି କିନ୍ତୁ ସେମାନଙ୍କ ତରଫରୁ ବାବାଙ୍କର ସେବା ଲାଗି ଘେରି ରହୁଥିଲେ । କୌଣସି ଦୁଃଖୀ ଲୋକର ଦୁଃଖ କିମ୍ବା ବ୍ୟାଧିଗ୍ରସ୍ତ ଲୋକର ପୀଡ଼ା ଦେଖିଲେ ସେ କୃପାରେ ତରଳି ଯାଉଥିଲେ । କାହାକୁ ସ୍ପର୍ଶ କରିଦେଲେ କିମ୍ବା ତୁମ୍ଭର କଲ୍ୟାଣ ହେଉ ବୋଲି କହିଦେଲେ ସେମାନେ ବ୍ୟାଧିମୁକ୍ତ ହୋଇ ଯାଉଥିଲେ । ଦୁଃଖ କଷ୍ଟ ସେମାନଙ୍କୁ ଛାଡ଼ି ପଳାଉଥିଲେ । ଏପରିକି ବେଳେବେଳେ ଅନେକ ଲୋକଙ୍କର ବ୍ୟାଧିକୁ ସେ ନିଜେ ନେଇ ଆସନ୍ତି । ନିଜ ଶରୀରରେ ପୀଡ଼ା ଭୋଗନ୍ତି ।

ଥରେ ଗୌରାଙ୍ଗ ଦାସ ବାବାଙ୍କ ପିଠିରେ ମସ୍ତବଡ଼ ବଥଟିଏ ହେଲା । ଶିଷ୍ୟମାନେ ତାଙ୍କୁ ନେଇ ଡ଼ାକ୍ତରଙ୍କ ପାଖରେ ପହଞ୍ଚେଇ ଦେଲେ । ଡ଼ାକ୍ତର କ୍ଲୋରୋଫର୍ମ ଦେବାକୁ ଇଞ୍ଜେକସନ୍ ଦେବାକୁ ବାହାରିଲେ । ବାବା କହିଲେ, 'ସେ ସବୁ ଅନାବଶ୍ୟକ । ମୁଁ ଭାଗବତ ଶ୍ଳୋକ ପଠନ ଓ ଚିନ୍ତନ କରୁଛି । ଆପଣ ଶଲ୍ୟ ଚିକିତ୍ସା କରନ୍ତୁ ।' ବଥ ଅପରେସନ ପରେ ବାବାଙ୍କୁ ପୀଡ଼ା କଥା ପଚାରାଗଲା । ବାବା କିନ୍ତୁ କହିଲେ, 'ପୀଡ଼ା ହୁଏ ମନକୁ । ମୁଁ ମନକୁ ନେଇ ଠାକୁରଙ୍କ ଲୀଳା ଚିନ୍ତନ କରୁଥିଲି ଶ୍ଳୋକ ଗାଇ ଗାଇ । ପୀଡ଼ା ହେବା କଥା ମନ କାହୁଁ ଜାଣିବ ?' ବାବା ହସିଲେ । ଡ଼ାକ୍ତର ହସିଲେ । ପିଲାମାନେ ମଧ୍ୟ ହସିଲେ ।

## ରମଣ ରେତିରେ ଲୀଳା ପ୍ରବେଶ

ଏହି ଭଳି ସ୍ୱୟଂ ବାବା ଥରେ ଗୁରୁତର ଅସାଧ୍ୟ ବ୍ୟାଧିର ଶିକାର ହେଲେ । ସେ କୌଣସି ଔଷଧ ସେବନ ଓ ଡ଼ାକ୍ତରୀ ଚିକିତ୍ସା ଲାଗି ରାଜି ହେଲେ ନାହିଁ । ସେ ତାଙ୍କର ପରମଗୁରୁ ଶ୍ରୀ ଶ୍ରୀ ରାଧାରମଣ ଚରଣ ଦାସ ବାବାଜୀଙ୍କ ଚିନ୍ତନ କଲେ । ଯେ ଅନେକ ଦିନରୁ ଦେହ ରକ୍ଷା କରି ସାରିଥାଆନ୍ତି ବୃନ୍ଦାବନର ନିଧୁବନଠାରେ । ତଥାପି ସେ ସୂକ୍ଷ୍ମ ଶରୀରରେ ଆସି ବାବାଙ୍କୁ ଆଶିର୍ବାଦ କଲେ । ତୁରନ୍ତ ବ୍ୟାଧିମୁକ୍ତ କରି ପୁନଃ ପ୍ରତ୍ୟାବର୍ତ୍ତନ କଲେ ଲୀଳା ଧାମକୁ । ପରିଶେଷରେ ୧୯୫୩ମସିହାରେ ଗୌରାଙ୍ଗ ଦାସ ବାବାଜୀ ନିଜେ ରମଣ ରେତି ଧାମରେ **(ଭଜ) ହରେକୃଷ୍ଣ ହରେ ରାମ (ଜପ) ନିତାଇ ଗୌର ରାଧେ ଶ୍ୟାମ** କହି ନିତ୍ୟ ଲୀଳାରେ ପ୍ରବେଶ କରିଗଲେ ।

ଶ୍ରୀ ଗୌରାଙ୍ଗ ଦାସ ବାବାଜୀ କୀ ଜୟ । ଶ୍ରୀ ବୃନ୍ଦାବନ ଧାମ କୀ ଜୟ । ଶ୍ରୀହରି ନାମ ସଂକୀର୍ତ୍ତନକୀ ଜୟ । ଶ୍ରୀ ନିତାଇ ଗୌର ହରିବୋଲ ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

## ୧୧. ଶ୍ରୀହିତ ସନ୍ତଦାସ ବାବାଜୀ(ବୃନ୍ଦାବନ)

ପ୍ରଶ୍ନ-୮୩: ନିଜର ଅସଲ ପରିଚୟକୁ ଗୋପନ ରଖି ଅନ୍ୟ ସହ କଥାବାର୍ତ୍ତା କିମ୍ବା ଲୋକ ବ୍ୟବହାର କରିବାକୁ ଛଳ କୁହାଯାଏ । ଶ୍ରୀରାମ ବୃକ୍ଷ ଆଢୁଆଳରେ ରହି ବାନର ରାଜ ବାଳିଙ୍କୁ ମାରିବା, ସୂର୍ଯ୍ୟ ଓ ଚନ୍ଦ୍ର ଦେବତା ଗୌତମ ପତ୍ନୀ ଅହଲ୍ୟାଙ୍କ ସହିତ ଅନୁଚିତ ବ୍ୟବହାର କରିବା ଓ ଶ୍ରୀବାମନ ଦେବ ଭଗବାନ ନିଜ ଶଙ୍ଖ, ଚକ୍ର ଓ ଗଦା ଆଦି ଆୟୁଧକୁ ଗୋପନ କରି ବଟୁ ବାମନ ବେଶରେ ଦୈତ୍ୟେନ୍ଦ୍ର ବଳିଙ୍କୁ ନିଜ ପାଦରେ ତିନି ପାଦ ଭୂମି ଦାନ ରୂପେ ମାଗିବା ସହିତ ଶ୍ରୀକୃଷ୍ଣ ଅବତାରରେ ସତକୁ ସତ ମାଟି ଖାଇ ନାହିଁ ବୋଲି କହିବା ଇତ୍ୟାଦି ମିଥ୍ୟା, ଛଳ ଓ କପଟର ଅନ୍ତର୍ଗତ । ଭକ୍ତି ଧର୍ମରେ ଏହାର ସଫଳ ପ୍ରୟୋଗ ମଧ୍ୟ ନିନ୍ଦନୀୟ ନ ହୋଇ ବନ୍ଦନୀୟ ବୋଲି ଶ୍ରୀବୃନ୍ଦାବନ ଧାମରେ କେଉଁ ସନ୍ଥ କି ଭଳି ପ୍ରମାଣିତ କରିଥିଲେ ?

### ବାବାଙ୍କ ବୃନ୍ଦାବନ ବାସ

ଉ. ୧୯୩୦ ମସିହା ପାଖାପାଖି ଶ୍ରୀବୃନ୍ଦାବନର ଇସ୍‌କନ ମନ୍ଦିର ନିକଟରେ ବରାହ ଘାଟଠାରେ ଜଣେ ସାଧୁ କୁଟୀର ନିର୍ମାଣ କରି ରହୁଥିଲେ । ନାମ ତାଙ୍କର ଶ୍ରୀହିତ ସନ୍ତଦାସ ବାବାଜୀ । ସେ ସୁଦୂର ଜାମ୍ମୁ ରାଜ୍ୟରୁ ବୃନ୍ଦାବନ ଆସିଥିଲେ । ଶ୍ରୀରାଧା ବଲ୍ଲଭ ସଂପ୍ରଦାୟର ସେ ଦୀକ୍ଷିତ ସନ୍ଥ । ଅତ୍ୟନ୍ତ ଉଚ୍ଚକୋଟୀର ସନ୍ଥ ବୋଲି ତାଙ୍କୁ ବୃନ୍ଦାବନରେ ସମସ୍ତେ ଜାଣନ୍ତି । ଥରେ ଚିତ୍ରକୂଟ ଧାମରୁ କିଛି ଶ୍ରୀ ରଘୁନାଥ ଭକ୍ତ ବୃନ୍ଦାବନ ଆସିଥିଲେ । ବାବା ସେମାନଙ୍କର ଖୁବ୍ ସେବା ଯତ୍ନ କଲେ । ସେମାନେ ଚିତ୍ରକୂଟ ଫେରିଯାଇ ସେଠାର ଜଣେ ଦାନୀ ମହାତ୍ମାଙ୍କ ଆଗରେ ହିତ ସନ୍ତଦାସ ବାବାଙ୍କ ପ୍ରଶଂସା କଲେ । ଚିତ୍ରକୂଟର ଦାନୀ ମହାଶୟଙ୍କ ନାମ ଜଗଦୀଶ ବାବାଜୀ । ସେ ଜଣେ ପ୍ରଚୁର ଧନଶାଳୀ ବ୍ୟକ୍ତି ଥିଲେ । ସୌଭାଗ୍ୟବଶତଃ ତାଙ୍କର ଜୀବନରେ ସଂସାର ବୈରାଗ୍ୟର ଉଦୟ ହେଲା । ସେ ଖୁସିରେ ଭଗବାନଙ୍କ ଭକ୍ତ ମାନଙ୍କୁ ଅନ୍ନ, ବସ୍ତ୍ର ଆଦି ଦାନ କରିବାରେ ଲାଗିଲେ । ସେଥିପାଇଁ ଅନେକ ଚାକର, ବାକର, ମ୍ୟାନେଜର, ରୋଷେୟା ପୂଜାରୀ ଦରମା ଦେଇ ରଖିଲେ । ଚିତ୍ରକୂଟ ଧାମରେ ତାଙ୍କର ପ୍ରଶଂସା ଶତମୁଖ ହେଲା । ଏଣୁ ଜଗଦୀଶ ବାବା ଖୁସିରେ ଫାଟି ପଡୁଥାଆନ୍ତି । ଲୋକେ ତାଙ୍କୁ ବାବାଜୀ କହିଲେଣି । ସେ ଗେରୁଆ ବସ୍ତ୍ର ପିନ୍ଧିଲେଣି । ବୃନ୍ଦାବନ ବାବାଙ୍କ ପ୍ରଶଂସା ଶୁଣି ସେ ଅବିଶ୍ୱାସ କଲେ । ତାଙ୍କୁ ପରୀକ୍ଷା କରିବାକୁ ବୃନ୍ଦାବନ ଆସିଗଲେ ଖୋଜି ଖୋଜି ।

ଜଗଦୀଶ ବାବା ପଚାରି ପଚାରି ପହଞ୍ଚିଲେ ଶ୍ରୀ ମଦନ ମୋହନ ମନ୍ଦିର ନିକଟରେ । ଦେଖିଲେ ଜଣେ ବାବାଜୀ କାନ୍ଧରେ ଗୋଟିଏ ବାଡ଼ି ରଖିଛନ୍ତି । ବାଡ଼ିର ଦୁଇ ମୁଣ୍ଡରେ ମାଧୁକରୀରୁ ମିଳିଥିବା ଅଟା, ଦାଲ୍ ଆଉ କିଛି ଶାକ ସବଜି । ମସ୍ତକରେ ଠେକା ଉପରେ ଗୋଟିଏ ଗଡୁରେ କିଛି ଘୋଳ ଦହି । ବାମ ହାତରେ ଗୋଟିଏ ଦଉଡ଼ିରେ ବନ୍ଧା କିଛି ଶୁଖିଲା ଜାଳକାଠ ଭୂମିରେ ଘୋଷାରି ଘୋଷାରି ବାଟ ଚାଲୁଛନ୍ତି । ତାଙ୍କୁ ଦେଖି ଜଗଦୀଶ ବାବା ହଠାତ୍ ପଚାରିଲେ, 'ଭାଇ, ସନ୍ତଦାସ ବାବାଜୀଙ୍କ ଆଶ୍ରମ କେଉଁଠି କି ?' ବାବା କହିଲେ, ''ଆଜ୍ଞା, ଆଉ ଅଳ୍ପ ଦୂର । ମୁଁ ସେଇ ଦିଗରେ ଯାଉଛି । ଆସନ୍ତୁ ବାଟ ବତାଇଦେବି ।'' ଦୁହେଁ ଚାଲିଲେ ଆଗ ପଛ ହୋଇ । କିଛି ଦୂରରେ ସନ୍ତଦାସ ଅଟକିଲେ । ମୁଣ୍ଡରୁ ଦୁଧ ଭାଣ୍ଡ ତଳେ ରଖିଲେ । ଆଶ୍ରମ ତାଟି ଫିଟାଇ ପଶୁ ପଶୁ କହିଲେ, 'ଭାଇ, ଅଳ୍ପ ସମୟ ଅପେକ୍ଷା କରନ୍ତୁ । ମୁଁ ଟିକିଏ ଠାକୁର ସେବା କରି ନିଏ । ଆପଣଙ୍କୁ କ'ଣ ଟିକିଏ ପ୍ରସାଦ ଦେଇ ପାରିଲେ ମୋ ଜୀବନ ଧନ୍ୟ ହେବ ।' ଜଗଦୀଶ ବାବୁ କିନ୍ତୁ ଅରାଜି । କହିଲେ, 'ମୁଁ ସନ୍ତଦାସ ବାବାଙ୍କୁ ନ ଦେଖିଲେ ଜଳ ଗ୍ରହଣ ମଧ୍ୟ କରିବି ନାହିଁ ।' ହେଲେ ବାବା ତାଙ୍କୁ ଏତେ ସହଜରେ ଛାଡ଼ି ଦେବେ କି?

## ରାମଭକ୍ତଙ୍କ ସହିତ ଛଳ

ସନ୍ତ ଦାସ ବାବା ବାହାରେ ଖଟିଆ ଖଣ୍ଡେ ପକାଇଦେଲେ । ଅତିଥିଙ୍କୁ ହାତ ଧରି ଅନୁନୟ କରି କହିଲେ, 'ଭାଇ, ତାହା କେମିତି ହେବ ? ଅତିଥି ଭଗବାନଙ୍କ ସମାନ । ଆପଣ କିଛି ନ ଖାଇ ଚାଲିଗଲେ ମୋ ବୃନ୍ଦାବନ ବାସ ବୃଥା ହୋଇଯିବ ।' ଜଗଦୀଶ ବାବା ବାଧ୍ୟରେ ବସି ରାମ ନାମ ଜପୁଥାଆନ୍ତି । ସନ୍ତ ଦାସଜୀ ତେଣେ ରୋଷେଇ ବସେଇଲେ । ଠାକୁରଙ୍କୁ ଭୋଗ ଲଗାଇଲେ । ଆସନ ପକାଇ ଦେଲେ । ପ୍ରସାଦ ପରଷି ଦେଲେ । ପ୍ରସାଦ ପାଇସାରି ଅତିଥି ଏବେ ଖଟିଆରେ ଟିକିଏ ବିଶ୍ରାମ କଲେ । ସନ୍ତ ଦାସ ଆସି ସ୍ନେହରେ ତାଙ୍କ କଅଁଳିଆ ହାତ ଥାପି ପାଦ ସମ୍ବାହନ କରୁଥାଆନ୍ତି । ଏହି ସମୟରେ କିଛି ସାଧୁ ଆସି ଦେଖିଲେ ଆଶ୍ଚର୍ଯ୍ୟ କଥା । ପଚାରିଲେ, 'ବାବା, ଏ ଅତିଥି ଜଣକ କିଏ କି ?' ସନ୍ତଦାସ କିଛି କହିବା ପୂର୍ବରୁ ସେ କହିଲେ, 'ବାବୁ, ମୁଁ ଚିତ୍ରକୂଟର ଜଣେ ଦାନୀ ସାଧୁ । ଆସିଥିଲି ସନ୍ତ ଦାସ ବାବାଙ୍କୁ ଦର୍ଶନ କରିବାକୁ । ହେଲେ ଏ ବାବୁଙ୍କ ହାବୁଡ଼ରେ ପଡ଼ିଗଲି । ସେ ମୋତେ ଜମା ଛାଡୁନାହାନ୍ତି । ଦେଖ ତ ମୋର ଗୋଡ଼ ମୋଡୁଛନ୍ତି । ଯାଙ୍କ ଠାରୁ ଖସିଲେ ସିନା ବାବାଙ୍କୁ ଦର୍ଶନ କରିବି ।'

ସନ୍ଥ ଦାସ ବାବାଜୀ ମୁରୁକି ମୁରୁକି ହସୁଥିବା ଦେଖି ଆଗନ୍ତୁକ ଜଣେ ସନ୍ଥ କହିଲେ, 'ହେ ଦାନୀ ସାଧୁ ମହାତ୍ମା, ବଡ଼ ବିଚିତ୍ର କଥା । ଗୋଡ଼ ମୋଡୁଥିବା ବ୍ୟକ୍ତି ଆପଣଙ୍କ ସହିତ କିଛି ଛଳ କରିଛନ୍ତି । ତାଙ୍କର କ'ଣ ଉଦ୍ଦେଶ୍ୟ ଆମେ ଜାଣିନାହୁଁ । ସେ ପରା ସ୍ୱୟଂ ସନ୍ଥଦାସ ବାବାଜୀ ।' ସଙ୍ଗେ ସଙ୍ଗେ ଜଗଦୀଶ ବାବା ଖଟିଆରୁ ଉଠି ପଡ଼ିଲେ । ବାବାଜୀଙ୍କ ପାଦତଳେ ପଡ଼ି ଦଣ୍ଡବତ କଲେ । ସାଶ୍ରୁଳ ଆଲିଙ୍ଗନ କରି କହିଲେ, 'ହେ ମହାତ୍ମା, ମୁଁ କେବଳ ଶୁଣିଥିଲି ଆପଣଙ୍କ ଅନୁପମ ସନ୍ଥ ସେବା କଥାର ପ୍ରଶଂସା । ହେଲେ ଆଜି ଆଖିରେ ସେ ସବୁ ଦେଖିଲି । ମୁଁ କିଛି ପାର୍ଥିବ ଚିଜ(ଧନ) ଦାନ ଦେଇ ସାଧୁମାନଙ୍କ ସେବା କଲି ବୋଲି ଅହଂକାର କରୁଥିଲି । ଆପଣ କିନ୍ତୁ କଷ୍ଟରେ ବୁଲି ବୁଲି ମାଗି ଯାଚି ଆଣିଥିବା ଧନକୁ ନିଜ ପବିତ୍ର ମନ ଓ ତନ(ଦେହ ଦ୍ୱାରା ପରିଶ୍ରମ କରି) ସାଧୁ ସେବା କରିପାରୁଛନ୍ତି । ମୁଁ ନିଜେ ସେବା ନକରି ନୌକର ଚାକର ରଖି କରୁଛି । ମୁଁ କେତେ ଅହଂକାରୀ । ଏକଥା ଜାଣିପାରି ମୁଁ ଆଜି ଲଜ୍ଜିତ ହେଲି । ହଁ ପୁଣି ଆଉ ଗୋଟିଏ କଥା । ଦେଖୁଛି ଆପଣ ସେବା କରିବାକୁ ମିଥ୍ୟା, ଛଳ କପଟ କରି ମଧ୍ୟ ସେବା କରିପାରୁଛନ୍ତି । ମୁଁ ଚିତ୍ରକୂଟ ଗଲେ ଏଣିକି ଚେଷ୍ଟା କରିବି ଏଭଳି ଉପାୟର ପ୍ରୟୋଗ ଲାଗି ।'

## ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କୁ ଛଳ କପଟ ପସନ୍ଦ ନୁହେଁ

ସନ୍ଥଦାସ ବାବା ହସି ହସି କହିଲେ, 'ବାବା, ସେ କଥା ଶ୍ରୀରାମ ଭକ୍ତଙ୍କ ଦ୍ୱାରା ସମ୍ଭବ ହେବନି । ସେ କାଇଦା ଆମ କନ୍ହେୟାକୁ ଭଲ ମାଲୁମ । ଅଯୋଧ୍ୟାର ଶ୍ରୀରାମ ଲାଲା ଏଡ଼େ ସରଳ ଓ ନିଷ୍କପଟ ଯେ ମିଥ୍ୟା ଓ ଛଳ ତାଙ୍କୁ ଅରୁଚିକର ଲାଗେ । ମର୍ଯ୍ୟାଦା ପୁରୁଷୋତ୍ତମ ରାଘବେନ୍ଦ୍ର ସରକାର ଏସବୁ ଶିଖିବା ଓ ଭକ୍ତକୁ ପ୍ରୟୋଗ କରିବା ଲାଗି ଯାଦବେନ୍ଦ୍ର ସରକାର ରୂପରେ ଅବତାର ନେଇଥିଲେ । ଏସବୁ କଳାର ପ୍ରୟୋଗ ବୃନ୍ଦାବନରେ କେବଳ କୃଷ୍ଣ ଓ କୃଷ୍ଣ ଭକ୍ତଙ୍କ ଦ୍ୱାରା ସମ୍ଭବ । ପୁଣି ମଥୁରା କିମ୍ବା ଦ୍ୱାରକାରେ ମଧ୍ୟ ସମ୍ଭବ ନୁହେଁ । ବୃନ୍ଦାବନର କନ୍ହେୟା ଲାଲ ଓ ତା ଭକ୍ତ ସମସ୍ତେ କପଟୀ ।

ଶ୍ରୀରାମ ଭକ୍ତ ଓ ଶ୍ରୀକୃଷ୍ଣ ଭକ୍ତ ରୂପୀ ଦୁଇ ସନ୍ଥଙ୍କ ମଧୁର ମିଳନ ହେଲା । ଉପସ୍ଥିତ ସନ୍ଥ ସମାଜ ଡ଼ାକ ଛାଡ଼ିଲେ-ମର୍ଯ୍ୟାଦା ପୁରୁଷୋତ୍ତମ ରାଘବେନ୍ଦ୍ର ସରକାରୀ କୀ ଜୟ । ଲୀଳା ପୁରୁଷୋତ୍ତମ ଯାଦବେନ୍ଦ୍ର ସରକାରକୀ ଜୟ । ଅଯୋଧ୍ୟା ଧାମକୀ ଜୟ । ବୃନ୍ଦାବନ ଧାମ କି ଜୟ । ସନ୍ଥ ସେବା କୀ ଜୟ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ୧୨. ଶ୍ରୀ ରାଧାରମଣ ଦାସ ବାବାଜୀ(ବୃନ୍ଦାବନ)

ପ୍ରଶ୍ନ-୮୪ : ଶ୍ରୀ ବୃନ୍ଦାବନ ଧାମରେ ଜନ୍ମଲାଭ କରିବା ଯେପରି ଗୌରବର କଥା ଅନ୍ୟ ସ୍ଥାନରେ ଜନ୍ମ ହୋଇ ମଧ୍ୟ ବୃନ୍ଦାବନରେ ଯାଇ ଜୀବନ କାଟିବା ତତୋଧିକ ଭାଗ୍ୟର କଥା । ଶ୍ରୀ ବୃନ୍ଦାବନ ଧାମରେ କିନ୍ତୁ ଦେହ ତ୍ୟାଗ କରିବା ମଧ୍ୟ ସବୁଠାରୁ ବଳି ଅହୋଭାଗ୍ୟର କଥା ବୋଲି ବୃନ୍ଦାବନର କେବେ କେଉଁ ମହାତ୍ମା କି ଭଳି ପ୍ରମାଣ କଲେ ?

### ବାବାଙ୍କ ବାଲ ଲୀଳା

ଈ. ସନ ୧୯୩୨ ମସିହାରେ ବଙ୍ଗଳାର ୨୪ପ୍ରଗଣା ଜିଲାରେ ଜନ୍ମ ଲାଭ କରିଥିବା ଶ୍ରୀରାଧା ରମଣ ଦାସ ବାବାଜୀ ଏହା ପ୍ରମାଣ କରିଯାଇଛନ୍ତି । ମୁଲ୍‌ଟି ଗାମରେ ଏକ ପରମ ବୈଷ୍ଣବ ପୁଣି ସମ୍ଭ୍ରାନ୍ତ ବ୍ରାହ୍ମଣ କୁଳରେ ସେ ପ୍ରକଟ ହେଲେ । ଶୈଶବରୁ ସେ ସଂସାର ସୁଖ ଭୋଗରେ ଉଦାସୀନ । ପାଠ ଶାଠ ସବୁ କଥାରେ କିନ୍ତୁ ପ୍ରବୀଣ । କଲିକତା ବିଶ୍ୱବିଦ୍ୟାଳୟରେ ଏମ.ଏ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପ୍ରାପ୍ତ ହେଲେ । ପିତାମାତା ବିବାହ ଲାଗି ବାଛିଲେ ବି.ଏ ପାସ ସୁନ୍ଦରୀ ଗୋଟିଏ କନ୍ୟା ରତ୍ନକୁ । ହାତକୁ ଦି' ହାତ କରି ସେମାନେ ତାଙ୍କ ଜଞ୍ଜାଳରୁ ମୁକ୍ତ ହେବେ ।

### ବୃନ୍ଦାବନ ହେଲା ସାଧନ ଧାମ

ବାବାଙ୍କ ମନ କିନ୍ତୁ ବିବାହ କଥା, ବିବାହ ଜଞ୍ଜାଳ କଥା ଭାବି ଭାବି ଅତ୍ୟନ୍ତ ଭାରାକ୍ରାନ୍ତ । ଦିନେ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଲେ ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ସଂପୂର୍ଣ୍ଣ ବୈରାଗୀ ଅବଧୂତ ବେଶରେ । ରାଧାରମଣ ଦାସ ବାବା ବୁଝିଗଲେ ଈଶ୍ୱରଙ୍କ ଇଛା ସେ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କ ଭଳି ହରିନାମ ସଂକୀର୍ତ୍ତନ କରାଇବା ଦାୟିତ୍ୱ ନେବାକୁ ଚାହାନ୍ତି । ସେଇ ରାତିରେ ସେ ସକଳ ସଂସାର ମାୟା ମୋହ ବନ୍ଧନ ଛିଣ୍ଡାଇ ଚାଲିଗଲେ ଶ୍ରୀ ବୃନ୍ଦାବନ ଧାମ । ରଜନୀ ଦାସ ବାବାଙ୍କ ଆଶ୍ରମରେ ରହିଲେ । ମାଧବ ଦାସ ବାବାଙ୍କ ଠାରୁ ସନ୍ନ୍ୟାସ ଦୀକ୍ଷା ନେଲେ । ରାଲ ଗ୍ରାମ ନିକଟରେ ଅନେକ ବର୍ଷ ଯାଏଁ ବିହାର ବନରେ କଠୋର ତପସ୍ୟା ମଗ୍ନ ହେଲେ । ମାଧୁକରୀରେ ସେ ଚଳନ୍ତି । ବେଳେବେଳେ କେତେଦିନ ପର୍ଯ୍ୟନ୍ତ ଅନାହାରରେ ରହିଯାଆନ୍ତି । ତାଙ୍କର ପେଟରେ ଭୟଙ୍କର ଗୋଳମାଳ ଆରମ୍ଭ ହେଲା । ଅବସ୍ଥା ଦିନକୁ ଦିନ ଅସମ୍ଭାଳ ହେଲା । ଅନିଛା ସତ୍ତ୍ୱେ ତାଙ୍କୁ କଲିକତା ନିଆଗଲା । ଦୀର୍ଘ ୪୫ଦିନ ଧରି ଚିକିତ୍ସା ଚାଲିଲା ।

ବାବାଙ୍କର ସ୍ୱାସ୍ଥ୍ୟ ଅବସ୍ଥା କିନ୍ତୁ ସୁଧୁରିବା ବଦଳରେ ବିଗିଡ଼ିବାରେ ଲାଗିଲା । ଦିନେ ଡ଼ାକ୍ତର ବାବାଙ୍କୁ ଶୁଣାଇ କହିଲେ, 'ଆରୋଗ୍ୟର ସମ୍ଭାବନା ଆଦୌ ନାହିଁ । ଦିନେ ଦୁଇ ଦିନରେ ରୋଗୀ ରକ୍ତବାନ୍ତି କରି ମରିଯିବ ।' ବାବା ଶୁଣିଲେ ଏ କଥା । ମୃତ୍ୟୁକୁ ତାଙ୍କର ତିଳେ ମାତ୍ର ଭୟ ନଥାଏ । ସେ ଚରମ ଦୁଃଖରେ କିନ୍ତୁ ଏଇଥିପାଇଁ ଭାଙ୍ଗି ପଡ଼ିଲେ ଯେ ସେ ବୃନ୍ଦାବନରେ ନମରି ମରିବେ କଲିକତା ଡ଼ାକ୍ତରଖାନାରେ । ତାଙ୍କ ମତରେ ଡ଼ାକ୍ତରଖାନା ଯମ ଯାତନାର କେନ୍ଦ୍ର ଅଟେ ।

## ରାଧା ଦରବାରରେ କୃପା ପ୍ରାର୍ଥନା

ଅର୍ଦ୍ଧ ରାତ୍ରିରେ ତାଙ୍କର ଦୁଇ ନୟନ ଭରିଗଲା ଅଜସ୍ର ଅଶ୍ରୁଧାରାରେ । ଦୁଇ ହାତ ଯୋଡ଼ି ବାବା କାତର ପ୍ରାର୍ଥନା କଲେ, 'ହେ ସ୍ୱାମିନୀ, ରାଧାରାଣୀ, ଲୋକେ ତୁମକୁ କହନ୍ତି ଦୟାମୟୀ । ତୁମେ ମୋତେ କାହିଁକି ଶ୍ରୀବୃନ୍ଦାବନ ଧାମରୁ ବାହାରକୁ ଠେଲି ଦେଲ ଏଠାରେ ଏକ ବୁଲା କୁକୁର ଭଳି ମରିବାକୁ? ଭାବୁଛି ମୁଁ ତୁମ ଚରଣରେ କିଛି ଅପରାଧ ନିଶ୍ଚୟ କରିଛି । ଜାଣତରେ ହେଉ ବା ଅଜାଣତରେ ହେଉ । ମୁଁ ସାରା ଜୀବନ ତୁମର ଭଜନ କରିଛି । ସେ ସବୁ କେବଳ ଇନ୍ଦ୍ରିୟମନରେ କରିଛି ଲୋକ ଦେଖାଣିଆ । ହୃଦୟ ଦେଇ କରିନି । ତା ନ ହୋଇଥିଲେ ତୁମେ କାହିଁକି ମୋତେ ଏ ଦଣ୍ଡ ଦେଇଥାଆନ୍ତ ? ମଲା ବେଳେ ଦର୍ଶନ ଦେଇ ନ ଥାଆନ୍ତ । ନିଜର ଚରଣ ସେବାର ସୁଯୋଗ ସିନା ଦେଇ ନଥାଆନ୍ତ ନିଜ ନିତ୍ୟ ଧାମ ଶ୍ରୀବୃନ୍ଦାବନରେ ହେଲେ ମୃତ୍ୟୁ ତ ଦେଇ ପାରିଥାଆନ୍ତା ! ମୁଁ କ'ଣ ସେତିକି ପାଇବାରେ ମଧ୍ୟ ଅଯୋଗ୍ୟ ? ହାୟ ! ମୋ ମୃତ ଦେହକୁ ବୃନ୍ଦାବନର ରଜ ଟିକିଏ ମିଳିବନି । ଲୋକେ କହନ୍ତି ଯେ ଥରେ ମାତ୍ର ତୁମ (ରାଧା) ନାମ ନେଲ ପାପୀ ଜୀବକୁ ମଧ୍ୟ ପରମ ଗତି ମିଳେ ବୋଲି । ତେବେ ସେ ସବୁ କଅଣ ମିଥ୍ୟା ବକ୍‌ବାସ୍ ମାତ୍ର ? ଏବେ ସଂସାରରେ ଲୋକେ ଆଉ ଭକ୍ତି କରିବେ କାହିଁକି ? ତୁମ ଭକ୍ତି ଧର୍ମର ନିନ୍ଦା ଅପବାଦ ଘଟିବ ନି କି ଏଭଳି କଲେ ?'

## କୃପାମୟୀଙ୍କ କୃପା କବାଟ ଫିଟିଲା

ବାବାଙ୍କର ଏଭଳି ଦୈନ୍ୟଭରା କରୁଣ କ୍ରନ୍ଦନର ସ୍ପନ୍ଦନ ପ୍ରିୟା, ପ୍ରିୟତମଙ୍କ ଦରବାରରେ ପହଞ୍ଚିଗଲା । ଦୁହେଁ ବୃନ୍ଦାବନରୁ ଧାଇଁ ଆସିଲେ କଲିକତା ଡ଼ାକ୍ତରଖାନା ବେଡ଼୍‌କୁ । ଶ୍ରୀ ଜୀ ଅଭୟ ହସ୍ତ ଟେକି ଦର୍ଶନ ଦେଲେ । ଶ୍ରୀ ଶ୍ୟାମସୁନ୍ଦର ତାଙ୍କ ଉଦର ଉପରେ ବରଦହସ୍ତ ସ୍ଥାପନ କରି ପଚାରିଲେ, 'ରାଧା ରମଣ ବାବା, କାହିଁ କେଉଁଠି

ଘାଆ ହୋଇଛି ? କିଛି ତ ନାହିଁ ।'' ଦୁହେଁ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ଭଗବାନ ସତ୍ୟ ସଂକଳ୍ପ । ଭକ୍ତପାଇଁ ଦୁଃଖର ରାତି ପାହି ସୁଖର ସକାଳ ହେଲା । ବାବା ବିଛଣା ଉପରେ ବସି ପଡ଼ି ଖାଇବାକୁ ମାଗିଲେ । ଡ଼ାକ୍ତର ଡ୍ୟୁଟିରେ ଆସି ତାଙ୍କୁ ପରୀକ୍ଷା କରି ଦେଖିଲେ । ଆଶ୍ଚର୍ଯ୍ୟ ହେଲେ ରୋଗୀର ହଠାତ୍ ଏଭଳି ଅଲୌକିକ ସୁସ୍ଥତା ଦର୍ଶନ କରି । ସେହିଦିନ ବାବା ସଂପୂର୍ଣ୍ଣ ଆରୋଗ୍ୟ ହୋଇଗଲେ । ସେବକମାନଙ୍କୁ ଧରି ଆସିଗଲେ ଶ୍ରୀବୃନ୍ଦାବନ ଧାମ । ଚାଲିଲା ଅହୋରାତ୍ର ନାମ ସଂକୀର୍ତ୍ତନ ପ୍ରଚାର ପ୍ରସାର ।

ନିଜ ଭଜନସ୍ଥଳୀ ବିହାର ବନରେ ପୁଣି ଆରମ୍ଭ ହେଲା ରାଧାରମଣ ବାବାଜୀଙ୍କର ପ୍ରେମପୂର୍ଣ୍ଣ ଭଜନ କୀର୍ତ୍ତନର ଆସର । ଆଶ୍ରମବାସୀମାନେ ଦେଖିଲେ ବାବା ସିନା ଉଦର ରୋଗରୁ ମୁକ୍ତ ହେଲେ । କୃଷ୍ଣ ପ୍ରେମ ରୋଗରେ କିନ୍ତୁ ସେ ଏବେ ଭୟଙ୍କର ଭାବରେ ଆକ୍ରାନ୍ତ । ସେହି ବ୍ୟାଧି ଆଉ ଉପଶମ ହେବାର ନୁହେଁ । ବାବା ଖୋଲି କହିଦେଲେ, ଏହାର ଉପଚାର କେବଳ ନିରନ୍ତର ବୈଷ୍ଣବ ସଙ୍ଗ ଓ ନାମ ସଂକୀର୍ତ୍ତନ । ଦିନକୁ ଦିନ ସେ ପ୍ରିୟା ପ୍ରିୟତମଙ୍କର ନିକଟରୁ ଅତି ନିକଟତର ହେଲେ । ଶ୍ୟାମା ଶ୍ୟାମଙ୍କର ଅଦର୍ଶନରେ ବାବା ଛଟପଟ ହେଲେ । କିଛି ଦିନ ଗୋବର୍ଦ୍ଧନ ଅନ୍ତର୍ଗତ ଜତିପୁରାର ରାଘବ ପଣ୍ଡିତଙ୍କ ଗୁମ୍ଫାରେ ରହିଲେ । ପ୍ରିୟ ଖାଦ୍ୟ ତାଙ୍କର ହେଲା ନିମ୍ବପତ୍ର ଓ ଘୋଳ ଦହି ।

## ଜରା ବିରୁଦ୍ଧରେ ସପ୍ରେମ ଲଢ଼େଇ

କାଳକ୍ରମେ ବାର୍ଦ୍ଧକ୍ୟ ଆସି ପହଞ୍ଚିଲା । ଶିଷ୍ୟମାନେ ଖୁବ୍ ପ୍ରେମର ସହିତ ସେବା ଶୁଶ୍ରୂଷା କଲେ । ଅନେକ ଶିଷ୍ୟ ନିଜ ନିଜ ଘରକୁ ନେଇ ସେବା କରି ପରମ ଆନନ୍ଦ ପ୍ରାପ୍ତ ହେଲେ । ଅନେକଙ୍କର ଜୀବନର ଗତି ମଧ୍ୟ ବଦଳି ଗଲା । କେତେକ ଯାଗାରେ ବାବା ଅଖଣ୍ଡ ହରିନାମ ସଂକୀର୍ତ୍ତନ କରାଇଲେ । ସକଳ ସିଦ୍ଧି, ଚମତ୍କାର ତାଙ୍କ ସେବା କରିବାରେ ଲାଗିଲେ । କେଉଁଠି ବର୍ଷା ହେଉନି, କେହି ବ୍ୟାଧି ପୀଡ଼ିତ, କେହି ମାନସିକ ଦୁଃଖରେ ଦୁଃଖୀ । ବାବାଙ୍କ ସ୍ପର୍ଶ ଆଲିଙ୍ଗନ ଏପରିକି ବାବାଙ୍କ ବାକ୍‌ସିଦ୍ଧି ଦ୍ୱାରା ସଂସାରର ଯାବତୀୟ ଦୁଃଖ କଷ୍ଟ ଦୂର ହୋଇଗଲା ।

ସେ କେଉଁଠି ବାଟ ଭୁଲିଗଲେ ଠାକୁରଜୀ ଗୋପାଳ ବାଳକ ବେଶରେ ଆସି ତାଙ୍କୁ ବାଟ ବତାଇ ଦିଅନ୍ତି । କ୍ଷୁଧା ତୃଷା ବେଳେ ହସି ହସି ସେ ଅଭାବ ପୂରଣ କରନ୍ତି । ଏଥିରେ ଭକ୍ତ ଭଗବାନ ଉଭୟେ ଅଚିନ୍ତ୍ୟ ପ୍ରେମରସ ଆସ୍ୱାଦନ କରୁଥାଆନ୍ତି । ଗହ୍ବରବନରେ ଥିବାବେଳେ ରାଧାରାଣୀ ଦିନେ ବାଳିକା ବେଶରେ ଆସି ଚୁଡ଼ି

ପିନ୍ଧିବାକୁ କହିଲେ । ବାବା ତୁରନ୍ତ ଚୁଡ଼ି କିଣି ଆଣି ପିନ୍ଧାଇ ଦେଲେ । ମର ଦେହ ଛାଡ଼ିବା ପରେ ମଞ୍ଜରୀ ବେଶରେ ତାଙ୍କୁ ଆସିବାକୁ ନିମନ୍ତ୍ରଣ କରିଗଲେ । ଏ କଥା ଦେଖି ଠାକୁରଜୀ ଦିନେ ତାଙ୍କଠାରୁ ଲଡୁ ମାଗି ଖାଇଥିଲେ ।

## ନିଧିବନରେ ଲୀଳା ପ୍ରବେଶ

ଦିନେ ରାଜସ୍ଥାନ ଜୟପୁର ସହରରେ ଥିବାବେଳେ ତାଙ୍କ ସେବକ ଶ୍ରୀବଳଦେବ ରାମଜୀଙ୍କୁ ଡ଼ାକି କହିଲେ, 'ବଳଦେବ, ଚାଲ ବୃନ୍ଦାବନ ଯିବା । ଶ୍ରୀ ବ୍ରଜେଶ୍ୱରୀ ଠାକୁରାଣୀ ମୋତେ ଆସିବାକୁ ଡ଼କାଇ ପଠାଇଛନ୍ତି । ଆଉ ଡ଼େରି କରନାହିଁ । ସମସ୍ତଙ୍କୁ ଡ଼କାଇ ପଠାଅ । ମୁଁ ସମସ୍ତଙ୍କ ଠାରୁ ବିଦାୟ ନେଇ ଯିବି ।' ସେବକ ଭାବିଲେ ବୋଧେ ବାବା ଆଉ ଜୟପୁର ଫେରିବେ ନାହିଁ । ଶ୍ରୀରାଧା ଗୋବିନ୍ଦଙ୍କ ଦର୍ଶନରୁ ବଞ୍ଚିତ ହେବେ ବୋଲି ଏପରି ବ୍ୟସ୍ତ ହେଉଛନ୍ତି । ସେ କାହୁଁ ଜାଣିବେ ଯେ ବାବା ଜୟପୁର ଛାଡ଼ି ଶ୍ରୀବୃନ୍ଦାବନ ଯାଉଛନ୍ତି ତାଙ୍କ ମର ଦେହକୁ ବ୍ରଜ ରଜରେ ମିଶାଇ ନିତ୍ୟ ନିକୁଞ୍ଜ ଲୀଳାରେ ପ୍ରବେଶ କରିବେ ବୋଲି !

ବୃନ୍ଦାବନ ପହଞ୍ଚିଲେ ବାବା ଓ ସେବକ ଦୁହେଁ । ରହିଲେ ଜ୍ଞାନ ଗୁଦଡ଼ିରେ ଏକ ପୁରୁଣା ଶିଷ୍ୟ ଘରେ । ନିଧିବନ ସେଠାରୁ ଅଳ୍ପ ବାଟ ମାତ୍ର । ଦୁହେଁ ଗଲେ ଲୋଇ ବଜାର । ବାବା କିଣିଲେ ଦୁଇଟି ଫଟୋ । ଗୋଟିଏ ରାଧା କୃଷ୍ଣଙ୍କର ଏବ ଆଉ ଗୋଟିଏ ନିତାଇ ଗୌରଙ୍କର । ବଳଦେବଙ୍କୁ କହିଲେ, 'ବଳଦେବ, ତୁମେ ଘରକୁ ଫେରିଯାଅ । ମୁଁ ମୋର ପ୍ରିୟ ଶିଷ୍ୟ ମୁରାରୀ ଲାଲକୁ ଦେଖାକରି ଯିବି ।' ବଳଦେବ ଘରେ ପହଞ୍ଚିଲେ । ଅପେକ୍ଷା କଲେ ବାବାଙ୍କୁ । ଘଣ୍ଟେ, ଦୁଇଘଣ୍ଟା । ବ୍ୟସ୍ତ ହେଲେ । ମୁରାରୀ ଲାଲଙ୍କ ଘରକୁ ଯାଇ ବୁଝିଲେ । ବାବା ସେଠାକୁ ଆସି ନାହାନ୍ତି । ଦୀର୍ଘ ଦୁଇଦିନ ଦୁଇରାତି ବ୍ରଜମଣ୍ଡଳରେ ଖୋଜା ଲୋଡ଼ା ଚାଲିଲା । ବାବା ତଥାପି ଅଦୃଶ୍ୟ । ତୃତୀୟ ଦିନ 'ଅମର ଉଜାଲା' ଦୈନିକ ଖବର କାଗଜରେ ସମ୍ବାଦ ବାହାରିଲା ଯେ ଜଣେ କେହି ନିଧିବନ ସ୍ଥିତ ଶ୍ରୀରାଧାଙ୍କ ରଙ୍ଗ ମହଲର ନିମ୍ନରେ ଥିବା ଗୁମ୍ଫା ମଧ୍ୟରେ ମରିପଡ଼ିଛନ୍ତି ।

ବଳଦେବ ଇତ୍ୟାଦି ବାବାଙ୍କର ଶିଷ୍ୟମାନେ ଧାଇଁ ଯାଇ ଦେଖିଲେ । ତାହା ବାବାଙ୍କର ପାର୍ଥିବ ଶରୀର । ଅମୂଲ୍ୟ ବ୍ରଜରଜ ତାଙ୍କ ଦେହସାରା ଲେପି ହୋଇଛି । ବାବା କିନ୍ତୁ ଶ୍ରୀରାଧା ଶ୍ୟାମ ସୁନ୍ଦରଙ୍କର ନିତ୍ୟ ନିକୁଞ୍ଜ ଲୀଳାରେ ପ୍ରବେଶ କରିସାରିଛନ୍ତି । ଶ୍ରୀରାଧାଙ୍କର ଜୟ । ଶ୍ରୀଗୋବିନ୍ଦଙ୍କର ଜୟ । ନିଧିବନ ବ୍ରଜ ରଜଙ୍କର ଜୟ । ଭକ୍ତ ଶ୍ରୀରାଧାରମଣ ବାବାଙ୍କର ଜୟ ହେଉ ।

|| ଅପଣ୍ଡିତ ଦାମୋଦର ବଳୀୟାରସିଂହ ||

**ବିଶେଷ ଦ୍ରଷ୍ଟବ୍ୟ :** ଉପର ବର୍ଣ୍ଣିତ ଶ୍ରୀରାଧା ରମଣ ଦାସ ବାବାଜୀ ବୃନ୍ଦାବନରେ ଲୀଳା କଲେ । ସେ ମହାତ୍ମା ଓଡ଼ିଶାର ଶ୍ରୀରାଧା ଚରଣ ଦାସ ବାବାଜୀଙ୍କ ଠାରୁ ଜଣେ ଭିନ୍ନ ମହାତ୍ମା । ଯାହାଙ୍କୁ ଆମେ ବଡ଼ ବାବାଜୀ ବୋଲି ଜାଣୁ । ତାଙ୍କ ନାମରେ ଚରିତ ସୁଧା ନାମକ ଛଅ ଖଣ୍ଡ ପୁସ୍ତକ ବଙ୍ଗଳା, ହିନ୍ଦୀ ଓ ଓଡ଼ିଆ ଆଦି ଅନେକ ଭାଷାରେ ଲିଖିତ । ସେ ବାବା ଗୌର ନିତାଇଙ୍କ ମିଳିତ ବିଗ୍ରହ ବୋଲି କୁହାଯାଏ । ଜୀବନରେ ଅନେକ ଚମତ୍କାର ଦେଖାଇଛନ୍ତି ବାବା । କୁକୁରକୁ ନିମନ୍ତ୍ରଣ କରି ଖଲି ପତ୍ରରେ ଭୋଜନ ବାଢ଼ି ଭୋଜି ଖୁଆଇବା, କୀର୍ତ୍ତନ କରି ଲଣ୍ଡା ବରଗଛରେ ପତ୍ର କଅଁଳାଇବା, ଗଛ ଡ଼ାଳକୁ କୀର୍ତ୍ତନ ଦ୍ୱାରା ନୃତ୍ୟ କରାଇବା ଇତ୍ୟାଦି ଇତ୍ୟାଦି । ସେ ବଡ଼ ବାବାଜୀ କିନ୍ତୁ ଏଠାରେ ବର୍ଣ୍ଣିତ ବାବାଙ୍କ ଠାରୁ ସଂପୂର୍ଣ୍ଣ ଭିନ୍ନ ମହାତ୍ମା ।

## ଦ୍ୱାଦଶ ବ୍ରଜମଣ୍ଡଳ ମହାପୁରୁଷଙ୍କ ଲୀଳା କାଳ ଅବଧି

| କ୍ରମ ସଂଖ୍ୟା | ମହାପୁରୁଷ | ପ୍ରକଟ ସମୟ(ଖ୍ରୀ) | ଲୀଳା ପ୍ରବେଶ ସମୟ(ଖ୍ରୀ) | ଲୀଳା ଅବଧି (ବର୍ଷ) |
|---|---|---|---|---|
| ୧. | ଜୟଦେବ ଗୋସ୍ୱାମୀ | - | ଦ୍ୱାଦଶ ଶତାବ୍ଦୀ | - |
| ୨. | ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ | ୧୪୮୬ | ୧୫୩୪ | ୪୮ |
| ୩. | ବିଶ୍ୱନାଥ ଚକ୍ରବର୍ତ୍ତୀ | ୧୬୨୬ | ୧୭୧୮ | ୯୨ |
| ୪. | ସିଦ୍ଧ କୃଷ୍ଣଦାସ ବାବାଜୀ | ୧୮୧୪ | ୧୯୦୬ | ୯୨ |
| ୫. | ସିଦ୍ଧ ଜଗନ୍ନାଥ ଦାସ ବାବାଜୀ | ୧୮୧୫ | ୧୯୬୨ | ୧୪୭ |
| ୬. | ଅଓ୍ୱଧ ଦାସ ବାବାଜୀ | ୧୮୨୬ | ୧୯୩୭ | ୧୧୧ |
| ୭. | ମାଧବ ଦାସ ବାବାଜୀ | ୧୮୬୨ | ୧୯୫୪ | ୯୨ |
| ୮. | ନିତ୍ୟାନନ୍ଦ ଦାସ ବାବାଜୀ | ୧୮୮୦ | ୧୯୬୪ | ୮୪ |
| ୯. | ହରି ବାବାଜୀ | ୧୮୮୪ | ୧୯୭୦ | ୮୬ |
| ୧୦. | ଗୌରାଙ୍ଗ ଦାସ ବାବାଜୀ | ୧୮୮୭ | ୧୯୫୩ | ୬୬ |
| ୧୧. | ହିତସନ୍ତୁ ଦାସ ବାବାଜୀ | ୧୯୩୦ | ୧୯୯୯ | ୬୯ |
| ୧୨. | ରାଧା ରମଣ ଦାସ ବାବାଜୀ | ୧୯୩୨ | ୧୯୮୪ | ୫୨ |

।। ଅପଣ୍ଡିତ ଦାମୋଦର ବଳିୟାରସିଂହ ।।

# (ଜ) ଦ୍ୱାଦଶ ବ୍ରଜମଣ୍ଡଳ ଲୀଳାସ୍ଥଳୀ ଓ ଲୀଳା ପୁରୁଷ

## ୧. ପରିକ୍ରମା ଲୀଳା

ପ୍ରଶ୍ନ-୮୫: ଲୀଳା ପୁରୁଷ ଏବଂ ଲୀଳା ସ୍ଥଳୀମାନଙ୍କର ପରିକ୍ରମା(ପ୍ରଦକ୍ଷିଣ) କରିବା ପଦ୍ଧତି ଭାରତ ଭୂମିରେ କେବେ, କାହାଦ୍ୱାରା ଓ କାହିଁକି ପ୍ରଚଳିତ ହେଲା ?

ଉ. ପରି ଶବ୍ଦର ଅର୍ଥ ଚତୁର୍ଦ୍ଦିଗରେ ଏବଂ କ୍ରମ ଶବ୍ଦର ଅର୍ଥ ପାହୁଣ୍ଡ ବା ପାଦ ପକାଇବା । କୌଣସି ବିଶିଷ୍ଟ ବସ୍ତୁ, ବ୍ୟକ୍ତି, ନଦୀ, ପର୍ବତ କିମ୍ବା ଧର୍ମ ବା ଲୀଳା ସ୍ଥଳୀକୁ ପାଦରେ ଚାଲି ଚାଲି ଗୋଟିଏ ସ୍ଥାନରୁ ବାହାରି ତାକୁ ଡ଼ାହାଣ ପଟେ ରଖି ସେହି ସ୍ଥାନକୁ ଫେରି ଆସିବାକୁ ପରିକ୍ରମା ବା ପ୍ରଦକ୍ଷିଣ କରିବା କୁହାଯାଏ । ବର୍ତ୍ତମାନ କିନ୍ତୁ ଅସମର୍ଥ ଲୋକଙ୍କୁ ଯାନ(ବାଇକ୍, ମୋଟର ଗାଡ଼ି) କିମ୍ବା ବାହାନ, ଅଶ୍ୱ ଆଦି ପିଠିରେ ବସି କିମ୍ବା କାହାରି କାନ୍ଧରେ ପାଲିଙ୍କିରେ ବସି ବୁଲିବା ଦେଖାଯାଏ ।

ପୌରାଣିକ ସାହିତ୍ୟରୁ ଜଣାଯାଏ ଶ୍ରୀ ଗଣେଶଜୀ ମୂଷା ବାହାନରେ ଏବଂ କାର୍ତ୍ତିକେୟ ମୟୂର ପିଠିରେ ବସି ଯଥାକ୍ରମେ ଶ୍ରୀ ଶଙ୍କର ପାର୍ବତୀଙ୍କୁ ଏବଂ ପୃଥିବୀ ମାତାଙ୍କୁ ପରିକ୍ରମା କରିଥିଲେ । ବୁଦ୍ଧିର ପରୀକ୍ଷା କରି ଭଗବାନ ଶଙ୍କର କିନ୍ତୁ ଗଣେଶଜୀଙ୍କୁ ବିଜୟୀ ଘୋଷଣା କରିଥିଲେ । କାରଣ ପୃଥିବୀର ପରିକ୍ରମା ଅପେକ୍ଷା ପିତାମାତାଙ୍କ ପରିକ୍ରମା ଅଧିକ ସୂକ୍ଷ୍ମ ବୁଦ୍ଧିର ପରିଚାୟକ ।

ସମୁଦ୍ର ମନ୍ଥନ ବେଳେ କଚ୍ଛପ ପିଠିରେ ମନ୍ଦର ପର୍ବତକୁ ରଖି ଦେବତା ଓ ଅସୁରମାନେ ଅମୃତ ପ୍ରାପ୍ତି ଲାଗି ବାସୁକୀ ସର୍ପଦ୍ୱାରା ଘୂରାଇଥିଲେ । ପ୍ରଥମେ କିନ୍ତୁ ବିଷ ବାହାରିଲା । ସମସ୍ତେ ମୃତ୍ୟୁ ଭୟରେ କୈଳାସ ପର୍ବତରେ ପହଞ୍ଚିଲେ । ବ୍ୟାକୁଳ ହୋଇ ଶିବଗଣ ଶ୍ରୀ ନନ୍ଦୀଶ୍ୱରଙ୍କ ଉପଦେଶରେ ସେମାନେ କୈଳାସ ପରିକ୍ରମା କଲେ । ଭଗବାନ ଭୋଳାନାଥ ସେମାନଙ୍କ ଶରଣାଗତି ସ୍ୱୀକାର କଲେ । ହଳାହଳ ବିଷକୁ ସ୍ୱୟଂ ପାନ କରି ସେମାନଙ୍କୁ ଚରମ ସଙ୍କଟରୁ ଉଦ୍ଧାର କଲେ ।

ଶ୍ରୀମଦ୍ ଭାଗବତ ବର୍ଣ୍ଣନ କରନ୍ତି ଯେ ବ୍ରଜବାସୀମାନଙ୍କୁ ଶ୍ରୀକୃଷ୍ଣ ଗିରିରାଜ ଗୋବର୍ଦ୍ଧନ ପରିକ୍ରମା କରିବାକୁ କହିଥିଲେ । ସୃଷ୍ଟିକର୍ତ୍ତା ବ୍ରହ୍ମା ବୁଦ୍ଧି ବିଦ୍ୟା ପରୀକ୍ଷାରେ ଠାକୁରଜୀଙ୍କ ପାଖରେ ପରାଜୟ ସ୍ୱୀକାର କରି ତାଙ୍କୁ ପରିକ୍ରମା କରି ତାଙ୍କ ଆଦେଶ ପାଇ ବ୍ରହ୍ମଲୋକ ଫେରିଯାଇଥିଲେ । ନଳକୁବର ମଣିଗ୍ରୀବ ଦୁଇ ଭାଇ ଅଭିଶାପ ମୁକ୍ତ ଦେବ ପୁରୁଷ ସ୍ୱର୍ଗଲୋକ ଯିବା ପୂର୍ବରୁ ଶ୍ରୀକୃଷ୍ଣଙ୍କୁ ପରିକ୍ରମା କରିଥିଲେ । ଦେବରାଜ

ଇନ୍ଦ୍ର ମଧ୍ୟ ସାତଦିନ ବୃଷ୍ଟି କରି ବ୍ରଜବାସୀମାନଙ୍କର କିଛି କ୍ଷତି କରିପାରିନଥିଲେ । ଶେଷରେ ଠାକୁରଜୀଙ୍କୁ ଗୋବର୍ଦ୍ଧନର ଗୋବିନ୍ଦ କୁଣ୍ଡଠାରେ ସୁରଭି ଗାଈ ଦୁଗ୍ଧରେ ଅଭିଷେକ କଲେ । ଶରଣ ପଶି ନନ୍ଦନନ୍ଦନଙ୍କୁ ତିନିଥର ପରିକ୍ରମା କରି ସ୍ୱର୍ଗଲୋକ ଫେରି ଯାଇଥିଲେ ।

ଆଧୁନିକ ବିଜ୍ଞାନ ପ୍ରମାଣ କରେ ଯେ ସମଗ୍ର ସୃଷ୍ଟି ସ୍ଥିର ନୁହେଁ । ବରଂ ନିତ୍ୟ ନିରନ୍ତର ଭ୍ରମଣଶୀଳ ଏବଂ କ୍ରିୟାଶୀଳ । ପ୍ରତ୍ୟେକ ସ୍ଥୁଳ ପଦାର୍ଥ, ତରଳ ପଦାର୍ଥ ବା ବାୟବୀୟ ପଦାର୍ଥ ଯେଉଁ ଇଲେକ୍‌ଟ୍ରନ, ନିଉଟ୍ରନ ଓ ପ୍ରୋଟନରେ ଗଠିତ ତନ୍ମଧ୍ୟରେ ନିଉଟ୍ରନ ଓ ପ୍ରୋଟନକୁ ନାଭିକେନ୍ଦ୍ରରେ ରଖି ଇଲେକ୍‌ଟ୍ରନ ମାନେ ସେମାନଙ୍କୁ ପରିକ୍ରମା କରୁଛନ୍ତି । ଚନ୍ଦ୍ର ନିରନ୍ତର ପୃଥିବୀ ପରିକ୍ରମା କରୁଛି । ପୃଥିବୀ ସହିତ ଅନେକ ଗ୍ରହ ଉପଗ୍ରହ ସମସ୍ତେ ସୂର୍ଯ୍ୟଙ୍କୁ ପରିକ୍ରମା କରୁଛନ୍ତି । ସୂର୍ଯ୍ୟ ମଧ୍ୟ ସ୍ଥିର ନୁହନ୍ତି । ସୂର୍ଯ୍ୟଙ୍କ ସହିତ କୋଟି କୋଟି ନକ୍ଷତ୍ର ତାରା, ଆକାଶ ଗଙ୍ଗା ମଧ୍ୟ ଧ୍ରୁବତାରାଙ୍କୁ ପରିକ୍ରମା କରୁଛନ୍ତି । କିଏ କହିବ ଦିନେ ଆମେ ଜାଣି ପାରିବା ଯେ ଏ ସମଗ୍ର ଦୃଶ୍ୟମାନ ଓ ଅଦୃଶ୍ୟ ସୃଷ୍ଟି ଭଗବାନ ପରମେଶ୍ୱରଙ୍କୁ ନାଭି କେନ୍ଦ୍ରରେ ରଖି ପରିକ୍ରମାରେ ଘୁରୁଛି ବୋଲି । ଅତଏବ ପରିକ୍ରମା ହିଁ ସୃଷ୍ଟିର ଏକ ଅଲଙ୍ଘନୀୟ ନିୟମ ଅଟେ ।

ସେଥିପାଇଁ ମନୁଷ୍ୟର କର୍ମ, ଭାବନା, ଚିନ୍ତନ, ସବୁକୁ ଈଶ୍ୱର ବା ଇଷ୍ଟ କୈନ୍ଦ୍ରିକ କରିବାକୁ ଭାରତର ବୈଦିକ ମୁନି, ଋଷିମାନେ ପରିକ୍ରମାର ବିଧି ପ୍ରଣୟନ କରିଯାଇଛନ୍ତି । ଆଜି ମଧ୍ୟ ଦୀର୍ଘ ୨୬୦୦ କି.ମି. ଯାତ୍ରା କରନ୍ତି ଭକ୍ତମାନେ ନର୍ମଦା ନଦୀକୁ ପରିକ୍ରମା କଲାବେଳେ । ୮୪କ୍ରୋଶ ବା ୨୭୦କି.ମି ପଥ ପରିକ୍ରମା କରିବାକୁ ପଡ଼େ ନୈମିଷାରଣ୍ୟ କିମ୍ବା ବ୍ରଜମଣ୍ଡଳ ପରିକ୍ରମା କରିବା ବେଳେ । ୨୧କି.ମି ପଥ ଅତିକ୍ରମ କରିବାକୁ ପଡ଼େ ମଥୁରା ବୃନ୍ଦାବନ ପରିକ୍ରମା କିମ୍ବା ଗିରିରାଜ ଗୋବର୍ଦ୍ଧନ ପରିକ୍ରମା କରିବା ବେଳେ । ସରକାରଙ୍କ ଦ୍ୱାରା ଗିରିରାଜ ଗୋବର୍ଦ୍ଧନଙ୍କର ସୁଖଦ ପରିକ୍ରମା ଲାଗି ଚତୁର୍ଦ୍ଦିଗରେ ୨୧କି.ମି ଦୀର୍ଘ ପକ୍‌କା ସଡ଼କ ସହିତ ବିଜୁଳି ବ୍ୟବସ୍ଥା କରାଯାଇଛି । ଆଜି ବର୍ଷ ସାରା ଖରା, ବର୍ଷା କିମ୍ବା ଶୀତ କଷ୍ଟକୁ ବେଖାତିର କରି ଶ୍ରୀ ଗୋବର୍ଦ୍ଧନ ପରିକ୍ରମା କରୁଛନ୍ତି ଅସଂଖ୍ୟ ଭଗବତ ଭକ୍ତ ।

ସେହିଭଳି ପୁରୀ ଶ୍ରୀକ୍ଷେତ୍ର ପରିକ୍ରମା ଓ ଅଯୋଧ୍ୟା, ଚିତ୍ରକୂଟ ଗିରି, କାମଦ ଗିରି ପରିକ୍ରମା କରାଯାଏ ପନ୍ଦର କି.ମି. ପାଦରେ ଚାଲି ଚାଲି । ପୁଣି ରାଧାକୁଣ୍ଡ ଶ୍ୟାମାକୁଣ୍ଡ ପରିକ୍ରମା କିମ୍ବା ବୃନ୍ଦାବନରେ ଶ୍ରୀରାଧା ଦାମୋଦର ମନ୍ଦିର ମଧ୍ୟରେ

ଅସଂଖ୍ୟ ଭକ୍ତ ପରିକ୍ରମା କରି ପରମଶାନ୍ତିରେ ନିଶ୍ୱାସ ମାରୁଛନ୍ତି । ଜୀବନ ଧନ୍ୟ ହେବା କହନ୍ତି । ପାଦରେ ନ ଚାଲି, ପ୍ରଥମେ ଭୂଇଁରେ ଶୋଇ, ଉଠି, ଭୂଇଁରେ ହାତ ଚିହ୍ନ ଦେଇ, ସେଠାରେ ପୁଣି ଦଣ୍ଡବତ କରି କରି ପରିକ୍ରମା କରିବାକୁ ଦଣ୍ଡବତୀ ପରିକ୍ରମା କୁହାଯାଏ । ଆଜି ମଧ୍ୟ ଶ୍ରୀରାଧା ଦାମୋଦର ମନ୍ଦିରରେ, ଗିରିରାଜ ଗୋବର୍ଦ୍ଧନ ଚତୁର୍ଦ୍ଦିଗରେ ଦଣ୍ଡବତୀ ପରିକ୍ରମା କରୁଥିବା ଭକ୍ତମାନଙ୍କୁ ଦର୍ଶନ କରିହୁଏ । ହରିଦ୍ୱାରଠାରୁ ବଦ୍ରିନାଥ ୩୨୩କି.ମି ପଥ ଦଣ୍ଡବତୀ ପରିକ୍ରମା କରି ଦର୍ଶନ ପାଇଁ ଯାଉଥିବା ଭକ୍ତଙ୍କୁ ଦର୍ଶନ କରିଛି ଲେଖକ । ଅତୀତରେ ଶ୍ରୀ ବିଜୟ କୃଷ୍ଣ ଗୋସ୍ୱାମୀଙ୍କ ପିତା ପଶ୍ଚିମ ବଙ୍ଗଳାର ଶାନ୍ତିପୁରରୁ ଶ୍ରୀଜଗନ୍ନାଥ ଦର୍ଶନରେ ଶ୍ରୀ ମନ୍ଦିର ଆସିଥିଲେ ଏହି ଦଣ୍ଡବତୀ ପରିକ୍ରମା କରି । ପହଞ୍ଚିଲା ବେଳକୁ ତାଙ୍କ ବକ୍ଷ ସ୍ଥଳ କିଭଳି ହୋଇଥିବ ଅନୁମାନ କରିବା ଆମ ପକ୍ଷେ ନିଶ୍ଚୟ କଷ୍ଟକର । ସେ କିନ୍ତୁ ଗୃହକୁ ଫେରିଯାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଯେ ସେ ଶ୍ରୀଜଗନ୍ନାଥଙ୍କ କୃପାରୁ ବିଜୟ କୃଷ୍ଣ ଗୋସ୍ୱାମୀଙ୍କ ଭଳି ପୁତ୍ର ରତ୍ନ ପ୍ରାପ୍ତ ହୋଇଛନ୍ତି ।

ଆମଭଳି ସହଜିଆ ଭକ୍ତମାନଙ୍କ ଲାଗି ଅବଶ୍ୟ ତୁଳସୀ ପରିକ୍ରମା, ମନ୍ଦିର ପରିକ୍ରମା, ଅଶ୍ୱତଥ୍ ବୃକ୍ଷ ପରିକ୍ରମା, ବିବାହ ବେଦୀର ହୋମକୁଣ୍ଡ ପରିକ୍ରମା, ଯଜ୍ଞ ବେଦୀରେ ଯଜ୍ଞକୁଣ୍ଡ ପରିକ୍ରମା କିମ୍ବା ପଞ୍ଚବଟୀ (ବେଲ, ଅଶ୍ୱତଥ୍, ଅଁଳା, ତୁଳସୀ ଓ ବଟ) ପରିକ୍ରମା ଆଦିର ବିଧାନ କରାଯାଇଛି ।

ହିନ୍ଦୁ ଧର୍ମ ବାହାରେ ଇସ୍‌ଲାମ ଧର୍ମରେ ମୁସଲମାନମାନେ କାବା ପରିକ୍ରମା କରନ୍ତି । ବୌଦ୍ଧଧର୍ମ ଅବଲମ୍ବୀମାନେ ସ୍ତୁପ, ସାଞ୍ଚି ସ୍ତୁପ ଆଦି ପରିକ୍ରମା କରିଥାନ୍ତି । ସେହିଭଳି ଜୈନ ଧର୍ମ ଅବଲମ୍ବୀମାନେ ଆଜି ମଧ୍ୟ ଗୁଜରାଟର ଜୁନାଗଡ଼ ଠାରେ ଗିରନାର ପର୍ବତର ୪୦୦୦ପାହାଚ ଉଠି ଉଠି ସେ ପର୍ବତ ଚାରିପାଖ ବୁଲି ମହାବୀରଙ୍କର ଶ୍ରୀ ବିଗ୍ରହ ପରିକ୍ରମା କରି ପରମ ଶାନ୍ତି ପ୍ରାପ୍ତ ହେଉଥିବା ପ୍ରକାଶ କରନ୍ତି ।

ଏକମାସ ବ୍ୟାପୀ ବ୍ରଜମଣ୍ଡଳ ପରିକ୍ରମା ଏବେ ବର୍ଷରେ ଦୁଇଥର ଭାଦ୍ରବ ମାସରେ ଏବଂ କାର୍ତ୍ତିକ ମାସରେ କରାଯାଉଛି । ବ୍ରଜମଣ୍ଡଳର ପ୍ରଥମ ପରିକ୍ରମା କଳିଯୁଗର ପାବନ ଅବତାର ସଂକୀର୍ତ୍ତନ ନାମ ଯଜ୍ଞର ପ୍ରଚାରକ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ କରିଥିଲେ । ଏହି ବ୍ରଜମଣ୍ଡଳର ଲୀଳାସ୍ଥଳୀମାନଙ୍କୁ ଦର୍ଶନ କରି ପରିକ୍ରମା କରିବାର ଆଦର୍ଶ ସେ ସ୍ୱୟଂ ରଖିଯାଇଥିଲେ । ପରେ ଷଡ଼ ଗୋସ୍ୱାମୀ, ଭୂଗର୍ଭ ଗୋସ୍ୱାମୀ

ଓ ଶ୍ରୀନିବାସ ଆଚାର୍ଯ୍ୟ ଆଦି ଏହି ପରିକ୍ରମା ନିଜେ କରି ଅନ୍ୟମାନଙ୍କୁ କରିବାକୁ ପ୍ରେରଣା ଦେବାକୁ ବିଧି ବିଧାନ ଖଞ୍ଜି ଯାଇଛନ୍ତି । ଏହି ବ୍ରଜମଣ୍ଡଳ ପରିକ୍ରମା ପୂର୍ବରୁ ପ୍ରଥମେ ବୃନ୍ଦାବନରେ ଶ୍ରୀଯମୁନା ନଦୀ ପୂଜନ କରି ମଥୁରାର ଶ୍ରୀ ଭୂତେଶ୍ୱର ମହାଦେବଙ୍କଠାରୁ ଆରମ୍ଭ କରି ଶେଷରେ ସେହିଠାରେ ସମାପ୍ତ କରିବାକୁ ହୁଏ ।

ଅତଏବ ନିଷ୍କର୍ଷ ହେଲା ଯେ ସର୍ବସମର୍ଥ ଭଗବାନଙ୍କ ପାଖରେ ଶରଣ ପଶିବା ବା ଅହଂକାର ମୁକ୍ତ ହେବା ଲାଗି ଅସାମାନ୍ୟ ବା ବୃହତ୍‌ର ଚତୁର୍ଦ୍ଦିଗରେ ସାମାନ୍ୟ ବା କ୍ଷୁଦ୍ରର ପରିକ୍ରମା ନିମୟରେ ଏ ସୃଷ୍ଟି ଆଦିକାଳରୁ ବନ୍ଧା ହୋଇ ରହିଛି ।

**୨. ଶ୍ରୀ ବୃନ୍ଦାବତୀ ଲୀଳା**

ପ୍ରଶ୍ନ-୮୬: ଆମର ଦୃଶ୍ୟମାନ ଏହି ସମଗ୍ର ଭୌତିକ ଜଗତ ଓ ଅଦୃଶ୍ୟ ଅଧ୍ୟାତ୍ମ ଜଗତର ସର୍ବୋଚ୍ଚ ଶାସକ ଦ୍ୱିଭୁଜଧାରୀ ମୁରଲୀମୋହନ ଶ୍ରୀ ଶ୍ୟାମ ସୁନ୍ଦର । ତାଙ୍କର ଖାସ୍ ରହିବା ଧାମ ଶ୍ରୀ ଗୋଲୋକ ବୃନ୍ଦାବନ । ସେ ଧାମର ପ୍ରତ୍ୟେକ ଶବ୍ଦ ସଙ୍ଗୀତ । ଶ୍ରୀ ଗୋଲୋକବାସୀଙ୍କର ପ୍ରତ୍ୟେକ ପଦପାତ ନୃତ୍ୟ । ପ୍ରତ୍ୟେକ ପ୍ରସ୍ତର ଚିନ୍ତାମଣି, ପ୍ରତ୍ୟେକ ବୃକ୍ଷ କଳ୍ପ ବୃକ୍ଷ ଓ ପ୍ରତ୍ୟେକ ଗାଈ କାମଧେନୁ । ସେଠାର ଭୂମି, ଜଳ, ବୃକ୍ଷ, ଲତା ସହିତ ଧୂଳିକଣାମାନ ଜଡ଼ ନୁହନ୍ତି । ବରଂ ଚେତନ ଯୁକ୍ତ ଚିନ୍ମୟ ଓ ନିତ୍ୟ ଆନନ୍ଦମୟ । ଠାକୁର ଶ୍ରୀକୃଷ୍ଣଙ୍କ ହାତରେ ମୁରଲୀ, ମସ୍ତକରେ ମୟୂର ଚୂଳ ସର୍ବଦା ଶୋଭାୟମାନ । ବର୍ଣ୍ଣ ତାଙ୍କର ଗୌର ନୁହେଁ । ବରଂ କୃଷ୍ଣ ବର୍ଣ୍ଣ ଠିକ୍ ବର୍ଷଣମୁଖର ଜଳଦ ସଦୃଶ । ତାଙ୍କର ଦିବ୍ୟ ରୂପ କାନ୍ତି କୋଟି କନ୍ଦର୍ପ ମୋହିତ କରିବାରେ ସମର୍ଥବାନ୍ । ସେ ସର୍ବଦା ନିଜର ପାର୍ଷଦ, ସଖା, ଗୋପୀ, ଗୋପାଳ ଓ ଗୋଧନ ପରିବେଷ୍ଟିତ । ସେହି ଧାମର ୮୪କ୍ରୋଶ ପରିମିତ ଦିବ୍ୟ ଚିନ୍ମୟ ଭୂମି ଲୀଳା ସମୟରେ ବ୍ୟବହାର ହେବାକୁ ଏହି ଭୌତିକ ଭୂଲୋକକୁ ଆସିଛନ୍ତି । ଆଜି ସେଇ ୧୩ଶହ ଗ୍ରାମ, ତିନି ପ୍ରଦେଶ ଉତ୍ତର ପ୍ରଦେଶ, ହରିୟାନା ଓ ରାଜସ୍ଥାନରେ ଶ୍ରୀବୃନ୍ଦାବନ ଧାମ ବା ଶ୍ରୀ ବଜ୍ରମଣ୍ଡଳ ନାମରେ ପରିଚିତ ।

ଜଣେ ସଂସାର ବୈରାଗୀ ଶ୍ରୀକୃଷ୍ଣ ଭକ୍ତ ସେଠାରେ ଶ୍ରୀରାଧା ଗୋବିନ୍ଦଙ୍କର ଦିବ୍ୟ ଲୀଳା ଚିନ୍ତନ କରି ଯେଉଁ ଅପାର ଅଲୌକିକ ଦିବ୍ୟ ଆନନ୍ଦ ପ୍ରାପ୍ତ ହୁଏ ତାହା ମହାବୈକୁଣ୍ଠ ଲୋକରେ ଶ୍ରୀଲକ୍ଷ୍ମୀ ନାରାୟଣ ଭଗବାନଙ୍କର ସାଲୋକ୍ୟ ଆଦି ୫ମୁକ୍ତି ଜନିତ ଦର୍ଶନ, ସ୍ପର୍ଶ, ଆଲିଙ୍ଗନ ଇତ୍ୟାଦିରେ ପାଇପାରେ ନାହିଁ । ସୁତରାଂ ସେହି ଦିବ୍ୟ ଶ୍ରୀ ବୃନ୍ଦାବନ ନାମକ ଧାମର ମାହାତ୍ମ୍ୟ କେତେ ବେଶୀ ତାହା କ୍ଷୁଦ୍ର ମନୁଷ୍ୟ ମସ୍ତିଷ୍କର

ଚିନ୍ତନର ପରିସୀମା ମଧ୍ୟରେ ଆସିପାରେ ନାହିଁ । ସେହି ବୃନ୍ଦାବନର ରକ୍ଷଣକର୍ତ୍ତ୍ରୀ ଶ୍ରୀବୃନ୍ଦାବତୀ । ସଂସ୍କୃତ ଭାଷାରେ ତୁଳସୀଙ୍କର ଅନେକ ନାମ ମଧ୍ୟରୁ ଗୋଟିଏ ପ୍ରିୟ ନାମ ବୃନ୍ଦା । ସେହି ବୃନ୍ଦା ବା ତୁଳସୀ ଦେବୀଙ୍କର ସେବା ସର୍ବାନ୍ତଃକରଣରେ କରିପାରିଲେ କୃଷ୍ଣପ୍ରେମ ପ୍ରାପ୍ତି ତେଣିକି ସାଧକର ହାତ ପାଆନ୍ତାରେ ବା ସଂପୂର୍ଣ୍ଣ କରତଳଗତ ବୋଲି ଜାଣ । ଭକ୍ତି ଗ୍ରନ୍ଥରେ ଭୌତିକ ତୁଳସୀ ବୃକ୍ଷ, ଚିନ୍ମୟ ଶ୍ରୀରାଧାରାଣୀ ଏକ ଏବଂ ଅଭିନ୍ନ । ସେଥିପାଇଁ ଶ୍ରୀକୃଷ୍ଣଙ୍କର ଅତି ପ୍ରିୟନାମ ବୃନ୍ଦାବନ ବିହାରୀ ଅଟେ ।

ଛପନ ଭୋଗ ରାନ୍ଧି ଶ୍ରୀକୃଷ୍ଣଙ୍କୁ ସମର୍ପଣ କରିବାକୁ ଚାହିଁଲେ ମଧ୍ୟ ଥାଳିରେ ତୁଳସୀ ପତ୍ରଟିଏ ନଥିଲେ ତାହା ଭଗବାନଙ୍କର ଗ୍ରହଣୀୟ ହୁଏ ନାହିଁ । ଦ୍ୱାରକା ଲୀଳାରେ ମା'ରୁକ୍ମିଣୀ ଅନ୍ୟତମା ପାଟରାଣୀ ସତ୍ୟଭାମାଙ୍କର ସକଳ ସୁବର୍ଣ୍ଣ ଅଳଙ୍କାର ସହିତ ଗୋବିନ୍ଦଙ୍କୁ ତଉଲି ଥିଲେ ତୁଳା ଯନ୍ତ୍ରରେ ତାଙ୍କ ଅଭିମନ୍ତ୍ରିତ ତୁଳସୀ ପତ୍ରଟିଏ ରଖି । ଅତଏବ ସେଇ ଶ୍ରୀବୃନ୍ଦାବତୀ ବା ଶ୍ରୀ ତୁଳସୀ ବୃକ୍ଷଙ୍କର କେତେ ପ୍ରକାରର ସେବା କରି ନିଜ ଅହଂକାରର ନଅ ପାହାଚ ଚଢ଼ି ସଂପୂର୍ଣ୍ଣ ଶ୍ରୀକୃଷ୍ଣ ଶରଣାଗତି ଫଳପ୍ରାପ୍ତି କରିପାରେ ଜଣେ କୃଷ୍ଣ ଭକ୍ତ ?

ଉତ୍ତର:

| | |
|---|---|
| ୧. ତୁଳସୀ ବୃକ୍ଷଙ୍କୁ କେବଳ ଚାହିଁଦେଲେ | ୧ମ ପାହାଚ |
| ୨. ତୁଳସୀ ବୃକ୍ଷଙ୍କୁ କେବଳ ସ୍ପର୍ଶ କରିଦେଲେ | ୨ୟ ପାହାଚ |
| ୩. ତୁଳସୀ ବୃକ୍ଷଙ୍କୁ କେବଳ ମନେ ପକାଇଲେ | ୩ୟ ପାହାଚ |
| ୪. ତୁଳସୀ ବୃକ୍ଷର ଗୁଣଗାନ କଲେ | ୪ର୍ଥ ପାହାଚ |
| ୫. ତୁଳସୀ ବୃକ୍ଷଙ୍କୁ ନମସ୍କାର କଲେ | ୫ମ ପାହାଚ |
| ୬. ତୁଳସୀ ବୃକ୍ଷଙ୍କୁ କୃଷ୍ଣ ପ୍ରେମ ପ୍ରାର୍ଥନା ଜଣାଇଲେ | ୬ଷ୍ଠ ପାହାଚ |
| ୭. ତୁଳସୀ ବୃକ୍ଷରୋପଣ କଲେ | ୭ମ ପାହାଚ |
| ୮. ତୁଳସୀ ବୃକ୍ଷରେ ନିତ୍ୟ ଜଳଦାନ କଲେ | ୮ମ ପାହାଚ |
| ୯. ତୁଳସୀ ବୃକ୍ଷଠାରେ କାୟ ମନୋବାକ୍ୟରେ ଶରଣ ପଶିଲେ | ୯ମ ପାହାଚ |

## (କ) ଶ୍ରୀବୃନ୍ଦା କୁଣ୍ଡ:

ଉ. ଶ୍ରୀନନ୍ଦ ଗ୍ରାମ ଯେଉଁ ନନ୍ଦୀଶ୍ୱର ପର୍ବତ ଉପରେ ଅବସ୍ଥିତ ତାଙ୍କର ପାଦଦେଶରେ ପାବନ ସରୋବର ନିକଟରେ ଏହି ତୁଳସୀ ବନର ମାଲିକାଣୀ ଶ୍ରୀବୃନ୍ଦା କୁଣ୍ଡରେ ଶ୍ରୀବୃନ୍ଦାବତୀ ନିତ୍ୟବାସ କରିଛନ୍ତି । ଆଜି ସେହି ସ୍ଥାନର ନାମ ଶ୍ରୀବୃନ୍ଦାକୁଣ୍ଡ ।

ବୃନ୍ଦାବତୀ ଦେବୀ ଶ୍ରୀରାଧା ରାଣୀଙ୍କର ଅଭିନ୍ନ ଏବଂ ସ୍ୱାଂଶ ଅବତାର । ସେ ଗୁରୁ କରିଛନ୍ତି ଯୋଗମାୟା ଶ୍ରୀମତୀ ପୌର୍ଣ୍ଣମାସୀ ଦେବୀଙ୍କୁ । ଶ୍ରୀମତୀ ଓ ଶ୍ରୀକୃଷ୍ଣଙ୍କର ଲୀଳା, ମିଳନ, ଝୁଲଣ, ବନ୍ଦାଣ ଓ କୁଞ୍ଜସଜା ଆଦି ସବୁର ବନ୍ଦୋବସ୍ତ ଦୁହେଁ ମିଶି କରନ୍ତି । ପ୍ରତ୍ୟେକ ଦିନ ଠାକୁର ଗୋଚାରଣରେ ଆସି ଓ ଶ୍ରୀରାଧା ଯମୁନା ସ୍ନାନରେ ଆସି ଯେଉଁ ସ୍ଥାନରେ ମିଳିତ ହୁଅନ୍ତି ଆଜି ସେହି ସ୍ଥାନର ନାମ ଗୁପ୍ତ କୁଣ୍ଡ ବା ଯୋଗପୀଠ ।

ଶ୍ରୀରାଧା ଶ୍ୟାମସୁନ୍ଦରଙ୍କର ଅଷ୍ଟକାଳୀୟ ସେବା ପଦ୍ଧତିରେ ଏହି ବୃନ୍ଦାବତୀ ନିତ୍ୟ ସେବା କରୁଥାନ୍ତି । ଶ୍ରୀକୃଷ୍ଣଙ୍କର ଚିନ୍ମୟ ଲୀଳା ଅପ୍ରକଟ ହେଲା ପରେ ରାଜା ବଜ୍ରନାଭ ଏହି ଠାରେ ଶ୍ରୀବୃନ୍ଦାବତୀଙ୍କ ମନ୍ଦିରରେ ଭଗବାନଙ୍କର ଏକ ପ୍ରତିମା ସ୍ଥାପନ କରିଥିଲେ । ୧୬୭୦ମସିହାରେ ବିଧର୍ମୀ ଶାସକଙ୍କର ଆକ୍ରମଣରେ ଏହି ପ୍ରାଚୀନ ମନ୍ଦିର ଧ୍ୱଂସ ହୋଇଗଲା । ପ୍ରତିମା ମଧ୍ୟ କ୍ଷତିଗ୍ରସ୍ତ ହେଲେ କିନ୍ତୁ ସଂପୂର୍ଣ୍ଣ ନଷ୍ଟ ହେଲେ ନାହିଁ । ଏକ ଭବ୍ୟ ପ୍ରତିମା ଆଜି ସେଠାରେ ଇସ୍‌କନ୍ ସଂସ୍ଥାଦ୍ୱାରା ଶ୍ରୀବୃନ୍ଦାଦେବୀଙ୍କର ନବ ନିର୍ମିତ ମନ୍ଦିରରେ ସେବିତ ହେଉଛନ୍ତି ।

ସନ ୧୫୧୫ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ବୃନ୍ଦାବନ ଆଗମନ କରି ଏହି ସବୁ ଲୁପ୍ତ ତୀର୍ଥମାନଙ୍କର ଉଦ୍ଧାର ଲାଗି ସଂକଳ୍ପ କରିଥିଲେ । ସେ ଏହି ପବିତ୍ର ସ୍ଥଳରେ ପହଞ୍ଚି ଭାବ ବିହ୍ୱଳ ହୋଇ ନୃତ୍ୟ କରିଥିଲେ । ୧୯୨୦ ମସିହା ବେଳକୁ ବ୍ରଜର ଜଣେ ପରମ ବୈଷ୍ଣବ ଶ୍ରୀମାଧବ ଦାସ ବାବା ଏହି ସ୍ଥାନରେ ଦୀର୍ଘ ୫୦ବର୍ଷ କାଳ ସାଧନ ଭଜନ କରିଥିଲେ ।

ସେ ଶ୍ରୀବୃନ୍ଦାକୁଣ୍ଡ ଓ ଗୁପ୍ତ କୁଣ୍ଡର ଜୀର୍ଣ୍ଣୋଦ୍ଧାର ଏବଂ ପଙ୍କୋଦ୍ଧାର କରିଥିଲେ । କାଳକ୍ରମେ ସେ ଅତ୍ୟନ୍ତ ବୃଦ୍ଧ ଅବସ୍ଥା ପ୍ରାପ୍ତ ହେବାରୁ ବିଗ୍ରହ ସେବା କରିବାରେ ଅସମର୍ଥ ହେଲେ । ପରିଶେଷରେ ବାବା ମାଧବ ଦାସ ଇସ୍‌କନ୍ ସଂସ୍ଥାର ପ୍ରତିଷ୍ଠାତା ଶ୍ରୀ ଅଭୟ ଚରଣ ଭକ୍ତି ବେଦାନ୍ତ ସ୍ୱାମୀଙ୍କ ହସ୍ତରେ ସେ ଲୀଳାସ୍ଥଳୀ ଓ ଦିବ୍ୟ ବିଗ୍ରହ ସେବା ଭାର ଅର୍ପଣ କରିଥିଲେ । ସେହି ଇସ୍‌କନ୍ ମନ୍ଦିର ପରିସରରେ ବାବା ପାର୍ଥିବ ଦେହ ତ୍ୟାଗ କରି ଶ୍ରୀବୃନ୍ଦାଦେବୀଙ୍କ ଲୀଳା ପ୍ରବେଶ କରିଗଲେ । ଆଜି ମଧ୍ୟ ପ୍ରତ୍ୟେକ ବର୍ଷ କାର୍ତ୍ତିକ ମାସରେ ପୂର୍ଣ୍ଣିମା ଦିନ ଶ୍ରୀ ଶାଳଗ୍ରାମ ଶିଳା ସହିତ ଶ୍ରୀ ବୃନ୍ଦାଦେବୀଙ୍କର ବିବାହ ଉତ୍ସବ ମହାସମାରୋହରେ ବ୍ରଜବାସୀମାନେ ପାଳନ କରୁଛନ୍ତି ।

ବର୍ତ୍ତମାନ କିନ୍ତୁ ସେଇ ଅତି ପ୍ରାଚୀନ ବିଗ୍ରହ ନୂତନ ମନ୍ଦିରର ବାମ ପାଖରେ

ଏକ କ୍ଷୁଦ୍ର କୋଠରୀରେ ସଂରକ୍ଷିତ ହୋଇ ରହିଛନ୍ତି । ଏହି ପ୍ରାଚୀନ ବୃନ୍ଦାବତୀ ସତ୍ୟଯୁଗର ସେଇ ପଞ୍ଜାବ ରାଜ୍ୟର ଜଳନ୍ଧର ସହରର ପରମ ଶିବ ଭକ୍ତ ରାକ୍ଷସ ରାଜା ଜଳନ୍ଧରଙ୍କ ସେହି ସତୀ ପତ୍ନୀ ବୃନ୍ଦାବତୀ । ଜଳନ୍ଧର ନିଜର ଭୟଙ୍କର ଆସୁରିକ ପ୍ରବୃତ୍ତି ହେତୁ ବିଷ୍ଣୁ ବୈଷ୍ଣବ ଦ୍ୱେଷୀ ହେଲେ । ସୃଷ୍ଟିକର୍ତ୍ତାଙ୍କ ଅନୁରୋଧରେ ସୃଷ୍ଟିରେ ବୈଷ୍ଣବ ପୀଡ଼ା ଅବାଞ୍ଛିତ ବୋଲି ଘୋଷଣା କରିବାକୁ ଭଗବାନ ବିଷ୍ଣୁ ଚରମ ପଦକ୍ଷେପ ନେଲେ । ଛଦ୍ମ ବେଶରେ ସେ ବୃନ୍ଦାବତୀଙ୍କ ସତୀତ୍ୱ ହରଣ କଲେ । ଜଳନ୍ଧର ବଧ ସମ୍ଭବ ହେଲା । ସୃଷ୍ଟି ରକ୍ଷା ହେଲା । ସ୍ୱୟଂ ବିଷ୍ଣୁ ସତୀ ବୃନ୍ଦାବତୀଙ୍କ ଦ୍ୱାରା ଅଭିଶପ୍ତ ହେଲେ । ଶାଳଗ୍ରାମ ଶିଳା ହେଲେ । ତଥାପି ଦୟାମୟ ପ୍ରଭୁ ଦୟା କରି ତାଙ୍କୁ ତୁଳସୀ ବୃକ୍ଷ ହେବା ନିମିତ୍ତ ବରପ୍ରଦାନ କଲେ । ପୁଣି ମା'ରାଧାରାଣୀ କୃପାକରି ଶ୍ରୀକୃଷ୍ଣ ଲୀଳାରେ ତାଙ୍କ ପ୍ରିୟତମ ବନ ବୃନ୍ଦାବନରେ ରହି କୃଷ୍ଣଭକ୍ତମାନଙ୍କ ସେବା ଦାୟିତ୍ୱ ତାଙ୍କୁ ପ୍ରଦାନ କରିଛନ୍ତି । ତାଙ୍କ ନାମ ରହିଛି ବୃନ୍ଦାବତୀ ।

## ଖ. ଶ୍ରୀବୃନ୍ଦାଦେବୀ ମନ୍ଦିର(କାମ୍ୟବନ)

ସମଗ୍ର ବ୍ରଜମଣ୍ଡଳ ମଧ୍ୟରେ ଶ୍ରୀକାମ୍ୟବନର ସ୍ଥାନ ବା ମର୍ଯ୍ୟାଦା ସ୍ୱତନ୍ତ୍ର । ପ୍ରିୟା ପ୍ରିୟତମଙ୍କର ସବୁଠାରୁ ଗୋପନୀୟ ଲୀଳାମାନ ଏହିଠାରେ ଅନୁଷ୍ଠିତ ହୁଏ । ଏବେ ମଧ୍ୟ ହିଂସ୍ର ବ୍ୟାଘ୍ର, ଭଲ୍ଲୁକ, ସର୍ପ ଇତ୍ୟାଦି ଅସଂଖ୍ୟ ପଶୁମାନେ ଏହି ବନ ସଂରକ୍ଷଣ ଦାୟିତ୍ୱରେ ଅଛନ୍ତି । ଅନେକ ଶୁକ, ସାରୀ, ମୟୁର ଆଦି ପକ୍ଷୀ ଗଣ ଏ ବନକୁ ଲୋଭନୀୟ ମଧୁର ସଙ୍ଗୀତ ନୃତ୍ୟ ଯୁକ୍ତ କରି ରଖିଛନ୍ତି । ଶ୍ରୀରାଧା ଗୋବିନ୍ଦଙ୍କ ଲୀଳାର ମୁଖ୍ୟ ସୂତ୍ରଧର ରୂପରେ ଶ୍ରୀବୃନ୍ଦାଦେବୀ ଏହି କାମ୍ୟବନରେ ବିରାଜମାନ କରୁଛନ୍ତି ।

ସନ ୧୬୭୦ମସିହାରେ ମୁସଲମାନମାନେ ବୃନ୍ଦାବନ ଆକ୍ରମଣ କଲେ । ମନ୍ଦିର ଭଙ୍ଗା ଓ ବିଗ୍ରହ ଧ୍ୱଂସ ଭୟରେ ଜୟପୁର ରାଜା ବୃନ୍ଦାବନର ମୁଖ୍ୟ ତିନି ଠାକୁର ଶ୍ରୀମଦନ ମୋହନ, ଶ୍ରୀରାଧା ଗୋବିନ୍ଦ ଓ ଶ୍ରୀ ରାଧା ଗୋପୀନାଥଙ୍କ ସହିତ ଶ୍ରୀବୃନ୍ଦାବତୀଙ୍କର ଦିବ୍ୟ ବିଗ୍ରହଙ୍କୁ ଜୟପୁର ନେବା ଇଛା କଲେ । ସେତେବେଳେ କିଛି ଦିନ ଲାଗି ଏହି ବନରେ(ଆଜିର ମନ୍ଦିର ନିର୍ମିତ ସ୍ଥଳରେ) ସେମାନଙ୍କୁ ଲୁଚାଇ ରଖାଯାଇଥିଲା । ବୃନ୍ଦାବତୀଙ୍କ ବିଗ୍ରହ ବ୍ୟତୀତ ଅନ୍ୟ ତିନି ବିଗ୍ରହମାନଙ୍କୁ ସ୍ଥାନାନ୍ତରିତ କରାଯାଇଛି । ଏବେ ସେଠାରେ ସେମାନଙ୍କ ପ୍ରତିଭୂ ବିଗ୍ରହମାନେ ପୂଜା ପାଉଛନ୍ତି । ଶ୍ରୀ ବୃନ୍ଦାଦେବୀଙ୍କ ମୂଳ ବିଗ୍ରହ କିନ୍ତୁ ଏଠାରେ ଏବେ ମଧ୍ୟ ଅଛନ୍ତି । କାରଣ ସେ

ବୃନ୍ଦାବନ ତ୍ୟାଗ କରି ଅନ୍ୟ ସ୍ଥାନକୁ ଯିବେ ନାହିଁ ବୋଲି ସ୍ପଷ୍ଟ ଜଣାଇଦେଲେ । ଅଡ଼ି ବସିଲେ ମଧ୍ୟ । ଆଜି କାମ୍ୟବନ ଦର୍ଶନ ଲାଗି କେହି ଭକ୍ତ ଆସିଲେ ସର୍ବ ପ୍ରଥମେ ତାଙ୍କୁ ଦର୍ଶନ କରନ୍ତି । ତାଙ୍କ ଅନୁମତି ନେଇ ଅନ୍ୟାନ୍ୟ ବିଗ୍ରହ, ଲୀଳାସ୍ଥଳୀ ସବୁ ନିରାପଦରେ ଦର୍ଶନ କରିଥାଆନ୍ତି । ବୃନ୍ଦାବତୀଙ୍କର ଏହି ଦିବ୍ୟ ବିଗ୍ରହଙ୍କୁ ଶ୍ରୀଲ ରୂପ ଗୋସ୍ୱାମୀ ପାଦ ବୃନ୍ଦାବନ ସ୍ଥିତ ବ୍ରହ୍ମକୁଣ୍ଡରୁ ପ୍ରାପ୍ତ ହୋଇଥିଲେ ।

## ୩. ପ୍ରଥମ ଜଗଦ୍‌ଗୁରୁ ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟଙ୍କ ବୃନ୍ଦାବନ ଲୀଳା

ପ୍ରଶ୍ନ-୮୭: ଭବିଷ୍ୟ ପୁରାଣଙ୍କ ମତରେ ଶ୍ରୀମହାବିଷ୍ଣୁଙ୍କର ଦିବ୍ୟ ଅସ୍ତ୍ର ଶ୍ରୀ ସୁଦର୍ଶନ ଚକ୍ରଙ୍କର ବ୍ରଜମଣ୍ଡଳ ଧାମରେ କେଉଁଠାରେ କେଉଁ ନାମରେ କଳିଯୁଗରେ ଭକ୍ତ ଅବତାର ଲୀଳା ହୋଇଥିଲା ?

ଉ. ବ୍ରଜ ୮୪କ୍ରୋଶ ପରିକ୍ରମା ମାର୍ଗରେ ଶ୍ରୀଗୋବର୍ଦ୍ଧନ ଠାରୁ ୭କି.ମି. ଦୂରରେ ଆଜିର ନିମ ଗ୍ରାମ ଆଶ୍ରମ ସେହି ପବିତ୍ର ଲୀଳାସ୍ଥଳୀ । ଆନ୍ଧ୍ର ପ୍ରଦେଶର ଗୋଦାବରୀ ନଦୀକୂଳରେ ବୈଦୁର୍ଯ୍ୟ ପଟ୍ଟନମ୍ ଏକ ଗ୍ରାମ । ଖ୍ରୀଷ୍ଟପୂର୍ବ ୭୦୦ରେ ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ସଂନ୍ଧ୍ୟାବେଳେ ପିତା ଅରୁଣ ମୁନି ଓ ମାତା ଜୟନ୍ତୀ ଦେବୀଙ୍କ କୋଳମଣ୍ଡନ କରି ଆବିର୍ଭୁତ ହେଲେ ଏକ ଅଲୌକିକ ସନ୍ତାନ । ତାଙ୍କର ବାଲ୍ୟନାମ ଥିଲା ନିୟମାନନ୍ଦ । ଅବତାର କିନ୍ତୁ ଶ୍ରୀସୁଦର୍ଶନ ଚକ୍ରଙ୍କର । ବାଲ୍ୟକାଳରେ ତାଙ୍କର ପିତୃ ବିୟୋଗ ଘଟିଲା । ମାତାଙ୍କୁ ଧରି ସେ ଆସି ପହଞ୍ଚିଲେ ସୁଦୂର ବ୍ରଜମଣ୍ଡଳ ଧାମ । ଏହି ପ୍ରକାଣ୍ଡ ନିମ ବୃକ୍ଷ ଥିବା ନିମଗ୍ରାମକୁ ବାଛିଲେ ଲୀଳାସ୍ଥଳୀ ରୂପରେ । ସୃଷ୍ଟିକର୍ତ୍ତା ବ୍ରହ୍ମା ସନ୍ନ୍ୟାସୀ ବେଶରେ ଆସି ପହଞ୍ଚିଲେ ପରୀକ୍ଷା କରିବା ନିମିତ୍ତ । ଶାସ୍ତ୍ର ଆଲୋଚନା ହେଉ ହେଉ ସନ୍ଧ୍ୟା ହୋଇଗଲା । ସନ୍ନ୍ୟାସୀ ବାହାରିଲେ ବିଦାୟ ନେବାକୁ ।

## ବିରଳ ଅତିଥି ସେବା

ନିୟମାନନ୍ଦ ଅତିଥିଙ୍କୁ ଭୋଜନ ନ କରାଇ ବିଦାୟ ଦେବେ କିଭଳି ? ଏଣେ ଯତିବର କହିଲେ ଯେ ସୂର୍ଯ୍ୟାସ୍ତ ପରେ ସେ ଭୋଜନ କରିବେ ନାହିଁ । ନିୟମାନନ୍ଦଙ୍କ ମା' କହିଲେ ଯେ ଗୃହରେ ତଣ୍ଡୁଳ ଦାନା ଗୋଟିଏ ହେଲେ ନାହିଁ । ଅତିଥିଙ୍କୁ ଅପେକ୍ଷା କରିବାକୁ କହି ଏକ ରୂପରେ ସେ ସେହି ନିମବୃକ୍ଷ ଶଖାରେ ବିରାଜମାନ ହେଲେ ଆଦିତ୍ୟ ବା ସୂର୍ଯ୍ୟ ରୂପରେ(ସୁଦର୍ଶନ ଚକ୍ର) । ଅନ୍ୟ ଏକ ରୂପରେ ନିକଟସ୍ଥ ଗ୍ରାମରୁ ଭିକ୍ଷା ଆଣି ଭୋଜନ ପରଶିଲେ । ବ୍ରହ୍ମାଜୀ ସନ୍ତୁଷ୍ଟ ହୋଇ ନାମ ରଖିଲେ ନିମ୍ବାଦିତ୍ୟ । ବିଦାୟ ନେଲେ ବ୍ରହ୍ମଦେବ । ତାଙ୍କୁ ବିଦ୍ୟାଦାନ କରିବାକୁ ତୁରନ୍ତ ପଠାଇଲେ ନିଜ ମାନସ ପୁତ୍ର ଦେବର୍ଷି ନାରଦଙ୍କୁ ।

ଦେବର୍ଷି ଦେଖିଲେ ନିୟମାନନ୍ଦ ବ୍ରହ୍ମ ଉପାସନା କରିବାର ଜଣେ ସତ୍‌ପାତ୍ର । ଜୀବ ବ୍ରହ୍ମଙ୍କର ଭେଦ ଓ ଅଭେଦ ଦୁଇ ତତ୍ତ୍ୱ ନାରଦଜୀ ବୁଝାଇଲେ ନିୟମାନନ୍ଦଙ୍କୁ । ସନ୍ନ୍ୟାସ ଧର୍ମରେ ଦୀକ୍ଷିତ କଲେ । ସନ୍ନ୍ୟାସ ନାମ ରଖିଲେ ହରିପ୍ରିୟ । ହାତରେ ଦେଲେ ଶ୍ରୀମନ୍ ନାରାୟଣଙ୍କର ଅଭିନ୍ନ ସ୍ୱରୂପ ଏକ ଚିନ୍ମୟ ବିଗ୍ରହ ଶାଳଗ୍ରାମ । ସେହି ଶାଳଗ୍ରାମ ଆଜି ମଧ୍ୟ ଗୁରୁଶିଷ୍ୟ ପରମ୍ପରା କ୍ରମେ ଏହି ରାଧା-ନିମ୍ବାର୍କ ବିହାରୀ ମନ୍ଦିରରେ ସେବିତ ହେଉଛନ୍ତି । କୀର୍ତ୍ତନ ଲାଗି ନିମ୍ବାର୍କ ସ୍ୱାମୀ ଆଦରି ନେଲେ ଏହି ନାମ ମନ୍ତ୍ର ।

**ରାଧେକୃଷ୍ଣ ରାଧେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।**
**ରାଧେ ଶ୍ୟାମ ରାଧେ ଶ୍ୟାମ ଶ୍ୟାମ ଶ୍ୟାମ ହରେହରେ ।**

ଜପିଲେ କିନ୍ତୁ ଅଷ୍ଟାଦଶାକ୍ଷରୀ ଗୋପାଳ ମନ୍ତ୍ର । ସିଦ୍ଧ କଲେ ମଧ୍ୟ । ନିମ୍ବାଦିତ୍ୟଙ୍କୁ ମିଳିଲା କାଶୀବିଦ୍ୱତ୍ ପରିଷଦ ତରଫରୁ ପ୍ରଥମ ମୂଳ ଜଗଦ୍‌ଗୁରୁ ଉପାଧି । ବୈଷ୍ଣବ ପରମ୍ପରାର ଶୁଭାରମ୍ଭ ହେଲା । ନାମ ହେଲା ହଂସ/ସନକାଦି/୪କୁମାର/ଦେବର୍ଷି ନାରଦ ସଂପ୍ରଦାୟ । ବର୍ତ୍ତମାନ ନିମ୍ବାର୍କ ମତ ଅବଲମ୍ବୀ ସନ୍ଥ ମହନ୍ତମାନେ ଦେବାଚାର୍ଯ୍ୟ ଉପାଧି ଧାରଣ କରୁଛନ୍ତି । ଭାରତର ସାରା ବ୍ରଜମଣ୍ଡଳ ସହିତ ଜୟପୁର, ଯୋଧପୁର, ଭରତପୁର, ଗୋଆଲିଅର ବର୍ଦ୍ଧମାନ, ବିହାର, ଓଡ଼ିଶା ଓ ପଶ୍ଚିମବଙ୍ଗ ଇତ୍ୟାଦି ରାଜ୍ୟରେ ଏହି ସଂପ୍ରଦାୟର ଅଗଣିତ ମଠ, ମନ୍ଦିର, ଆଶ୍ରମ, ଭଜନସ୍ଥଳୀମାନ ସ୍ଥାପିତ ହୋଇଛି ।

## ସର୍ବ ପ୍ରଥମ ବୈଷ୍ଣବ ପରମ୍ପରା ପ୍ରଚଳନ

ଶ୍ରୀନିମ୍ବାର୍କ ସ୍ୱାମୀ ବ୍ୟାସଦେବଙ୍କର ବ୍ରହ୍ମସୂତ୍ରର ବ୍ୟାଖ୍ୟା ବେଦାନ୍ତ ପାରିଜାତ ସୌରଭ ରଚନା କରି ଅମର ହୋଇ ଯାଇଛନ୍ତି । ତାଙ୍କର ମତ ଜୀବ ବ୍ରହ୍ମ ମଧ୍ୟରେ ଭେଦ ଓ ଅଭେଦ ଉଭୟ ସଂପର୍କ ବିଦ୍ୟମାନ । ପରେ ପରେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ମଧ୍ୱଆଚାର୍ଯ୍ୟଙ୍କ ଦ୍ୱୈତବାଦ, ଏହି ଦ୍ୱୈତ ଅଦ୍ୱୈତ ମତ ସହିତ ଉତ୍କଳୀୟ ବୈଷ୍ଣବମାନଙ୍କର ଜ୍ଞାନ ମିଶ୍ରା ଭକ୍ତି ମାର୍ଗର ସମନ୍ୱୟ କରି ସ୍ଥାପନ କଲେ ଅଚିନ୍ତ୍ୟ ଭେଦାଭେଦ ମତ । ଯାହାର ପୁଷ୍ଟି ସାଧନ କଲେ ଶ୍ରୀବଳଦେବ ବିଦ୍ୟାଭୂଷଣ ଗୋବିନ୍ଦ ଭାଷ୍ୟ ରଚନା କରି ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱକୁ ବିଶ୍ଳେଷଣ କରି । ଶେଷରେ ବିଂଶ ଶତାବ୍ଦୀରେ ପଞ୍ଚମ ମୂଳ ଜଗଦଗୁରୁ ଶ୍ରୀକୃପାଳୁଜୀ ମହାରାଜ ସମନ୍ୱୟାତ୍ମକ ବିଶ୍ଳେଷଣ କରି ଏଥିରେ ମୋହର ମାରିଲେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ବର୍ତ୍ତମାନ ଏହି ସଂପ୍ରଦାୟର ସର୍ବୋଚ୍ଚ ଆଚାର୍ଯ୍ୟ ଶ୍ରୀ ଶ୍ରୀଜୀ ମହାରାଜ ସେଇ ଦିବ୍ୟ ଶାଳଗ୍ରାମଶିଳା ସେବା ପୂଜା ଭାର ଦାୟିତ୍ୱ ଗ୍ରହଣ କରିଛନ୍ତି ଏହି ନିମଗାମ ଆଶ୍ରମରେ । ଧନ୍ୟଶାଳଗ୍ରାମ ଶିଳା । ଧନ୍ୟ ନିମ୍ବାଦିତ୍ୟ ସ୍ୱାମୀ । ଧନ୍ୟ ଭକ୍ତିମାର୍ଗ ।

## ୪. ଶ୍ରୀ ମାଧବେନ୍ଦ୍ରପୁରୀଙ୍କର ବୃନ୍ଦାବନଲୀଳା

ପ୍ରଶ୍ନ-୮୮: ବୈଷ୍ଣବ ପରମ୍ପରା ଆରମ୍ଭରେ ଶ୍ରୀକୃଷ୍ଣଙ୍କୁ ଲୋକେ ଭଗବାନ ମାନୁଥିଲେ । ଭୟରେ ଦାସ୍ୟଭକ୍ତି କରୁଥିଲେ । ଓଡ଼ିଶାର ଭକ୍ତ ଶ୍ରେଷ୍ଠ ଜୟଦେବ କିନ୍ତୁ ଏ ଧାରଣାରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିଲେ । ଭୟକୁ ଭୁଲି, ଶ୍ରୀକୃଷ୍ଣଙ୍କର ଭଗବତ୍ତାକୁ ଭୁଲି ମଧୁର ସଂପର୍କ ସ୍ଥାପନ କରିବାର ଶୁଭାରମ୍ଭ କରିଥିଲେ । ପୁଣି ଶ୍ରୀ ମାଧବେନ୍ଦ୍ର ପୁରୀ ଏହି ଧାରାରେ ନୂତନ ଉନ୍ମାଦନା ସୃଷ୍ଟି କଲେ ଶ୍ରୀବୃନ୍ଦାବନ ଧାମରେ ପ୍ରବେଶ କରି । ଏ ମହାଶୟଙ୍କ ପିଲାଦିନ କଥା ଏବେ ମଧ ସଂପୂର୍ଣ୍ଣ ଅଜଣା । ସେ କିନ୍ତୁ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୱ ସଂପ୍ରଦାୟର ଜଣେ ଆଗଧାଡ଼ିର ପରମ ବୈଷ୍ଣବ । ଭକ୍ତ ମନରୁ ପାଶୋର ଯାଇଥିବା ପ୍ରାଚୀନ ବୃନ୍ଦାବନ ସହିତ ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କ ନବୀ ଆଧୁନିକ ବୃନ୍ଦାବନର ସଂଯୋଗ ରକ୍ଷାକାରୀ ଭାବେ ଦେଖାଦେଇଥିଲେ ।

ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର ପ୍ରସିଦ୍ଧ ଶିଷ୍ୟମାନେ ହେଲେ ଅଦ୍ୱୈତ ଆଚାର୍ଯ୍ୟ, ଈଶ୍ୱରପୁରୀ(ଶ୍ରୀ ଚୈତନ୍ୟଙ୍କ ଦୀକ୍ଷା ଗୁରୁ), ପୁଣ୍ଡରିକ ବିଦ୍ୟାନିଧି ଓ ପରମାନନ୍ଦପୁରୀ ଆଦି । ସେହିଁ ଭାରତ ଭୂମିରେ ନାମ ସଂକୀର୍ତ୍ତନ ଆନ୍ଦୋଳନର ପ୍ରଥମ ଓ ପ୍ରଧାନ ପୁରୋଧା । ମଧ୍ୱ ସଂପ୍ରଦାୟର ଲକ୍ଷ୍ମୀପତି ତୀର୍ଥ ତାଙ୍କର ଗୁରୁ । ତାଙ୍କର ତନ, ମନ ଓ ଧନ ସଦା କୃଷ୍ଣ ତନ୍ମୟ ରହୁଥିଲେ । ସେହି ପ୍ରେମକୁ ସେ ଅକାତରରେ ପ୍ରଥମେ ଶ୍ରୀବୃନ୍ଦାବନରେ ପରେ କ୍ଷୀର ଚୋରା ଗୋପୀନାଥ ରେମୁଣା ଓ ନୀଳାଚଳ ଆଦି ବୈଷ୍ଣକ୍ଷେତ୍ରରେ ବିଞ୍ଚାଡ଼ି ଦେଇଥିଲେ । ଅନ୍ୟ ଶବ୍ଦରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସଂକୀର୍ତ୍ତନ ଲୀଳା ପ୍ରଚାରର ବୀଜ ବୁଣି ଦେଲେ ।

## ତୀର୍ଥ ପର୍ଯ୍ୟଟନ

ଆର୍ଯ୍ୟଭୂମି ଭାରତର ଅନେକ ତୀର୍ଥ ପର୍ଯ୍ୟଟନ କରି ଶେଷରେ ମାଧବେନ୍ଦ୍ର ପୁରୀ ପହଞ୍ଚିଲେ ଶ୍ରୀବୃନ୍ଦାବନ ଧାମରେ । ଶ୍ରୀ ଗିରିରାଜ ଗୋବର୍ଦ୍ଧନଙ୍କର ପରିକ୍ରମା କଲେ । ଜତିପୁରା(ଜ୍ୟୋତିପୁର ବା ଯତି ବା ମାଧବେନ୍ଦ୍ର ସନ୍ନ୍ୟାସୀପୁର) ଠାରେ ଅଚେତ ହୋଇ ପଡ଼ିଗଲେ । ସମ୍ବିତ ଫେରି ସାଆନ୍ତେ ଗୋବିନ୍ଦ କୁଣ୍ଡରେ ସ୍ନାନ କଲେ । ସେଇଠି ଅଖଣ୍ଡ ଭଜନ କୀର୍ତ୍ତନ କରିଚାଲିଲେ । ମାଧୁକରୀ ଭିକ୍ଷା ଦ୍ୱାରା ତାଙ୍କ

ଜୀବନ ରକ୍ଷା ହେଉଥାଏ । ଦିନେ ଶ୍ରୀ ଗୋପାଳଜୀ ତାଙ୍କୁ ଦର୍ଶନ ଦେଲେ । ତାଙ୍କୁ ଦୁଧ ଗିନାଏ ମଧ୍ୟ ଦେଲେ ଗୋପାଳ ବେଶରେ । ରାତିରେ ସ୍ୱପ୍ନରେ ଡ଼ାକିନେଲେ ସାଙ୍ଗରେ ଗିରିରାଜ ଉପରକୁ । ମାଟିତଳେ ପୋତି ହୋଇଥିବା ତାଙ୍କ ଗୋପାଳଜୀ ବିଗ୍ରହକୁ ଉଦ୍ଧାର କରି ମନ୍ଦିରଟିଏ କରି ସ୍ଥାପନ କରିବାକୁ କହିଲେ । ପୁଣି ଏକଥା ମଧ୍ୟ କହିଲେ, ''ମାଧବେନ୍ଦ୍ର, ଅନେକ ଦିନ ହେଲା ସ୍ନାନ ଭୋଜନ କରିନି । ସେ ସବୁର କିଛି ବ୍ୟବସ୍ଥା କର ।''

ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ସକାଳୁ ଉଠି ନିକଟସ୍ଥିତ ଗ୍ରାମବାସୀମାନଙ୍କୁ ଧରି କୋଡ଼ି କୋଦାଳ ନେଇ ସେ ସ୍ଥାନକୁ ଚାଲିଲେ । କଣ୍ଟାବୁଦା ପରିଷ୍କାର କରାଇଲେ । ମାଟି ଖୋଳି ଗୋପାଳଜୀଙ୍କ ଶ୍ରୀବିଗ୍ରହ ଉଦ୍ଧାର କଲେ । ଗୋବିନ୍ଦକୁଣ୍ଡ ଜଳରେ ଅଭିଷେକ କରାଇଲେ । କୁଟୀର ନିର୍ମାଣ କରି ପୂଜା ଅର୍ଚ୍ଚନା ଆରମ୍ଭ କଲେ । ଗ୍ରାମବାସୀମାନେ ମିଶି ଡ଼ାଲି, ଚାଉଳ, ପରିବା ଆଣି ଠୁଳ କଲେ । ଚାଲିଲା ଅନ୍ନକୂଟ ମହୋତ୍ସବ । ଯାହା ଆଜି ମଧ୍ୟ ଜତିପୁରା ଠାରେ ଏବଂ ବୃନ୍ଦାବନର ଅନ୍ୟ ମନ୍ଦିରମାନଙ୍କରେ ସେଇ ତିଥିରେ ପାଳିତ ହେଉଛି ।

## ରେମୁଣା ଲୀଳା

ଦିନେ ଗୋପାଳଜୀ ସ୍ୱପ୍ନରେ ଜଣାଇଲେ ମାଧବେନ୍ଦ୍ରଙ୍କୁ ଏବଂ କହିଲେ, ''ମାଧବେନ୍ଦ୍ର, ମୋ ଶରୀରରେ ଜ୍ୱାଳା ହେଉଛି । ପୁରୀ ନୀଳାଚଳ ଧାମ ଯାଅ । ସୁବାସିତ ଶୀତଳ ଚନ୍ଦନ ଆଣ । ମୋ ଅଙ୍ଗରେ ବୋଳାଯିବ ।'' ଗୋସ୍ୱାମୀ ମହାରାଜ ଅବିଳମ୍ବେ ଚାଲିଲେ ଓଡ଼ିଶା । ପହଞ୍ଚିଲେ ବାଲେଶ୍ୱର ରେମୁଣା ଶ୍ରୀକୃଷ୍ଣ ମନ୍ଦିରରେ । ଭକ୍ତିପୂତ ମନରେ ସଂଧ୍ୟା ଆରତୀ ଦର୍ଶନ କଲେ । ଠାକୁରଙ୍କ ପାଖରେ କ୍ଷୀର ଭୋଗ ବଢ଼ା ହେଲା । ଭକ୍ତରାଜ ସେ କ୍ଷୀର ଟିକିଏ ଚାଖି ପାରିଲେ ନିଜ ଗୋପାଳଜୀଙ୍କୁ ସେହିଭଳି ସୁସ୍ୱାଦୁ ଭୋଗ କରିବାକୁ ମନେ ମନେ ଚାହିଁଲେ । ଲାଜରେ କିନ୍ତୁ ପୂଜାରୀଙ୍କୁ ଏକଥା ଜଣାଇ ପାରିଲେନି । କାରଣ ସେ ଅଯାଚିତ ବୈଷ୍ଣବ ବୃତ୍ତିରେ ଚଳୁଥାଆନ୍ତି । କାହାକୁ କିଛି ମାଗିବେନି । ଯଦି କିଏ ଯାଚି କରି କିଛି ଦିଏ ତେବେ ସେବନ କରିବେ । ମାଧବେନ୍ଦ୍ର ରାତିରେ ହାଟ ପଡ଼ିଆରେ ଗଛମୂଳରେ ବିଶ୍ରାମ ନେଲେ ।

ଏଣେ ରେମୁଣା ମନ୍ଦିରରେ ଗୋପୀନାଥ ଠାକୁରଙ୍କୁ ନିଦ୍ରା ହେଉ ନାହିଁ । ତାଙ୍କ ଭକ୍ତ ମାଧବେନ୍ଦ୍ର ଅଭୁକ୍ତ ଅଛି । ସ୍ୱପ୍ନରେ ଉଠାଇଲେ ନିଜ ସେବକ ପଣ୍ଡା

ମହାଶୟଙ୍କୁ । ଯାଆ ମୋ ଭୋକ୍ତକୁ ଭୋଗ ଦିଅ । ପଣ୍ଡା କିନ୍ତୁ ସବୁ କ୍ଷୀରୀ ଭୋଗ ବଣ୍ଟା ସରିଛି । ଆଉ କିଛି ନାହିଁ ବୋଲି ଠାକୁରଙ୍କୁ କହିଲେ । ଠାକୁର କିନ୍ତୁ ଆଗରୁ ଗୋଟିଏ କ୍ଷୀରି ଓଳି ତାଙ୍କ ପାଦ ପାଖରେ ଲୁଗା କାନି ଘୋଡ଼େଇ ରଖିନ୍ଥନ୍ତି ବୋଲି କହିଲେ । ପୂଜାରୀ ସଙ୍ଗେ ସଙ୍ଗେ ଉଠିଲେ । ସ୍ନାନ୍ ଶୌଚ ହେଲେ । ଦେଉଳରେ ପଶିଲେ । ସତକୁ ସତ ଗୋଟିଏ କ୍ଷୀରୀ ଓଳି ତାଙ୍କ ପାଦ ପାଖରେ ଅଛି । ପ୍ରସାଦ ଧରି ଧାଇଁଲେ ରେମୁଣା ବସ୍ତିକୁ । ରାତିରେ ଡାକ ପକାଇଲେ ମାଧବେନ୍ଦ୍ରପୁରୀଙ୍କ ନାମ ଧରି । ପାଇଲେ ମାଧବେନ୍ଦ୍ରଙ୍କୁ । ତାଙ୍କ ପାଦ ତଳେ ପଡ଼ିଲେ । ପ୍ରସାଦ ଦେଇ ଠାକୁରଙ୍କର ସବୁ ଲୀଳା କଥା କହିଲେ । ଭକ୍ତ ମାଧବେନ୍ଦ୍ର କ୍ଷୀରୀ ସହିତ ସେ ମାଟି ଓଳିକି ମଧ ଟିକି ଟିକି କରି ଭାଙ୍ଗି ପ୍ରେମରେ ସବୁତକ ସେବନ କରିଦେଲେ ।

ରାତି ନ ପାହୁଣୁ ବାହାରିଗଲେ ନୀଳାଚଳଧାମ । ପୁରୀ ରାଜାଙ୍କୁ ଚନ୍ଦନ କାଠ କଥା ଜଣାକଲେ । ସେବକ ସହିତ ଚନ୍ଦନ କାଠ ମହାରାଜା ଗୋସ୍ୱାମୀଙ୍କ ସାଙ୍ଗରେ ପଠାଇବା ବ୍ୟବସ୍ଥା କଲେ । ଫେରନ୍ତା ରାସ୍ତାରେ ପୁଣି ରେମୁଣାରେ ପହଞ୍ଚିଲେ ମାଧବେନ୍ଦ୍ର । ସ୍ୱପ୍ନରେ ଗୋପାଳଜୀ କହିଲେ, ‘‘ମାଧବେନ୍ଦ୍ର, ଶ୍ରୀବୃନ୍ଦାବନର ମୋ ଯତିପୁରା ବିଗ୍ରହ ଓ ବାଲେଶ୍ୱରର ରେମୁଣା ବିଗ୍ରହ ଏକ । ତୁମେ ସେହି ବିଗ୍ରହରେ ଚନ୍ଦନ ଲେପନ କର ।’’ ଠାକୁରଙ୍କ ସେଇ ଆଦେଶ ପାଳିତ ହେଲା ।

## ନାମ ସଂକୀର୍ତ୍ତନ ଲୀଳାର ବୀଜବପନ

ଭକ୍ତ ଶ୍ରେଷ୍ଠ ମାଧବେନ୍ଦ୍ର ଆସିଗଲେ ପୁଣି ବୃନ୍ଦାବନ ଧାମ । ନିତ୍ୟାନନ୍ଦ ପ୍ରଭୁ ସେତେବେଳକୁ ଭାରତ ଭ୍ରମଣ କରି ଭେଟିଲେ ସେହି ମାଧବେନ୍ଦ୍ର ପୁରୀଙ୍କୁ । ତାଙ୍କୁ ଦେଖୁ ଦେଖୁ ନିତ୍ୟାନନ୍ଦ ପ୍ରଭୁ ଭାବାବିଷ୍ଟ ହୋଇ ଅଚେତ ହୋଇଗଲେ । ଚେତନା ପ୍ରାପ୍ତ ହୋଇ ପ୍ରଣିପାତ କଲେ ମାଧବେନ୍ଦ୍ରଙ୍କୁ । ଦୁହେଁ କୃଷ୍ଣପ୍ରେମରେ ହେଲେ ଆତ୍ମହରା । ଦୁହେଁ ଦୁହିଁଙ୍କୁ ସପ୍ରେମ ଆଲିଙ୍ଗନ କଲେ । ଦୁହେଁ କୃଷ୍ଣ କୀର୍ତ୍ତନ କରୁ କରୁ ସୁପ୍ତ ଜାଗ୍ରତ, ଭୋଜନ-କ୍ଷୁଧା, ରାତି-ଦିନ ପାର୍ଥକ୍ୟ କିଛି ଜାଣିପାରୁନଥାନ୍ତି । ଉଭୟଙ୍କର କୃଷ୍ଣନାମ ଜପ, କୀର୍ତ୍ତନ ଓ କୃଷ୍ଣଲୀଳା ଚିନ୍ତନ ଥିଲା ତାଙ୍କର ଭୋଜନ, ପାନୀୟ, ଶୟନ, ଭ୍ରମଣ, ସାଧନ ସବୁକିଛି । କିଛିଦିନ ଏକତ୍ର ରହିବା ପରେ ଶ୍ରୀନିତ୍ୟାନନ୍ଦ ଗଲେ ସେତୁବନ୍ଧ ଦର୍ଶନରେ ଓ ଶ୍ରୀମାଧବେନ୍ଦ୍ର ଗଲେ ଅଯୋଧ୍ୟାଧାମ । ଉଦ୍ଦେଶ୍ୟ ଶ୍ରୀରାମ ଲୀଳାଭୂମିରେ ସରଯୁଜନଦୀ ତୀର୍ଥ ଦର୍ଶନ କରିବାକୁ । ମାଧବେନ୍ଦ୍ର ପୁରୀଙ୍କ ପୂର୍ବରୁ ମଧ୍ୱସଂପ୍ରଦାୟ ରାଧାକୃଷ୍ଣଙ୍କର କେବଳ ମିଳନ ମାଧୁର୍ଯ୍ୟ ରସ ଭାବନା ଓ

ସାଧନା କରୁଥିଲେ । ଏଣିକି ଭକ୍ତ ମାଧବେନ୍ଦ୍ର ପୁରୀ, ପ୍ରେମ ସାଧନାକୁ ବିରହ ଭାବନାରେ ରସାଣିତ କରିଦେଲେ ଯାହା ପରମ ପୁଷ୍ଟତା ଲାଭ କଲା ପରବର୍ତ୍ତୀ ସାଧକ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ଗମ୍ଭୀରା ଲୀଳାରେ ।

ସେଦିନର ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କ ଗୋପାଳଜୀ ମନ୍ଦିର ପରେ ପରେ ଶ୍ରୀବଲ୍ଲଭ ଆଚାର୍ଯ୍ୟ ଆବିଷ୍କାର କରି ପୁନଃ ପ୍ରତିଷ୍ଠା କଲେ ଶ୍ରୀନାଥ ନାମରେ ଏବେ ସେହି ଶ୍ରୀବିଗ୍ରହ ରାଜସ୍ଥାନର ନାଥ ଦ୍ୱାରା ଠାରେ ସେବିତ ହେଉଛନ୍ତି ।

## ୫. ଶ୍ରୀରାଧା ଗୋବିନ୍ଦଙ୍କର ବାତ୍ସଲ୍ୟ ଲୀଳା(ବଲ୍ଲଭ-ଆଚାର୍ଯ୍ୟ)

ପ୍ରଶ୍ନ-୮୯ : ପଞ୍ଚଦଶ ଶତାବ୍ଦୀରେ ଭକ୍ତ ମାଧବେନ୍ଦ୍ରପୁରୀ ଗୋସ୍ୱାମୀ ବୃନ୍ଦାବନ ଧାମରେ ଶାଳଗ୍ରାମ ରୂପେ ପୂଜିତ ଶ୍ରୀ ନାରାୟଣ ବିଗ୍ରହଙ୍କୁ ଏବଂ ଲକ୍ଷ୍ମୀ-ନାରାୟଣ ରୂପୀ ଭଗବାନଙ୍କୁ ଶ୍ରୀରାଧା ଗୋବିନ୍ଦ ପ୍ରେମରେ ରୂପାନ୍ତରିତ କରିଦେଲେ । ଦାସ୍ୟ ଭକ୍ତି ଓ ସଖ୍ୟ ଭକ୍ତିରେ ବାତ୍ସଲ୍ୟ ଭାବର ନୂତନ ପୁଟ ଲାଗିଲା । ପରେ ପରେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ନିଜେ କାନ୍ତା ଭକ୍ତି ବା ମଧୁର ଭକ୍ତି ପ୍ରଚାର କଲାବେଳେ ବାତ୍ସଲ୍ୟ ପ୍ରେମ ଭକ୍ତିର ପ୍ରଚାର ଦାୟିତ୍ୱ କାହାକୁ ପ୍ରଦାନ କରିଥିଲେ ?

ଉ. ବର୍ତ୍ତମାନ ବ୍ରଜ ମଣ୍ଡଳରେ ଅନେକ ସ୍ଥାନରେ ଶ୍ରୀବଲ୍ଲଭ ଆଚାର୍ଯ୍ୟଙ୍କୁ ମଧ୍ୟ ମହାପ୍ରଭୁ କୁହାଯାଇ ତାଙ୍କ ନାମରେ ଅନେକ ମନ୍ଦିର, ମଠ, ବୈଠକ ଆଦି ନିର୍ମାଣ କରାଯାଉଥିବା ଦେଖିବାକୁ ମିଳେ । ସେଇ ଅଲୌକିକ ମହାପୁରୁଷ ଏହି ପୁଷ୍ଟିମାର୍ଗ ବା ବାତ୍ସଲ୍ୟ ମାର୍ଗର ପ୍ରତିଷ୍ଠାତା । ଏବେ ମଧ୍ୟ ତାଙ୍କ ଭକ୍ତମାନେ (ଭାଗବତ ପ୍ରବଚକ ଶ୍ରୀ ରମେଶ ଭାଇ ଓଝା ଆଦି) ଶ୍ରୀରାଧାକୃଷ୍ଣ ବିଗ୍ରହଙ୍କୁ ଦର୍ଶନ କଲେ ନମସ୍କାର କରନ୍ତି ନାହିଁ । ବରଂ ସୁଖରେ ରହ ବୋଲି କହି ତାଙ୍କୁ ଆଶିର୍ବାଦ କରନ୍ତି ।

## ବାଲ୍ୟଲୀଳା ଓ ଶାସ୍ତ୍ରାର୍ଥ ଯାତ୍ରା

ଶ୍ରୀବଲ୍ଲଭ ଆଚାର୍ଯ୍ୟ ମଧ୍ୟ ପ୍ରଦେଶ ସ୍ଥିତ ଚମ୍ପାରନ ଗ୍ରାମରେ ଜନ୍ମହେଲେ ୧୪୮୧ଖ୍ରୀରେ । ୧୧ବର୍ଷ ବୟସରେ ପିତୃ ବିୟୋଗ ଘଟିଲା ତାଙ୍କର । ୧୨ବର୍ଷ ବେଳକୁ ତାଙ୍କର ବେଦ ପାଠ ପଢ଼ା ଶେଷ । ଷଡ଼ ଦର୍ଶନ ଓ ଅଷ୍ଟାଦଶ ପୁରାଣ ସହିତ ଭାଗବତ ଅଧ୍ୟୟନ ସବୁ ସମାପ୍ତ । ଗୀତାଙ୍କର ୭୦୦ଶ୍ଳୋକ ତାଙ୍କର କେବଳ କଣ୍ଠସ୍ଥ ନ ଥିଲା । ସେ ଶେଷଆଡୁ ୭୦୦ଶ୍ଳୋକକୁ ଓଲଟ ବୋଲି ବୋଲି ଶେଷ କରି ପାରୁଥିଲେ । ସେ ତିନିଥର ପାଦରେ ଚାଲି ଚାଲି ବାତ୍ସଲ୍ୟ ପ୍ରେମ ପ୍ରଚାର କରିବା ଲାଗି ଭାରତ ଭୂମି ଭ୍ରମଣ କରିଛନ୍ତି । ପ୍ରଥମ ଭ୍ରମଣରେ ନୀଳାଚଳ ଧାମରେ ରାଜା

ପୁରୁଷୋତ୍ତମ ଦେବଙ୍କୁ ଚମତ୍କୃତ କରିଦେଇଥିଲେ । ରାଜାଙ୍କ ଦରବାରରେ ସେତେବେଳେ ବ୍ରହ୍ମଜ୍ଞାନର ଚାରୋଟି ପ୍ରଶ୍ନ ଆଲୋଚିତ ହେଉଥାଏ ।୧. ସର୍ବଶ୍ରେଷ୍ଠ ଶାସ୍ତ୍ର କିଏ ? ୨. ସର୍ବଶ୍ରେଷ୍ଠ ଦେବତା କିଏ ? ୩. ସର୍ବଶ୍ରେଷ୍ଠ କର୍ମ କଅଣ, ୪. ଓ ସର୍ବଶ୍ରେଷ୍ଠ ମନ୍ତ୍ର କିସ ? କିଶୋର ଜ୍ଞାନୀ ବାଳକ ଶ୍ରୀବଲ୍ଲଭ ଆଚାର୍ଯ୍ୟ ଉତ୍ତର ଦେଇଥିଲେ ଯଥାକ୍ରମେ ଗୀତା, ଶ୍ରୀକୃଷ୍ଣ, ଶ୍ରୀକୃଷ୍ଣ ସେବା ଓ ଶ୍ରୀକୃଷ୍ଣ ନାମ ବୋଲି । ପଣ୍ଡିତ ସଭା କିନ୍ତୁ ଏହାର କିଛି ଠୋସ ପ୍ରମାଣ ଦାବି କଲେ । ଆଚାର୍ଯ୍ୟ ମହାଶୟଙ୍କ ଶ୍ରୀଜଗନ୍ନାଥଙ୍କ ଉପରେ ଅଖଣ୍ଡ ବିଶ୍ୱାସ ଥାଏ । ସେ କହିଲେ, 'ମହାରାଜ, ଆଜି ଶ୍ରୀ ମନ୍ଦିର ଦେଉଳ ମୁଦ କଲାବେଳେ ଖାଲି ତାଳପତ୍ର ଓ ଲେଖନୀ ରତ୍ନବେଦୀ ଉପରେ ରଖାଯାଉ, ଶ୍ରୀଜଗନ୍ନାଥ ଏହାର ଉତ୍ତର ନିଶ୍ଚୟ ଲେଖି ପ୍ରମାଣ କରିଦେବେ ।''

ମହାରାଜାଙ୍କ ଆଦେଶରେ ତାହା ହିଁ କରାଗଲା । ପରଦିନ ସକାଳେ ଦେଉଳ ଖୋଲି ରାଜା ଓ ପଣ୍ଡିତ ମଣ୍ଡଳୀ ଦେଖିଲେ ତାଳପତ୍ରରେ ଲେଖା ଅଛି-

**ଏକଂ ଶାସ୍ତ୍ରଂ ଦେବକୀ ପୁତ୍ର ଗୀତଂ**
**ଏକୋ ଦେବୋ ଦେବକୀପୁତ୍ର ଏବ ।**
**ଏକୋଽପିମନ୍ତ୍ର ତସ୍ୟ ନାମାନି**
**କର୍ମୋଽପି ଏକଂ ତସ୍ୟ ଦେବସ୍ୟ ସେବା ॥**

ଉ. ଜୟ, ଜୟ ଜଗନ୍ନାଥ ଧ୍ୱନିରେ ଶ୍ରୀମନ୍ଦିର ଭିତର ବାହାର କମ୍ପମାନ ହେଲା । ଅନେକ ପ୍ରଶଂସା ପାଇ ଏବେ ଶ୍ରୀବଲ୍ଲଭ ଚାଲିଲେ ଦକ୍ଷିଣ ଭାରତ ଭ୍ରମଣରେ । ବିଜୟ ନଗର ରାଜାଙ୍କ ଦରବାରରେ ଶ୍ରୀ ଶଙ୍କର ଓ ଶ୍ରୀମଧ୍ୱଙ୍କ ପ୍ରଣିତ ଦ୍ୱୈତ-ଅଦ୍ୱୈତ ବିବାଦର ସମାଧାନ କଲେ । ତତ୍‌କାଳୀନ ବିଜୟ ନଗରର ରାଜା ତାଙ୍କୁ କନକ ଅଭିଷେକ କରାଇଲେ । ଜଗଦ୍‌ଗୁରୁ ଉପାଧିରେ ଭୂଷିତ କଲେ ମଧ୍ୟ ।

## ଆଦର୍ଶ ଗୃହସ୍ଥାଶ୍ରମ

କାଶୀ ଧାମରେ ପହଞ୍ଚି ଶ୍ରୀବଲ୍ଲଭ ଆଚାର୍ଯ୍ୟ ଗୃହସ୍ଥାଶ୍ରମ ଆରମ୍ଭ କଲେ । ଦୁଇସନ୍ତାନ ଗୋପୀନାଥ ଓ ବିଠଳ ନାଥ(ଶ୍ରୀ ଗୁସାଇଁଜୀ)ଙ୍କୁ ପ୍ରକଟ କରାଇଲେ । ବ୍ୟାସଦେବଙ୍କ ବ୍ରହ୍ମସୂତ୍ରର ଭାଷ୍ୟ(ଅଣୁଭାଷ୍ୟ) ଓ ଶ୍ରୀମଭଗବତ ଗୀତାଙ୍କର ସୁବୋଧିନୀ ଟୀକା ଆଦି ଗ୍ରନ୍ଥ ରଚନା କଲେ । ଅଗଣିତ ଭକ୍ତଙ୍କୁ ମୁଖ୍ୟତଃ ରାଜସ୍ଥାନ ଓ ଗୁଜରାଟରୁ ଶିଷ୍ୟ ଭାବରେ ଗ୍ରହଣ କଲେ । ସେମାନଙ୍କ ମଧ୍ୟରୁ ୮୪ଜଣ ମୁଖ୍ୟ ଥିଲେ । ସେମାନଙ୍କ ଜୀବନ ଚରିତ ଆଜିକାଲିର ୮୪ବୈଷ୍ଣବ ନାମକ ପୁସ୍ତକରେ ଉପଲବ୍ଧ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଶ୍ରୀ ବଲ୍ଲଭ ବାତ୍ସଲ୍ୟ ଧର୍ମଧାରା ପ୍ରଚାର କରୁ କରୁ ପୁଣି ଥରେ ନୀଳାଚଳ ଧାମ ଆସିଲେ । ଗମ୍ଭୀରାରେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କୁ ଦର୍ଶନ କଲେ । ଶ୍ରୀଧର ସ୍ୱାମୀଙ୍କ ଶ୍ରୀମଦ୍ଭାଗବତ ଟୀକାଠାରୁ ଅଧିକ ଉତ୍କୃଷ୍ଟ ଟୀକା ଲେଖିଛନ୍ତି ବୋଲି ଦାବି କଲେ । ମହାପ୍ରଭୁ ଶାଣିତ ବ୍ୟଙ୍ଗ ହାଣି କହିଲେ, ''ଶ୍ରୀବଲ୍ଲଭ, ସ୍ୱାମୀ ଯେ ନ ମାନେ ତାରେ ବେଶ୍ୟା ମଧ୍ୟେ ଗଣି । ଯାଅ ସ୍ୱରୂପ ଦାମୋଦରଙ୍କ ଠାରୁ ଭାଗବତ ବୁଝିନିଅ । ଗଦାଧର ଗୋସ୍ୱାମୀଙ୍କଠାରୁ ଉପାସନା ବିଧି ଶିଖିଯାଅ ବୃନ୍ଦାବନ ।'' ଶ୍ରୀ ଗୋସ୍ୱାମୀ ସେ ସବୁ ଆଦେଶ ପାଳନ କଲେ । ବୃନ୍ଦାବନ ଫେରିଗଲେ ଶ୍ରୀ ଗୋବର୍ଦ୍ଧନର ଯତିପୁରାଠାରେ ଧ୍ୟାନସ୍ଥ ହେଲେ । ପର୍ବତ ଉପରୁ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ସ୍ଥାପିତ ଶ୍ରୀ ଗୋପାଳଜୀ ତାଙ୍କୁ ଡ଼କାଇ ନେଲେ । ଦର୍ଶନ ଦେଲେ । ବାତ୍ସଲ୍ୟ ମାର୍ଗର ପ୍ରଚାର ପ୍ରସାର ଲାଗି ସ୍ୱତନ୍ତ୍ର ଆଦେଶ ଦେଲେ । ସେହି ଦିନରୁ ବାତ୍ସଲ୍ୟ ପ୍ରେମର ଉତ୍ତାଳ ତରଙ୍ଗ ଯୁକ୍ତ ନୂତନ ବୈଷ୍ଣବ ଧାରା ଆଜି ମଧ୍ୟ ଭକ୍ତମାନଙ୍କ ହୃଦୟରେ ବହୁଛି । ତାଙ୍କ ପରେ ତାଙ୍କ ଶିଷ୍ୟ ଶ୍ରୀ ବିଠଲ ନାଥ ଓ ଶ୍ରୀ ସୁରଦାସ ଏହି ବାତ୍ସଲ୍ୟ ପ୍ରେମ ସାଗର ନୌକାର ମଙ୍ଗ ଧରି ଅପୂର୍ବ ରସଧାରାରେ ସମଗ୍ର ଭାରତ ଭୂମିକୁ ପ୍ଲାବନ କରିଯାଇଛନ୍ତି ।

୧୬୭୦ମସିହାରେ ବିଧର୍ମୀ ଆଉରଙ୍ଗଜେବ ଆକ୍ରମଣ କଲେ ଶ୍ରୀବୃନ୍ଦାବନ ଧାମର ମନ୍ଦିରମାନଙ୍କୁ । ଅନେକ ମନ୍ଦିର, ଶ୍ରୀ ବିଗ୍ରହ ଆଂଶିକ ବା ପୂରାପୂରି ଧ୍ୱଂସ ପାଇଗଲା । ଅନେକ ବିଗ୍ରହ କାମ୍ୟବନ ଦେଇ ଜୟପୁର ଓ କରୋଲି ସ୍ଥାନାନ୍ତରିତ ହେଲେ । ଶ୍ରୀ ଗୋପାଳଜୀଙ୍କ ବିଗ୍ରହ ଆଗ୍ରା ବାଟ ଦେଇ ୧୬୭୨ମସିହାରେ ସୁଦୂର ରାଜସ୍ଥାନର ନାଥଦ୍ୱାରା ଚାଲିଗଲେ । ଏବେ ସେଠାରେ ସେ ଶ୍ରୀନାଥ ନାମରେ ଉପାସିତ ହେଉଛନ୍ତି ଏକ ଭବ୍ୟ ମନ୍ଦିରରେ ସ୍ଥାପିତ ହୋଇ । ତାଙ୍କୁ ଅନେକ ଅନେକ ପ୍ରଣାମ ।

## ୬. ସନ୍ଥତୁଳସୀ ଦାସଙ୍କର ଦାସ୍ୟ ଭକ୍ତି ବୃନ୍ଦାବନ ଲୀଳା

ପ୍ରଶ୍ନ-୯୦: ବୈଷ୍ଣବ ଶାସ୍ତ୍ର ଅନୁସାରେ ମାଳା, ମନ୍ତ୍ର, ଗୁରୁ ଓ ଇଷ୍ଟ ବଦଳାଇବା ଅପରାଧ । ଭାରତୀୟ ଭକ୍ତି ଜଗତରେ ସନ୍ଥ ତୁଳସୀ ଦାସ ଗୋସ୍ୱାମୀ ପଦପ୍ରାପ୍ତ ଜଣେ ବରେଣ୍ୟ ବୈଷ୍ଣବ ଓ ଅତି ପ୍ରସିଦ୍ଧ ସିଦ୍ଧ କବି ମଧ୍ୟ । କଳିଯୁଗରେ ତାଙ୍କର ଆୟୁଷ ହେଲା ୧୨୫ବର୍ଷ । ପ୍ରକଟ ସନ ୧୫୧୧ ଓ ଲୀଳା ଅପ୍ରକଟ ସନ ୧୬୩୬ମସିହା । ସେଇ ପରମ ବୈଷ୍ଣବ ତୁଳସୀ ଦାସ ଶେଷ ଜୀବନକାଳରେ କାହିଁକି ବୃନ୍ଦାବନ ଦର୍ଶନରେ ଗଲେ ଓ କି ଦିବ୍ୟ ଅନୁଭୂତି ପ୍ରାପ୍ତ ହୋଇ ଦାସ୍ୟ ପ୍ରେମ ମୂଳକ ରାମ ପ୍ରେମ ଜଗତରେ ଚହଳ ପକାଇଦେଲେ ?

ଉ. ମାତା ତୁଳସୀ ଓ ପିତା ଆତ୍ମାରାମ ଦୁବେଙ୍କ କୋଳ ମଣ୍ଡନ କରିଥିଲେ ସନ୍ଥ ଶିରୋମଣି ତୁଳସୀ ଉତ୍ତର ପ୍ରଦେଶର ରାଜାପୁର ଗ୍ରାମରେ । ମାତା ଗର୍ଭରେ ପୂର୍ଣ୍ଣ ୧୨ମାସ ରହିଗଲେ । ପୁଣି ଜନ୍ମ ହେବା ବେଳକୁ ମୁଖ ମଧ୍ୟରେ ୩୨ଦାନ୍ତ ଉଠି ସାରିଥାଏ । ଜନ୍ମ ହୋଇ କୁଆଁ କୁଆଁ ଡ଼ାକିବା ପରିବର୍ତ୍ତେ ରାମ ନାମ ଉଚ୍ଚାରଣ କଲେ । ଲୋକେ ନାମ ଦେଲେ 'ରାମ ବୋଲା' ବୋଲି । ବାଲ୍ୟତ କାଳରେ ପିତା ମାତା ଉଭୟଙ୍କୁ ହରାଇଲେ ।

## ହନୁମାନଜୀଙ୍କ କୃପାପ୍ରାପ୍ତି

ପୂର୍ବଜନ୍ମର ସାଧନା ବଳରେ ବିବାହ କରିଥିବା ଶ୍ରୀତୁଳସୀ ଦାସ ପତ୍ନୀ ରତ୍ନାବତୀଙ୍କ ବ୍ୟଙ୍ଗ ବିଦ୍ରୂପ କଠୋର ବଚନ ଶ୍ରବଣ କରି ଅମାପ ସଂସାର ବୈରାଗ୍ୟର ଅଧିକାରୀ ହେଲେ । ଲୋକେ କହନ୍ତି ସାଧନା ଭୂମି ବଦ୍ରିନାଥ, ମୁକ୍ତି ଭୂମି କାଶୀ ବନାରସ, ପ୍ରେମ ଭୂମି ମଥୁରା ବୃନ୍ଦାବନ ଓ ବୈରାଗ୍ୟ ଭୂମି ଶ୍ରୀଚିତ୍ରକୂଟ । ସେ ଚିତ୍ରକୂଟ ଧାମରେ କଠୋର ସାଧନା କରି ଶ୍ରୀହନୁମାନଜୀଙ୍କର କୃପାପ୍ରାପ୍ତ ହେଲେ ତାଙ୍କୁ ଦର୍ଶନ କଲେ । ପୁଣି ଆଶିର୍ବାଦ ପ୍ରାର୍ଥନା କଲେ ଯେ ଶ୍ରୀରାମ ଦର୍ଶନ କରିବେ । ଶ୍ରୀରାମ, ଲକ୍ଷ୍ମଣ, ସୀତା ଦର୍ଶନ କରି କେବଳ ନିଜ ଧନ୍ୟ ହେଲେ ନାହିଁ ବରଂ ଭାରତର ଅଗଣିତ ପୁରଜନଙ୍କୁ କୃତାର୍ଥ କଲେ ତାଙ୍କର ଅମର ଗ୍ରନ୍ଥ ଶ୍ରୀରାମ ଚରିତ ମାନସ ଗ୍ରନ୍ଥ ରଚନା କରି । ତାଙ୍କ ଅଲୌକିକ ଲେଖନୀରୁ ଝରିଲା ବିନୟ ପତ୍ରିକା, ଦୋହାବଳୀ, କବିତା ବଳୀ ଓ ହନୁମାନ ଚାଳିଶା ଭଳି ଅନେକ ଭକ୍ତିରସ ଭରା ରାମପ୍ରେମ ଗ୍ରନ୍ଥ ସାହିତ୍ୟ । ତାଙ୍କର ଅସାମାନ୍ୟ ଗୁରୁ ଭକ୍ତି ତାଙ୍କ ଗୁରୁ ଶ୍ରୀନରହରି ଦାସଙ୍କ ଠାରୁ ରାମାୟଣ ଗ୍ରନ୍ଥ ବାରମ୍ବାର ଶ୍ରବଣ କରାଇଲା ପବିତ୍ର ଶୂକର କ୍ଷେତ୍ର ବା ବରାହ କ୍ଷେତ୍ରରେ ।

## ବାଲ୍ମିକୀଙ୍କ କଳିଯୁଗୀ ଅବତାର

ଭକ୍ତିମାଳ ଗ୍ରନ୍ଥ ଅନୁସାରେ ନାଭାଜୀ କହନ୍ତି ଏହି ତୁଳସୀଦାସ ତ୍ରେତାଯୁଗର ବାଲ୍ମିକୀଙ୍କର ଅବତାର । ପୁଣି ରାମାନନ୍ଦୀ ସଂପ୍ରଦାୟର ସନ୍ଥ । ଅଧିକାଂଶ ସମୟ ତାଙ୍କର କଟିଲା ବନାରସଠାରେ ଗଙ୍ଗାକୂଳରେ ଗ୍ରନ୍ଥରଚନା, ରାମଚରିତ ମାନସ, ଶ୍ରବଣ କୀର୍ତ୍ତନ ସତ୍‌ସଙ୍ଗ କରିବାରେ । ଆଜି ସେ ଘାଟର ନାମ ତୁଳସୀଘାଟ । ସେଠାର ସଙ୍କଟ ମୋଚନ ମନ୍ଦିର ସ୍ଥାପନ କର୍ତ୍ତା ମଧ୍ୟ ସେ । କାଶୀପୀଠର ମାନସ ମନ୍ଦିର ତାଙ୍କର ସ୍ମୃତି ଆଜି ମଧ୍ୟ ଜାଗ୍ରତ କରେ ଭକ୍ତ ହୃଦୟରେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ଆଉରଙ୍ଗଜେବଙ୍କ ସହ ସାମନା ସାମନି

ଥରେ ସିଦ୍ଧ ତୁଳସୀ ଦାସ ଗୋଟିଏ ମୃତ ମନୁଷ୍ୟକୁ ଜୀବନ ଦାନ କରିବାର ଚମତ୍କାର ଦେଖାଇ ଦେଲେ । ତତ୍‌କାଳୀନ ମୋଗଲ ବାଦଶାହ ଆଉରଙ୍ଗଜେବ ଡ଼କାଇ ନେଲେ ତୁଳସୀଙ୍କୁ ତାଙ୍କ ଦରବାରକୁ । ବାଧ୍ୟ କଲେ ତାଙ୍କୁ କିଛି ଚମତ୍କାର ଦେଖାଇବାକୁ । ତୁଳସୀ ଦାସ ଏକ ଅଭକ୍ତ ନିକଟରେ ଚମତ୍କାର ପ୍ରଦର୍ଶନ ଅନୁଚିତ ବୋଲି ନିଜର ଅସମର୍ଥତା ପ୍ରକାଶ କଲେ । କହିଲେ, ''ଜାହାଁପନା, ମୁଁ ଏଥିପାଇଁ ଅସମର୍ଥ । ସେ ସବୁ ହନୁମାନଜୀଙ୍କ କାମ । ମୁଁ ସାମାନ୍ୟ ମଣିଷ ତେଣୁ ଏକଥା ପାରିବିନି ।'' ପ୍ରତାପୀ ସମ୍ରାଟ ବନ୍ଦୀ କଲେ ସନ୍ଥଙ୍କୁ । ତୁଳସୀ ତୁରନ୍ତ ଜପ କଲେ ହନୁମାନ ଚାଳିସା । ୧୦୮ ସଂଖ୍ୟା ପୂରଣ ହେଉ ହେଉ ଏକ ଅଲୌକିକ ଚମତ୍କାର ଦେଖାଇଲେ ବୀର ହନୁମାନଜୀ । ସମ୍ରାଟଙ୍କ ଦରବାରରେ ହୋ ହଲ୍ଲା ଶୁଣାଗଲା । ହଜାର ହଜାର ସଂଖ୍ୟାରେ ମର୍କଟ ସେନା ଘେରାଉ କଲେ ସମ୍ରାଟଙ୍କ ଦରବାରକୁ । ଅନ୍ୟ ଉପାୟ ନ ଦେଖି ଆଉରେଙ୍ଗଜେବ ତୁଳସୀଙ୍କୁ ମୁକ୍ତ କଲେ । ଦଣ୍ଡବତ କଲେ । ଲୋକ ଡ଼କାଇ ସସମ୍ମାନେ ପଠାଇଦେଲେ ତାଙ୍କ କାଶୀ ବନାରସ ଆଶ୍ରମକୁ ।

## ତୁଳସୀଦାସଙ୍କ ବୃନ୍ଦାବନ ଲୀଳା ଦର୍ଶନ

ତୁଳସୀଦାସ ଜୀବନରେ ବଦ୍ରିକା, ଦ୍ୱାରକା, ରାମେଶ୍ୱର, ମାନ ସରୋବର, ଜଗନ୍ନାଥ ଧାମ ଆଦି ଭ୍ରମଣ କଲେ । ମାନସରୋବର ଠାରେ ଶ୍ରୀକାକଭୂଷଣ୍ଡୀଙ୍କ ଦର୍ଶନ ପ୍ରାପ୍ତ ହେଲେ । କାଶୀକୁ ଫେରିଆସି ଭାବିଲେ ଜୀବନରେ ଆଉ କଅଣ ବାକି ରହିଲା ବୋଲି । ତାଳପତ୍ରରେ ଚିଠିଟିଏ ଲେଖି ପଠାଇଲେ ନିଜ ଗୁରୁ ନରହରି ଦାସଙ୍କ ଅନ୍ୟତମ ଶିଷ୍ୟ ନନ୍ଦ ଦାସଙ୍କୁ । ନନ୍ଦ ଦାସ ସେତେବେଳକୁ ରାମ ଭଜନ ଛାଡ଼ି ଶ୍ରୀବୃନ୍ଦାବନ ଧାମରେ ରହିଥାନ୍ତି । କୃଷ୍ଣଭଜନ କରୁଥାନ୍ତି । ନନ୍ଦ ଦାସ ତାଙ୍କ ଗୁରୁଭାଇ । ତୁଳସୀ ଏକ ଲିଖିତ ପତ୍ରିକାରେ ତାଙ୍କୁ ପ୍ରଶ୍ନ କଲେ-

**କ୍ୟା କମି ଥି ରାମମେଁ ଛୋଡ଼ ଦି ତୁମନେ ରାମ ।**

ଚିଠି ପହଞ୍ଚିଲା ବୃନ୍ଦାବନ ଧାମ । ନନ୍ଦଦାସ ସେ ପତ୍ର ତଳେ ଲେଖିଲେ-

**ମନ ହୋ ଗଇ ବାଓରି ଶୁନ୍ କେ ବଂଶୀ ତାନ ।**

ପତ୍ରବାହକ ପତ୍ର ନେଇ ପହଞ୍ଚାଇଲା, ଗୋସ୍ୱାମୀଙ୍କ ହସ୍ତରେ । ତୁଳସୀ ଦାସଙ୍କ ରାମପ୍ରେମର ନଦୀ ଏବେ କୂଳ ଲଙ୍ଘନ କଲା । ବିଭୂପ୍ରେମ ଉଛୁଳି ଉଠିଲା । ସେ ଧାଇଁଲେ ଶ୍ରୀଧାମ ବୃନ୍ଦାବନ । ବୃନ୍ଦାବନର ଜ୍ଞାନ ଗୁଦ୍‌ଡ଼ି ଠାରେ ପହଞ୍ଚି ଦର୍ଶନ

କଲେ ନନ୍ଦ ଦାସ ଓ ତାଙ୍କ ସେବିତ ଦିବ୍ୟ କୃଷ୍ଣ ବିଗ୍ରହଙ୍କୁ । ତଥାପି ସେ ଅବୁଝା । ଦର୍ଶନ ପରେ ଠାକୁରଙ୍କୁ ଆପତ୍ତି ଜଣାଇ ଗାଇଲେ-

**କ୍ୟା କହୁଁ ଛବି ଆଜକି ଭଲେ ବନେ ହୋ ନାଥ ।**

**ତୁଳସୀ ସର ତବ ନୱେଁ ଧନୁସ୍ ବାଣ ଲୋ ହାଥ୍ ।।**

ଉକ୍ତ ପ୍ରଶ୍ନର ଉତ୍ତର ଦେବାରେ ଠାକୁରଜୀ ଆଦୌ ଡ଼େରି କଲେ ନାହିଁ । ଯୋଗମାୟାଙ୍କୁ କହି ନିଜ ପ୍ରିୟ ମୁରଲୀକୁ ଲୁଚାଇ ଦେଲେ । କାନ୍ଧରେ ଶୋଭାପାଇଲେ ରାମ ଅବତାର କାଳର ପ୍ରିୟ ଦୋକଣ୍ଡ ଧନୁ ଓ ହାତରେ ଶର । ସଙ୍ଗେ ସଙ୍ଗେ ସନ୍ଥ ଶିରୋମଣି ତୁଳସୀ ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣାମ କଲେ ଶ୍ରୀକୃଷ୍ଣ ବିଗ୍ରହଙ୍କୁ । ସେହି ସ୍ଥଳରେ କୁଟୀରଟିଏ ନିର୍ମାଣ କଲେ । ଲେଖିଲେ କୃଷ୍ଣ ସ୍ତୁତି ମୂଳକ ଦୋହା, ଚଉପାଇ । ଆଜି ସେ ସ୍ଥାନରେ ବିଦ୍ୟମାନ ସେଇ କୁଟୀରଙ୍କୁ ଆସନ୍ତୁ ଦଣ୍ଡବତ ପ୍ରଣାମ କରିବା ।

**୭. ଭକ୍ତ ସାଲବେଗଙ୍କର ବୃନ୍ଦାବନ ଦର୍ଶନ ଲୀଳା-**

ପ୍ରଶ୍ନ-୯୧: ଭାରତ ଭୂମିର ଦିଲ୍ଲୀ ସିଂହାସନ ୧୫୨୬ମସିହାରୁ ୧୮୫୭ମସିହା ପର୍ଯ୍ୟନ୍ତ ମୋଗଲ ଶାସକମାନଙ୍କ ଅଧୀନରେ ରହିଥିଲା । ଅନେକ ବାଦଶାହା ଆସିଲେ ଗଲେ । ସମ୍ରାଟ୍ ଆକବର କିନ୍ତୁ ଜଣେ ଅତ୍ୟନ୍ତ ଉଦାର ହୃଦୟ ମୋଗଲ ଶାସକ ଥିଲେ । ତାଙ୍କ ଦ୍ୱାରା ଲାଲବେଗ ସେତେବେଳେ ଓଡ଼ିଶାର ସୁବେଦାର ନିଯୁକ୍ତ ହୋଇଥାଆନ୍ତି । କଟକ ସହରର ଲାଲବେଗ ଦୁର୍ଗରେ ଥବା ବେଳେ ଦିନେ ସେ ପୁରୀ ନୀଳାଚଳ ଧାମରୁ ଅଶ୍ୱ ପିଠିରେ କଟକ ଫେରୁଥିଲେ । ବାଟରେ ଦାଣ୍ଡ ମୁକୁନ୍ଦପୁର ଠାରେ ତାଙ୍କର ନଜର ପଡ଼ିଲା ସକାଳେ ସଦ୍ୟ ସ୍ନାନ କରି ରାସ୍ତାରେ ଯାଉଥିବା ଜଣେ ବିଧବା ବ୍ରାହ୍ମଣୀ ଲଳିତାଙ୍କ ଉପରେ । ବିଧିର ବିଧାନ ବିଚିତ୍ର । ସୁବେଦାର ତାଙ୍କୁ ବଳତ୍କାରେ ଧରିନେଇ କଟକ ଚାଲିଗଲେ । ଜବରଦସ୍ତ ବିବାହ କଲେ । ନାମ ବଦଳେଇ ଫତିମା ବିବି କଲେ । ୧୫୯୨ଖ୍ରୀରେ ତାଙ୍କର ପୁତ୍ରଟିଏ ଜନ୍ମ ହେଲା । ଆଜନ୍ମ କୃଷ୍ଣ ଭକ୍ତ ଲଳିତା ଯତ୍ନର ସହିତ ପୁତ୍ରର ଲାଳନ ପାଳନ କଲେ । ଲାଲବେଗ ତାଙ୍କ ନାମ ଦେଲେ ସାଲବେଗ ।

**ଜଗନ୍ନାଥ ଭରସା**

୧୬୦୬ଖ୍ରୀଷ୍ଟାବ୍ଦରେ ଲାଲବେଗ ବଙ୍ଗଳାର ସୁବେଦାର ନିଯୁକ୍ତ ହେଲେ । ହଠାତ୍ ଆଫଗାନମାନଙ୍କ ବିଦ୍ରୋହ ଦମନ ଲାଗି ସୁବେଦାର ସାହେବ ଯୁଦ୍ଧ କରିବାକୁ ଦିଲ୍ଲୀରୁ ଆଦେଶ ପାଇଲେ । ଯୁବକ ପୁତ୍ର ସାଲବେଗଙ୍କୁ ସାଙ୍ଗରେ ଧରି ଯୁଦ୍ଧରେ

ଅବତୀର୍ଣ୍ଣ ହେଲେ । ପିତା ଲାଲ୍‌ବେଗ ପ୍ରାଣ ତ୍ୟାଗ କଲେ । କ୍ଷତ ବିକ୍ଷତ ଶରୀରରେ ସାଲବେଗ ଫେରି ଆସିଲେ କଟକ । ଅବସ୍ଥା ଦିନକୁ ଦିନ ଗୁରୁତର ହେଲା । ମା'ଲଳିତା ସନ୍ଥ ବାଳମୁକୁନ୍ଦଙ୍କୁ ଡ଼କାଇ ପୁତ୍ରକୁ ୨୧ ଦିନ କାଳ (ଅହୋରାତ୍ର) ମହାମନ୍ତ୍ର ଶୁଣାଇଲେ । ପୁତ୍ରକୁ ଜଗନ୍ନାଥ ଫଟୋଟିଏ ଦେଖାଇଲେ । ସେହି ରୂପ ଧ୍ୟାନ କରିବାକୁ କହିଲେ । ଆଶ୍ଚର୍ଯ୍ୟର କଥା । ଶ୍ରୀଜଗନ୍ନାଥ ମା'ପୁଅଙ୍କର ଗୁହାରି ଶୁଣିଲେ । ସାଲବେଗ ତାଙ୍କ ଆରୋଗ୍ୟର ଅଲୌକିକ କାରଣ କହି ବୁଲିଲେ । ଶ୍ରୀଜଗନ୍ନାଥଙ୍କ କୃପାକୁ ସାହି ପଡ଼ିଶା ମୁସଲମାନମାନେ ସହିପାରିଲେ ନାହିଁ । ସାଲବେଗଙ୍କୁ ମାରଧର କଲେ । ଘରୁ କାଢ଼ିଦେଲେ । ସାଲବେଗ କିନ୍ତୁ ଜଗନ୍ନାଥଙ୍କର କୃପାକଟାକ୍ଷକୁ ସ୍ମରଣ, ଧ୍ୟାନ କରି ନୀଳାଚଳ ଧାମରେ ପହଞ୍ଚିଲେ । ପଣ୍ଡାମାନେ ତାଙ୍କୁ ଠାକୁର ଦର୍ଶନ କରାଇଦେଲେ ନାହିଁ । ସେ କୁଆଡ଼େ ବିଧର୍ମୀ । ସାଲବେଗ ବଡ଼ଦାଣ୍ଡରେ ବଳଗଣ୍ଡିଠାରେ ତାଳପତ୍ର ଝାଟିମାଟିର କୁଡ଼ିଆଟିଏ ନିର୍ମାଣ କଲେ । ମହାପ୍ରଭୁ ଜଗନ୍ନାଥଙ୍କ ଭଜନ ଲେଖିଲେ । ଗାଇଲେ । ତାଙ୍କୁ ହିଁ କେବଳ ଧ୍ୟାନ କଲେ ।

ଆସି ପହଞ୍ଚିଲା ମହାପ୍ରଭୁଙ୍କର ରଥଯାତ୍ରା ଉତ୍ସବ । ସାଲବେଗ ନିଜ କୁଡ଼ିଆ ସମ୍ମୁଖରେ ପ୍ରଭୁଙ୍କ ଭଜନ ଗାଇଲେ ଗଳା ଫଟାଇ । ରଥ ଗୁଣ୍ଡିଚା ମନ୍ଦିର ଆଡ଼େ ଆସୁଥାଏ । ଦେଖୁ ଦେଖୁ ଗୋଟିକ ପରେ ଗୋଟିଏ ତିନିଟି ଯାକ ରଥ ତାଙ୍କ ଦ୍ୱାର ମୁହଁରେ ଅଟକି ଗଲା । ଆଉ ପାଦେ ଘୁଞ୍ଚିଲା ନାହିଁ । ଶେଷରେ ଭକ୍ତମାନେ ଜାଣିଲେ ଏହାର ରହସ୍ୟ । ସାଲବେଗଙ୍କୁ ଡ଼ାକି ନେଇ ରଥ ଦଉଡ଼ି ଟଣାଇଲେ । ତିନି ରଥ ପୁଣି ଚାଲିବା ଆରମ୍ଭ କଲେ । ଜଗନ୍ନାଥ ଭକ୍ତ ତାଲିକାରେ ତାଙ୍କ ନାମ ଲେଖାଗଲା । ମାଆ ଲଳିତା କଟକରୁ ଆସି ତାଙ୍କ କୁଡ଼ିଆରେ ରହିଲେ । କିଛିଦିନ ପରେ ସେ ଦେହ ତ୍ୟାଗ କଲେ । ଭକ୍ତ ସାଲବେଗ ଜନନୀଙ୍କର ମୃତଦେହ ଧରି ପହଞ୍ଚିଲେ ପୁରୀ ସ୍ୱର୍ଗଦ୍ୱାର ଶ୍ମଶାନରେ । ପଣ୍ଡାମାନେ ଲଳିତାଙ୍କ ଶବ ଦାହର ବିରୋଧ କଲେ । କହିଲେ ଲଳିତା ପରା ଫତିମା ବିବି ହୋଇଛନ୍ତି । ଯେନତେନ ପ୍ରକାରେ ସାଲବେଗ ମା'ଙ୍କର ଅନ୍ତ୍ୟେଷ୍ଟି ସଂସ୍କାର କରି କଅଣ ଦୁଃଖରେ ଭାଙ୍ଗିପଡ଼ିଲେ କି ?

ଉ. ନା, ନା ସେ ଆଦୌ ବ୍ୟସ୍ତହେଲେ ନାହିଁ । ତାଙ୍କର ଦୃଢ଼ ବିଶ୍ୱାସ ଯେ ଜଗନ୍ନାଥଙ୍କର ଲୀଳା ଭୂମି ବୃନ୍ଦାବନ । ବୃନ୍ଦାବନ ବିହାରୀ ଶ୍ରୀକୃଷ୍ଣଙ୍କର କଳିଯୁଗୀ ପୂଜାସ୍ଥଳୀ ନୀଳାଚଳ ଧାମ ପୁରୀ । ସୁତରାଂ ଏକାକୀ ସେ ଚାଲି ଚାଲି ପହଞ୍ଚିଲେ ଶ୍ରୀଧାମ ବୃନ୍ଦାବନ । ବର୍ଷେକାଳ ସେ ମଥୁରା, ବୃନ୍ଦାବନ, ଗୋବର୍ଦ୍ଧନ, ବର୍ଷାଣା,

ନନ୍ଦଗାଁ ମାନସୀ ଗଙ୍ଗା, ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ଆଦି ଲୀଳାସ୍ଥଳୀ ଦର୍ଶନ କରି ଭାବାବିଷ୍ଟ ହୋଇପଡ଼ିଲେ । ଜଗନ୍ନାଥ ଭଜନ ଗାଇ ଗାଇ ଫେରୁଥାନ୍ତି ୭୫୦କୋଶ ବାଟ ନୀଳାଚଳ ଧାମକୁ । ବାଟରେ ମନେ ପଡ଼ିଲା ପ୍ରଭୁଙ୍କ ରଥଯାତ୍ରା କଥା । କଣ୍ଠ ଫଟାଇ ଗାଇଲେ, '' ପ୍ରଭୁ, ଚାଲିବାକୁ ଯଥେଷ୍ଟ ଶକ୍ତି ନାହିଁ । ଗୁଣ୍ଡିଚା ଯାତ ସିନା ହୋଇଛି । ବାହୁଡ଼ା ବାକି ଅଛି । ମୁଁ ଫେରିବା ଯାଏଁ ତୁମେ ରଥ ଉପରେ ଥିବ । ମୁଁ ଦର୍ଶନ କଲାପରେ ଦେଉଳରେ ପଶିବ ।''

## ରଥଟଣା ଠପ୍

ଦୋଳେ ଚ ଦୋଳଗୋବିନ୍ଦଂ ଚାପେ ଚ ମଧୁସୂଦନମ୍ ।
ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ॥

କଥା ଅଛି ମର୍ତ୍ତ୍ୟ ଲୋକରେ ଗୋଟିଏ ପିମ୍ପୁଡ଼ି ଗୋଡ଼ରେ ଘଣ୍ଟି ବାନ୍ଧିଦେଲେ ତାର ଶବ୍ଦ ପ୍ରଭୁ ନାରାୟଣ ବୈକୁଣ୍ଠରେ ଶୁଣିପାରନ୍ତି । ନୀଳାଚଳନାଥ ଶୁଣିପାରିଲେ ଭକ୍ତ ସାଲବେଗଙ୍କ ବିନୀତ ନିବେଦନ । ନୀଳାଦ୍ରୀ ବିହାରୀ ପ୍ରଭୁ ରଥକୁ ନେଇ ବଡ଼ ଦାଣ୍ଡର ବଳଗଣ୍ଡିଠାରେ ରଖିଦେଲେ । ଦିନେ ଦୁଇଦିନ ନୁହେଁ । ଦୀର୍ଘ ତିନିମାସ କାଳ ତିନି ରଥ ପାଦେ ଘୁଞ୍ଚିଲେ ନାହିଁ । ତିନିଠାକୁର ଅପେକ୍ଷା କଲେ ଭକ୍ତକୁ ଖରାରେ ତରାରେ ବର୍ଷା କାକରକୁ ଖାତିର ନକରି । ତେଣେ ସାଲବେଗ ଫେରାନ୍ତା ବାଟରେ ବାଲେଶ୍ୱରରେ ପହଞ୍ଚି ଶ୍ରୀ ଶ୍ୟାମ ସୁନ୍ଦରଙ୍କ ମନ୍ଦିରରେ ପହଞ୍ଚିଲେ । ଆଗ୍ରହ' କଲେ ଠାକୁର ଦର୍ଶନ କରିବେ । ସେଠାରେ ମଧ୍ୟ ପୁଜାରୀ, ପଣ୍ଡାମାନେ ତାଙ୍କୁ ମନ୍ଦିର ପ୍ରବେଶ କରାଇ ଦେଲେ ନି ସେ ବିଧର୍ମୀ ବୋଲି । ଭକ୍ତ ଅଭିମାନରେ ପଳାଇ ଆସି ଏକ ବୃକ୍ଷମୂଳରେ ଧ୍ୟାନରେ ବସିଗଲେ । ପଣ୍ଡାମାନେ ଆଶ୍ଚର୍ଯ୍ୟ ହେଲେ ସିଂହାସନ ଖାଲି ପଡ଼ିଛି । ଶ୍ରୀ ଶ୍ୟାମ ସୁନ୍ଦର ଅଦୃଶ୍ୟ । ଏବେ ସେବକମାନେ ବୁଝିଗଲେ ଶ୍ରୀ ଶ୍ୟାମସୁନ୍ଦର ଠାକୁରଙ୍କ ଲୀଳାର ରହସ୍ୟ । ରାଜାଙ୍କ କାନକୁ କଥା ଗଲା । ରାଜା ଏକ ଅଦ୍ଭୁତ ବୁଝାମଣା କଲେ । କାରିଗର ଡ଼କାଇ ମନ୍ଦିର କାନ୍ଥରେ ଏକ ଜଳକା ରନ୍ଧ୍ର କରିଦେଲେ । ମନ୍ଦିର ବାହାରେ ଥାଇ ସାଲବେଗ ଠାକୁର ଦର୍ଶନ କଲେ । ଠାକୁର ଏବେ ସିଂହାସନରେ ଦୃଶ୍ୟହେଲେ । ପଣ୍ଡାମାନେ ଯାଇ ମନ୍ଦିରରେ ସିଂହାସନ ଦରାଣ୍ଡିଲେ । ହଁ ଠାକୁର ଫେରିଲେଣି । ହରିବୋଲ ହୁଳହୁଳିରେ ମନ୍ଦିର ଉଚ୍ଛୁଳି ପଡ଼ିଲା । ଲୋକେ ଭଗବାନଙ୍କର ଜୟ ସହିତ ଭକ୍ତ ସାଲବେଗଙ୍କର ଜୟଗାନ କଲେ ।

---

## ଭକ୍ତ ରକ୍ଷା କଲେ ଭଗବାନଙ୍କୁ

ବାଲେଶ୍ୱରରୁ ଫେରି ପୁରୀ ବଡ଼ଦାଣ୍ଡରେ ପହଞ୍ଚିଲେ ସାଲବେଗ । ଅଶ୍ରୁପୂର୍ଣ୍ଣ ନେତ୍ରରେ ଦର୍ଶନ କଲେ ରଥରେ ତିନି ଠାକୁରଙ୍କୁ । ପ୍ରଭୁ ମଧ ମହା ଆନନ୍ଦରେ ରଥରେ ଚାଲିଲେ ନିଳାଦ୍ରୀ ବିଜେକୁ । ଦିନକର କଥା ଲାଲବେଗଙ୍କ ପରେ କଟକରେ ମିର୍ଜା ଅହମ୍ମଦ ବେଗ ସୁବେଦାର ହେଲେ । ଶ୍ରୀମନ୍ଦିର ଭାଙ୍ଗିବାକୁ, ବିଗ୍ରହ ଧରି ପଳାଇବାକୁ ସଶସ୍ତ୍ର ଆକ୍ରମଣ କଲେ ଦଳ ବଳ ନେଇ । ସେତେବେଳେ ପୁରୀ ଗଜପତି ଥାଆନ୍ତି ନରସିଂହଦେବ । ରାଜା ଅତ୍ୟନ୍ତ ଭାଙ୍ଗିପଡ଼ିଲେ ଆସନ୍ନ ବିପଦ ଦେଖି । ସାଲବେଗ କିନ୍ତୁ ଅଣ୍ଟା ଭିଡ଼ିଲେ ପ୍ରଭୁଙ୍କୁ ଆଜି ସେ ନିଜେ ରକ୍ଷା କରିବେ । ଭଜନ ଗାଇ ଗାଇ ପହଞ୍ଚିଲେ ମୋଗଲ ସୁବେଦାରଙ୍କ ନିକଟରେ । ବୁଝାସୁଝା କରି ଫେରାଇଦେଲେ । ଏ ପରିସ୍ଥିତି ଦେଖି ଗଜପତି ଅତି ପ୍ରସନ୍ନ ହେଲେ । ସାଲବେଗଙ୍କର ସେଇ ବଳଗଣ୍ଡିସ୍ଥିତ ଅସ୍ଥାୟୀ କୁଡ଼ିଆ ଘରକୁ ଏକ ସ୍ଥାୟୀ କୋଠାଘରରେ ପରିଣତ କରିଦେଲେ । ଆଜି ରାଜା ନରସିଂହଦେବ ନାହାନ୍ତି । ଭକ୍ତ ସାଲବେଗ ନାହାନ୍ତି । ଶ୍ରୀଜଗନ୍ନାଥ କିନ୍ତୁ ପ୍ରତିବର୍ଷ ଗୁଣ୍ଡିଚା ବାହୁଡ଼ା ବେଳେ ରଥ ଅଟକାଇ ଭକ୍ତ ଭଗବାନଙ୍କ ଲୀଳା ସ୍ମରଣ କରାଇଥାନ୍ତି । ୧୬୪୬ଖ୍ରୀ.ରେ ସାଲବେଗ ଲୀଳା ପ୍ରବେଶ କଲେ । ଆଜି ତାଙ୍କ ସମାଧି ବଡ଼ଦାଣ୍ଡରେ ଦର୍ଶନୀୟ ।

ନିଜ ଜୀବନ କାଳ ମଧ୍ୟରେ ୫୦୦ବର୍ଷ ପୂର୍ବେ ସାଲବେଗ ଶ୍ରୀବୃନ୍ଦାବନ ଦର୍ଶନ କରିଥିବା ଜଣେ ବିରଳ ଓଡ଼ିଆ । ଆଜିର ଓଡ଼ିଶା ପାଇଁ ଏହା କ'ଣ କମ୍ ଗୌରବର ବିଷୟ ! ତାଙ୍କୁ ନମସ୍କାର । ତାଙ୍କ ସମାଧିକୁ ମଧ ନମସ୍କାର ।

## ୮. ରାମକୃଷ୍ଣ ପରମହଂସଙ୍କର ବୃନ୍ଦାବନ ଦର୍ଶନ ଲୀଳା:

ପ୍ରଶ୍ନ-୯୨: ମନୁଷ୍ୟ ଆମେରିକା ଯାଏ । ନାଏଗ୍ରା ଜଳପ୍ରପାତ ଦେଖେ । ଇଟାଲୀ ଯାଏ । ରୋମାନ୍ କଲୋସିୟମ ଦେଖେ । ଲଣ୍ଡନ ଯାଏ । ଲଣ୍ଡନ ଆଇ ଦେଖେ । ଆଗ୍ରାଯାଏ । ତାଜମହଲ ଦେଖେ । ଘରେ ଆସି ମନରେ ଚିନ୍ତନ କରେ ତାଜମହଲ, ଜଳପ୍ରପାତ, ଆଦି । ହସି ହସି ବାରମ୍ବାର ମନେ ପକାଏ ସେ ସବୁକୁ । ୧୮୬୬ଖ୍ରୀଷ୍ଟାବ୍ଦରେ କେଉଁ ମହାପୁରୁଷ ବୃନ୍ଦାବନର ମାହାତ୍ମ୍ୟ ଦର୍ଶନ କରି ସେହି ବୃନ୍ଦାବନରେ ହିଁ ନିଜ ମନ(ଅହଂକାର)ଟିକୁ ଛାଡ଼ି ଆସିଥିଲେ ?

ଉ. ଶ୍ରୀ ରାମକୃଷ୍ଣ ପରମହଂସ ଦେବ ନିଜର ଭଣଜା ହୃଦୟଙ୍କୁ ସାଥିରେ ନେଇ ୩୦ବର୍ଷ ବୟସରେ ପହଞ୍ଚିଲେ ବୃନ୍ଦାବନର ଶ୍ରୀବାଙ୍କେ ବିହାରୀ ମନ୍ଦିରରେ ।

ସେଠାରେ ବାଙ୍କେ ବିହାରୀଙ୍କ ଝାଙ୍କି ଦର୍ଶନ ହୁଏ । ଅର୍ଥାତ୍ ପ୍ରତ୍ୟେକ ମିନିଟରେ କିମ୍ବା ଦୁଇ ମିନିଟ୍‌ରେ ଠାକୁରଙ୍କ ଆଗରେ ପରଦା ପକାଇ ଦିଆଯାଏ । କାରଣ ଅତୀତରେ ଜଣେ କୃଷ୍ଣଭକ୍ତ ଟିକିଏ ବେଶୀ ସମୟ ଦର୍ଶନ କରିଦିଅନ୍ତେ ଭକ୍ତ ଭଗବାନଙ୍କର କଅଣ ଭିତିରି ବୁଝାମଣା ହୋଇଗଲା । ପରଦିନ ଦେଖାଗଲା ବାଙ୍କେ ବିହାରୀ ମନ୍ଦିରରେ ନାହାନ୍ତି । ସିଂହାସନ ଖାଲି ପଡ଼ିଛି । ଖୋଜାଲୋଡ଼ା ଲାଗିଲା । ପରଦିନ ଜଣାପଡ଼ିଲା ୮୦ କି.ମି. ଦୂରରେ ସେଦିନର ସେଇ ଭକ୍ତ ଘରେ ପ୍ରକଟ ହୋଇଛନ୍ତି ଭଗବାନ । ବାଙ୍କ ବିହାରୀଜୀଙ୍କ ଲାଗି ସେହିଦିନ ଠାରୁ ଏହି ଝାଙ୍କି ଦର୍ଶନ ପ୍ରଥା ପ୍ରଚଳିତ ହୋଇଛି ।

## ନିଧୁବନ ଲୀଳା:

ଶ୍ରୀବୃନ୍ଦାବନରେ ସେହି ପ୍ରତ୍ୟକ୍ଷ ଠାକୁରଙ୍କ ଦର୍ଶନ କରୁ କରୁ ପରମହଂସ ଦେବ ଭାବ ବିହ୍ୱଳ ହୋଇପଡ଼ିଲେ । ଚିତ୍କାର କଲେ । ଦୁଇ ହାତ ଟେକି ମନ୍ଦିର ଭିତରକୁ ଧାଇଁଲେ । ପୂଜାରୀ ଅଟକେଇ ଦେଲେ । କିଛି ସମୟ ପରେ ଠାକୁର ଅଚେତ ଅବସ୍ଥାରୁ ଫେରି ଆସିଲେ । ଶ୍ରୀ ବାଙ୍କେ ବିହାରୀଜୀ ଠାକୁରଙ୍କୁ କହିଛନ୍ତି, ''ନିଧୁବନ ଯାଅ । ସେଠାରେ ଶ୍ରୀ ଲଳିତାଙ୍କୁ ଦେଖା କର ।'' ପରମହଂସ ଦେବ ଚାଲିଲେ ରହସ୍ୟମୟ ନିଧୁବନ । ପୂର୍ବରୁ ହରିଦାସ ବସୁଥିବା ସ୍ଥାନ ଉପରେ ଥିବା ମାର୍ବଲ ପଥର ଉପରେ ବସି ପ୍ରେମ ସମାଧି ଅବସ୍ଥା ପ୍ରାପ୍ତ ହେଲେ । ତାଙ୍କର ସକଳ ଅଙ୍ଗରେ ଅଷ୍ଟ ସାତ୍ତ୍ୱିକ ବିକାର ଲକ୍ଷଣ ପ୍ରକାଶିତ ହେଲା । ଅନେକ ସମୟ ପରେ ସମାଧିରୁ ସେ ଉଠିଲେ । ହୃଦୟ ଇତ୍ୟାଦି ଶିଷ୍ୟମାନେ ତାଙ୍କୁ କଲିକତା ନେବାକୁ ଉଦ୍ୟମ କଲେ । ସେ କିନ୍ତୁ ଯିବାକୁ ସଂପୂର୍ଣ୍ଣ ଅନିଚ୍ଛୁକ । କହିଲେ, ''ମୁଁ ଏ ସ୍ଥାନ ଛାଡ଼ି କୁଆଡ଼େ ଯିବି ନାହିଁ । ଏହି ସ୍ଥାନରେ ସବୁଦିନ ପାଇଁ ରହିବି ।'' ସେବକମାନେ କିନ୍ତୁ ଅସୁବିଧାରେ ପଡ଼ିଲେ । କିଛି ସମୟ ଅପେକ୍ଷା କଲେ । ଠାକୁରେ ପୁଣି ଥରେ ଆପେ ଆପେ ସମାଧିସ୍ଥ ହେଲେ ।

ପ୍ରଥମ ସମାଧି ବେଳେ ଜଣେ ସନ୍ନ୍ୟାସିନୀ (ନିଜ ନାମ ଗଙ୍ଗା ମାତା ବୋଲି କହିଥିଲେ) ତାଙ୍କ ହାତ ଧରି ତାଙ୍କୁ ଦିବ୍ୟ ଲୋକକୁ ନେଇ ଯାଇଥିଲେ । ପରମ ହଂସଦେବ ରାଧାକୃଷ୍ଣଙ୍କର ନିତ୍ୟ ଲୀଳା ଦର୍ଶନ କରନ୍ତେ ଭାବାବିଷ୍ଟ ହୋଇଥିଲେ । ସେଠାରୁ କଲିକତା ଆସିବାକୁ ମନା କରୁଥିଲେ । ଏବେ ପୁଣି ସେହି ସନ୍ନ୍ୟାସିନୀ ଦର୍ଶନ ଦେଇ କହିଲେ, ''ହେ ପରମହଂସ ଦେବ, ତୁମେ ବର୍ତ୍ତମାନ ଦକ୍ଷିଣେଶ୍ୱର କାଳୀ ମନ୍ଦିର ଯାଅ । ତୁମର ଆହୁରି ୨୦ବର୍ଷ ଆୟୁଷ(୧୮୮୬-୧୮୬୬)ବାକି ଅଛି ।

ତୁମେ ନିଜ ଆଶ୍ରମରେ ରହି ଲୀଳା କର । ତୁମ ଦ୍ୱାରା ଅନେକ କର୍ମୀ, ଜ୍ଞାନୀ, ଧ୍ୟାନୀ, ଭକ୍ତ ସମସ୍ତେ ପ୍ରେମ ମାର୍ଗର ସନ୍ଧାନ ପାଇବେ । ଏହା ଭଗବାନଙ୍କ ଇଚ୍ଛା ।'' ସୁତରାଂ ଠାକୁର ଆଉ କିଛି ପ୍ରତିବାଦ ନକରି ଫେରି ଆସିଲେ କଲିକତା ଦକ୍ଷିଣକାଳୀ ମନ୍ଦିର ଆଶ୍ରମ । ତାଙ୍କ ମନ କିନ୍ତୁ ଛାଡ଼ି ଗଲେ ବୃନ୍ଦାବନ ଧାମରେ ।

ଏଠାରେ ମନେ ରଖିବାକୁ ହେବ ନିଧୁବନର ସାଧକ ସ୍ୱାମୀ ହରିଦାସ ଶ୍ରୀକୃଷ୍ଣଙ୍କ ପ୍ରକଟ ଲୀଳାରେ ସ୍ୱୟଂ ଲଳିତା ଭୂମିକାରେ ଅଭିନୟ କରୁଥିଲେ । ତାଙ୍କ ବସୁଥିବା ସ୍ଥାନଟି ନିତ୍ୟ ବୃନ୍ଦାବନରେ ପ୍ରବେଶ କରିବା ବାଟ । ସେଦିନ ସେ ସମୟରେ ଠାକୁରଜୀ ଓ ଶ୍ରୀ ଲଳିତା ଦେବୀଙ୍କ ମଧ୍ୟରେ କଅଣ କଥାବାର୍ତ୍ତା ହୋଇଥିଲା ଓ ଠାକୁରଜୀ ନିତ୍ୟ ଲୀଳାରେ କଅଣ କଅଣ ଲୀଳା ଦର୍ଶନ କଲେ ସେ କଥା ଆମ ପକ୍ଷେ ଜାଣିବା ଅସମ୍ଭବ । ଏକଥା କିନ୍ତୁ ଅଛପା ରହିଲା ନାହିଁ ଯେ ସେହି ପଥ ଦେଇ ତାଙ୍କ ସହ ଯାଇ ସେଦିନ ସେ ନିକୁଞ୍ଜ ଲୀଳା ଦର୍ଶନ କରିଥିଲେ ଓ ତାଙ୍କ ନିର୍ଦ୍ଦେଶ ମାନିନେଇ କଲିକତା ଆଶ୍ରମ ଫେରି ଆସିଲେ । ଶ୍ରୀ ଲଳିତାଙ୍କ ସହିତ ନିତ୍ୟ ରାସ ମଣ୍ଡଳକୁ ଜଣେ ମୃତ୍ୟୁଲୋକର ସାଧକ ପ୍ରବେଶ କରିବାର ଅଧିକାର ପ୍ରାପ୍ତ ହେବା କିଛି ସାମାନ୍ୟ ଘଟଣା ନୁହେଁ ।

## ସାଧକ ପରମହଂସ ଦେବ

ଶ୍ରୀପରମହଂସଦେବ ୧୮୩୬ମସିହାରେ ପଶ୍ଚିମବଙ୍ଗର କାମାରୁପୁକୁରର ଏକ ବୈଷ୍ଣବ ପରିବାରରେ ଜନ୍ମ ହୋଇଥିଲେ । ୧୮୫୬ମସିହାରେ ଦକ୍ଷିଣେଶ୍ୱର କାଳି ମନ୍ଦିରରେ ପୂଜାରୀ ରୂପେ ଭକ୍ତି ସାଧନା ଆରମ୍ଭ କଲେ । ୨୩ବର୍ଷ ବୟସରେ ଶ୍ରୀ ସାରଦା ମଣି ଦେବୀଙ୍କୁ ବିବାହ କରିଥିଲେ । ବେଲୁର ମଠରେ ଅଗଣିତ ଶିଷ୍ୟ ତାଙ୍କ ସାଧନ, ଭଜନ, ପ୍ରବଚନରେ ମୁଗ୍ଧ ହେଲେ । ଅତ୍ୟନ୍ତ କଠିନ, ଅବୁଝା ବ୍ରହ୍ମ ଜ୍ଞାନର ସରଳ ବ୍ୟାଖ୍ୟା ଶ୍ରବଣ କରି ଅଗଣିତ ଜନତା ପ୍ରେମ ନଦୀର କୂଳରେ ଲାଗିପାରିଲେ । ୫୦ବର୍ଷ ବୟସରେ ୧୮୮୬ମସିହାରେ ମରଦେହ ତ୍ୟାଗ କରି ଶ୍ରୀରାଧା କୃଷ୍ଣଙ୍କର ନିତ୍ୟ ନିକୁଞ୍ଜ ଲୀଳାରେ ପ୍ରବେଶ କଲେ । କାରଣ ତାଙ୍କ ଦେହ ସିନା ଥିଲା କଲିକତାରେ ମନ କିନ୍ତୁ ଥିଲା ଶ୍ରୀ ବୃନ୍ଦାବନ ଧାମ ନିତ୍ୟ ଲୀଳା ସ୍ମରଣରେ ! ଧନ୍ୟ ପରମହଂସ ଦେବ । ଧନ୍ୟ ବୃନ୍ଦାବନ ଧାମ । ଧନ୍ୟ ତାଙ୍କ ଭକ୍ତି ସାଧନା ।

## ୯. ବିବେକାନନ୍ଦଙ୍କର ବେଦାନ୍ତ ଜ୍ଞାନ ବୃନ୍ଦାବନରେ ପରୀକ୍ଷା ଲୀଳା:

ପ୍ରଶ୍ନ-୯୩: କଲିକତା ସହରରେ ୧୮୬୩ମସିହାରେ ଏକ ସାଧାରଣ ବଙ୍ଗାଳୀ ପରିବାରରେ ମକର ସଂକ୍ରାନ୍ତି ଦିନରେ ଜନ୍ମ ନେଲେ ସ୍ୱାମୀ ବିବେକାନନ୍ଦ । ପିତା ବିଶ୍ୱନାଥ ଦତ୍ତ ଓ ମାତା ଭୁବନେଶ୍ୱରୀ ଦେବୀ ତାଙ୍କ ନାମ ରଖିଲେ ନରେନ୍ଦ୍ରନାଥ । ପାଠଶାଠ ସବୁ କଥାରେ ସେ ଥିଲେ ଅତ୍ୟନ୍ତ ପାରଦର୍ଶୀ ଏବଂ ପ୍ରତିଭାବାନ ଯୁବକ । ବାଳକ ଅବସ୍ଥାରେ ମଧୁର କଣ୍ଠ ସ୍ୱରରେ ସେ ଭଗବାନଙ୍କ ଭଜନଗାନ କରି ପାରୁଥିଲେ । ଦିନେ ତାଙ୍କ ପାଖ ପଡ଼ିଶାର ଜଣକ ଘରେ ଶ୍ରୀରାମକୃଷ୍ଣ ପରମହଂସଙ୍କ ସତ୍‌ସଙ୍ଗ ହେଉଥାଏ । ନରେନ୍ଦ୍ର ସେତେବେଳକୁ ଈଶ୍ୱରଙ୍କ ସନ୍ଧାନରେ ଥାଆନ୍ତି । ସାଧୁ ସନ୍ଥ ଦେଖିଲେ ସେଇ ଗୋଟିଏ ପ୍ରଶ୍ନ ପଚାରନ୍ତି । ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି କି ? କିଏ କହନ୍ତି ନା । ପୁଣି କିଏ ପରାମର୍ଶ ଦିଅନ୍ତି ଯେ ତାଙ୍କୁ ଖୋଜିବାକୁ ହେଲେ ହିମାଳୟ ଗିରି କନ୍ଦରାକୁ ଯିବା ଦରକାର ।

### ସଦ୍‌ଗୁରୁ ସନ୍ଧାନ

ସେଦିନ ସତ୍‌ସଙ୍ଗରେ କିନ୍ତୁ ଠାକୁର ପରମହଂସ ତାଙ୍କୁ ଦେଖି ଦେଖି ଜାଣିଗଲେ ଏ ଯୁବକ ମହାକାଶର ସେଇ ପରିଚିତ. ତାରକା ବୋଲି । ତାଙ୍କ କଣ୍ଠରୁ ଭଗବାନଙ୍କ ଭଜନ ଶୁଣି କହିଥିଲେ, ''ନରେନ୍ଦ୍ର, ସମୟ ସୁବିଧା ଦେଖି ତୁମେ କେବେ ଦକ୍ଷିଣେଶ୍ୱର କାଳୀ ମନ୍ଦିର ଆସିବ ।'' ସୁନା ଚିହ୍ନେ ବଣିଆ । ଗୁଣ ଚିହ୍ନେ ଗୁଣିଆ । ସେତେବେଳକୁ ୧୮୬୬ମସିହାରେ ପରମହଂସଦେବ ଶ୍ରୀବୃନ୍ଦାବନ ଧାମରେ କୃଷ୍ଣପ୍ରେମର ସ୍ୱାଦ ଚାଖି ସାରିଥାଆନ୍ତି । ଠାକୁର ଜାଣିଗଲେ ନରେନ୍ଦ୍ର ଆସିଛନ୍ତି ଏ ଜନ୍ମରେ ପାଶ୍ଚାତ୍ୟ ଦେଶରେ ଅଦ୍ୱୈତ ବେଦାନ୍ତ ପ୍ରଚାର କରିବାକୁ । ଜ୍ଞାନର ଆଲୋକ ଦେଖାଇବା ତାଙ୍କର ମିଶନ । ତଥାପି ଶ୍ରୀ ରାମକୃଷ୍ଣ କିପରି ତାଙ୍କୁ କୃଷ୍ଣ ପ୍ରେମର ସ୍ୱାଦ ଚଖାଇ ପାରିଲେ ବୃନ୍ଦାବନ ଧାମ ପଠାଇ ?

ଉ. ନରେନ୍ଦ୍ର ୧୮୮୧ ମସିହାରେ ଦିନେ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଦେଖାକଲେ ଶ୍ରୀରାମକୃଷ୍ଣ ଦେବଙ୍କୁ । ସେହିଦିନ ତାଙ୍କୁ ଗୁରୁ ପଣରେ ବରଣ କଲେ ନରେନ୍ଦ୍ର । ଗଙ୍ଗାସ୍ନାନ କରାଇ ଶିଷ୍ୟକୁ ଏକାନ୍ତରେ ଧ୍ୟାନରେ ବସାଇ ଦେଲେ । ତାଙ୍କ ଜଂଘରେ ଟିପ ଛୁଆଁଇ ତାଙ୍କ ହୃଦୟରେ ଦିବ୍ୟଶକ୍ତି ସଂଚାର କଲେ । ନରେନ୍ଦ୍ର ସଙ୍ଗେ ସଙ୍ଗେ ସମାଧିସ୍ଥ ହୋଇଗଲେ । ନରେନ୍ଦ୍ର ଦିବ୍ୟ ଜଗତ, ଦିବ୍ୟ ସ୍ୱାମୀ ସ୍ୱାମିନୀ ସହିତ ଦିବ୍ୟ ଲୀଳା ସବୁ ଦର୍ଶନ କଲେ । ସମାଧିରୁ ଫେରି ସେ ହେଲେ ପ୍ରଥମେ ବିବିଦିଶାନନ୍ଦ

ଓ ପରେ ବିବେକାନନ୍ଦ । ଶ୍ରୀ ଠାକୁର ତାଙ୍କୁ ଈଶ୍ୱରଙ୍କ ଇଚ୍ଛା ଅନୁଯାୟୀ ତାଙ୍କୁ ବେଦାନ୍ତ ଅଭ୍ୟାସ କରିବାକୁ କହିଲେ । ଗୁରୁ ଶ୍ରୀରାମ କୃଷ୍ଣଙ୍କ କୃପାରେ ସ୍ୱଳ୍ପ ଚେଷ୍ଟାରେ ସେ ହେଲେ ବେଦାନ୍ତ ଜ୍ଞାନର ଜଣେ ଧୂରୀଣ ପଣ୍ଡିତ । ଦିନେ ବିବେକାନନ୍ଦ ସାଙ୍ଗ ମାନଙ୍କ ସମ୍ମୁଖରେ କହୁ କହୁ କହିଦେଲେ, ''କେଜାଣି କାହିଁକି ଆମ ଗୁରୁଦେବ ବେଦାନ୍ତ ଜ୍ଞାନ ଛାଡ଼ି, ସେ କଳା ପଥରରେ କାଳୀ ମୂର୍ତ୍ତି ପାଖରେ ହାତ ଯୋଡ଼ି ଅଶ୍ରୁ ବିସର୍ଜନ କରୁଛନ୍ତି ।'' କଥା ଯାଇ ପହଞ୍ଚିଲା ଠାକୁରଙ୍କ ମନରେ । ସେ ଡ଼କାଇ ପଠାଇଲେ ବିବେକାନନ୍ଦଙ୍କୁ । କହିଲେ, ''ନରେନ୍ଦ୍ର, ତୁମେ ଏବେ ଜ୍ଞାନୀ ବିବେକାନନ୍ଦ ହେଲଣି । ତେଣୁ ଆଜି କାଳୀ ମାତାଙ୍କୁ ପଥର ମୂର୍ତ୍ତି କହିଦେଲ । କାଲି ତୁମ ଗୁରୁଙ୍କୁ ମଣିଷ ଗଙ୍ଗାକୁ ନଈ, ଶାଳଗ୍ରାମ ଓ ଶିବ ଲିଙ୍ଗକୁ ପଥର, ଜଗନ୍ନାଥଙ୍କୁ କାଠ, ତୁଳସୀକୁ ବୃକ୍ଷ, ଗାଈକୁ ପଶୁ ଓ ବୃନ୍ଦାବନ ରଜକୁ ମାଟି ପଥର କହି ପକାଇବ । ଠିକ୍ ଅଛି ତୁମେ ଏଠାରୁ ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ଯାଇ ବେଦାନ୍ତ ଜ୍ଞାନ ଆଲୋକ ଦେଖାଇବ । ଭାରତ ଫେରି ଆସି ସକଳ ଜ୍ଞାନ ଅହଂକାରକୁ ତ୍ୟାଗ କରିବାକୁ ନିଶ୍ଚୟ ବ୍ୟାକୁଳ ହେବ । ମୁଁ ତୁମକୁ କେବଳ ଜ୍ଞାନ ସିନ୍ଦୁକଟି ଦେଇଛି । ଭକ୍ତି ଚାବିଟିକୁ କିନ୍ତୁ ମୁଁ ନିଜ ପାଖରେ ରଖିଛି । ତୁମେ ଶ୍ରୀ ବୃନ୍ଦାବନ ଯାଇ ପରିକ୍ରମା କଲାବେଳେ ମୁଁ ସେହି ପ୍ରେମ ଚାବିକାଠିଟି ତୁମକୁ ଦେବି । ଯାଅ ଏବେ ଜ୍ଞାନ ଅଭ୍ୟାସ କରୁଥାଅ ।''

## ପ୍ରେମ ବିନା ଜ୍ଞାନ ଅସାର

ଶ୍ରୀ ପରମହଂସ ଦେବ ୧୮୮୬ମସିହାରେ ଲୀଳା ପ୍ରବେଶ କଲେ । ତାଙ୍କ ଆଦେଶରେ ୧୮୯୩ମସିହାରେ ବିବେକାନନ୍ଦ ବିଶ୍ୱ ଧର୍ମ ସମ୍ମିଳନୀରେ ଯୋଗ ଦେଲେ । ତାଙ୍କ ବେଦାନ୍ତ ଜ୍ଞାନର ଆଲୋକରେ ସମଗ୍ର ଆମେରିକା ରାଷ୍ଟ୍ର ଅଭିଭୂତ ହୋଇଗଲା । ୧୮୯୭ମସିହା ପର୍ଯ୍ୟନ୍ତ ସେ ତାଙ୍କ ବେଦାନ୍ତ ଜ୍ଞାନ ବିତରଣ କଲେ । ଶେଷରେ ଭାରତ ଫେରିଲେ । ବାଟରେ ଇଂଲଣ୍ଡ, ଫ୍ରାନ୍ସ ଆଦି ରାଜ୍ୟମାନେ ମଧ୍ୟ ସେ ଜ୍ଞାନର ଆଲୋକ ପ୍ରାପ୍ତ ହୋଇ ନିଜକୁ ଧନ୍ୟ ମନେ କଲେ । ପୁନର୍ବାର ୧୮୯୯-୧୯୦୨ପର୍ଯ୍ୟନ୍ତ ଆମେରିକାରେ ଜ୍ଞାନ ରହସ୍ୟ ସବୁଖୋଲି କହିଲେ । ଭାରତକୁ ଫେରି କିନ୍ତୁ ଅତୃପ୍ତି, ଅଶାନ୍ତି ଓ ଅଭାବରେ ବେଦାନ୍ତୀ ବିବେକାନନ୍ଦ ବ୍ୟାକୁଳ ହୋଇଉଠିଲେ । ମନେ ପଡ଼ିଲା ତାଙ୍କର ଗୁରୁଦେବଙ୍କର ଶ୍ରୀବୃନ୍ଦାବନ ଧାମ ଯିବା ଆଦେଶ କଥା ।

## ବୈରାଗ୍ୟର କଷଟି ପଥରରେ କଠିନ ପରୀକ୍ଷା

ମହାଜ୍ଞାନୀ, ଧୂରନ୍ଧର ବେଦାନ୍ତ ପଣ୍ଡିତ ବିବେକାନନ୍ଦ ପହଞ୍ଚିଲେ ଶ୍ରୀବୃନ୍ଦାବନ ଧାମ । ବଂଶୀବଟ, ଗୋପେଶ୍ୱର, କେଶୀଘାଟ, ଶ୍ରୀଗୋବିନ୍ଦଜୀ ମନ୍ଦିର, ଗିରିରାଜ ଗୋବର୍ଦ୍ଧନ, ମାନସୀଗଙ୍ଗା, ବର୍ଷାଣା ଓ ନନ୍ଦଗାଓଁ ଇତ୍ୟାଦି ଲୀଳାସ୍ଥଳୀ ଭ୍ରମଣ କରୁଥାଆନ୍ତି । ଦିନେ ଶ୍ରୀରାଧାକୁଣ୍ଡ ପରିକ୍ରମା କଲେ । ସେଠାରେ ସ୍ନାନ କଲେ । ଓଦା କୌପୀନ ଖଣ୍ଡିକ ଭୂମିରେ ଶୁଖାଇ ସେ ଜଗି ବସିଥାଆନ୍ତି । ଏ କ'ଣ ? କାହୁଁ ଏକ ମାଙ୍କଡ଼ ଆସିଲା । କୌପୀନଟିକୁ ଧରି ପଳାଇଲା । ଏକ କଦମ୍ବ ବୃକ୍ଷରେ ବସି ରହିଲା । ପରମ ବୈରାଗୀ, ଚରମ ବେଦାନ୍ତ ଜ୍ଞାନୀ ବିବେକାନନ୍ଦଙ୍କର ଜ୍ଞାନର ପରୀକ୍ଷା ସମୟ । ମନରାଜ୍ୟରେ ତାଙ୍କର ଭୟଙ୍କର ଆନ୍ଦୋଳନ । ମନେ ମନେ କହିଲେ, ଗୁରୁଦେବ କହୁଥିଲେ ଯେ ଶ୍ରୀ ବୃନ୍ଦାବନ ଧାମରେ ଶ୍ରୀରାଧାରାଣୀଙ୍କ ନିତ୍ୟ ବାସ । ସେ ଜାଣୁଛନ୍ତି ମୋର ଦୁଇଖଣ୍ଡ କୌପିନ ମାତ୍ର ସମ୍ବଳ । ଖଣ୍ଡିଏ ପିନ୍ଧିଛି । ଓଦା ଖଣ୍ଡିକ ଶୁଖାଇ ଜଗି ବସିଛି । ମାଙ୍କଡ଼ଟିଏ କିପରି ତାକୁ ଧରି ପଳାଇଲା ?'' ତାଙ୍କ ମନ ଅଶେଷ ଦୁଃଖରେ ଭରିଗଲା ।

## ଅଲୌକିକ ଗୁରୁକୃପା

ସୂକ୍ଷ୍ମଲୋକରେ ଥାଇ ଗୁରୁଦେବ ରାମକୃଷ୍ଣ ପରମହଂସ ଦେଖିଲେ ତାଙ୍କ ପ୍ରିୟ ଶିଷ୍ୟ ପରୀକ୍ଷାରେ ଫେଲ ହୋଇଗଲାଣି । ସଙ୍ଗେ ସଙ୍ଗେ ବିବେକାନନ୍ଦଙ୍କ ପିଠିରେ କେହି ଜଣେ ସାଧୁ ଟିପ ମାରି ତାଙ୍କ ହାତକୁ ବଢ଼ାଇ ଦେଲେ ନୂତନ କୌପୀନ ସହିତ ଗେରୁଆ ବସ୍ତ୍ରର ଠେକା, ପିନ୍ଧା ଲୁଙ୍ଗୀ ସହିତ ଉତ୍ତରୀୟ ବସ୍ତ୍ରର ଏକ ସେଟ୍ । ସଯତ୍ନରେ ଭଙ୍ଗା ହୋଇଛି । ଇସ୍ତ୍ରି କରାଯାଇଛି । ବିବେକାନନ୍ଦ ଆଶ୍ଚର୍ଯ୍ୟରେ ଚାହିଁଲେ ସାଧୁ ଜଣଙ୍କୁ । ସନ୍ନ୍ୟାସୀ ଜଣଙ୍କ କହିଲେ, ''ହେ ନରେନ୍ଦ୍ର, ହେ ବେଦାନ୍ତ ଜ୍ଞାନୀ ବିବେକାନନ୍ଦ, ମୁଁ ସେଇ ମାଙ୍କଡ଼ ଓ ମୁଁ ମଧ୍ୟ ତୁମ ସାମନାରେ ଠିଆ ହୋଇଥିବା ସାଧୁ ଜଣକ । ମୁଁ ଶ୍ରୀବୃନ୍ଦାବନର ଠାକୁରାଣୀ ଶ୍ରୀରାଧାଙ୍କ ଦାସୀଙ୍କର ଦାସୀ । ତୁମେ ଏବେ ଯାଅ କଲିକତା । ଆଶ୍ରମରେ ଦେହ ପକାଇଦେଇ ପଳାଇ ଆସ । ଦୁହେଁ ଏଠି ଫୁଲ ଗୁନ୍ଥିବା, ତୁଳସୀ ବୃକ୍ଷରେ ଜଳଦେବା । ରାଧା, ଗୋବିନ୍ଦ ଓ ତାଙ୍କ ଭକ୍ତ ଗଣଙ୍କର ସେବା କରିବା । ଦକ୍ଷିଣେଶ୍ୱର କାଳୀମନ୍ଦିରର ଅବଶିଷ୍ଟ ସାଧକ ମାନଙ୍କର ଏ ପ୍ରେମ ରାଇଜକୁ ଆସିବା ବାଟକୁ ଆମେ ଦୁହେଁ ଚାହିଁ ବସିବା ।'' ଠାକୁର ଅଦୃଶ୍ୟ ହୁଅନ୍ତେ ସ୍ୱାମୀଜୀ ତାଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କଲେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଆଜି ମଥୁରା-ବୃନ୍ଦାବନ ରାସ୍ତାରେ ଶ୍ରୀବୃନ୍ଦାବନ ଧାମ ନିକଟରେ ସ୍ଥାପିତ ଶ୍ରୀ ରାମକୃଷ୍ଣ ମଠକୁ ଦର୍ଶନ କରି ଶ୍ରଦ୍ଧା ବିଶ୍ୱାସ ସହିତ ଆମ୍ଭେମାନେ ଦଣ୍ଡବତ ପ୍ରଣାମ କରି ନିଜକୁ ଧନ୍ୟ କରିବା ।

## ୧୦. ଗଓ୍ଁରିଆ ବାବାଙ୍କର ସଖ୍ୟ ପ୍ରେମ ଲୀଳା:

ପ୍ରଶ୍ନ-୯୪: ଶ୍ରୀଧାମ ବୃନ୍ଦାବନରେ ଶ୍ରୀ ଜୟଦେବ ଗୋସ୍ୱାମୀ ଓ ଶ୍ରୀମାଧବେନ୍ଦ୍ର ପୁରୀ ଭାବ ଭକ୍ତିର ଯେଉଁ ବୀଜ ବପନ କରିଥିଲେ ତାର ବାତ୍ସଲ୍ୟ ଭାବ ଶାଖାର ବିସ୍ତାର କଲେ ସ୍ୱୟଂ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ । ଦାସ୍ୟଭକ୍ତି ଭାବର ଶାଖା ବିସ୍ତାର କଲେ ଇସ୍‌କନ୍ ସଂସ୍ଥା ସ୍ଥାପକ ଅଭୟ ଚରଣ ଭକ୍ତି ବେଦାନ୍ତ ସ୍ୱାମୀ । ତେବେ ସଖ୍ୟ ଭକ୍ତି ଭାବର ଶାଖା କାହାଦ୍ୱାରା ବିକଶିତ ହେଲା ?

## ବାଲ୍ୟ କାଳ:

ଉତ୍ତର: ଶ୍ରୀ ବୃନ୍ଦାବନ ଧାମର ସ୍ୱନାମ ଧନ୍ୟ ସଖା ଭକ୍ତ ଶ୍ରେଷ୍ଠ ଶ୍ରୀ ଗଓ୍ଁରିଆ ବାବା ଏହି ଶ୍ରେୟ ପ୍ରାପ୍ତିର ଅଧିକାରୀ । ସେ ବୁନ୍ଦେଲ ଖଣ୍ଡରେ ୧୮୪୩ ଖ୍ରୀ.ରେ ପ୍ରକଟ ହେଲେ ଏକ ମହାନ ବୈଷ୍ଣବ ପରିବାରରେ । ସେ ଆବାଲ୍ୟ ସଂସାର ଭୋଗ ଆସକ୍ତି ଉଦାସୀନ ଓ କୃଷ୍ଣଭକ୍ତି ପରାୟଣ । ଷୋଳ ବର୍ଷରେ ପିତାମାତା ତାଙ୍କୁ ବିବାହ ବନ୍ଧନରେ ଛନ୍ଦି ଦେଲେ । ସେ ତାଙ୍କ ପତ୍ନୀଙ୍କର ପ୍ରଥମ ସନ୍ତାନ ପ୍ରସବ କାଳୀନ ବେଦନା ଦର୍ଶନରେ ବୁଝିଗଲେ ସଂସାର ଦୁଃଖମୟ । ସେଇ ରାତିରେ ଗୃହ ସଂସାର ଛାଡ଼ି ପଳାୟନ କଲେ । ଅନେକ ଦିନ ବଣ ଜଙ୍ଗଲରେ ବୁଲି ବୁଲି ପହଞ୍ଚିଲେ ବ୍ରଜମଣ୍ଡଳର ରାଧାକୁଣ୍ଡ ନିକଟସ୍ଥ 'ଦତିହା' ସ୍ଥଳୀରେ ।

## ପିଲାଦିନୁ ଚମତ୍କାର:

ଏକଦା ବାବା ଏକ ବିରାଟ ପୋଖରୀ ମଧ୍ୟରେ ଅଣ୍ଟା ପର୍ଯ୍ୟନ୍ତ ପାଣିରେ ପଶି ଧ୍ୟାନସ୍ଥ ରହିଗଲେ । ସେ ରାଜ୍ୟର ରାଜାଙ୍କର ସେବକ ଦେଖିଲା ଜଳରେ ବାବାଙ୍କ ସାମନାରେ ଏକ ଭୟଙ୍କର କୁମ୍ଭୀର । ଚିତ୍କାର କଲା ବାବାଙ୍କୁ ସତର୍କ କରାଇବାକୁ । ବାବାଙ୍କୁ ନା ତାର ଚିତ୍କାର ଶୁଭିଲା । ନା କୁମ୍ଭୀର ଦୃଶ୍ୟମାନ ହେଲା । ସେବକ ଧାଇଁଗଲା ରାଜାଙ୍କ ପାଖକୁ । ରାଜା ଆସି ପହଞ୍ଚିଲେ ପୋଖରୀ କୂଳରେ । ଆଦେଶ ଦେଲେ ବାବାଙ୍କୁ ପଳାଇ ଆସିବାକୁ । ହେଲେ ରାଜା ଆଦେଶ ଅମାନ୍ୟ ହେଲା । ରାଜା ସେବକମାନଙ୍କୁ କହି ବାବାଙ୍କୁ ଧରିନେଲେ । ରାଜ ସଭାରେ ବିଚାର ହେବ । କେହି କହିଲେ ଲୋକଟା ପାଗଳ । କିଏ କହିଲା ସେ ଆତ୍ମହତ୍ୟା କରିବାକୁ ସେପରି

କରୁଥିଲା । ବାବା କିନ୍ତୁ କିଛି ନ ଶୁଣି ହସିଲେ କେବଳ । ରାଜା ବୁଝିଗଲେ ବାବା ଜଣେ ଅସାମାନ୍ୟ ବୈଷ୍ଣବ ସାଧକ । ନିଜ ରାଜ୍ୟରେ ତାଙ୍କ ରହିବା ଖାଇବାର ବନ୍ଦୋବସ୍ତ କରିଦେଲେ । ଏଣିକି ରାଜା ନିୟମିତ ରୂପେ ତାଙ୍କ ସତ୍‌ସଙ୍ଗ କଲେ । ତାଙ୍କ ପରାମର୍ଶରେ ଦତିହା ରାଜ୍ୟରେ ଭଜନ, କୀର୍ତ୍ତନ, କୃଷ୍ଣସେବା ପ୍ରଚାରର ବନ୍ୟା ଆସିଗଲା । ଅନେକ ଲୋକ ଭକ୍ତି ରାଜ୍ୟର କୂଳ କିନାରା ପାଇଲେ ।

## କାମ ଯେମିତି ନାମ ସେମିତି

ଆବାଲ୍ୟରୁ ବାବା ଯାହାର ନିରନ୍ତର ଚିନ୍ତନ କରୁଥିଲେ ସେ ନନ୍ଦଗାଓଁର ଏକ ଗାଉଁଲିଆ ବା ଗୋପାଳିଆ କିଶୋର ବାଳକ । ତାହାର ବେଶ-ଭୂଷା, ରହନସହନ, ବୋଲ୍‌ଚାଲ୍ ଓ ଢ଼ଙ୍ଗ ରଙ୍ଗ ସବୁ ଚିନ୍ତନ କରୁ କରୁ ସେ ମଧ୍ୟ ସେଇ ଛାଞ୍ଚରେ ଗଢ଼ି ହୋଇଗଲେ । ତାଙ୍କ ଚିହ୍ନା ପରିଚିତ ଲୋକେ ତେଣୁ ଡ଼ାକିଲେ ଗଓଁରିଆ । ପରେ ଯୋଡ଼ି ହୋଇଗଲା ଏଇ ବାବା ପଦବୀ । ତାଙ୍କ ଚକ୍ଷୁ ସର୍ବଦା ଖୋଜେ କୃଷ୍ଣରୂପ ଦର୍ଶନ । କର୍ଣ୍ଣ ଖୋଜେ କୃଷ୍ଣ ବଂଶୀ ସ୍ୱନ ଶ୍ରବଣ । ତାଙ୍କ ଦେହ ଖୋଜେ କୃଷ୍ଣ ଅଙ୍ଗ ସ୍ପର୍ଶ । କିନ୍ତୁ ସେ ସବୁ ମିଳୁଛି କେତେବେଳେ ? ଥରେ ବାବାଙ୍କର ଭୟଙ୍କର ଅଭିମାନ ହୋଇଗଲା । ଭାବିଲେ ସେ ତ ରଜା ପୁଅ । ଆମେ ସାଧାରଣ ଗାଉଁଲି ଗୋପାଳ । ସେ କାହିଁ ଆମକୁ ଅବା ଖୋଜିବ ! ଛାଡ଼ି ଦେଲେ ତାର ଚିନ୍ତନ । ଯାହାକୁ ଦେଖିଲେ କହିଲେ, ‘‘ଭାଇ, ସବୁ କର । କୃଷ୍ଣ ଭଜନ ଆଦୌ କର ନାହିଁ । ସେ ଠକ । ନିଷ୍ଠୁର । ଖୋଜିଲେ ମିଳେନା ସେ । ଡ଼ାକିଲେ ଜବାବ ଦିଏନା । ତାର ଭଜନ କରି କି ଲାଭ ?’’

କହ୍ନେଇ ଦେଖିଲେ ଭକ୍ତର ଦୁରବସ୍ଥା । ନିଜେ ଭଜନ କଲାନି । ଆଉ କାହାକୁ କରେଇ ଦେଉନି । ରାଧାରାଣୀ କହିଲେ, ‘‘ପ୍ରଭୁ, ଢ଼େର ହେଲାଣି । ଏବେ ଦର୍ଶନ ଦିଅ ତାକୁ ।’’ ରମଣ ରେତି ଠାରେ ଦିନେ ଠାକୁରଜୀ ତାଙ୍କୁ ଦର୍ଶନ ଦେଲେ । ନବ ଦୂର୍ବାଦଳ ଶରୀର । ମସ୍ତକରେ ମୟୂର ଚୂଳ । ହାତରେ ମୋହନ ବଂଶୀ । ବାବା ଧାଇଁଲେ ପାଖକୁ । କହିଲେ, ‘‘କାହ୍ନୁ, ଏତେ ଦିନ କାହିଁ ଲୁଚି ଥିଲ ?’’ ବାବାଙ୍କୁ ଭଗବାନ ମଧ୍ୟ ଦୃଢ଼ ଆଲିଙ୍ଗନ ସୁଖ ଦେଲେ । ପରେ ପରେ ବାବା ଅଭିମାନ କରି ଆଲିଙ୍ଗନ ଛାଡ଼ି ହଟିଗଲେ । ଦୌଡ଼ିଲେ ଦୂରକୁ । କହ୍ନେଇ କହିଲେ, ‘‘ସଖା, ପୁଣି କେବେ ଦେଖା ହେବ ?’’ ବାବା କହିଲେ ‘‘ମୁଁ କୁଆଡ଼େ ପଳାଉଛି କି ? ତୁମର ଯେତେବେଳେ ଦରକାର ପଡ଼ିବ ମୋତେ ଖୋଜିପାର । ମୁଁ ଏହି ବ୍ରଜମଣ୍ଡଳରେ ବୁଲୁଛି ।’’

## ଶ୍ରୀ ନନ୍ଦଗ୍ରାମ ଲୀଳା

ଦିନେ ସଂଧ୍ୟାବେଳେ ନନ୍ଦଗ୍ରାମ ଠାରେ ବାବା ଏକ ବୃକ୍ଷମୂଳେ ଶୋଇବାକୁ ଯାଉଥାଆନ୍ତି । ମନେ ନାହିଁ ତାଙ୍କର ସେ କିଛି ଖାଇ ନାହାନ୍ତି ବୋଲି । ଗୋବିନ୍ଦଙ୍କୁ କଅଣ ଏ କଥା ଅଛପା କି ? ପାଖ ମନ୍ଦିରରେ ତାଙ୍କ ପାଇଁ ଭୋଗ ଲାଗିଥାଏ ଗଡୁରେ କିଛି ଦୁଗ୍ଧ । ତାକୁ ଧରି ଦେଖାକଲେ ବାବାଙ୍କୁ । କହିଲେ, ‘‘ବାବା, ଏ ପାଖ ମନ୍ଦିରର ପୂଜାରୀ ତୁମ ପାଇଁ ଦୁଧ ପଠାଇଛନ୍ତି । ଏତକ ଖାଇ ଶୋଇପଡ଼ । ବାବା ଆନନ୍ଦରେ ସେବନ କଲେ ସେତକ । ପରଦିନ ମନ୍ଦିରକୁ ଲୋଟା ଫେରାଇବାକୁ ଯାଇ ଜାଣିଲେ ସବୁ କଥାର ରହସ୍ୟ । ପୂଜାରୀ ଆଦୌ ତାଙ୍କ ପାଖକୁ ଦୁଧ ପଠାଇ ନଥିଲେ । ଠାକୁର ନିଜେ ଏ କାଣ୍ଡ କରିଛନ୍ତି । ବାବା କହିଲେ, ‘‘ଯାକୁ ସିନା କହନ୍ତି ଯାର ।’’

## ରାସ ମଣ୍ଡଳ ଲୀଳା

ବ୍ରଜମଣ୍ଡଳରେ ଏକ ସ୍ଥାନରେ ରାସ ଲୀଳା ଅଭିନୟ ହେଉଥାଏ । ବାବା ପାଖରେ ବୃକ୍ଷ ମୂଳରେ ଡ଼େରା ପକାଇଲେ । ସାଙ୍ଗରେ କେତେଜଣ ବୈଷ୍ଣବ ଥାଆନ୍ତି । ବାବା କିଛି ଗୋଲାପ ଜାମୁ ଓ ଚାରୋଟି ପାଚିଲା ଅମୃତ ଭଣ୍ଡା କିଣିଲେ ମନ୍ଦିରରେ ଭୋଗ ଦେବାକୁ । ହଠାତ୍ ରାସମଣ୍ଡଳର ଦୁଇଟି ପିଲା (ଜଣେ କଳା ଓ ଜଣେ ଗୋରା) ଆସି କହିଲେ, ‘‘ବାବା, ଆମେ କ୍ଷୁଧାର୍ତ୍ତ । କିଛି ଖାଇବାକୁ ଦିଅ ।’’ ବାବା ଅବିଳମ୍ବେ ଦୁହିଁଙ୍କୁ କୋଳରେ ବସାଇ ଗୋଲାପ ଜାମୁ ଖୁଆଇ ଦେଲେ । ଖାଇସାରି ପିଲା ଦୁହେଁ ଦୌଡ଼ି ପଳାଇଲେ । ପାଖରେ ରହିଗଲା ଅମୃତଭଣ୍ଡା ଚାରୋଟି । ବାବା ପରଦିନ ଗଲେ ସେତକ ତାଙ୍କୁ ଦେବାକୁ । ଆଉ ମନ୍ଦିରରେ ଭୋଗ ଲଗାଇବା ଦରକାର ନାହିଁ ଭାବି ପାଚିଲା ଅମୃତ ଭଣ୍ଡା ଯାଚିଲେ ପିଲାମାନଙ୍କୁ । କହିଲେ, ‘‘ତୁମେମାନେ ଗୋଲାପ ଜାମୁ ଖାଇଲ । ଏତକ ରହିଯାଇଥିଲା । ଆଜି ଆଣିଛି । ନିଅ ଖାଇବ ।’’ ପିଲାମାନେ କହିଲେ, ‘‘ବାବା ମିଛ କାହିଁକି କହୁଛ ? ଆମକୁ ଗୋଲାପ ଜାମୁ କେତେବେଳେ ଦେଲ ? ଆମେ ତ ତୁମକୁ ଆଗରୁ କେବେ ବି ଦେଖି ନାହୁଁ ।’’ ବାବାଙ୍କ ସାଙ୍ଗରେ ଥିବା ବୈଷ୍ଣବମାନେ ସାକ୍ଷୀ ଦେଲେ ଯେ ବାବା ସେମାନଙ୍କ ମଧ୍ୟରୁ ଦୁଇ ଜଣକୁ ଗୋଲାପ ଜାମୁ ଖୁଆଇଥିବା କଥା ସେମାନେ ମଧ୍ୟ ଦେଖିଛନ୍ତି । ସେ ପିଲା ଦୁଇଟିଙ୍କୁ ସେମାନେ ଚିହ୍ନଟ ମଧ୍ୟ କଲେ ।

ଗଓଁାରିଆ ବାବା ଏବେ ରହସ୍ୟଟି ବୁଝିଗଲେ । ଏସବୁ ସେଇ ସଖା ଜଗା ଓ ତା ଭାଇ ବଳିଆ ଦୁଇ ଭାଇଙ୍କ କାଣ୍ଡ ।

## ବିହାରୀଜୀ ମନ୍ଦିର ଲୀଳା

ଦିନକର କଥା । ବାବା ବିହାରୀଜୀଙ୍କ ମନ୍ଦିର ଖୋଲୁ ଖୋଲୁ ଭିତରେ ପଶିଗଲେ । ମନ୍ଦିର ଆଙ୍ଗନର ସାମନା ପଟେ ଦୁଇଟି ନିବୁଜ କାଠ ଟଡ଼ା ଥାଏ । ଖରାଦିନେ ସେହି ସ୍ଥାନରୁ ଶୀତଳ ଜଳ ଛିଞ୍ଚାଯାଏ ଭକ୍ତମାନଙ୍କ ଉପରେ । ବାବା ଗୋଟିକରେ ପଶିଗଲେ । ବସିପଡ଼ି ଭକ୍ତମାନଙ୍କୁ ଜୁଳୁଜୁଳୁ କରି ଚାହୁଁଥାଆନ୍ତି । ଦ୍ୱିପହରବେଳେ ଦେଉଳ ବନ୍ଦ ହେଲା । ସଂଧ୍ୟାବେଳେ ପୁଣି ଖୋଲିଲା । ଜଣେ ଚିହ୍ନା ବୈଷ୍ଣବ ଆସି ପଚାରିଲେ, ''ବାବା, ଏଠାରେ ବସି କ'ଣ କରୁଛ ?'' ବାବା ୟାରର ଆଦେଶ ପାଳୁଛନ୍ତି ବୋଲି କହିଲେ । ସଖା କହିଛନ୍ତି, ''ସବୁଦିନ ମତେ ଦେଖୁଛ, ଆଜି ମୋ ଭକ୍ତକୁ ଟିକେ ଦେଖ ତ ।'' ସଂଧ୍ୟା ହେଲା । ଆରତି ହେଲା । ଭକ୍ତମାନେ ହରିବୋଲ ଦେଲେ । କହିଲେ, ''ବିହାରୀଜୀ କି ଜୟ । ନିକୁଞ୍ଜ କିଶୋର କି ଜୟ । ହରିଦାସ ଲାଡ଼ଲା କି ଜୟ ।'' ବାବା ଏଥର ବାହାରକୁ ଦୌଡ଼ି ଦୌଡ଼ି ଆସି କହିଲେ, ''ବାଃରେ ୟାର୍, ଖାଲି ତୋର ଜୟ ଜୟ କାର କରାଉଛୁ । ମୋତେ ସେଠି ଡ୍ୟୁଟି ଦେଇଛୁ । ମୋ ଜୟକାର କାହିଁ କଲୁ ନାହିଁ ତ ?'' ସମବେତ ଭକ୍ତମଣ୍ଡଳୀ ଖୁବ୍ ବଢେ ହସିଲେ । ଖୁବ୍ ଜୋରରେ ବିହାରୀଜୀ ଭକ୍ତ ବାବାକି ଜୟ ବୋଲି କହି କହି ଗଗନ ପବନ କମ୍ପମାନ କରିଦେଲେ ।

## ରଙ୍ଗଜୀ ମନ୍ଦିର ଲୀଳା

ଥରେ ରଙ୍ଗଜୀ ମନ୍ଦିର ମଧ୍ୟରେ ବୁଲୁଥାନ୍ତି ଗଓ୍ୱାଁରିଆ ବାବା । ସଂଧ୍ୟାବେଳ ହେଲା । ପାଲିଙ୍କିରେ ଠାକୁରଜୀଙ୍କୁ ଦେଖି ଅଚେତ ହୋଇଗଲେ ବାବା । ଅନେକ ସମୟ ପରେ ଚେତା ଆସିଲା ପରେ ସାଙ୍ଗରେ ଥିବା ସାଧୁମାନେ ପ୍ରଶ୍ନ କଲେ, ''ବାବା, କ'ଣ ହେଲାକି ?'' ବାବା କହିଲେ, ''ଠାକୁରଜୀ ଏକା ପାଲିଙ୍କିରେ ଆସିଲେ । ମୁଁ ଖୋଜିଲି ଶ୍ରୀ ରାଧାରାଣୀ କାହାନ୍ତି ? ଦେଖିଲି ସେ ଓଲଟ ଦିଗରେ ଯାଉଛନ୍ତି । ବଂଶୀବଟ ଯାଏଁ ଯିବେ । ଭାବିଲି ଏକା କେମିତି ଯିବେ । ଅନ୍ଧ ବାଟ ତ । ତେଣୁ ତାଙ୍କୁ ବାଟେଇ ଦେବାକୁ ଯାଇଥିଲି ।'' ବ୍ରଜବାସୀ ବୁଝିଗଲେ କହ୍ନେୟାର ସଖା ଏହି ବାବା ।

## ମୁହଁରେ କଳା ବୋଲି ଗଧ ପିଠିରେ ବାବା

ଥରେ ବୃନ୍ଦାବନରେ ବହୁତ ଦିନ ରହିଗଲେ ବାବା । ଦତିହା ନରେଶ ଆସି ବାବାଙ୍କୁ ନିଜ ରାଜ୍ୟକୁ ନେବାକୁ ଜିଦ୍ କଲେ । କଥା ହେଲା ପରଦିନ ସକାଳେ ରାଜା

ବାବାଙ୍କୁ ନେଇ ନିଜ ରାଜ୍ୟକୁ ଯିବେ । ରାଜା ବାହାରିବା ପୂର୍ବରୁ ବାବା ତାଙ୍କ ପାଖରେ ହାଜର!! ମୁହଁରେ କଳା ବୋଳିଛନ୍ତି । ପୁଣି ବସିଛନ୍ତି ଗଧ ପିଠିରେ!! ରାଜା ଆଶ୍ଚର୍ଯ୍ୟ ହେଲେ । କାରଣ ପଚାରନ୍ତେ ବାବା କହିଲେ, ''ବୃନ୍ଦାବନ ଛାଡ଼ି କୃଷ୍ଣଭକ୍ତ ବାହାରକୁ ଯିବା ଅର୍ଥ ମୁହଁରେ କଳାବୋଳି ଗଧ ପିଠିରେ ବସିବା ସହ ସମାନ ।'' ରାଜା ବୁଝିଗଲେ ବାବାଙ୍କର କୌତୁକିଆ ବିନୋଦୀ ଲୀଳା । ପାଦତଳେ ପଡ଼ି ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣାମ କରି ବିଦାୟ ନେଲେ । ବାବାଙ୍କର ଆଉ ଶ୍ରୀ ବୃନ୍ଦାବନ ଧାମ ବାହାରକୁ ଯିବା ଦରକାର ପଡ଼ିଲା ନାହିଁ । ରାଜା ବୁଝିଗଲେ ବାବା ସଖା ସଙ୍ଗେ ରହନ୍ତୁ ।

## ନାଥଦ୍ୱାରା ଲୀଳା

ବାବା ଜୟପୁରରେ ଶ୍ରୀଗୋବିନ୍ଦ ଦେବଙ୍କ ସେବାରେ ବହୁତ ଦିନ ରହିଗଲେ । ଥରେ ବେମାରରେ ପଡ଼ିଗଲେ । ରାଜା ରାଜ୍ୟ ବୈଦ୍ୟ ଲଗାଇ ଅନେକ ଚିକିତ୍ସା କଲେ । କିଛି ଫଳ ମିଳିଲାନି । ବାବା ଚିଠି ଲେଖିଲେ ନାଥଦ୍ୱାରା ଟିକାୟତ ବା ଜମିଦାରଙ୍କୁ । ଗୋଟେ ବଳବାନ ସିଂହ ଧରା ପଡ଼ିଛି । ପିଞ୍ଜରା ତିଆରି କର । ଜମିଦାର ଚିଠି ଲେଖିଲେ ପିଞ୍ଜରା ରେଡ଼ି ହେଲାଣି । ବାବା ବାହାରିଲେ ନାଥଦ୍ୱାରା ଯିବାକୁ । ଜୟପୁର ରାଜା କହିଲେ, ''ଦେହ ବେମାର । ଭଲ ହେଲେ ସିନା ଯିବେ!'' ତଥାପି ବାବା ଅମାନିଆ ହେଲେ । ଶ୍ରୀନାଥଜୀ ତାଙ୍କର ଯାର । ତାଙ୍କ ପାଖକୁ ଯିବେ । ରାଜା ରାଜ ବୈଦ୍ୟଙ୍କୁ କୁହାଇ ଏକ ମାସର ଔଷଧ ବନ୍ଧାବନ୍ଧି କରି ବାବାଙ୍କୁ ଦେଲେ । ବାବା ହସିଲେ । ପୁଟୁଳି ଫିଟାଇ ସବୁ ତକ ଔଷଧ ଏକା ଥରକେ ଚଲୁ କରିଦେଲେ । ଆଶ୍ଚର୍ଯ୍ୟ କଥା ବ୍ୟାଧି କୁଆଡ଼େ ଛାଡ଼ି ପଳାଇଲା ।

ବାବା ପହଞ୍ଚିଲେ ନାଥଦ୍ୱାରା । ଶ୍ରୀନାଥଜୀ ଦର୍ଶନ କଲେ । ଟିକାୟତ ପଚାରିଲେ ବାବାଙ୍କ ପିଞ୍ଜରା ପ୍ରସ୍ତୁତ । ହେଲେ ସିଂହ କାହିଁ? ବାବା ଓଲଟି କହିଲେ, ''ସିଂହ ଅଛି । ପିଞ୍ଜରା କାହିଁ? ଜମିଦାର ପିଞ୍ଜରା ପାଖକୁ ଡ଼ାକିନେଲେ ବାବାଙ୍କୁ କହିଲେ, ''ହେଇ ପିଞ୍ଜରା ।'' ବାବା ଧାଇଁ ଯାଇ ପିଞ୍ଜରା ଭିତରେ ବସି ପଡ଼ିଲେ । କହିଲେ, ''ହେଇ ଦେଖ, ସିଂହ ଧରା ପଡ଼ିଛି ।'' ବାବାଙ୍କ କୌତୁକୀ କଥା ହେଲା କୃଷ୍ଣଭକ୍ତ ହିଁ ସେଇ ବଳବାନ ସିଂହ । ଅନ୍ୟ ଭକ୍ତମାନେ ଛେଳି କିମ୍ବା ଶୃଗାଳ ।

## ବାବାଙ୍କ ବାହାଘର ଲୀଳା ବିନୋଦ

ଦିନେ ବାବା ବୃନ୍ଦାବନରେ ସେବାକୁଞ୍ଜ ଗଳିରେ ଯାଉଥାଆନ୍ତି । ଦେଖିଲେ ଜଣେ ବଙ୍ଗାଳୀ ଲୋକ ନିଜ ଯୁବତୀ ଝିଅକୁ ନେଇ ସେବାକୁଞ୍ଜ ଦର୍ଶନରେ ଯାଉଛନ୍ତି । ବାବା ଯାଇ କନ୍ୟା ପିତାଙ୍କୁ ବିବାହ ପ୍ରସ୍ତାବ ଦେଲେ । ଭଦ୍ରଲୋକ ବାବାଙ୍କୁ ଏଣୁ ତେଣୁ ଦି'ପଦ ଶୁଣାଇଦେଲେ । କହିଲେ, ''ଦର୍ପଣରେ ପ୍ରଥମେ ମୁହଁ ଦେଖ । ଯମୁନା ସ୍ନାନ କର ଯାଇ ।'' ବାବା ତୁରନ୍ତ ଆଶ୍ରମ ଗଲେ ଦର୍ପଣରେ ନିଜ ମୁଖ ଦର୍ଶନ କଲେ । ସବୁ ଠିକ୍ ଅଛି । ଆଶ୍ରମରେ ସମସ୍ତଙ୍କୁ ଡ଼ାକି କହିଲେ, ସମସ୍ତେ ଯମୁନା କୂଳକୁ ଚାଲ । ମୋ ବିବାହ ଦେଖିବ । ଅନେକ ଲୋକ ଜମା ହେଲେ । ବାବା ଯମୁନା ସ୍ନାନ କଲେ । ଅପେକ୍ଷା କଲେ ଅନେକ ସମୟ । କନ୍ୟା କିମ୍ବା କନ୍ୟା ପିତାଙ୍କ ଦେଖା ନାହିଁ । ବାବା କାଠ ଆଣି ଜମା କଲେ । ଜୁଇ ପ୍ରସ୍ତୁତ କଲେ । ଆଜି ବାବା ବାହାହେବେ । ନଚେତ ନିଆଁରେ ପୋଡ଼ି ମରିବେ । ବୃନ୍ଦାବନ ସାରା ହୁରି ପଡ଼ିଗଲା । ବ୍ରଜବାସୀମାନେ ସେ ବଙ୍ଗାଳୀ ବାବା ଓ ତାଙ୍କ କନ୍ୟାକୁ ଧରି ଆଣିଲେ । ବଙ୍ଗାଳୀ ବାବୁ କାକୁତି ମିନତୀ କଲେ । କହିଲେ, ''ବାବା, ମୋ କନ୍ୟାକୁ ବିବାହ କରନ୍ତୁ । ଜଳିପୋଡ଼ି ମରନ୍ତୁ ନାହିଁ ।'' ବାବା ଏବେ ହାଃ ହାଃ ହସି ଯମୁନା କୂଳରେ ଦୌଡ଼ିଲେ । ନିମିଷକେ କାହିଁ କୁଆଡ଼େ ଅଦୃଶ୍ୟ ହୋଇଗଲେ ।

## ବରସାନା ଧାମରେ ନଟଖଟ ଲୀଳା

ବରସାନା ଧାମରେ ଅର୍ଦ୍ଧରାତ୍ରରେ ବାବା ଜପ କରୁଥିଲେ ଅନ୍ଧାରରେ ବସି । ଦଳେ ଚୋର ବସି କାହାଘରୁ ଚୋରି କରିବାକୁ ବିଚାର ବିମର୍ଷ କରୁଥିଲେ । ବାବା ଯାଇ କହିଲେ, ''ଭାଇ, ମୋତେ ସାଙ୍ଗରେ ନିଅ ।'' ଚୋରି କରିବାକୁ ସମସ୍ତେ ଗଲେ । ଜଣେ ବ୍ରଜବାସୀ ଘରେ ପଶିଲେ । ଚୋରମାନେ ଲୁଗାପଟା, ବାସନ କୁସନ ଗଣ୍ଠିଲିରେ ବାନ୍ଧିଲେ । ବାବା ଠାକୁର ଘରେ ପଶିଲେ । ଦେଖିଲେ ଭଗବାନ ଶୋଇଛନ୍ତି । ପାଖରେ ମୃଦଙ୍ଗଟିଏ ଥିଲା । ବାବା କହିଲେ, ''ୟାର, ଦେଖ । ମୁଁ ଆସିଛି । ଶୋଇଛ କଅଣ ? ଉଠି ବସ । ଦୁହେଁ ମିଶି କୀର୍ତ୍ତନ କରିବା ।'' ଖୋଳ ମାଡ଼ ଶୁଣି ଘରବାଲା ଉଠି ପଡ଼ିଲେ । ଚୋରମାନେ ପଳାଇଗଲେ । ବାବା ଧରାପଡ଼ିଲେ । ବ୍ରଜବାସୀ କହିଲେ, ''ବାବା, ତୁମେ କ'ଣ କରୁଛ ? ଚୋର କାହାନ୍ତି ?'' ବାବା କହିଲେ, ''ମୁଁ ପରା ଚୋର । ଆମ ସର୍ଦ୍ଦାର ହେଇ କୃଷ୍ଣ କନ୍ହେୟା । ଶୋଇଥିଲା । ଉଠିଲାଣି । ସମସ୍ତେ ବସ ଏଥର କୀର୍ତ୍ତନ କରିବା ।'' ସମସ୍ତେ ହସି ହସି ଗଡ଼ିଗଲେ । ରାତି ପାହିଲା ଯାଏଁ ବ୍ରଜବାସୀମାନେ କୀର୍ତ୍ତନ ମାଡ଼ କଲେ । ଭକ୍ତ ଖୁସ୍ । କନ୍ହେୟା ବି ଖୁସ୍ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ମଥୁରା ଧାମରେ ଭୂତ ଉଦ୍ଧାର ଲୀଳା

ମଥୁରା ଧାମରେ ଗୋଟିଏ ଘରେ ଭୂତ ଥାଏ । ଡ଼ରରେ ସେ ଘରେ କେହି ରହୁ ନଥାନ୍ତି । ଯେ ଗଲେ ସେ ଦିନେ ଦି' ଦିନରେ ମରେ । ବାବା କହିଲେ, ''ମୁଁ ସେ ଘରେ ରହିବି ।'' ମାସିକ ପଚାଶ ଟଙ୍କା ଭଡ଼ାରେ ବାବା ସେ ଘର ନେଲେ । ବାବା କିଛି ସଙ୍ଗୀତ, ବାଜା ଯନ୍ତ୍ର କିଣି ସେହି ଘରେ ରଖିଲେ । ଉଦ୍ଦେଶ୍ୟ ଭୂତକୁ ବାଜା ବଜାଇବା, ଗୀତ ଗାଇବା ଶିଖାଇବେ । ବାବାଙ୍କ ସାଙ୍ଗରେ ରାତିରେ କିଛି ଲୋକ ମଧ୍ୟ ଜମାହେଲେ । ତାମସା ଦେଖିବେ । ବାବା ବସିଲେ । ଭୂତକୁ ଡ଼ାକିଲେ । ଭୁତ ଆସିଲା । ବାଜା ବଜାଇଲା । ଲୋକେ ଦେଖିଲେ ବଜାଇବା ବାଲା ଦିଶୁନାହିଁ । ବାଜା କିନ୍ତୁ ବାଜୁଛି । ଡ଼ରରେ ସମସ୍ତେ ବାହାରକୁ ପଳାଇଲେ । ସକାଳୁ ଘର ମାଲିକକୁ ଡ଼ାକିଲେ ବାବା । ଜିନିଷର ଗୋଟେ ଲମ୍ବା ଲିଷ୍ଟ ଧରାଇଦେଲେ । ବ୍ରାହ୍ମଣ ଡ଼ାକି ଶ୍ରାଦ୍ଧ କରାଇବେ ସେ ଭୂତର । ସେ ସବୁକାମ ଠିକ୍ ଠିକ୍ କରାଗଲା । ଶ୍ରାଦ୍ଧକର୍ମ ଶେଷ ହେଲା । ଭୂତ ମୁକ୍ତ ହୋଇଗଲା । ଧନ୍ୟବାଦ ଦେଲା ବାବାଙ୍କୁ । ସାଷ୍ଟାଙ୍ଗ ପ୍ରଣିପାତ କରି ଗୃହତ୍ୟାଗ କଲା । ସେ ଭୂତମହଲ ଏବେ ମଥୁରାର ଏକ କୃଷ୍ଣ ମନ୍ଦିର ।

## ବାବାଙ୍କର ବେଶ୍ୟା ସଙ୍ଗ

ଭୂତ ଉଦ୍ଧାର ଲୀଳାପରେ ବାବାଙ୍କ ଆଶ୍ରମରେ ଅସଂଖ୍ୟ ଲୋକଙ୍କ ଗହଳି । ସମସ୍ତେ ଶିଷ୍ୟ ହେବେ । ଅଧିକାରୀ ହୁଅନ୍ତୁ ବା ଅନଧିକାରୀ ହୁଅନ୍ତୁ । ବାବା ଏକ ଉପାୟ ପାଞ୍ଚିଲେ । ମଥୁରାର ଏକ ସୁନ୍ଦରୀ ବେଶ୍ୟାକୁ କହିଲେ, ''ତୁମେ ତିନି ଚାରିଦିନ ମୋ ସାଙ୍ଗରେ ଖୋଲା ଘୋଡ଼ା ଗାଡ଼ିରେ ବସିବୁଲ । ମୁଁ ତୁମକୁ ଯଥେଷ୍ଟ ପାଉଣା ଦେବି ।'' ବେଶ୍ୟା ରାଜି ହୋଇଗଲା । ବାବୁ ଘୋଡ଼ାଗାଡ଼ି ସଜାଇ ତାକୁ ଧରି ମଥୁରା ବଜାର ବୁଲିଲେ । ଲୋକେ ଦେଖି ଅବାକ୍ । ବାବାଙ୍କ ପିଛା ଛାଡ଼ିଦେଲେ । ଆଉ ଗହଳି କଲେ ନାହିଁ । ବାବା ଶାନ୍ତିରେ ନିଶ୍ୱାସ ମାରିଲେ । ବେଶ୍ୟାକୁ ସହଯୋଗ ଲାଗି ପଇସା ଦେଲେ । ସଚା ୟାର ବୋଲି କହି ତାକୁ ମୁଣ୍ଡିଆ ମାରିଲେ ।

## ରାଜା ବେଶରେ ବାବା

ବୃନ୍ଦାବନରେ ବାବା ଏକ ବଡ଼ କୋଠାଘର ଭଡ଼ାରେ ନେଲେ । ସିଂହାସନ, ଦରବାର ସବୁ ମୂଲ୍ୟବାନ ଦ୍ରବ୍ୟରେ ସଜାଗଲା । ଫୁଲଦାନୀ, ଦାମୀ ପରଦା, ଗାଲିଚା କେଉଁଥିରେ ଅଭାବ ରହିଲା ନାହିଁ । ଅନେକ ଧନୀ, ସୌଦାଗର ଲାଗି ପଡ଼ିଲେ ରାଜମହଲ ସଜାଇବାରେ । ବାବା ହସି ହସି ସିଂହାସନରେ ବସିଗଲେ । ପ୍ରଜାମାନଙ୍କୁ

ଆଶିର୍ବାଦ କଲେ । କହିଲେ ଯେ ତାଙ୍କ ୟାର ଏବଂ ସକଳ ବୃନ୍ଦାବନ ବାସୀ ଆଜି ତାଙ୍କର ପ୍ରଜା । ସେ ନିଜେ ରଜା । ପରଦିନ ସକାଳେ ସବୁ ଜିନିଷ ପତ୍ର ବ୍ରଜବାସୀଙ୍କୁ ଲୁଟି ନିଅ ବୋଲି କହି ଜୟପୁର ପଳାୟନ କଲେ ।

## ଗୋବିନ୍ଦ ଦେବଙ୍କ ଖାରିଆ ଖିରି

ଜୟପୁର ରାଜା ଦିନେ ବଢ଼ିଆ ଖିରି ପ୍ରସାଦ ଭୋଗ ପ୍ରସ୍ତୁତ କଲେ । ବାବାଙ୍କୁ ମଧ୍ୟ ନିମନ୍ତ୍ରଣ କଲେ ପ୍ରସାଦ ପାଇବାକୁ । ବାବା ହସି ହସି କହିଲେ, ''ମହାରାଜ, ମୋ ୟାର(ସଖା) ସିନା ଖାରିଆ ଖିରି ଖାଇବ । ହେଲେ ମୁଁ ନୁହେଁ ।'' ରାଜା ପୂଜାରୀଙ୍କୁ ପଚାରି ବୁଝିଲେ ସତକୁ ସତ ସେଦିନ ଭୁଲରେ ଖିରିରେ ମିଠା ପଡ଼ି ନଥିଲା ।

## ଯତିପୁରାରେ ୟାର ଅଭିଷେକ

ଗୋବର୍ଦ୍ଧନ ଜତିପୁରାରେ ଏକ ମହୋତ୍ସବ ହେଉଥାଏ । ବାବା ପହଞ୍ଚି ଦେଖିଲେ ଭକ୍ତମାନେ ଜଳ ଅଭିଷେକ, ଦୁଗ୍ଧ ଅଭିଷେକ, ଘୃତ ଅଭିଷେକ ଓ ମହୁ ଅଭିଷେକ କରୁଛନ୍ତି । ଦେଖୁ ଦେଖୁ ବାବା ହଠାତ ଚିତ୍କାର କରି ଚେତା ହରାଇ ପଡ଼ିଗଲେ । ଚେତନା ଆସିବା ପରେ ଲୋକେ ପଚାରିଲେ ବାବାଙ୍କୁ ଚିତ୍କାର କରିବା କାରଣ । ବାବା କହିଲେ, ''ତୁମେ ଏତେ ଏତେ ଜଳ, ଦୁଧ ଘିଅ ମହୁ ଢାଳି ଦେଲ । ମୋ ୟାର ସଖା କାନ ନାକରେ ପଶିଗଲା । ସେ ରୁନ୍ଧି ହୋଇଗଲା । ମୁଁ କେମିତି ସହନ୍ତି ଏ କଥା ! ! ! ତେଣୁ ମୁଁ ପାଟି କଲି । ତୁମେ ଏକଥା ମନେ ରଖିବା ଉଚିତ ଯେ ମୋ ୟାର କାଠ ପଥର ନୁହେଁ ତାର ସତକୁ ସତ ଜୀବନ ଅଛି !''

## ରଙ୍ଗଜୀ ମନ୍ଦିରରେ ଶୋକ ସଭା ଲୀଳା କୌତୁକ

ଥରେ ରଙ୍ଗଜୀ ମହଲରେ ଅନେକ ଶିଷ୍ୟ, ଭକ୍ତ ଅଭକ୍ତ ସମସ୍ତଙ୍କୁ ଡ଼ାକି ବସାଇଲେ । କହିଲେ, ''ଦେଖ, ଭାଇ ଭାବିନିଅ ଯେ ମୁଁ ମରିଯାଇଛି । ମୁଁ ମଲା ପରେ ଯେପରି ଶୋକ ସଭା କରିବ ବର୍ତ୍ତମାନ ସେପରି କର । ମୁଁ ଦେଖିବି ।'' ଲୋକେ ନିରୁପାୟ ହୋଇ ବାବାଙ୍କ ଇଚ୍ଛା ପୂରଣ କଲେ । ବାବା ଏଥର ଖୁସ୍ ।

## ବାବାଙ୍କ ଅନ୍ତିମ ବିଦାୟ ଲୀଳା

୯୫ବର୍ଷ ବୟସରେ ବାବା ଜଣେ ବିଶିଷ୍ଟ ବୈଷ୍ଣବଙ୍କୁ ଡ଼ାକି କହିଲେ, ''ଆଉ ଦୁଇଦିନ ପରେ ମୋର ଚାକିରୀର ବଦଳି ଆଦେଶ ଆସିବ । ମୁଁ ଯିବାକୁ ପ୍ରସ୍ତୁତ ହେଉଛି । ୟାରର ଆଦେଶ ମୁଁ ଯେମିତି ଶୀଘ୍ର ନୂତନ ଦାୟିତ୍ୱ ଗ୍ରହଣ କରେ । ରମଣ ରେତିଠାରେ ମୋର ସାମାନ ପଡ଼ି ରହିଛି ।''

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ସେଦିନ ଶ୍ରୀରାଧା ବଲ୍ଲଭ ମଠରେ ଆରତୀ ଦର୍ଶନ କରୁଥିଲେ ବାବା । ହଠାତ୍ ଚିତ୍କାର କଲେ, ''ୟାର, ମୁଁ ଯାଉଛି ।'' ବାବା ସେହି ମନ୍ଦିରରେ ଅଦୃଶ୍ୟ ହୋଇଗଲେ । ବ୍ରଜବାସୀ ଜାଣିଗଲେ ବାବା କୁଆଡ଼େ ଗଲେ । ସମସ୍ତେ ଧାଇଁଲେ ରମଣରେତି ଆଶ୍ରମ । ସେଠାରେ ବାବାଙ୍କ ମର ଶରୀର ଦର୍ଶନ କରିବାକୁ ମିଳିଲା । ବାବାଙ୍କର ସତକୁ ସତ ବଦଳି ହୋଇସାରିଥିଲା । ଆମ ସମସ୍ତଙ୍କର ନିତ୍ୟ ସଖା କନ୍ହେୟା ଲାଲ ବାବାଙ୍କୁ ନିଜ ଲୀଳାରେ ନିଯୁକ୍ତି ଦେଇଥିଲେ । ଜୟ କନ୍ହେୟା ଲାଲକୀ । ଜୟ ରାଗାନୁଗା ସଖା ପ୍ରେମକୀ । ଜୟ ଗୁରୁବର ଲାଲକୀ ।

## ୧୧. ଯୋଗାନନ୍ଦ ପରମହଂସଙ୍କର ବୃନ୍ଦାବନ ଦର୍ଶନ ଲୀଳା

ପ୍ରଶ୍ନ-୯୫: ସ୍ୱାମୀ ଅଖଣ୍ଡାନନ୍ଦ ସରସ୍ୱତୀଙ୍କ ଜୀବନୀ ପାଠକଲେ ଜଣାଯାଏ ଯେ ସେ ଥରେ ଅଣ୍ଟାରେ ଚାରଣି (ପଚିଶି ପଇସି) ଗୋଟିଏ ଖୋସି ବୃନ୍ଦାବନରୁ ବାହାରିଲେ । ବଦ୍ରିନାଥ ଧାମ ଯାଇ ଠାକୁର ଦର୍ଶନ ସାରି ବୃନ୍ଦାବନ ଫେରି ଆସିପାରିଲେ । ଖାଇବା ପାଇଁ ସେ କାହା ପାଖରେ ହାତ ପତେଇ ନାହାନ୍ତି । ବିନା ଟିକେଟରେ କେଉଁଠି ଯାନବାହାନ ଚଢ଼ି ନାହାନ୍ତି । ଏହାକୁ ରାଧାରାଣୀଙ୍କ କୃପା କୁହାଯାଇପାରେ କାରଣ ସ୍ୱାମୀଜୀ ବ୍ରଜବାସୀ ଥିଲେ । ଯୋଗାନନ୍ଦ ପରମହଂସ କାହାବଳରେ କେଉଁ ସାହସରେ ଆଗ୍ରାରୁ ବୃନ୍ଦାବନ ଆସିଲେ ବିନା ପଇସାରେ ଓ ୧୨ଘଣ୍ଟା ମଧ୍ୟରେ ଶ୍ରୀବୃନ୍ଦାବନ ଧାମରେ ଶ୍ରୀରାଧା ଗୋବିନ୍ଦ ଦର୍ଶନ କରି ଫେରି ପାରିଲେ ନିଜର ଆଗ୍ରା ବାସ ଭବନକୁ ?

ଉ. ''ଯୋଗୀର ଆତ୍ମଜୀବନୀ ଚରିତ'' ପୁସ୍ତକରେ ଘଟଣାଟି ବିଶେଷ ଭାବରେ ବର୍ଣ୍ଣିତ ହୋଇଛି । ୧୮୯୩ମସିହାରେ ଉତ୍ତର ପ୍ରଦେଶର ଗୋରଖପୁର ଠାରେ ଏ ଭବ୍ୟ ବୈଷ୍ଣବ ପରିବାରରେ ଜନ୍ମ ନେଇଥିଲେ ଜଣେ ଭାଗ୍ୟବାନ ସାଧକ । ପିଲାଦିନେ ତାଙ୍କର ନାମ ଥିଲା ମୁକୁନ୍ଦ ଲାଲ । ତୁଳସୀ ଦୁଇପତ୍ରରୁ ବାସେ । ବିଛୁଆତି ଦୁଇ ପତ୍ରରୁ କୁଣ୍ଡଇ ହୁଏ । ପୂର୍ବ ଜନ୍ମର ଅନେକ ସିଦ୍ଧି ସେ ତାଙ୍କ ସାଙ୍ଗରେ ଧରି ଜନ୍ମ ହୋଇଥିଲେ । ଦିନକର କଥା । ମୁକୁନ୍ଦ ତାଙ୍କ ବଡ଼ ଭଉଣୀ ସାଙ୍ଗରେ ବସି ବାଡ଼ି ପଟ ବାରଣ୍ଡାରେ ଖେଳୁଥିଲେ । ଭଉଣୀ ହାତରେ କହୁଣୀ ପାଖରେ କିଛି ମଲମ ଲଗାଉଥିଲେ । ଏକଥା ଦେଖିଲେ ମୁକୁନ୍ଦ । ନିଜେ ମଲମ ଡିବ୍ବ ଖୋଲି ନିଜ କହୁଣୀ ପାଖରେ ଲଗାଇଲେ । ଭଉଣୀ ଚିଡ଼ି ଉଠିଲେ । କହିଲେ, ''ମୁକୁନ୍ଦ, ତୁ କାହିଁକି ଔଷଧ ଲଗାଉଛୁ ହାତରେ ।'' ସଙ୍ଗେ ସଙ୍ଗେ ମୁକୁନ୍ଦ ଓଲଟି ଭଉଣୀର ଔଷଧ ଲଗାଇବା କାରଣ

ପଚାରିଲେ । ଭଉଣୀ ତାଙ୍କର କହିଲେ, ''ଦେଖ, ମୋର ବଥ ହୋଇଛି । ସେଥିପାଇଁ ମୁଁ ଲଗାଉଛି । ତୁ କାହିଁ ଲଗାଉଛୁ ?'' ମୁକୁନ୍ଦ କହିଲେ, ''ଅପା, ମୋର କାଲିକି ସେଠି ଗୋଟେ ବଥ ଉଠିବ ।'' ପରଦିନ ସକାଳେ ସେ ତାଙ୍କ ଭଉଣୀକୁ ଉଠିଥିବା ବଥ ଦେଖାଇଦେଲେ । ଭଉଣୀ ସାନ ଭାଇକି ଟାଣି ନେଇ ମାଙ୍କୁ ସବୁ କଥା ଖୋଲି କହିଲେ । ସ୍ନେହମୟୀ ଜନନୀ ଦେଖିଲେ ପୁଅ ତାଙ୍କର ବାକ୍‌ସିଦ୍ଧିର ଅଧିକାରୀ । ଯାହା କହିବ ଫଳିବ ହିଁ ଫଳିବ । ପୁଅକୁ କାଖେଇଲେ । କୋଳେଇଲେ । ଚୁମା ଦେଇ ଠାକୁରଙ୍କ ପାଖକୁ ନେଲେ । ନିବେଦନ କରି କହିଲେ, ''ଠାକୁରେ, ମୋ ପିଲା ଅଜ୍ଞାନ । ତାଙ୍କୁ କୃପା କର ।'' ପୁଅକୁ ଏଣିକି ଏଭଳି ପୁଣି କରିବାକୁ ବାରଣ କଲେ ।

ସେ ଦିନର ସେଇ ବାଳକ ବଡ଼ ହୋଇ ନିଜ ଘରେ ଗୁରୁଦେବଙ୍କ ଦର୍ଶନ ଓ ଆଶିର୍ବାଦ ସହିତ ଦୀକ୍ଷା ଆଦି ପାପ୍ତ ହେଲେ । ହେଲେ ମନ ସିନା ସନ୍ନ୍ୟାସୀ ହେଲା ତେବେ ସଂସାର ଆସକ୍ତିରୁ ସେ ମୁକୁଳିବେ କିପରି ? ତାଙ୍କ ବଡ଼ ଭାଇ ଆଗ୍ରା ସହରରେ ଚାକିରୀ କରୁଥାଆନ୍ତି । ମୁକୁନ୍ଦ କିନ୍ତୁ ବଡ଼ ଭାଇଙ୍କୁ ବାରମ୍ବାର କହିଲେ, ସନ୍ନ୍ୟାସ ନେବି । ସନ୍ନ୍ୟାସ ନେବି । ଭାଇ କହିଲେ, ''ମୁକୁନ୍ଦ ପରୀକ୍ଷାରେ ପାସ କର ପ୍ରଥମେ, ପରେ ସନ୍ନ୍ୟାସୀ ହେବୁ ।'' ମୁକୁନ୍ଦ ପରୀକ୍ଷା କରନ୍ତୁ ବୋଲି କହିଲେ । ଭାଇ କହିଲେ, ''ମୁକୁନ୍ଦ ତୁମେ ଖାଲି ସକାଳ ୭ରେ ଆଗ୍ରାରୁ ବାହାରିବ । ବିନା ପଇସାରେ । ଶ୍ରୀବୃନ୍ଦାବନ ଧାମଯିବ । ସେଠାରେ ଶ୍ରୀରାଧାଶ୍ୟାମ ସୁନ୍ଦର ଦର୍ଶନ କରି ପୁଣି ଆସି ଯଦି ୭ଘଣ୍ଟା ସମୟରେ ପହଞ୍ଚିପାରିବ. ତେବେ ତୁମେ ପରୀକ୍ଷାରେ ପାସ କଲ । ହଁ ତୁମେ ବିନା ଟିକଟରେ ଗାଡ଼ି, ମୋଟର, ଯାନ ବାହାନ ଚଢ଼ିବ ନାହିଁ । କାହାକୁ ହାତ ପତେଇ କିଛି ମାଗିବ ନାହିଁ। ଏ କଥା ପର୍ଯ୍ୟବେକ୍ଷଣ କରିବା ଲାଗି ମୁଁ ମୋର ଜଣେ ବନ୍ଧୁଙ୍କୁ ତୁମ ସହିତ ପଠାଇବି । ରାଜି ତ ?''

ଭାଇଙ୍କ କଥାରେ ସମ୍ମତ ହେଲେ ମୁକୁନ୍ଦ କିନ୍ତୁ ଶ୍ରୀରାଧା ଗୋବିନ୍ଦଙ୍କୁ ସ୍ମରଣ କରି । ତାଙ୍କ କୃପାକୁ ଆଶ୍ରୟ କରି ବଡ଼ ଭାଇ ବନ୍ଧୁଙ୍କ ସହିତ ଶ୍ରୀବୃନ୍ଦାବନ ଯିବା ପାଇଁ ରେଳ ଷ୍ଟେସନରେ ପହଞ୍ଚିଲେ । ହଠାତ୍ ଜଣେ ଲୋକ ତାଙ୍କୁ ବୃନ୍ଦାବନ ଯିବାକୁ ଆଗ୍ରା-ମଥୁରା ଲାଗି ଦୁଇଟି ଟିକେଟ ଦେଇ କହିଲା, ''ଆଜ୍ଞା, ମୋର ମଥୁରା ଯିବାର ଥିଲା । ମୁଁ ଯାଇପାରୁନାହିଁ । ଆପଣ ବୋଧହୁଏ ମଥୁରା ଯିବାକୁ ଚାହୁଁଛନ୍ତି । ନିଅନ୍ତୁ ଆପଣଙ୍କର ଦରକାରରେ ଆସିବ ।'' ରେଳ ଗାଡ଼ି ଆସିଲା । ସେ ଓ ଭାଇଙ୍କ ବନ୍ଧୁ ଦୁହେଁ ଗାଡ଼ିରେ ବସିଲେ । ଭାଇଙ୍କ ବନ୍ଧୁ କହିଲେ, ''ହଁ, ଦୈବାତ୍ କିଏ ଜଣେ

ଟିକେଟ ଦୁଇଟା ସିନା ଦେଇଦେଲା ହେଲେ ମଥୁରାରୁ ଓହ୍ଲାଇ ଆମେ ବୃନ୍ଦାବନ ଯିବା କିପରି ?'' ମୁକୁନ୍ଦ ଅଳ୍ପ ହସି କହିଲେ, ''ଦେଖନ୍ତୁ ବନ୍ଧୁ, ସବୁ ଈଶ୍ୱରଙ୍କ କୃପା ଉପରେ ନିର୍ଭର କରେ । ଅପେକ୍ଷା କରନ୍ତୁ ତ ଆଗକୁ କ'ଣ ହେଉଛି ଦେଖିବାକୁ ।''

ଗାଡ଼ି ମଥୁରା ଜଙ୍କସନ୍‌ରେ ଅଟକିଲା । ଯାତ୍ରୀ ଦୁହେଁ ପ୍ଲାଟଫର୍ମ ବାହାରକୁ ଆସିଲେ । ଜଣେ ଘୋଡ଼ା ଗାଡ଼ି ଚାଳକ ଦୁହିଁଙ୍କୁ ଡ଼ାକି ନେଲେ । ଗାଡ଼ିରେ ବସାଇ ବୃନ୍ଦାବନ ଅଭିମୁଖେ ଗାଡ଼ି ଚଳେଇଲେ । ମୁକୁନ୍ଦ କିନ୍ତୁ କହିଲେ, ''ଚାଳକ ଭାଇ, ଆମ ପାଖରେ ପଇସା ନାହିଁ ।'' ଚାଳକ କହିଲେ, ''ଆପଣ ସେଥିପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣ ଦୁହେଁ ମଠର ଆଜି ପାଇଁ ଦୁଇ ବିଶିଷ୍ଟ ଅତିଥି । ଆପଣଙ୍କ ସେବାରେ ମୁଁ ନିଯୁକ୍ତ । ଏହା ମଠ ମହନ୍ତଙ୍କ ଆଦେଶ ।'' ଯାତ୍ରୀ ଦୁଇଜଣ ଖୁସୀ ହେଲେ ଯେତିକି ଆଶ୍ଚର୍ଯ୍ୟ ହେଲେ ତାହାଠାରୁ ବେଶୀ । ସେ ଗାଡ଼ି ଚାଳକ ତାଙ୍କ ଠାକୁର ଦର୍ଶନ, ଖାଦ୍ୟ, ପାନୀୟ, ନେବା ଆଣିବା ସବୁ ସେବା ନିଖୁଣ ଭାବରେ କରିସାରି ପୁଣି ଫେରନ୍ତା ରେଳଗାଡ଼ି ଟିକେଟ ଦୁଇଟି ଧରେଇ ଦେଇ ବିଦାୟ ନେଲେ ।

ମୁକୁନ୍ଦଙ୍କ ବଡ଼ ଭାଇ ନିଜ ଘରେ ବାରମ୍ବାର କାନ୍ଥ ଘଡ଼ିକୁ ଚାହୁଁ ଥାଆନ୍ତି । ଦୁହେଁ ଆସି ଘରେ ପହଞ୍ଚି ଚକିତ କରିଦେଲେ ମହାଶୟଙ୍କୁ । ତାଙ୍କ ଭାଇ ଘଡ଼ିକୁ ଚାହିଁଲେ ତଥାପି ନିର୍ଦ୍ଦିଷ୍ଟ ସାତଟା ବାଜିବାକୁ ଆହୁରି କେଇ ମିନିଟ୍ ବାକି ଅଛି । ଶ୍ରୀବୃନ୍ଦାବନ ମହାତ୍ମ୍ୟ ଓ ରାଧାରାଣୀଙ୍କ କୃପାକୁ ଅବିଶ୍ୱାସ କରିବାକୁ ତାଙ୍କ ପାଖରେ ଆଉ କିଛି ଖୋରାକ ନଥିଲା । ସେଦିନର ମୁକୁନ୍ଦ ଯୁକ୍ତେଶ୍ୱର ଗିରିଙ୍କୁ ଗୁରୁପଦରେ ବରଣ କଲେ । ଯୁକ୍ତେଶ୍ୱର ଗିରିଙ୍କ ସମାଧି ପୁରୀ ନୀଳାଚଳ ଧାମର ସ୍ୱର୍ଗଦ୍ୱାର ନିକଟରେ କଡ଼ାର ଆଶ୍ରମରେ ଦର୍ଶନୀୟ । ୧୯୨୦ ମସିହାରେ ଏହି ମହାପୁରୁଷ ଯୋଗାନନ୍ଦ ଆମେରିକା ଯାତ୍ରା କଲେ । ସେଠାରେ ଲାହିରୀ ମହାଶୟଙ୍କ କ୍ରିୟାଯୋଗ ଶିକ୍ଷା ଦୀକ୍ଷାରେ ଅନୁଗୃହୀତ କଲେ ଅନେକ ଆମେରକୀୟ ବିଦେଶୀଙ୍କୁ । ୧୯୩୫ମସିହାରେ ଭରତ ଫେରି ଶିଷ୍ୟ କଲେ ଜାତିର ଜନକ ମହାତ୍ମାଗାନ୍ଧି, ଆନନ୍ଦମୟୀ ମାତା(ଯାହାଙ୍କ ମଠ ବୃନ୍ଦାବନ ମଥୁରା ରୋଡ଼ରେ ଆଜି ମଧ୍ୟ ବିଦ୍ୟମାନ), ନୋବେଲ ପ୍ରାଇଜ ବିଜେତା ସିଭି ରମଣ ଆଦି ଅନେକ ଗଣ୍ୟମାନ୍ୟ ଦିଗ୍‌ଗଜ ନେତୃବୃନ୍ଦଙ୍କୁ ।

୧୯୩୬ ମସିହାରେ ପୁଣି ଫେରିଗଲେ ସ୍ୱାମୀଜୀ ଆମେରିକା । ତାଙ୍କ ଲିଖିତ ପୁସ୍ତକ ଯୋଗୀର ଆତ୍ମକଥା ୧୯୪୬ରେ ପ୍ରକାଶିତ ହେଲା । ୧୯୫୨ମସିହାରେ

ଲସ୍ ଏଞ୍ଜେଲେସ୍‌ର ଏକ ବିଶାଳ ଅଡ଼ିଟରିଅମ୍‌ରେ ସେ ହଜାର ହଜାର ଦର୍ଶକଙ୍କ ସମ୍ମୁଖରେ ସମାଧିସ୍ଥ ହେଲେ । ସେ ଲୀଳା ପ୍ରବେଶ କଲାପରେ ବୈଜ୍ଞାନିକ ଡ଼ାକ୍ତରମାନେ ୨୨ଦିନ ପରେ ମଧ୍ୟ ତାଙ୍କ ଶରୀର ସଂପୂର୍ଣ୍ଣ ସତେଜ ଓ ବିକାରଶୂନ୍ୟ ଥିବା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ମୃତ୍ୟୁ ଦୂତ କିମ୍ବା ସ୍ୱୟଂ ଯମ ଦେବତାଙ୍କର ସାହସ କାହିଁ ରାଧାରାଣୀଙ୍କ ପ୍ରିୟ ଭକ୍ତ ଶ୍ରୀବୃନ୍ଦାବନ ଦର୍ଶନ କରିଥିବା ଲୋକକୁ ସ୍ପର୍ଶ କରି ପାରିବେ ।

ଧନ୍ୟ ସେଇ ଯୋଗୀ ପରମହଂସ । ଧନ୍ୟ ଭକ୍ତି ଦେବୀ । ଧନ୍ୟ ସେଇ ଭକ୍ତିଧାମ ଶ୍ରୀବୃନ୍ଦାବନ ।

## ୧୨. ପଞ୍ଚମ ମୂଳ ଜଗଦ୍‌ଗୁରୁ ଶ୍ରୀ କୃପାଳୁଜୀ ମହାରାଜ ମଧୁର ପ୍ରେମ ଲୀଳା

ପ୍ରଶ୍ନ-୯୬: ଶ୍ରୀବୃନ୍ଦାବନ ଧାମ ସ୍ଥିତ ଆଜିର ସର୍ବଶ୍ରେଷ୍ଠ ମନ୍ଦିର ନାମରେ ବିଖ୍ୟାତ ପ୍ରେମ ମନ୍ଦିର ଓ ବର୍ଷାଣାଧାମ ସ୍ଥିତ ରଙ୍ଗିଲୀ ମନ୍ଦିରକୁ କେଉଁ ମହାପୁରୁଷଙ୍କର କୃତି ବୋଲି ଜଣାଯାଏ ?

ଉ. ଖ୍ରୀ.ପୂ ୫୦୯ରେ ଜନ୍ମିତ ଶ୍ରୀ ଆଦିଶଙ୍କରଙ୍କ ସହିତ ଶ୍ରୀ ନିମ୍ବାର୍କ, ଶ୍ରୀ ରାମାନୁଜ ଓ ଶ୍ରୀମଧ୍ୱ ଆଚାର୍ଯ୍ୟଙ୍କ ପରେ ୧୯୨୨ରେ ପ୍ରକଟ ହୋଇଥିବା ପଞ୍ଚମ ମୂଳ ଜଗଦ୍‌ଗୁରୁ ଶ୍ରୀକୃପାଳୁଜୀ ମହାରାଜଙ୍କର ଏ ଦୁଇ ଅକ୍ଷୟ କୀର୍ତ୍ତି ସ୍ତମ୍ଭ । ତାଙ୍କର ପ୍ରକଟ ସ୍ଥାନ ତୀର୍ଥ ରାଜ ପ୍ରୟାଗ ନିକଟସ୍ଥ ଗଙ୍ଗା ନଦୀ କୂଳରେ ମନଗଢ଼ ଗ୍ରାମ । ପ୍ରକଟ ତିଥି ଶ୍ରୀ ରାସପୂର୍ଣ୍ଣିମା । ପ୍ରଥମ ଚାରି ଜଗଦ୍‌ଗୁରୁ କାଶୀ ବିଦ୍ୱତ୍ ପରିଷଦଙ୍କ ପାଖରେ ପହଞ୍ଚି ନିଜ ନିଜ ଜଗଦ୍‌ଗୁରୁ ପଦବୀ ହାସଲ କରିଥିଲେ । ଶ୍ରୀ କୃପାଳୁ ମହାରାଜ କିନ୍ତୁ ଏ କଥା କରି ନାହାନ୍ତି । ମାତ୍ର ୩୫ବର୍ଷ ଆୟୁଷରେ ୧୯୫୭ମସିହାରେ କାଶୀ ବିଦ୍ୱତ ପରିଷଦ ତାଙ୍କୁ ବନାରସ ବିଦ୍ୱତ୍ ସଭାକୁ ଡ଼କାଇଥିଲେ । ୫୦୦ମୂର୍ଦ୍ଧନ୍ୟ ବେଦବେଦାନ୍ତବିତ୍ ବିଦ୍ୱାନ୍ ମଣ୍ଡଳୀ ତାଙ୍କର ଶାସ୍ତ୍ରଜ୍ଞାନ ପରୀକ୍ଷା କଲେ । ଦୀର୍ଘ ସାତ ଦିନ ବ୍ୟାପୀ ଅଳଙ୍କୃତ ସଂସ୍କୃତ ଭାଷାରେ ତାଙ୍କର ପ୍ରବଚନ ଶ୍ରବଣ କରି ତାଙ୍କୁ ଜଗତ୍ ଗୁରୁତ୍ତମ ଓ ଭକ୍ତିଯୋଗ ରସାବତାର ଉପାଧି ପ୍ରଦାନ କରିବାକୁ ଅଭିଳାଷା ପ୍ରକଟ କରିଥିଲେ । ଶ୍ରୀ କୃପାଳୁଜୀ ମହାରାଜ ଏହାକୁ ସହର୍ଷ ସ୍ୱୀକାର କରିଥିଲେ ।

ଏକ ସୁନ୍ଦର ସିଂହାସନ ସହିତ ଶ୍ରୀକୃପାଳୁଜୀଙ୍କୁ ଏକ ସୁସଜ୍ଜିତ ହସ୍ତୀ ପୃଷ୍ଠରେ ବସାଇ କାଶୀ ବିଦ୍ୱତ୍ ପରିଷଦ ତାଙ୍କ ଗ୍ରାମ ମନଗଡ଼ରେ ପହୁଞ୍ଚାଇ ଦେଇଥିଲେ । ସେତେବେଳକୁ ୧୯୫୫ରେ ଚିତ୍ରକୂଟରେ ଏବଂ ୧୯୫୬ରେ କାନପୁରରେ ଦୁଇଟି ସତ୍‌ସଙ୍ଗ ସଭା କରାଇ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କର ପ୍ରଚାରିତ ଓ ପ୍ରସାରିତ

ହରିନାମ ସଂକୀର୍ତ୍ତନ ଲୀଳାର ପୁନଃ ପ୍ରସାରଣର ଶୁଭାରମ୍ଭ କରି ସାରିଥିଲେ । ସର୍ବ ପ୍ରଥମେ ସେ ନିଜ ମନଗଢ଼ ଗ୍ରାମରେ ପ୍ରତ୍ୟେକ ବର୍ଷ ଆଶ୍ୱିନ ଦଶହରାଠାରୁ ଆରମ୍ଭ କରି କାର୍ତ୍ତିକ ମାସ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଗାନୁଗା ମାର୍ଗର ଭକ୍ତି ସାଧନ ଶିକ୍ଷା ଶିବିର ଆୟୋଜନ କଲେ । ନିଜେ କିଛି ଦିନ ସତ୍‌ସଙ୍ଗ ସଭାମାନ କରାଇ ଲୀଳା ସଙ୍ଗୀତ(ପ୍ରେମ ରସ ମଦିରା) ଓ ଭକ୍ତି ଶତକ, ବ୍ରଜରସ ମାଧୁରୀ ଇତ୍ୟାଦି ଭକ୍ତି ଗ୍ରନ୍ଥ ନିଜେ ରଚନା କରିଥିଲେ । ତାଙ୍କ ସୁନ୍ଦର ସ୍ୱରରେ ସଜାଇ ଲୀଳା କୀର୍ତ୍ତନ ଓ ବୈଦିକ ଭକ୍ତି ମାର୍ଗର ପ୍ରବଚନ କଲେ । ପରେ ପରେ ଅନେକ ପ୍ରଚାରକ ଓ ପ୍ରଚାରିକା ମାନଙ୍କୁ ନିଜ ପାଖରେ ରଖାଇ ଭକ୍ତି ମାର୍ଗର ଶିକ୍ଷା ଦେଲେ । ଦେଶ ବିଦେଶକୁ ପ୍ରେରଣ କଲେ ।

ଆଜି ପୃଥିବୀର ପ୍ରତି କୋଣ ଅନୁକୋଣରେ ତାଙ୍କର ପ୍ରତିଷ୍ଠିତ ଜଗଦ୍‌ଗୁରୁ କୃପାଳୁ ପରିଷଦର ଶତ ଶତ ଶାଖା ପ୍ରଶାଖା ମଧ୍ୟରେ ଛଅ ମହାଦେଶରେ ରାଗାନୁଗା ଭକ୍ତିମାର୍ଗର ପ୍ରଚାର ପ୍ରସାର ଚାଲିଛି । ଦରିଆପାରି ସୁଦୂର ଅଳକାପୁରୀ ଆମେରିକା ଭଳି ଦେଶରେ ସେ ପହଞ୍ଚି ଶ୍ରୀରାଧାକୃଷ୍ଣଙ୍କ ଅମର ପ୍ରେମର ବାର୍ତ୍ତା ବହୁଆଇ ପାରିଛନ୍ତି । ପୃଥିବୀର ସକଳ ଦେଶର ଭକ୍ତମାନଙ୍କର ତନ, ମନ, ଧନ ଅକୁଣ୍ଠ ସମର୍ପଣ ଓ ସହଯୋଗରେ ଗଢ଼ି ଉଠିଛି ବିଶାଳ ମନ୍ଦିର, ଆଶ୍ରମ, ଶାଖା, ମହିଳା ମହାବିଦ୍ୟାଳୟ, ଅତ୍ୟାଧୁନିକ ଚିକିତ୍ସାଳୟମାନ ସେଇ ମନଗଢ଼, ବର୍ଷାଣା ଓ ଶ୍ରୀବୃନ୍ଦାବନ ଧାମରେ । ଦର୍ଶକ ସଂଖ୍ୟା ଗଣି ଦେଖାଗଲାଣି ଦେଶ ବିଦେଶରୁ ଆସୁଥିବା ପର୍ଯ୍ୟଟକମାନଙ୍କ ସଂଖ୍ୟା ଆଗ୍ରାର ତାଜମହଲଠାରୁ ଶ୍ରୀବୃନ୍ଦାବନରେ ପ୍ରେମ ମନ୍ଦିରର ଦର୍ଶକ ସଂଖ୍ୟା ବହୁତବେଶୀ ।

ଦୀର୍ଘ ୯୨ବର୍ଷର ଦିବ୍ୟଲୀଳା ସେ ସମାପ୍ତ କରି ୨୦୧୩ମସିହା କାର୍ତ୍ତିକ ମାସରେ ବ୍ୟାବହାରିକ ଜଗତରୁ ବିଦାୟ ନେଇ ଅପ୍ରାକୃତ ଲୀଳାରେ ପ୍ରବେଶ କରିଯାଇଛନ୍ତି । ତାଙ୍କର ଅନୁଯାୟୀମାନଙ୍କ ମଧ୍ୟରୁ ଯେଉଁମାନେ ତାଙ୍କୁ ମନ ଦେଇ ଭଲ ପାଉଥିଲେ ତାଙ୍କୁ ସେମାନେ ଅଦୃଶ୍ୟ ରହିଛନ୍ତି । ତଥାପି ଯେଉଁମାନେ ତାଙ୍କୁ ହୃଦୟ ଦେଇ ଭଲ ପାଉଥିଲେ ସେମାନଙ୍କ ପାଇଁ ଶ୍ରୀକୃପାଳୁଜୀ ପ୍ରତିଟି କୃଷ୍ଣପ୍ରେମୀ ହୃଦୟରେ ଆଜି ମଧ୍ୟ ଅନୁଭୂତ ହେଉଛନ୍ତି । ଧନ୍ୟ କହିବା ବୃନ୍ଦାବନ ଧାମକୁ । ଧନ୍ୟ କହିବା ଭକ୍ତିମାର୍ଗର ଗୁରୁଙ୍କୁ । ଧନ୍ୟ କହିବା ରାଗାନୁଗା ପ୍ରେମପଥକୁ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ଦ୍ୱାଦଶ ବୃନ୍ଦାବନ ଲୀଳା ପୁରୁଷ

| କ୍ରମ ସଂଖ୍ୟା | ଲୀଳାପୁରୁଷ | ଲୀଳା ପ୍ରକଟ (ଖ୍ରୀଷ୍ଟାବ୍ଦ) | ଲୀଳା ସମାପ୍ତି (ଖ୍ରୀଷ୍ଟାବ୍ଦ) | ସମୟ (ବର୍ଷ) |
|---|---|---|---|---|
| ୧. | ଶ୍ରୀଧାମ ପରିକ୍ରମା | - | - | - |
| ୨. | ଶ୍ରୀବୃନ୍ଦାଦେବୀ | - | - | - |
| ୩. | ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟ | ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀ | | |
| ୪. | ଶ୍ରୀମାଧବେନ୍ଦ୍ର ପୁରୀ | ୧୩୯୮ | ୧୪୯୦ | ୯୨ |
| ୫. | ଶ୍ରୀ ବଲ୍ଲଭ ଆଚାର୍ଯ୍ୟ | ୧୪୭୯ | ୧୫୩୫ | ୫୨ |
| ୬. | ଶ୍ରୀ ତୁଳସୀ ଦାସ ଗୋସ୍ୱାମୀ | ୧୫୧୧ | ୧୬୩୭ | ୧୨୫ |
| ୭. | ଶ୍ରୀଭକ୍ତ ସାଲବେଗ | ୧୫୯୨ | ୧୬୪୬ | ୫୪ |
| ୮ | ଶ୍ରୀରାମକୃଷ୍ଣ ପରମହଂସ | ୧୮୩୬ | ୧୮୮୬ | ୫୦ |
| ୯. | ଶ୍ରୀଗଓ୍ୱାଁରିଆ ବାବା | ୧୮୪୩ | ୧୯୩୮ | ୯୫ |
| ୧୦. | ଶ୍ରୀସ୍ୱାମୀ ବିବେକାନନ୍ଦ | ୧୮୬୩ | ୧୯୦୨ | ୩୯ |
| ୧୧. | ଶ୍ରୀଯୋଗାନନ୍ଦ ପରମହଂସ | ୧୮୯୩ | ୧୯୫୨ | ୫୯ |
| ୧୨. | ଶ୍ରୀକୃପାଲୁଜୀ ମହାରାଜ | ୧୯୨୨ | ୨୦୧୩ | ୯୧ |

## (ଝ) ଦ୍ୱାଦଶ ବ୍ରଜ ମହାପୁରୁଷଙ୍କ ସମାଧି

### ୧. ଶ୍ରୀ ବିଲ୍ୱମଙ୍ଗଳ:

ପ୍ରଶ୍ନ-୯୭: ଏ ସୃଷ୍ଟି ସ୍ତ୍ରୀ, ପୁରୁଷ, ମହାପୁରୁଷ ଓ ପରମ ପୁରୁଷଙ୍କ ଲୀଳା ଭୂମି । ପରମ ପୁରୁଷ କେବଳ ଜଣେ । ସେ ଜଣକ ଶ୍ରୀକୃଷ୍ଣ । ତଥାପି ବ୍ରଜଭୂମିର କେଉଁ ଭକ୍ତ ଭଗବାନଙ୍କର ପୁରୁଷତ୍ୱକୁ ଆହ୍ୱାନ କରିପାରିଲେ ?

**ହସ୍ତଂ ଉତ୍କ୍ଷିପ୍ତୋ ଯାତୋଽସି     ଏତତ୍ କିଂ ତବ ପୌରୁଷମ୍ ।**
**ହୃଦୟାତ୍ ଯତ୍ ବିନିର୍ଯ୍ଯସ୍ୟସି     ପୁରୁଷଂ ଗଣୟାମି ତେ ।।**

ଉ. ନବମ ଶତାବ୍ଦୀ ଖ୍ରୀଷ୍ଟାବ୍ଦରେ ଆଜିର କେରଳ ରାଜ୍ୟରେ ଭକ୍ତ ବିଲ୍ୱମଙ୍ଗଳ ଏକ ପବିତ୍ର ବ୍ରାହ୍ମଣ ପରିବାରରେ ଭୂମିଷ୍ଠ ହୋଇଥିଲେ । ଅସରନ୍ତି ଧନ ସଂପଦ ଭରା ଖୁସୀବାସୀର ସଂସାର । ସେ ଥିଲେ ଆଜନ୍ମ ଶିବ ଭକ୍ତ । ତଥାପି ତାଙ୍କର ଅଚଳନ୍ତି ସଂପତ୍ତି ତାଙ୍କୁ କୁସଙ୍ଗକୁ ଟାଣି ନେଲା । ଚିନ୍ତାମଣି ବୋଲି ଜଣେ ସୁନ୍ଦରୀ, ଅଭିନେତ୍ରୀର

ଆକର୍ଷଣରେ ମୁଗ୍ଧ ହେଲେ ସେ ଯୌବନରେ ପାଦ ଦେଉ ଦେଉ । ତାଙ୍କୁ ସେ ବିବାହ ମଧ୍ୟ କଲେ । ବ୍ରାହ୍ମଣ ସମାଜର କଠୋର ନିୟମ ଦୁହିଁଙ୍କର ମିଳନ ବାଧକ ସାଜିଲା । ପରିବାରର ବଡ଼ ପୁଅ ଅନ୍ୟ ବର୍ଣ୍ଣ ବା ଜାତିରେ ବିବାହ କଲେ ସେ କନ୍ୟା ଘରକୁ ଆଣିବା ମନା । ପାଣି ଅନ୍ଧ ଓ ପ୍ରେମ ଅନ୍ଧ । ବିଲ୍ୱମଙ୍ଗଳ ରହିଲେ ସିନା ପିତାମାତା ଗୃହ ପରିବାରରେ ମନ କିନ୍ତୁ ରହିଗଲା ପ୍ରେମିକା ପତ୍ନୀ (ଯାହା ବି କୁହନ୍ତୁ) ଚିନ୍ତାମଣିଙ୍କ ପାଖରେ । ସେ ବାରମ୍ବାର ଯାଆସ କରନ୍ତି ପତ୍ନୀଙ୍କ ଗୃହକୁ । ପୁରୁଷାନୁକ୍ରମିକ ସୂତ୍ରରେ ଚିନ୍ତାମଣି ଶାଳଗ୍ରାମ ସେବା ପୂଜା କରୁଥାନ୍ତି ଅତ୍ୟନ୍ତ ଭକ୍ତିପୂତ ଭାବରେ । ବିଧିର ବିଧାନ ବିଚିତ୍ର । ଘଟଣା କ୍ରମେ ଦିନେ ବିଲ୍ୱମଙ୍ଗଳ ଦର୍ଶନ କଲେ ବାଳଗୋପାଳଙ୍କୁ ଚିନ୍ତାମଣିଙ୍କ ଶାଳଗ୍ରାମ ପୂଜନ ବେଳେ । ସେଇଦିନଠାରୁ ଆଉ ସେ ପଛକୁ ଫେରି ଚାହିଁ ନାହାନ୍ତି । କୃଷ୍ଣରୂପ ଦର୍ଶନ, କୃଷ୍ଣ ଗୁଣ ଲୀଳା ଗାନ ହେଲା ତାଙ୍କର ଜୀବନ, ପ୍ରାଣ ସବୁକିଛି ।

ଦିନକର ଘଟଣା । ପିତୃବିୟୋଗ ଘଟିବାର ବର୍ଷେ ପୁରିଛି । ବାର୍ଷିକ ଶ୍ରାଦ୍ଧ ଜଲ୍‌ଦି ସାରିବାକୁ ସେ ପୁରୋହିତଙ୍କୁ କାନେ କାନେ କହୁଥାନ୍ତି । ଶ୍ରାଦ୍ଧ ସରିଲା । ଝଡ଼ ବର୍ଷା ଆରମ୍ଭ ହେଲା । ସେ କିନ୍ତୁ ଚାଲିଲେ ନିଶା କାଳରେ ଚିନ୍ତାମଣିଙ୍କ ସାନ୍ନିଧ୍ୟ ଲାଗି । ବଢ଼ିଲା କୃଷ୍ଣାବେଣୀ ନଦୀ ପାର ହେଲେ ଏକ ଶବକୁ ଆଶ୍ରୟ କରି । ପାଚେରି ଡେ଼ଇଁଲେ ଏକ ଅଜଗର ସର୍ପ ଲାଞ୍ଜକୁ ଧରି । ହଠାତ୍ କିନ୍ତୁ ଚିନ୍ତାମଣିଙ୍କ କଟୂ ଲାଞ୍ଛନାଭରା ବାଣୀ ତାଙ୍କ ହୃଦୟର ଗତି ବଦଳାଇ ଦେଲା । ପୂଜ, ରକ୍ତ, ହାଡ଼, ମାଂସ ଭରା ଦେହ ଆସକ୍ତି ବଦଳି ଗଲା ପତ୍ନୀ ଚିନ୍ତାମଣିଙ୍କ ଉପଦେଶରେ ବିଶ୍ୱ ଚିନ୍ତାମଣିଙ୍କ ପ୍ରେମ ପ୍ରତି ଆସକ୍ତ ହେବାକୁ । ସେତେବେଳକୁ ବ୍ରାହ୍ମଣ କୂଳରେ ଜାତ ବିଲ୍ୱମଙ୍ଗଳ ସୋମଗିରିଙ୍କ ଠାରୁ କୃଷ୍ଣନାମ ଦୀକ୍ଷା ଗ୍ରହଣ କରିସାରିଥାଆନ୍ତି ।

ଅତୀବ ସଂସାର ବୈରାଗ୍ୟ ତାଡ଼ନାରେ ବିଲ୍ୱମଙ୍ଗଳ ଜୀ ଚାଲିଲେ ବ୍ରଜମଣ୍ଡଳ ଅଭିମୁଖେ । ବାଟରେ ପୁଣି ଜଣେ ବୈଷ୍ଣବ ଜମିଦାରଙ୍କ ସୁନ୍ଦରୀ ପତ୍ନୀଙ୍କ ପ୍ରତି ଆସକ୍ତ ହୋଇ ତାଙ୍କ ଦାଣ୍ଡ ପିଣ୍ଡାରେ ବସିଲେ । ଏ ଅବସ୍ଥାରେ ମଧ୍ୟ ଠାକୁରଜୀଙ୍କ କୃପା ଆଦୌ କୁଣ୍ଠିତ ହେଲାନି । ଜମିଦାର ପତ୍ନୀଙ୍କୁ ବେଶଭୂଷା ଅଳଙ୍କାରରେ ସଜାଇ ପଠାଇଲେ ବିଲ୍ୱମଙ୍ଗଳଙ୍କ ପାଖକୁ ବିଷୟ ଭୋଗ ଲାଗି । ବିଲ୍ୱମଙ୍ଗଳଙ୍କର ହୋସ ଆସିଲା ଏବେ । ସୁନ୍ଦରୀ ବୈଷ୍ଣବୀଙ୍କୁ ପ୍ରାର୍ଥନା କଲେ ଗଭାରୁ ଦୁଇଟି ଧାରୁଆ ଗୋଲ କଣ୍ଟା ଛୁଞ୍ଚ ଦେବାକୁ । ଦୁଇ ମୁନିଆଁ କଣ୍ଟାକୁ ଦୁଇ ହାତରେ ଧରି ନିର୍ଦ୍ଦୟ ଭାବରେ ବିନ୍ଧି

ଦେଲେ ନିଜର ଦୁଇ ଚକ୍ଷୁକୁ । ତାଙ୍କୁ ମୁଣ୍ଡିଆ ମାରି ବାହାରକୁ ଆସିଲେ । ନେତ୍ରହୀନ ଅବସ୍ଥାରେ ଯିବେ କୁଆଡ଼େ କେମିତି ? ହାତରେ ଠେଙ୍ଗାଟିଏ ଠକ ଠକ କରି ବାଟ ଚାଲିଲେ । ବ୍ରଜମଣ୍ଡଳ ପାଖାପାଖି ସ୍ଥାନ । ଗୋପାଳ ବାଳକଟିଏ ହାତ ବଢ଼ାଇ ଠେଙ୍ଗା ଧରିଲା । ବାଟ କଢ଼ାଇଲା । ପହଞ୍ଚାଇଲା ବୃନ୍ଦାବନ ଧାମରେ । ଖାଇବା, ପିଇବା, ରହିବା କଥା ସବୁ ବୁଝିଲା । କୃତଜ୍ଞତା ଜଣାଇବାକୁ ସେ ଦିନେ ବାଳକର ହାତ ଧରି ପକାନ୍ତେ ଶରୀରରେ ଅଚିନ୍ତ୍ୟଶକ୍ତିର ଶିହରଣ ଖେଳିଗଲା । ସ୍ମରଣ କଲେ ଚିନ୍ତାମଣି ଜୀବନର ପ୍ରଥମଗୁରୁଙ୍କୁ ଏବଂ ଦୀକ୍ଷା ଗୁରୁ ସୋମଗିରିଙ୍କୁ ।

ବିଲ୍ୱମଙ୍ଗଳଙ୍କର ଏବେ ନବ କଳେବର ହେଲା । ମନ, ବୁଦ୍ଧି, ହୃଦୟ, ଚିନ୍ତନ ଆଦି ସବୁ ବଦଳି ଗଲା । ବର୍ତ୍ତମାନର ଚିନ୍ତାମଣି ଶ୍ରୀକୃଷ୍ଣ ଛାଟିପିଟି ହେଲେ ହାତ ଛଡ଼ାଇ ପଳାଇବାକୁ । କାଳେ ଚିହ୍ନା ପଡ଼ିଯିବେ ଭକ୍ତ ପାଖରେ । ସେତେବେଳେ ବିଲ୍ୱମଙ୍ଗଳ ଏକ ସଂସ୍କୃତ ଶ୍ଳୋକ ଗାଇଥିଲେ । ଆରମ୍ଭ ହେଲା ଗୁରୁବନ୍ଦନା । ପରେ ପରେ ୩୨୮ ଶ୍ଳୋକରେ କୃଷ୍ଣକର୍ଣ୍ଣାମୃତ ନାମକ ଅମର କାବ୍ୟ ଏବଂ କୃଷ୍ଣଭକ୍ତ କଣ୍ଠହାର ଗୋବିନ୍ଦ ଦାମୋଦର ସ୍ତୋତ୍ର ୭୧ ଶ୍ଳୋକରେ । କେରଳଶୃଙ୍ଗେରୀ ମଠର ଲେଖା ଅନୁଯାୟୀ ବିଲ୍ୱମଙ୍ଗଳ ଠାକୁର ପ୍ରଥମେ ଅଦ୍ୱୈତବାଦୀ ଜ୍ଞାନମାର୍ଗୀ ସାଧକ ଥିଲେ । ପରେ କିନ୍ତୁ ଶ୍ରୀବିଷ୍ଣୁ ସ୍ୱାମୀଙ୍କ ପଟ୍ଟଶିଷ୍ୟ ହୋଇ ଦ୍ୱୈତବାଦୀ ହେଲେ । ସୁତରାଂ ସେ ଲେଖିଲେ ଯେ-

**ଅଦ୍ୱୈତ ବିଥି ପଥିକୈଃ ଉପାସ୍ୟାଃ**

**ସ୍ୱାନନ୍ଦ ସିଂହାସନ ଲବ୍ଧ ଦୀକ୍ଷା ॥୧॥**

**ଶଠେନ କେନାପି ହଠେନ ଦାସୀ**

**କୃତା ଗୋପବଧୂ ବିଟେନ ବୟମ୍ ॥୨॥**

ସେ ଗୁରୁବାୟୁର ମନ୍ଦିରରେ ଗୋପାଳକୃଷ୍ଣଙ୍କୁ ସ୍ତୁତି କରି ଲେଖିଲେ ଶ୍ରୀକୃଷ୍ଣ କର୍ଣ୍ଣାମୃତ ମହାକାବ୍ୟ । ତାଙ୍କ ଦୀକ୍ଷାଗୁରୁ ସୋମଗିରି ତାଙ୍କୁ ଖୁସିରେ ଉପାଧି ଦେଲେ ''ଲୀଳା ଶୁକ'' ବୋଲି । ପୁଣି ଆଦେଶ ଦେଲେ ଯେ ସେ ଶ୍ରୀଧାମ ବୃନ୍ଦାବନ ଯାଇ ପରବର୍ତ୍ତୀ କାବ୍ୟ ରଚନା କରନ୍ତୁ । ସେତେବେଳକୁ ଶ୍ରୀଶଙ୍କର ଆଚାର୍ଯ୍ୟଙ୍କ ଅଦ୍ୱୈତପନ୍ଥୀ ରାଜାଶ୍ରୀକୁଳ ଶେଖରଙ୍କ ମୁକୁନ୍ଦ ମାଳା ସ୍ତୋତ୍ର ପ୍ରସିଦ୍ଧ ହୋଇ ସାରିଥାଏ । ପୁଣି ସେ ତିରୁଅନନ୍ତପୁରମ୍‌ର ଅନନ୍ତ ପଦ୍ମନାଭ ମନ୍ଦିରର ପ୍ରଥମ ପୂଜାରୀ ହେବାର ଗୌରବ

ଲାଭ କରିସାରିଥାନ୍ତି । କେରଳ ପୁତେନତିରା ଗ୍ରାମରେ ୧୮ ବର୍ଷ ରହିସାରି ସେ ବୃନ୍ଦାବନରେ ପହଞ୍ଚି ଆଜିର ବୃନ୍ଦାବନ ବସ୍‌ଷ୍ଟାଣ୍ଡ ନିକଟ ବ୍ରହ୍ମକୁଣ୍ଡଠାରେ ଦୀର୍ଘ ୭୦ ବର୍ଷ ସାଧନ ଭଜନ କରିଥିଲେ । ମଥୁରା ଧାମର ଶ୍ରୀଦ୍ୱାରକାଧୀଶ ମନ୍ଦିର ପୂଜାରୀ ମଧ୍ୟ ବିଲ୍ୱମଙ୍ଗଳ ହୋଇଥିଲେ । ତାଙ୍କ ଲେଖା ଶ୍ରୀ ଗୋବିନ୍ଦ ଦାମୋଦର ସ୍ତୋତ୍ର ୭୧ ଶ୍ଳୋକରେ ରୂପ ପରିଗ୍ରହ କରିପାରିଲା । ଆଜି ଯାହା ସଂସ୍କୃତ ଭାରତୀଙ୍କ ଗଳାହାର । ସେ ଓଡ଼ିଶାର ଜୟଦେବ ଗୋସ୍ୱାମୀଙ୍କ ପୂର୍ବବର୍ତ୍ତୀ କୃଷ୍ଣ ଭକ୍ତ । ଦୁହେଁ ପ୍ରଥମ କରି ପ୍ରଚାର କଲେ ବ୍ରଜମଣ୍ଡଳର ନାୟକ ସିନା କୃଷ୍ଣ ଯେ ବ୍ରହ୍ମା, ବିଷ୍ଣୁ, ଶଙ୍କରଙ୍କୁ ନଚାନ୍ତି ମହାମାୟାଙ୍କ ଶକ୍ତିକୁ ଆଧାର କରି । ହେଲେ କୃଷ୍ଣ ଯେ ଶ୍ରୀବୃଷଭାନୁ ନନ୍ଦିନୀ ଶ୍ରୀରାଧାଙ୍କ ହାତର କାଠ କଣ୍ଢେଇ । ସେହି ପରମ ପୁରୁଷ କୃଷ୍ଣଙ୍କୁ ନଚେଇବା ବାଲା ତାଙ୍କ ଅଚିନ୍ତ୍ୟ ଯୋଗମାୟା ଶକ୍ତି ଦ୍ୱାରା । ବୃନ୍ଦାବନରେ ଶ୍ରୀରାଧା ସେବ୍ୟା । ଶ୍ରୀକୃଷ୍ଣ ସେବକ ।

ବିଲ୍ୱମଙ୍ଗଳଙ୍କ ସେଇ ରାଧା ପ୍ରେମର ରସ ଆସ୍ୱାଦନ କଲେ ୧୬ଶ ଶତାବ୍ଦୀଠାରୁ ଷଡ଼ଗୋସ୍ୱାମୀ, ରାୟ ରାମାନନ୍ଦ, ବିଶ୍ୱନାଥ ଚକ୍ରବର୍ତ୍ତୀ, ଭକ୍ତି ବିନୋଦ ଠାକୁର ଇତ୍ୟାଦି ଅନେକ ଗୌଡ଼ୀୟ ସମ୍ପ୍ରଦାୟର ରାଧାକୃଷ୍ଣ ପ୍ରେମୀ ସାଧକ ଗଣ । ବିଲ୍ୱମଙ୍ଗଳଙ୍କ ସମାଧି ବୃନ୍ଦାବନର ଗୋପୀନାଥ ବଜାରରେ ବସଷ୍ଟାଣ୍ଡଠାରୁ କେଶୀଘାଟ ରାସ୍ତାରେ ଯିବାବେଳେ ଦର୍ଶନୀୟ ।

**ବିଶେଷ ଦ୍ରଷ୍ଟବ୍ୟ :** ଇଣ୍ଟରନେଟ୍ ୱେବ୍‌ସାଇଟ୍‌ରୁ ଜଣାଯାଏ ଓଡ଼ିଶା, ବଙ୍ଗଳା, କେରଳ ଆଦି ରାଜ୍ୟରେ ଦଶଜଣ ବିଲ୍ୱମଙ୍ଗଳଙ୍କ ଜନ୍ମ ବୋଲି ଦାବୀ କରାଗଲେ ମଧ୍ୟ ଏଠାରେ ବର୍ଣ୍ଣିତ ମହା ଭକ୍ତକବି ବିଲ୍ୱମଙ୍ଗଳ କେରଳ ରାଜ୍ୟର ସୁପୁତ୍ର ଏବଂ ତିରୁଅନନ୍ତପୁରୁମ୍‌ର ଶ୍ରୀ ଅନନ୍ତ ପଦ୍ମନାଭ ମନ୍ଦିରର ପ୍ରଥମ ପ୍ରତିଷ୍ଠା ପୂଜାରୀ ।

## ୨. ଶ୍ରୀ ପ୍ରବୋଧାନନ୍ଦ ସରସ୍ୱତୀ:

ପ୍ରଶ୍ନ-୯୮: ଅଦ୍ୱୈତବାଦୀ ଶ୍ରୀଶଙ୍କରପନ୍ଥୀ ପ୍ରକାଶାନନ୍ଦ ସରସ୍ୱତୀ କଅଣ ବୃନ୍ଦାବନର କାଳୀଦହରେ ସମାଧିସ୍ଥ ପ୍ରବୋଧାନନ୍ଦ ସରସ୍ୱତୀ କି ?

ଉ. ନା ନା ବିଲକୁଲ ନୁହେଁ । ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ ଅଦ୍ୱୈତବାଦୀ ପ୍ରକାଶାନନ୍ଦ ସରସ୍ୱତୀ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶରଣାଗତି ସ୍ୱୀକାର କରି ପ୍ରବୋଧାନନ୍ଦ ସରସ୍ୱତୀ ହୋଇଥିବା ଏକ ପ୍ରମାଦପୂର୍ଣ୍ଣ ତଥ୍ୟ । ଏହା କେବଳ କେତେକ ସହଜିଆ ବୈଷ୍ଣବମାନଙ୍କ ମତ ।

ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ଦାକ୍ଷିଣାତ୍ୟ ଭ୍ରମଣ କରିବା ବେଳେ ୧୫୧୧ଖ୍ରୀଷ୍ଟାବ୍ଦରେ ଶ୍ରୀରଙ୍ଗମ୍‌ଠାରେ ଶ୍ରୀ ରଙ୍ଗନାଥ ପ୍ରଭୁଙ୍କର ପ୍ରଧାନ ସେବକ ଶ୍ରୀ ଭେଙ୍କଟ ଗୃହରେ ଚାତୁର୍ମାସ୍ୟ କରୁଥାନ୍ତି । ଶ୍ରୀ ଭେଙ୍କଟ ଭଟ୍ଟଙ୍କ ଅନ୍ୟ ଦୁଇ ଭାଇଙ୍କ ନାମ ତିରୁମଲ୍ଲ ଓ ପ୍ରବୋଧାନନ୍ଦ । ପ୍ରଥମେ ପ୍ରବୋଧାନନ୍ଦ ଶ୍ରୀ ସଂପ୍ରଦାୟ ବା ରାମାନୁଜ ସଂପ୍ରଦାୟ ଏବଂ ପରେ ହିଁ ହରିବଂଶ ସଂପ୍ରଦାୟ ଅନ୍ତର୍ଭୁକ୍ତ ହୋଇ ରାଧାକୃଷ୍ଣ ସେବା କଲେ । ସେ ଜଣେ ପ୍ରକାଣ୍ଡ ଧୂରୀଣ ବେଦଜ୍ଞ ପଣ୍ଡିତ ଥିଲେ । ପୁଣି ଉପାସନା ମାର୍ଗରେ ରୁଚି ରଖି ଦକ୍ଷିଣ ଭାରତରେ ବିଖ୍ୟାତ ହୋଇଥିଲେ । ମହାପ୍ରଭୁଙ୍କ ସଂପର୍କରେ ଆସି ଗୌଡ଼ୀୟ ପରମ୍ପରାରେ ଅନୁପ୍ରାଣୀତ ହେଲେ । ସେତେବେଳେ ଭେଙ୍କଟ ଭଟ୍ଟଙ୍କ ପୁତ୍ର ଗୋପାଳ ଭଟ୍ଟ ଅଳ୍ପ ବୟସ୍କ ବାଳକ ଥିଲେ । ତାଙ୍କୁ ପ୍ରବୋଧାନନ୍ଦଜୀ ଗୌଡ଼ୀୟ ଶ୍ରୀମଦ୍ଭାଗବତ ଭକ୍ତି ପାଠ ପଢ଼େଇଲେ ।

ଷଡ଼ଗୋସ୍ୱାମୀଙ୍କ ମଧ୍ୟରେ ଅନ୍ୟତମ ଶ୍ରୀଗୋପାଳ ଭଟ୍ଟ ପୁରୀ ଧାମରେ ଶ୍ରୀମନ୍ ମହାପ୍ରଭୁଙ୍କୁ ଦର୍ଶନ କଲେ । ତାଙ୍କଠାରୁ ଆଦେଶ ପାଇ ବୃନ୍ଦାବନ ଧାମରେ ରହି ଶ୍ରୀରାଧାରମଣ ବିଗ୍ରହଙ୍କୁ ଶାଳଗ୍ରାମ ମୂର୍ତ୍ତିରୁ ପ୍ରକଟ କରାଇଲେ । ପରେ ପରେ ପ୍ରବୋଧାନନ୍ଦ ସରସ୍ୱତୀ ଆସି ପହଞ୍ଚିଲେ ଶ୍ରୀବୃନ୍ଦାବନ ଧାମ । ରାଧାକୃଷ୍ଣ ଲୀଳା ଭୂମିରେ ଅନେକ ସିଦ୍ଧ ଭକ୍ତମାନଙ୍କ ସତ୍‌ସଙ୍ଗ ପ୍ରାପ୍ତ ହେଲେ । ତାଙ୍କ ହୃଦୟ ପ୍ରେମ ରସରେ ଦୁଇକୂଳ ଖାଇ ବହି ଚାଲିଲା । ତାଙ୍କ ପବିତ୍ର ଲେଖନୀରୁ ଝରିଲା ଅମର କାବ୍ୟ ଶ୍ରୀ ବୃନ୍ଦାବନ ମହିମାମୃତ, ନବଦ୍ୱୀପ ଶତକ, ଚୈତନ୍ୟ ଚନ୍ଦ୍ରାମୃତ, ରାଧାରସ ସୁଧାନିଧି ଓ ସଙ୍ଗୀତ ମାଧବ । ସେ କୃଷ୍ଣଲୀଳାରେ ତୁଙ୍ଗବିଦ୍ୟା ଗୋପୀ ଥିଲେ । ଏବେ ତାଙ୍କର ସମାଧି ବୃନ୍ଦାବନର କାଳୀୟ ଘାଟରେ କଦମ୍ବ ବୃକ୍ଷମୂଳରେ ଦର୍ଶନୀୟ ।

**୩. ସନ୍ଥ ସୁରଦାସ:**

ପ୍ରଶ୍ନ-୯୯ : ବ୍ରଜଧାମରେ ପ୍ରାୟ ପାଖାପାଖି ସମୟରେ ସୁରଦାସ ନାମରେ ଦୁଇ ଜଣ କୃଷ୍ଣପ୍ରେମୀ ପ୍ରକଟ ହୋଇଥିଲେ । ଜଣକର ଜନ୍ମଭୂମି ମଥୁରା କିନ୍ତୁ କର୍ମଭୂମି ମୋଗଲ ସମ୍ରାଟ ଆକବରଙ୍କ ଦରବାର । ସେ ଭକ୍ତ ସୁରଦାସ । ଅନ୍ୟ ସୁରଦାସ ହେଲେ ଆଜନ୍ମ ନେତ୍ରହୀନ ସନ୍ଥ ସୁରଦାସ । ସନ୍ଥ ସୁରଦାସଙ୍କର ଜନ୍ମଭୂମି ଓ ଲୀଳାଭୂମି ବିଷୟରେ ଇତିହାସ କଅଣ କୁହେ ?

ଉ. ସେହି ଆଜନ୍ମ ନେତ୍ରହୀନ ସନ୍ଥ ସୁରଦାସଙ୍କ ଜନ୍ମ ଆଗ୍ରା ସହର ନିକଟସ୍ଥ ରୁଙ୍କଟା । ପ୍ରକଟ କାଳ ୧୪୭୮ମସିହା । ଜନ୍ମ ଦିନରୁ ସଂସାର ଭୋଗ ଆସକ୍ତି

ପରାଙ୍‌ମୁଖ । ପିତାମାତାଙ୍କ ନା ପସନ୍ଦ ହେତୁ ଛଅ ବର୍ଷରେ ଗୃହତ୍ୟାଗ । ଶ୍ରୀ ଯମୁନା ନଦୀକୂଳରେ କୁଟୀର କରି ସେ ନିଜ ଆଶ୍ରମ ସ୍ଥାପନ କଲେ । ସାଧନ ଭଜନ ନିର୍ବାଧରେ ଏକାନ୍ତରେ ଚାଲିଲା । ସୁଲଳିତ ସୁମଧୁର ସଙ୍ଗୀତରେ ଆଖପାଖ ବନ ଉପବନ ବୃକ୍ଷଲତା ଓ ପଶୁପକ୍ଷୀ ମୁଗ୍ଧ ହେଲେ । ଶ୍ରୀ ଶ୍ୟାମା ଶ୍ୟାମଙ୍କୁ ତର ସହିଲା ନାହିଁ ଦର୍ଶନ ଦେବାକୁ । ଠାକୁରଜୀ କୃପାକରି ତାଙ୍କର ନେତ୍ର ଜ୍ୟୋତି ଫେରାଇଦେଲେ । ଶ୍ରୀରାଧା ମଧ୍ୟ ହସ୍ତ ଉତ୍ତୋଳନ କଲେ କିଛି ଦେବାକୁ । ସେ ସୁର ଦାସଙ୍କୁ କିଛି ମାଗିବାକୁ କହିଲେ । ସୁର ଦାସ କିନ୍ତୁ ଅଦ୍ଭୁଆ ବର ମାଗି ବସିଲେ । ଯେଉଁ ନେତ୍ରରେ ସେ ଶ୍ରୀ ଭଗବାନ ଓ ଶ୍ରୀ ଭଗବତୀ ଦର୍ଶନ କଲେଣି ସେଥିରେ ଆଉ ସଂସାର ଦେଖିବା ଲୋଡ଼ା ନାହିଁ । ଅତଏବ ବର ଯଦି ଦେବେ ତେବେ ତାଙ୍କୁ ପୁଣି ନେତ୍ରଜ୍ୟୋତି ବିହୀନ କରିବାର କୃପା କରନ୍ତୁ । ଭକ୍ତ ପାଖରେ ସର୍ବଦା ଭଗବାନ ହାର ମାନନ୍ତି । ଏଠାରେ ମଧ୍ୟ ହାର ମାନିଲେ । ଦୃଷ୍ଟିଶକ୍ତି ପୁଣି ଫେରାଇ ନେଲେ । ସେହି ଦିନରୁ ନେତ୍ରଜ୍ୟୋତି ହୀନ ଲୋକଙ୍କୁ ଭାରତବର୍ଷରେ ସୁରଦାସ କୁହାଯାଉଛି ।

ପ୍ରଭୁ କୃପାବଳରେ ସେ ଶ୍ରୀମଭାଗବତ ଶୁଣି ଶୁଣି ମୁଖସ୍ଥ କରିଦେଲେ । ପୁଷ୍ଟିମାର୍ଗୀୟ ସନ୍ଥ ଶ୍ରୀବଲ୍ଲଭ ଆଚାର୍ଯ୍ୟଙ୍କୁ ଘରେ ବସି ୧୮ ବର୍ଷ ବୟସରେ ଗୌଘାଟ ଯମୁନା କୂଳରେ ପ୍ରାପ୍ତ ହେଲେ । କବୀର ଦାସଙ୍କ ନିର୍ଗୁଣ ଭକ୍ତିରେ ଏବେ ସଗୁଣ ରଙ୍ଗ ଲାଗିଲା । ସଗୁଣ ଭକ୍ତି ମାର୍ଗରେ ଅନେକ ଭକ୍ତ ସାଧନା କରି ଅଷ୍ଟଛାପ କବି ବୋଲାଇଲେ । ସେମାନଙ୍କର ଦିଗ୍‌ଦର୍ଶକ ସେଇ ସନ୍ଥ ସୁରଦାସ । ତାଙ୍କର କାଳଜୟୀ କାବ୍ୟ ସୁରସାଗର ଆଜିମଧ୍ୟ କୃଷ୍ଣଭକ୍ତଙ୍କ କଣ୍ଠହାର । ଭକ୍ତି ଧର୍ମରେ ପୁଷ୍ଟିମାର୍ଗ ବାତ୍ସଲ୍ୟ ଭାବର ସାଧନା । ସେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର ଏଭଳି ବାତ୍ସଲ୍ୟ ପ୍ରେମର ଉଦ୍‌ଗାର କଲେ ଯେଭଳି ବର୍ଣ୍ଣନା କବିକୁଳ ତିଳକ କାଳିଦାସ, ଭବଭୂତି ଇତ୍ୟାଦିଙ୍କ କୃତିକୁ ବଳିଗଲା । ସେ ହେଲେ ବାତ୍ସଲ୍ୟ ରସ ବର୍ଣ୍ଣନା କବିମାନଙ୍କର ସମ୍ରାଟ୍ ।

ସନ୍ଥ ସୁରଦାସ ଲେଖନ୍ତି ଯେମିତି ଗାଆନ୍ତି ମଧ୍ୟ ସେମିତି । ତାଙ୍କ ସଙ୍ଗୀତ ଶ୍ରବଣ କରି ମୋଗଲ ସମ୍ରାଟ ମଧ୍ୟ ମୁଗ୍ଧ ହୋଇ ଅନେକ ଧନ ଦୌଲତ ପୁରସ୍କାର ପ୍ରଦାନ କରୁଥିଲେ । ସୁର ଦାସଙ୍କ ଭଜନସ୍ଥଳୀ ଏବେ ମଥୁରା ସହର ମଧ୍ୟରେ ଦର୍ଶନୀୟ । ତାଙ୍କର ସମାଧି ଆଗ୍ରା ସହରରେ ଆଜି ମଧ୍ୟ ଦାର୍ଶନିକ, ଭାବୁକ, ଭକ୍ତମାନଙ୍କର ହୃଦୟରେ ଆଲୋଡ଼ନ ସୃଷ୍ଟି କରେ । ୧୫୮୪ ଖ୍ରୀଷ୍ଟାବ୍ଦରେ ୧୦୬ ବର୍ଷରେ ମରଶରୀର ତ୍ୟାଗ କରି 'ଲୀଳା ପ୍ରବିଷ୍ଟ ହେଲେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ୪. ସ୍ୱାମୀ ଶ୍ରୀହରିଦାସ (ନିଧୁବନ):

ପ୍ରଶ୍ନ-୧୦୦: ମଥୁରା ଧାମ ନିକଟବର୍ତ୍ତୀ ଆଲିଗଡ଼ର ହରିଦାସ ପୁରରେ ଦ୍ୱାପର ଯୁଗର ଶ୍ରୀ ଗର୍ଗ ଆଚାର୍ଯ୍ୟଙ୍କ ବଂଶରେ ଭକ୍ତ ହରିଦାସଙ୍କର ପ୍ରାକଟ୍ୟ ହୋଇଥିଲା । ସେ ଖ୍ରୀ.୧୫୧୨ରେ ପିତା ଆସୁଧୀର ଓ ମାତା ଚିତ୍ରାଦେବୀଙ୍କ କୋଳରେ ପବିତ୍ର ଶ୍ରୀରାଧାଷ୍ଟମୀ ତିଥିରେ ଜନ୍ମନେଲେ । ସେ ଥିଲେ ଆଜନ୍ମ ବୈରାଗୀ । ବୈଷ୍ଣବ ସଙ୍ଗ ବୈଷ୍ଣବ ସେବା ସୁଯୋଗ ଶୈଶବରୁ ସେ ଆଦରି ନେଲେ । ଗୁରୁ ବରଣ କଲେ ଭାଇ ମର୍ଦ୍ଦାନାଙ୍କୁ । ସେ ପୁଣି ସଙ୍ଗୀତ ବିଦ୍ୟାରେ ଜଣେ ଧୂରୀଣ  ସିଦ୍ଧ ସାଧକ ରୂପରେ ପରିଗଣିତ ହେଲେ କିପରି ?

ଉ. ସାଧନାର ସ୍ଥଳୀ ରୂପରେ ବାଛିନେଲେ ସ୍ୱାମୀ ହରିଦାସ ଜୀ ଶ୍ରୀବୃନ୍ଦାବନ ଧାମକୁ । ସେତେବେଳେ ଭୟଙ୍କର ପଶୁ ପକ୍ଷୀ ରହୁଥିବା ଘନ ଜଙ୍ଗଲପୂର୍ଣ୍ଣ ବୃନ୍ଦାବନରେ ସାହସ କରି ରହିବା କିଛି କମ୍ କଥା ନଥିଲା । ତଥାପି କୌଣସି ଶରୀରୀ ଅଶରୀରୀ ଦେବତା ଭୂତ, ପ୍ରେତ, ପିଶାଚ ଆଦିଙ୍କ ଭୟକୁ ଭ୍ରୁକ୍ଷେପ ନ କରି ସେ ତାଙ୍କର ଦିବ୍ୟ ସଙ୍ଗୀତ ଶ୍ରବଣ କରାଇଚାଲିଲେ ପ୍ରିୟତମ ଶ୍ରୀକୃଷ୍ଣଙ୍କୁ । କି ଆଶ୍ଚର୍ଯ୍ୟର କଥା !! କ୍ରମେ ପଶୁପକ୍ଷୀ, ବୃକ୍ଷ, ଲତା, ତରୁ, ତୃଣ ଗୁଳ୍ମ ସେହି ଅଲୌକିକ ସଙ୍ଗୀତର ସ୍ୱର ମୂର୍ଚ୍ଛନାରେ ତନ୍ମୟ ହେଉଥାଆନ୍ତି । ସେହି ଦିବ୍ୟ ସାଧକଙ୍କଠାରୁ ପ୍ରସିଦ୍ଧ ଦୁଇ ସଙ୍ଗୀତଜ୍ଞ ବେଜୁ ବାଓରା ଓ ମୋଗଲ ସମ୍ରାଟ୍ ଆକବରଙ୍କର  ରାଜସଭାର ତାନ୍‌ସେନ୍ ଦିବ୍ୟ ସଙ୍ଗୀତ ଶିକ୍ଷା କରି ସାରା ଜଗତ ବିଖ୍ୟାତ ହୋଇଥିଲେ ।

ଏକଦା ରାଜାଙ୍କ ଦରବାରରେ ପରୀକ୍ଷାବେଳେ ତାଙ୍କ ଶିଷ୍ୟ ବେଜୁ ବାଓରାଙ୍କ ସଙ୍ଗୀତ ମୂର୍ଚ୍ଛନାରେ ମାର୍ବଲ ପଥର ତରଳି ଯାଇଥିଲା । ଆକବରଙ୍କ ରାଜସଭାରେ ତାନସେନ୍ ଦୀପକ ରାଗରେ ସଙ୍ଗୀତ ଗାନ କରି ଲିଭି ଯାଇଥିବା ଦୀପକୁ ମଧ୍ୟ ଜଳେଇ ଦେଇ ପାରୁଥିଲେ । ଆକାଶରେ ମେଘମାନଙ୍କୁ ଆକର୍ଷଣ କରାଇ ମେଘ ମହ୍ଲାର ସ୍ୱରରେ ସଙ୍ଗୀତ ଗାନ କରାଇ ଅଦିନରେ ମଧ୍ୟ ବର୍ଷା କରାଇପାରୁଥିଲେ । ହିଣ୍ଡୋଲା ରାଗରେ ସଙ୍ଗୀତ ଗାନ କରି ଶୂନ୍ୟରେ ଦୋଳିକୁ ଝୁଲାଇ ପାରିବା ତାନସେନ୍‌ଙ୍କ ପକ୍ଷେ କିଛି କମ୍ ଗୌରବର କଥା ନୁହେଁ । ଥରେ ଅର୍ଦ୍ଧରାତ୍ରରେ ସମ୍ରାଟ ଆକବର ଓ ତାନସେନ  ବୃନ୍ଦାବନରେ ଏହି ନିଧୁବନ ଜଙ୍ଗଲରେ ଲୁଚି ରହି ତାଙ୍କର ସଙ୍ଗୀତ ଶ୍ରବଣ କରି ନିଜ ଜୀବନକୁ ଧନ୍ୟ କରିଥିଲେ ।

ହରିଦାସଙ୍କର ସଙ୍ଗୀତକୁ ଶ୍ରବଣ କରିବା ପାଇଁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଅନେକ କାଳରୁ ସେଠାରେ ପୋତିହୋଇ ରହିଥିବା ମାଟିତଳୁ ଉଠିଆସନ୍ତି । ତାଙ୍କ ଅଲକ୍ଷ୍ୟରେ ଶ୍ରୀକୃଷ୍ଣ ସଙ୍ଗୀତ ଶ୍ରବଣ କରୁଥିବା କଥା ସେ ଜାଣିପାରିଲେ । ଠାକୁରଜୀଙ୍କ ଆଦେଶ କ୍ରମେ ଅନେକ ଗଭୀରର ମାଟିଖୋଳି ତାଙ୍କୁ ପ୍ରକଟ କରାଇଲେ । ତାଙ୍କର ନାମ ରଖିଲେ ଶ୍ରୀ ବିହାରୀ ଜୀ । ଶ୍ରୀବୃନ୍ଦାବନର ବିହାରୀଜୀଙ୍କ ମୂର୍ତ୍ତି ଏବେ ଆମର ଦର୍ଶନୀୟ । ସେହି ମାଟି ଖୋଳା କୁଣ୍ଡଟି ମଧ୍ୟ ଆଜିଯାଏଁ ସଂରକ୍ଷିତ କରି ରଖାଯାଇଛି । ନାମ ତାର ନିଧୁବନ ସ୍ଥିତ ଶ୍ରୀବିଶାଖା କୁଣ୍ଡ ।

ଶ୍ରୀହରି ଦାସଙ୍କର ସୁନ୍ଦର ସମାଧିଟିଏ ନିଧୁବନରେ ଏବେ ନିର୍ମିତ ହୋଇଛି । କ୍ରମଶଃ ତାଙ୍କ ପୁତ, ପ୍ରୌତ୍ର, ପ୍ରପୋତ୍ର ଆଦି ଶ୍ରୀ ବିହାରଜୀଙ୍କ ସେବା ଆରାଧନା କରି ସେଇ ନିଧୁବନରେ ନିଜ ନିଜ ଦେହ ଅବସାନ ପରେ ସମାଧିସ୍ଥ ହୋଇଥିବା ଦର୍ଶନ କରନ୍ତୁ । ପରିଣତ ବୟସରେ ୯୫ ବର୍ଷ ଆୟୁଷ ବଂଚି ରହି ୧୬୦୭ ମସିହାରେ ସ୍ୱାମୀ ହରିଦାସ ଲୀଳା ପ୍ରବେଶ କରିଛନ୍ତି । ବ୍ରଜ ରସିକ ସନ୍ଥମାନେ କୁହନ୍ତି ଯେ ଶ୍ରୀ ଲଳିତା ସଖୀ ହିଁ ସ୍ୱାମୀ ଶ୍ରୀହରିଦାସ ରୂପରେ ଲୀଳା କରିଥିଲେ ।

## ୫. ରସ ଖାଁ (ଖାନ୍):

ପ୍ରଶ୍ନ-୧୦୧ : ଷୋଡ଼ଶ ଶତାବ୍ଦୀ ସମୟ । ସେତେବେଳେ ଦିଲ୍ଲୀ ସିଂହାସନରେ ମୋଗଲ ସମ୍ରାଟ ଆକବର ବସିଥାନ୍ତି । ୧୫୪୮ ଖ୍ରୀ:ରେ ଦିଲ୍ଲୀରେ ଏକ ବିତ୍ତଶାଳୀ ମୁସଲମାନ ପରିବାରରେ ସୟେଦ୍ ଇବ୍ରାହିମ୍ ଜନ୍ମହେଲେ । ଇସ୍‌ଲାମ ଧର୍ମରେ ରାମ, କୃଷ୍ଣ ଓ ନାରାୟଣ ଇତ୍ୟାଦି ଠାକୁରଙ୍କ ମୂର୍ତ୍ତି ଦର୍ଶନରେ ଅରୁଚି ହୁଏ । ଇବ୍ରାହିମ୍ ଏଭଳି କି କାର୍ଯ୍ୟ କଲେ ଯେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ନିଜ ହସ୍ତରେ ତାଙ୍କର ଦାହ ସଂସ୍କାର ଏବଂ ଅନ୍ତ୍ୟେଷ୍ଟି କ୍ରିୟା କରିଥିଲେ ?

ଉ: ଦିଲ୍ଲୀରେ କୌଣସି ଏକ ସ୍ଥାନରେ ଶ୍ରୀମଭାଗବତ ଗ୍ରନ୍ଥ ପ୍ରବଚନ କାର୍ଯ୍ୟ ଚାଲୁଥାଏ । ଦୈବାତ୍ ଯୁବକ ଇବ୍ରାହିମ୍ ସେଠାରେ ପହଞ୍ଚିଗଲେ । ପ୍ରବଚକ ମହାଶୟ ଶ୍ରୀକୃଷ୍ଣଙ୍କର ଦିବ୍ୟ ରୂପ, ଗୁଣ, ଲୀଳା ବଡ଼ ଭାବପୂର୍ଣ୍ଣ ଭାଷାରେ ବର୍ଣ୍ଣନା କରୁଥାନ୍ତି । ପ୍ରଥମ ଥର ପ୍ରବଚନରେ ଶ୍ରୀକୃଷ୍ଣ କଥା ଶ୍ରବଣ କରୁ କରୁ ଭାବାବିଷ୍ଟ ହୋଇଗଲେ ଯୁବକଜଣକ । ପ୍ରବଚନ ଶେଷରେ ଏକାନ୍ତରେ ଦେଖାକଲେ ପ୍ରବଚକ ମହାଶୟଙ୍କୁ । ଠିକଣା ପଚାରିଲେ ଶ୍ରୀକୃଷ୍ଣଙ୍କର । ଶ୍ରୀବୃନ୍ଦାବନ ଧାମ ବଣ ଜଙ୍ଗଲରେ ମୁରଲୀ ବଜାଇ ସେ ଗୋପାଳ ବେଶରେ ବୁଲୁଥାନ୍ତି ବୋଲି ଜାଣିବାକୁ ପାଇଲେ । ଷୋଳଅଣା ବିଶ୍ୱାସ

ହୋଇଗଲା ତାଙ୍କର । ଘର, ଦ୍ୱାର, ସଂପତ୍ତି, ବାଡ଼ି ପରିବାର ସବୁ ପାଶୋର ଗଲେ । ଅନେକ ଦିନ ପାଦରେ ଚାଲି ଚାଲି ଅଖିଆ, ଅପିଆ, ଅଶୁଆ ଅବସ୍ଥାରେ ଭେଟିଲେ ଶ୍ରୀଗିରିରାଜ ଗୋବର୍ଦ୍ଧନ ପୁଛରୀ ନାମକ ସ୍ଥାନରେ ସନ୍ଥ ଶ୍ରୀବିଠଲନାଥଙ୍କୁ ।

ସାଧୁ ବିଠଲନାଥ ଦେଖିଲେ ଆଗନ୍ତୁକ ଜଣକ ଶ୍ରୀକୃଷ୍ଣଙ୍କର ବାତ୍ସଲ୍ୟ ପ୍ରେମର ଜଣେ ଉପଯୁକ୍ତ ସତ୍‌ପାତ୍ର । ତାଙ୍କୁ ତୁରନ୍ତ ଗୋବିନ୍ଦ କୁଣ୍ଡରେ ସ୍ନାନ ଶୌଚ ଇତ୍ୟାଦି କରାଇଲେ । ଶିଷ୍ୟ ଭାବରେ ସ୍ୱୀକାର କଲେ । ମନ୍ତ୍ରଦୀକ୍ଷା ଦେଲେ । ଆରମ୍ଭ ହେଲା ଇବ୍ରାହିମ୍‌ଙ୍କର କୃଷ୍ଣପ୍ରେମ ସାଧନା । ସଦ୍‌ଗୁରୁଙ୍କ ଅପାରକୃପାରୁ ତାଙ୍କ ହୃଦୟରେ ବିରଳ ବାତ୍ସଲ୍ୟ ପ୍ରେମରସର ସଂଚାର ହେଲା । ଗୁରୁ ନାମଟିଏ ବାଛିଦେଲେ ରସଖାଁ ବା ରସ ଖାନ୍ । ବ୍ରଜଭାଷାରେ ଖାନ୍ ଶବ୍ଦର ଅର୍ଥ ଖଣି । ବାସ୍ତବରେ ଗୁରୁ ଦେଖିଲେ ତାଙ୍କର ପ୍ରେମରସର ଖଣି ।

ରସ ଖାଁଙ୍କର ସମଗ୍ର ସାଧନାକାଳ ବ୍ରଜମଣ୍ଡଳରେ ଅତିବାହିତ ହେଲା । ଭାଗବତ ରସଧାରାରେ ସେ ଏପରି ବୁଡ଼ିଗଲେ ଯେ ପାର୍ଶିଭାଷାରେ ସମଗ୍ର ଭାଗବତ ଗ୍ରନ୍ଥର ଅନୁବାଦ କଲେ । ସେତେବେଳକୁ ଭାରତୀୟ ସାହିତ୍ୟର ରୀତିଯୁଗର କାଳ । ସେ କିନ୍ତୁ ଶବ୍ଦ କିମ୍ବା ଅର୍ଥ ଅଳଙ୍କାର ମୁକ୍ତ ରଚନା କରିଗଲେ । ରସ ଖାଁ ରଚନାବଳୀ ଓ ପ୍ରେମ ବାଟିକା ଇତ୍ୟାଦି । ଉର୍ଦ୍ଦୁ ଭାଷାର ରସ ସାହିତ୍ୟ ସବୁ ତାଙ୍କର ଅମରକୃତି । ବ୍ରଜଭାଷାରେ ଦୋହା ଓ ପଦାବଳୀ ଆକାରରେ ସେ ଶ୍ରୀକୃଷ୍ଣଙ୍କର ବାଳଲୀଳା, ଚୀରହରଣ ଲୀଳା, କୁଞ୍ଜଲୀଳା, ରାସଲୀଳା ଓ ଦାନ ଲୀଳା ଆଦି ଅନେକ ସରସ ଓ ମନୋରମ ରଚନା ସୃଷ୍ଟି କରିଗଲେ । ଭାଷାର ମାର୍ମିକତା ଓ ଶବ୍ଦଚୟନ ସହିତ ଭାବବ୍ୟଞ୍ଜକ ଶୈଳୀ ତାଙ୍କର ସଂପୂର୍ଣ୍ଣ ମୌଳିକ ସୃଷ୍ଟି । ତାଙ୍କର ସବୁ ରଚନାରେ ଭରି ରହିଥାଏ କୃଷ୍ଣ ତନ୍ମୟତା, ଭାବବିହ୍ୱଳତା ଏବଂ କୃଷ୍ଣ ଆସକ୍ତି ଉଲ୍ଲାସ ଭରା ଅଲୌକିକ ବିଷୟବସ୍ତୁ ।

କୁହାଯାଏ ତାଙ୍କ ରଚନା ବିଶ୍ୱାସ ଓ ଶ୍ରଦ୍ଧା ସହ ପାଠ କରୁ କରୁ ପାଠକ ପାଠିକାଙ୍କର ହୃଦୟରେ କୃଷ୍ଣଭକ୍ତି ଭରିଯାଏ । ଥରେ ସେ ଶ୍ରୀବୃନ୍ଦାବନର ବାଙ୍କେବିହାରୀ ମନ୍ଦିରରେ ଦର୍ଶନ ଲାଗି ପହଞ୍ଚିଲେ । ପୂଜାରୀ କିନ୍ତୁ ମନ୍ଦିରରେ ପଶିବାକୁ ବାରଣ କଲେ ଅଣ ହିନ୍ଦୁ ବୋଲି କହି । ଭକ୍ତ ରସ ଖାଁ କିନ୍ତୁ ଛାଡ଼ିବା ଲୋକ ନୁହନ୍ତି । ସେଇ ମନ୍ଦିର ଦ୍ୱାରରେ ପଡ଼ି ରହିଲେ ତିନିଦିନ ଓ ତିନିରାତି । ଦେଉଳ ପ୍ରତ୍ୟହ ଖୋଲାଯାଏ । ବନ୍ଦ ହୁଏ । କେହି ବୁଝନ୍ତିନି ତାଙ୍କ ହୃଦୟର ବେଦନା । ବାଙ୍କବିହାରୀଙ୍କ ହୃଦୟ କିନ୍ତୁ

ଚରଳି ଗଲା । ସେଦିନ ଅର୍ଦ୍ଧରାତ୍ରରେ ଦଧି, ଅନ୍ନ ଏକ ଚାନ୍ଦି କଟୋରାରେ ଧରି ଭକ୍ତକୁ ଯାଚିଲେ । ଖୁଆଇ ଦେଲେ । ଦର୍ଶନ, ସ୍ପର୍ଶ, ଆଲିଙ୍ଗନ ଦେଇ କୃତାର୍ଥ କଲେ । ପରଦିନ ସକାଳେ ପୂଜାରୀ ମହାଶୟ ବିହାରୀଜୀଙ୍କ ମୁଖରେ ଦଧି, ଅନ୍ନ ଲାଗିଥିବା ଦେଖି ଆଶ୍ଚର୍ଯ୍ୟ ହେଲେ । ପୁଣି ଭୋଗ ଲାଗିଥିବା ଚାନ୍ଦି କଟୋରାଟି ମନ୍ଦିରରେ ନଥାଇ ରସ ଖାଁଙ୍କ ନିକଟରେ ଥିବା ଦେଖି ବୁଝିଗଲେ କଥାର ରହସ୍ୟ । ଭକ୍ତ ଭଗବାନଙ୍କର ଅଲୌକିକ ଲୀଳା । ରସ ଖାଁ ଅନୁଭବ କଲେ ଭଗବାନଙ୍କର ଭକ୍ତବତ୍ସଳତା ।

ଭକ୍ତ ରସ ଖାଁ କେବଳ ଯେ କୃଷ୍ଣ କଥା ଓ କୃଷ୍ଣ ଲୀଳାକୁ ଭଲ ପାଉଥିଲେ ତାହା ନୁହେଁ କୃଷ୍ଣଙ୍କ ପରମଧାମ ଶ୍ରୀବୃନ୍ଦାବନକୁ କିନ୍ତୁ ସବୁଠାରୁ ବେଶୀ ଆଦର କରୁଥିଲେ । କହୁଥିଲେ, ''ମୋର ପାଞ୍ଚ ମୁକ୍ତି ଦରକାର ନାହିଁ । ମୋତେ ମନୁଷ୍ୟ ଜନ୍ମ ମିଳିଲେ ମୁଁ ନନ୍ଦ ଗାଁଓରେ ଗୋପାଳ ହୋଇ ଗୋଚାରଣ କରିବି । ପଶୁ ଜନ୍ମ ମିଳିଲେ ସେହିଁ ଗାଁରେ ଗାଈଟିଏ ହୋଇ ଦୁଧ ଦେଲେ ଠାକୁରଙ୍କ ସେବାରେ ଲାଗିବ । ପକ୍ଷୀ ଜନ୍ମ ମିଳିଲେ ଶୁକ, ଶାରୀ କିମ୍ବା ମୟୂର ହୋଇ ତାଙ୍କ ଭକ୍ତମାନଙ୍କର ସେବା କରିବି । ଲୀଳା ଦର୍ଶନ କରିବି । ଶ୍ରୀବ୍ରଜଧାମର ରେଣୁ ବା ଧୂଳି ହେଲେ କୃଷ୍ଣ ଭକ୍ତଙ୍କର ଚରଣ ସ୍ପର୍ଶ କରୁଥିବି । ମୋର ଅନ୍ୟ କିଛି ସ୍ୱର୍ଗ କିମ୍ବା ବୈକୁଣ୍ଠ ସୁଖ ଲୋଡ଼ାନାହିଁ ।''

୧୬୨୮ ମସିହାରେ ପ୍ରସିଦ୍ଧ ସନ୍ଥ ରସଖାଁ ମର ଦେହ ତ୍ୟାଗ କରି ଲୀଳା ପ୍ରବେଶ କଲେ ମହାବନର ରମଣରେତି ଠାରେ । କୁହାଯାଏ ଯେ ଭଗବାନ ଶ୍ରୀକୃଷ୍ଣ ସ୍ୱହସ୍ତରେ ତାଙ୍କର ଦାହ ସଂସ୍କାର ଓ ଅନ୍ତ୍ୟେଷ୍ଟି କ୍ରିୟା କରିଥିଲେ । ଭକ୍ତି ଧର୍ମ ଓ ଭକ୍ତ ପାଇଁ ଜାତି, ଧର୍ମ, ବର୍ଣ୍ଣ ଓ ସଂପ୍ରଦାୟର ବାରଣ ନଥାଏ ବୋଲି ଠାକୁରଜୀ ସଂସାରକୁ ସବୁଦିନ ପାଇଁ ଜଣାଇଦେଲେ ।

ରସ ଖାନ୍‌ଙ୍କର ସରସ ସମାଧି ସହିତ ରସରାଜ ଶ୍ରୀକୃଷ୍ଣଙ୍କୁ ବାରମ୍ବାର ନମସ୍କାର ।

### ୬. ବଳଦେବ ବିଦ୍ୟାଭୂଷଣ:

ପ୍ରଶ୍ନ-୧୦୨: ଶ୍ରୀ ଜୟଦେବ ଗୋସ୍ୱାମୀ ଓ ଓଡ଼ିଆ ବାବାଙ୍କ ବ୍ୟତୀତ ଆଉ କେଉଁ ସ୍ୱନାମଧନ୍ୟ ଓଡ଼ିଆ ମହାପୁରୁଷ ବ୍ରଜମଣ୍ଡଳ ଧାମରେ କୃଷ୍ଣପ୍ରେମ ନିଜେ ଆସ୍ୱାଦନ କରି ଅନ୍ୟ ଅଗଣିତ କୃଷ୍ଣପ୍ରେମୀଙ୍କୁ ଆସ୍ୱାଦନ କରାଇଛନ୍ତି କି ?

ଉ: ୧୭୦୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ପ୍ରକଟ ହେଲେ ଶ୍ରୀ ବଳଦେବ ବିଦ୍ୟାଭୂଷଣ । ଶୈଶବ କାଳରୁ ସଂସ୍କୃତ ସାହିତ୍ୟ, ଅଳଙ୍କାର ଶାସ୍ତ୍ର,

ବ୍ୟାକରଣ ଆଦି ତାଙ୍କ ମନକୁ ଆକର୍ଷଣ କରିନେଲା । ଦକ୍ଷିଣ ଭାରତରେ ସଂସ୍କୃତ ସାହିତ୍ୟର ଭାରି ଆଦର । ସେଠାରେ ସେ ମଧ୍ୱ ସଂପ୍ରଦାୟର ତତ୍ତ୍ୱବାଦୀ ସାହିତ୍ୟେ ଅଧ୍ୟୟନ କଲେ । ତର୍କଶାସ୍ତ୍ରରେ ଅଜେୟ ହୋଇ ଦିଗ୍‌ବିଜୟୀ ପଣ୍ଡିତ ଆଖ୍ୟା ପ୍ରାପ୍ତ ହେଲେ । ତଥାପି ମନ ଅଶାନ୍ତ । ପୁରୀ ପହଞ୍ଚିଲେ । ଶ୍ରୀରାଧା ଦାମୋଦର ଗୋସ୍ୱାମୀଙ୍କ ଠାରୁ ବୈଷ୍ଣବ ଦୀକ୍ଷା ନେଲେ । ପଢ଼ିଲେ ଜୀବ ଗୋସ୍ୱାମୀଙ୍କ ରଚିତ ଷଟ୍ ସନ୍ଦର୍ଭ ।

କୃଷ୍ଣପ୍ରେମର ସାଧନାଭୂମି ବୃନ୍ଦାବନ ପହଞ୍ଚିଲେ ଶ୍ରୀବଳଦେବ ; ଭେଟିଲେ ଭାଗବତ ବିଶେଷଜ୍ଞ ବିଶ୍ୱନାଥ ଚକ୍ରବର୍ତ୍ତୀ ପାଦଙ୍କୁ । ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱର ମର୍ମ ଅବଗତ ହେଲେ ଅତି ଅଳ୍ପ ବୟସରେ । ସେତେବେଳେ ରାଜସ୍ଥାନ ଜୟପୁରଠାରେ ଶ୍ରୀରାଧା ଗୋବିନ୍ଦ ଦେବ ସେବିତ ହେଉଥାନ୍ତି ଜୟପୁର ମହାରାଜାଙ୍କ ସ୍ଥାପିତ ମନ୍ଦିରରେ । ଶ୍ରୀସଂପ୍ରଦାୟ ଆପତ୍ତି କଲେ ଗୌଡ଼ୀୟ ବୈଷ୍ଣବମାନେ ଅଚିନ୍ତ୍ୟଭେଦ ଅଭେଦ ଖାଲି ତୁଣ୍ଡେ ତୁଣ୍ଡେ ବଖାଣୁଛନ୍ତି । ସେମାନେ ପ୍ରସ୍ଥାନ ତ୍ରୟୀର ଭାଷ୍ୟ ଲେଖିନାହାନ୍ତି । ଅତଏବ ସେମାନେ ରାଧାଗୋବିନ୍ଦଙ୍କ ପବିତ୍ର ବିଗ୍ରହ ସେବା କରିବାର ଅନଧିକାରୀ । ଖବର ପହଞ୍ଚିଲା ବୃନ୍ଦାବନ ଧାମରେ ।

ସେତେବେଳେକୁ ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ପରିଣତ ବୟସ । ସେ ଆଦେଶ ଓ ଆଶୀର୍ବାଦ ଦେଲେ ପ୍ରିୟ ଶିଷ୍ୟ ଶ୍ରୀବଳଦେବଙ୍କୁ । ଏତେ ଅଳ୍ପ ବୟସରେ ୧୭୧୮ ଖ୍ରୀଷ୍ଟାବ୍ଦରେ ବେଦାନ୍ତ ଭାଷ୍ୟ ଲେଖିବା ଅସମ୍ଭବ ମନେ ହେଉଥାଏ ତାଙ୍କୁ । ଗଭୀର ଧ୍ୟାନ ମଗ୍ନ ହୋଇ ଚିନ୍ତନ କଲେ ଶ୍ରୀରାଧା ଗୋବିନ୍ଦଙ୍କୁ । ଠାକୁରଙ୍କ କରୁଣା କପାଟ ଫିଟିଗଲା । ସାକ୍ଷାତ ଦର୍ଶନ ଦେଲେ ଭକ୍ତଙ୍କୁ । କଲମ ଧରିଲେ ସେ ଲେଖେଇଦେବେ ବୋଲି ଭରଷା ଦେଲେ । ବଳଦେବ ଥିଲେ ଜଣେ ନିଷ୍କିଞ୍ଚନ ପରମ ବିରକ୍ତ ବୈଷ୍ଣବ । କହି ବୁଲିଲେ ସେ ଆଦୌ ବେଦାନ୍ତ ଭାଷ୍ୟ (ଅଚିନ୍ତ୍ୟ ଭେଦ ଅଭେଦ ମୂଳକ) ରଚନା କରିନାହାନ୍ତି, କରିଛନ୍ତି ଶ୍ରୀଗୋବିନ୍ଦ । ଭାଷ୍ୟର ନାମ ରଖିଲେ ଶ୍ରୀଗୋବିନ୍ଦ ଭାଷ୍ୟ ।

ଶ୍ରୀରୂପ, ସନାତନ, ଗୋପାଳ, ରଘୁନାଥ, ଜୀବ, କୃଷ୍ଣଦାସ କବିରାଜ ଆଦି ମହାନ୍ ମହାନ୍ ଦିଗ୍‌ଗଜ ଗୋସ୍ୱାମୀମାନଙ୍କ ଥାଉ ଥାଉ ଯାହା ଅପୂର୍ଣ୍ଣ ରହି ଯାଇଥିଲା, ଶ୍ରୀ ବଳଦେବ ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱକୁ କୃଷ୍ଣ ଭକ୍ତି ଦରବାରରେ ପହଞ୍ଚାଇଦେଲେ । ଫଳରେ ତତ୍‌କାଳୀନ ବିଦ୍ୱତ୍ ମଣ୍ଡଳୀ ତାଙ୍କୁ ବିଦ୍ୟାଭୂଷଣ ଉପାଧିରେ ସମ୍ମାନିତ କରିଥିଲେ । ତାଙ୍କର ସେବିତ ବିଗ୍ରହ ଶ୍ରୀଜୟ ଓ ଶ୍ରୀବିଜୟ ଉଭୟ ବିଗ୍ରହ ଏବେ

ଶ୍ରୀବୃନ୍ଦାବନରେ ଶ୍ରୀରାଧାଗୋକୁଳାନନ୍ଦ ମନ୍ଦିରରେ ସେବିତ ହେଉଛନ୍ତି । ତାଙ୍କର ପ୍ରଣୀତ ଗ୍ରନ୍ଥସବୁ ଷଡ଼ଗୋସ୍ୱାମୀଙ୍କ ରଚିତ ମୂଳ ଦୁର୍ବୋଧ ବୈଷ୍ଣବ ଗ୍ରନ୍ଥମାନଙ୍କର ସରଳ ସର୍ବଜନବୋଧ ୨୪ ଖଣ୍ଡରେ ପରିଚିତ । ଏହି ମହାନ୍ ଓଡ଼ିଆ ମହାପୁରୁଷଙ୍କ ସମାଧି ଶ୍ରୀବୃନ୍ଦାବନର ଶ୍ରୀରାଧା ଶ୍ୟାମସୁନ୍ଦର ମନ୍ଦିରର ପଛପଟରେ ବିଦ୍ୟମାନ । ମନ୍ଦିର ପରିକ୍ରମା ବେଳେ ତାଙ୍କ ସମାଧିକୁ ସ୍ପର୍ଶ ସହିତ ପ୍ରଣାମ ଜଣାଇ ନିଜକୁ ଧନ୍ୟ କରିଥାଏ କୃଷ୍ଣଭକ୍ତ ।

## ୭. ରାଜାରୁ ରଙ୍କ ଲାଲାବାବୁ:

ପ୍ରଶ୍ନ-୧୦୩: ଶିଶୁ, ବାଳୁତ ଅବସ୍ଥାରୁ ସେ ଅନେକ ଠୋକର ଖାଇଛନ୍ତି ନିଜ ହୃଦୟରେ ଲୁଚିଥିବା ଅହଂକାର ହେତୁ । ତେଣୁ ସେହି ଦେହ ଆସକ୍ତି ବା ଅହଂକାରର ମୂଳ ଉତ୍ପାଟନ କରି ଲୋକଶିକ୍ଷା ଦେବାଲାଗି ସେ ନିଜ ସନ୍ତାନ ଏବଂ ଶିଷ୍ୟମାନଙ୍କୁ ଆଦେଶ କରିଗଲେ ଯେ ଦେହ ତ୍ୟାଗ କରିବା ପରେ ତାଙ୍କ ମର ଦେହକୁ ବ୍ରଜଭୂମିରେ ଶ୍ରୀବୃନ୍ଦାବନ ଧାମରେ ଘୋଷରା ଯିବ ପାଦରେ ଦଉଡ଼ି ଲଗାଇ । ଯମୁନା କୂଳ କେଶୀଘାଟରେ ତାଙ୍କୁ ଜଳସମାଧି ଦିଆଯିବ । ତାଙ୍କର ସେହି ନିଷ୍ଠୁର ଆଦେଶ କଅଣ ପାଳନ କରାଯାଇଥିଲା କି ?

ଉ. ଅକ୍ଷରେ ଅକ୍ଷରେ ପାଳନ କରାଗଲା । ୧୭୭୫ଖ୍ରୀଷ୍ଟାବ୍ଦରେ କଲିକତାରେ ଏକ ଅତ୍ୟନ୍ତ ବିତ୍ତଶାଳୀ ଧନାଢ୍ୟ ପରିବାରରେ ଭୂମିଷ୍ଠ ହୋଇଥିଲେ ଲାଲାବାବୁ । ତାଙ୍କ ଗେଲ ବସର ନାମ ଲାଲା ବାବୁ । ୧୮୦୩ମସିହାରେ ଓଡ଼ିଶାକୁ ଇଂରେଜ ଅଧିକାର କରିନେଲେ । ଲାଲାବାବୁ ନିଯୁକ୍ତ ହେଲେ କର ଆଦାୟକାରୀ ଦେଓ୍ୱାନ ସମଗ୍ର ଓଡ଼ିଶା ରାଜ୍ୟର । ପିଲାଦିନୁ କିନ୍ତୁ ସେ ସଂସ୍କୃତ ଅନୁରାଗୀ ଥିଲେ । ଭାଗବତ ରସିକ ମଧ୍ୟ । ସୁନାଥାଳୀରେ ଖାଇ ଦୁଧରେ ହାତ ଧୋଇବା ଭଳି ଅଚଳାଚଳ ସମ୍ପତ୍ତିର ମାଲିକ ହେଲେ । ଦିନେ କଲିକତାର ଗଙ୍ଗାନଦୀ କୂଳରେ ପାଲିଙ୍କିରେ ବସି ବୁଲୁ ବୁଲୁ ଶୁଣିଲେ ଯେ ଜଣେ ରଜକ କନ୍ୟା ତାର ପିତାକୁ କହୁଛି, ''ବାବା, ଦିନ ଶେଷ ହୋଇଗଲା । ବାସନାରେ ଅଗ୍ନି ସଂଯୋଗ କର ।'' ବଙ୍ଗଳା ଭାଷାରେ ବାସନା କୁହାଯାଏ କଦଳୀପତ୍ର ପୋଡ଼ି ପ୍ରସ୍ତୁତ କରାଯାଇଥିବା ଘସି ପାଉଁଶକୁ ଯାହାକୁ ଜଳାଇ ଓଦା ମଇଳା ଲୁଗାକୁ ଶିଝାଯାଏ । ଭାଗବତ ଜ୍ଞାନୀ ଲାଲା ବାବୁ ବୁଝିଲେ କିନ୍ତୁ ଅନ୍ୟ ପ୍ରକାର । ସତେ କି ଶ୍ରୀମତୀ ରାଧାରାଣୀ କହୁଛନ୍ତି ଯେ ବିଳାସମୟ ଜୀବ ଖୁବ୍ ହୋଇଗଲା । ଏଣିକି ବୈରାଗ୍ୟ ରାଗ ରସିକ ହେବା ଦରକାର । ବିଷୟ ବାସନାକୁ ଅଗ୍ନି ସଂଯୋଗ କରିବା ଦରକାର ।

ନିମିଷକେ ସକଳ ଧନ ସଂପତ୍ତି ମୋହ ତ୍ୟାଗ କରି ପହଞ୍ଚିଲେ ଶ୍ରୀ ବୃନ୍ଦାବନ ଧାମ । ତ୍ୟାଗ, ତିତିକ୍ଷା ଯୁକ୍ତ କଠୋର ସାଧନାମୟ ଜୀବନ ତାଙ୍କର ଆରମ୍ଭ ହେଲା । ଦିନ ରାତି ଭଜନ, କୀର୍ତ୍ତନ, ଜପ, ସତ୍‌ସଙ୍ଗ ଚାଲୁଥାଏ । ଲାଲା ବାବୁ ମଧୁକରୀ ବୃତ୍ତିରେ ପେଟ ପୋଷିଲେ । ଦେଖିଲେ ଶ୍ରୀବୃନ୍ଦାବନରେ ଅନେକ ଦିନ ତଳେ ନିର୍ମିତ ହୋଇଥିବା ମନ୍ଦିର ମାନଙ୍କର ଜୀର୍ଣ୍ଣ ଅବସ୍ଥା । ଭାବିଲେ ଭଗବାନ ତାଙ୍କୁ ଜନ୍ମରୁ କାଙ୍ଗାଳ କରି ନାହାନ୍ତି । ପୁତ୍ର ଓ ପତ୍ନୀଙ୍କ ସହିତ ଭାଗ ବାଣ୍ଟି ତିନି ଭାଗରୁ ଏକ ଭାଗ ସଂପତ୍ତିର ମୂଲ୍ୟ ବାବଦରେ ପାଇଲେ ସେତେବେଳେ ୨୫ଲକ୍ଷ ଟଙ୍କା । ନିର୍ମାଣ କଲେ ଭବ୍ୟ ମନ୍ଦିରଟିଏ ଆଜି ଯାହାର ନାମ ଲାଲା ବାବୁ ମନ୍ଦିର ବା ଶ୍ରୀକୃଷ୍ଣ ମନ୍ଦିର । ବିଗ୍ରହ ମାନଙ୍କର ପ୍ରତିଷ୍ଠା ପରେ ମସ୍ତକରେ ଘୋର ଶୀତ କାଳରେ ଲହୁଣୀ ପିଣ୍ଡୁଳା ରଖି ପରୀକ୍ଷା କଲେ ଠାକୁରଜୀଙ୍କ ବିଗ୍ରହରେ ପ୍ରାଣ ସଞ୍ଚାର ହୋଇଛି କି ନା । କି ଆଶ୍ଚର୍ଯ୍ୟ । ଲହୁଣୀ ତରଳି ବୋହିଗଲା ଶୀତ କାକର ବେଳାରେ । ବିଗ୍ରହଙ୍କ ନାସିକାରେ ସେ ତୂଳା ରଖି ପରୀକ୍ଷା କଲେ ଶ୍ୱାସ ଚାଲୁଛି କି ନାହିଁ । ବିଗ୍ରହମାନେ ସେ ପରୀକ୍ଷାରେ ମଧ୍ୟ ପାସ କଲେ । ଜୟ ଜୟ ଧ୍ୱନିରେ କମ୍ପମାନ ହେଲା ବୃନ୍ଦାବନର ଗଗନ ପବନ ।

ଠାକୁରଙ୍କ ନିର୍ଦ୍ଦେଶରେ ଲାଲାବାବୁ ଗୋବର୍ଦ୍ଧନ ଚାଲିଲେ । ଏକ ଗୁମ୍ଫାରେ ରହି ସାଧନ ଭଜନ ଚାଲୁ ରଖିଲେ । ଦିନେ ଠାକୁରଜୀ ସ୍ୱୟଂ ପାଖ ମନ୍ଦିରର ପୂଜାରୀ ବେଶରେ ଭୋଗଥାଳୀ ପରଷିଥିଲେ । ସ୍ୱୟଂ ଭଗବାନ ଥରେ ଦର୍ଶନ ଦେଇ ଆଉ ଗୋଟିଏ ମନ୍ଦିର ନିର୍ମାଣ କରିବାକୁ ଆଦେଶ ଦେଲେ । କାଣି କଉଡ଼ି ଶୂନ୍ୟ ଲାଲା ବାବୁ ଚମକି ଉଠିଲେ । ଠାକୁରଜୀ କିନ୍ତୁ ଅହଂକାର ଶୂନ୍ୟ ହୃଦୟ ମନ୍ଦିର ନିର୍ମାଣ କଥା କହୁଥାନ୍ତି । ବୁଝିଗଲା ପରେ ଭିକାରୀ ବେଶରେ ନିଜର ଶତ୍ରୁ ଭାବୁଥିବା ରଙ୍ଗଜୀ ମନ୍ଦିରର ନିର୍ମାଣ କର୍ତ୍ତାଙ୍କ ପାଖକୁ ଯାଇ ପୂର୍ବକୃତ ଦୁର୍ବ୍ୟବହାର ପାଇଁ କ୍ଷମା ଭିକ୍ଷା ଲାଗି କାନି ପାତିଲେ । ଭଗବାନଙ୍କ କଠୋର ପରୀକ୍ଷାର ପରିସମାପ୍ତି ଘଟିଲା । ଥରେ ତାଙ୍କ ଗୋଡ଼ରେ ଭୟଙ୍କର କଷ୍ଟପ୍ରଦ ଘାଆଟିଏ ହେଲା । ବୃନ୍ଦାବନବାସୀ ଦୁଃଖ କଲେ ବାବାଙ୍କ ଅବସ୍ଥା ଦେଖି । ସେ କିନ୍ତୁ କହୁଥାନ୍ତି, ''ତୁମେ କେବଳ ଏ ଜଡ଼ଦେହର ଘାଆ ଦେଖି ବ୍ୟାକୁଳ ହେଉଛ !!! ମୋ ହୃଦୟ ମନ୍ଦିରରେ ପ୍ରେମ ଓ କୃପାର ଯେଉଁ ଅଥଳ ସମୁଦ୍ର ଲହଡ଼ି ମାରୁଛି ତାକୁ ଟିକିଏ ଦେଖିବାକୁ ଚେଷ୍ଟା କରନ୍ତ ନାହିଁ!''

ଶ୍ରୀବୃନ୍ଦାବନ ବସଷ୍ଟାଣ୍ଡ ନିକଟରେ ଏହି **କୃଷ୍ଣଚନ୍ଦ୍ରମା ଲାଲା ବାବୁ** ମନ୍ଦିରକୁ ପ୍ରବେଶ କରିବାବେଳେ ଦର୍ଶନୀୟ ଏହି ମହାପୁରୁଷଙ୍କ ମହାସମାଧି ସ୍ଥଳୀ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଶ୍ରୀବୃନ୍ଦାବନରେ ଶ୍ରୀରାଧାଗୋକୁଳାନନ୍ଦ ମନ୍ଦିରରେ ସେବିତ ହେଉଛନ୍ତି । ତାଙ୍କର ପ୍ରଣୀତ ଗ୍ରନ୍ଥସବୁ ଷଡ଼ଗୌସ୍ୱାମୀଙ୍କ ରଚିତ ମୂଳ ଦୁର୍ବୋଧ ବୈଷ୍ଣବ ଗ୍ରନ୍ଥମାନଙ୍କର ସରଳ ସର୍ବଜନବୋଧ ୨୪ ଖଣ୍ଡରେ ପରିଚିତ । ଏହି ମହାନ୍ ଓଡ଼ିଆ ମହାପୁରୁଷଙ୍କ ସମାଧି ଶ୍ରୀବୃନ୍ଦାବନର ଶ୍ରୀରାଧା ଶ୍ୟାମସୁନ୍ଦର ମନ୍ଦିରର ପଛପଟରେ ବିଦ୍ୟମାନ । ମନ୍ଦିର ପରିକ୍ରମା ବେଳେ ତାଙ୍କ ସମାଧିକୁ ସ୍ପର୍ଶ ସହିତ ପ୍ରଣାମ ଜଣାଇ ନିଜକୁ ଧନ୍ୟ କରିଥାଏ କୃଷ୍ଣଭକ୍ତ ।

## ୭. ରାଜାରୁ ରଙ୍କ ଲାଲାବାବୁ:

ପ୍ରଶ୍ନ-୧୦୩: ଶିଶୁ, ବାଲ୍ୟ ଅବସ୍ଥାରୁ ସେ ଅନେକ ଠୋକର ଖାଇଛନ୍ତି ନିଜ ହୃଦୟରେ ଲୁଚିଥିବା ଅହଂକାର ହେତୁ । ତେଣୁ ସେହି ଦେହ ଆସକ୍ତି ବା ଅହଂକାରର ମୂଳ ଉତ୍ପାଟନ କରି ଲୋକଶିକ୍ଷା ଦେବାଲାଗି ସେ ନିଜ ସନ୍ତାନ ଏବଂ ଶିଷ୍ୟମାନଙ୍କୁ ଆଦେଶ କରିଗଲେ ଯେ ଦେହ ତ୍ୟାଗ କରିବା ପରେ ତାଙ୍କ ମର ଦେହକୁ ବ୍ରଜଭୂମିରେ ଶ୍ରୀବୃନ୍ଦାବନ ଧାମରେ ଘୋଷରା ଯିବ ପାଦରେ ଦଉଡ଼ି ଲଗାଇ । ଯମୁନା କୂଳ କେଶୀଘାଟରେ ତାଙ୍କୁ ଜଳସମାଧି ଦିଆଯିବ । ତାଙ୍କର ସେହି ନିଷ୍ଠୁର ଆଦେଶ କଅଣ ପାଳନ କରାଯାଇଥିଲା କି ?

ଉ. ଅକ୍ଷରେ ଅକ୍ଷରେ ପାଳନ କରାଗଲା । ୧୭୭୫ଖ୍ରୀଷ୍ଟାବ୍ଦରେ କଲିକତାରେ ଏକ ଅତ୍ୟନ୍ତ ବିତ୍ତଶାଳୀ ଧନାଢ଼୍ୟ ପରିବାରରେ ଭୂମିଷ୍ଠ ହୋଇଥିଲେ ଲାଲାବାବୁ । ତାଙ୍କ ଗେଲ ବସର ନାମ ଲାଲା ବାବୁ । ୧୮୦୩ମସିହାରେ ଓଡ଼ିଶାକୁ ଇଂରେଜ ଅଧିକାର କରିନେଲେ । ଲାଲାବାବୁ ନିଯୁକ୍ତ ହେଲେ କର ଆଦାୟକାରୀ ଦେଓ୍ୱାନ ସମଗ୍ର ଓଡ଼ିଶା ରାଜ୍ୟର । ପିଲାଦିନୁ କିନ୍ତୁ ସେ ସଂସ୍କୃତ ଅନୁରାଗୀ ଥିଲେ । ଭାଗବତ ରସିକ ମଧ୍ୟ । ସୁନାଥାଳୀରେ ଖାଇ ଦୁଧରେ ହାତ ଧୋଇବା ଭଳି ଅଚଳାଚଳ ସମ୍ପତ୍ତିର ମାଲିକ ହେଲେ । ଦିନେ କଲିକତାର ଗଙ୍ଗାନଦୀ କୂଳରେ ପାଲିଙ୍କିରେ ବସି ବୁଲୁ ବୁଲୁ ଶୁଣିଲେ ଯେ ଜଣେ ରଜକ କନ୍ୟା ତାର ପିତାକୁ କହୁଛି, ‘‘ବାବା, ଦିନ ଶେଷ ହୋଇଗଲା । ବାସନାରେ ଅଗ୍ନି ସଂଯୋଗ କର ।’’ ବଙ୍ଗଳା ଭାଷାରେ ବାସନା କୁହାଯାଏ କଦଳୀପତ୍ର ପୋଡ଼ି ପ୍ରସ୍ତୁତ କରାଯାଇଥିବା ଘସି ପାଉଁଶକୁ ଯାହାକୁ ଜଳାଇ ଓଦା ମଇଳା ଲୁଗାକୁ ଶିଝାଯାଏ । ଭାଗବତ ଜ୍ଞାନୀ ଲାଲା ବାବୁ ବୁଝିଲେ କିନ୍ତୁ ଅନ୍ୟ ପ୍ରକାର । ସତେ କି ଶ୍ରୀମତୀ ରାଧାରାଣୀ କହୁଛନ୍ତି ଯେ ବିଳାସମୟ ଜୀବ ଖୁବ୍ ହୋଇଗଲା । ଏଣିକି ବୈରାଗ୍ୟ ରାଗ ରସିକ ହେବା ଦରକାର । ବିଷୟ ବାସନାକୁ ଅଗ୍ନି ସଂଯୋଗ କରିବା ଦରକାର ।

ନିମିଷକେ ସକଳ ଧନ ସଂପତ୍ତି ମୋହ ତ୍ୟାଗ କରି ପହଞ୍ଚିଲେ ଶ୍ରୀ ବୃନ୍ଦାବନ ଧାମ । ତ୍ୟାଗ, ତିତିକ୍ଷା ଯୁକ୍ତ କଠୋର ସାଧନାମୟ ଜୀବନ ତାଙ୍କର ଆରମ୍ଭ ହେଲା । ଦିନ ରାତି ଭଜନ, କୀର୍ତ୍ତନ, ଜପ, ସତ୍‌ସଙ୍ଗ ଚାଲୁଥାଏ । ଲାଲା ବାବୁ ମଧୁକରୀ ବୃତ୍ତିରେ ପେଟ ପୋଷିଲେ । ଦେଖିଲେ ଶ୍ରୀବୃନ୍ଦାବନରେ ଅନେକ ଦିନ ତଳେ ନିର୍ମିତ ହୋଇଥିବା ମନ୍ଦିର ମାନଙ୍କର ଜୀର୍ଣ୍ଣ ଅବସ୍ଥା । ଭାବିଲେ ଭଗବାନ ତାଙ୍କୁ ଜନ୍ମରୁ କାଙ୍ଗାଳ କରି ନାହାନ୍ତି । ପୁତ୍ର ଓ ପତ୍ନୀଙ୍କ ସହିତ ଭାଗ ବାଣ୍ଟି ତିନି ଭାଗରୁ ଏକ ଭାଗ ସଂପତ୍ତିର ମୂଲ୍ୟ ବାବଦରେ ପାଇଲେ ସେତେବେଳେ ୨୫ଲକ୍ଷ ଟଙ୍କା । ନିର୍ମାଣ କଲେ ଭବ୍ୟ ମନ୍ଦିରଟିଏ ଆଜି ଯାହାର ନାମ ଲାଲା ବାବୁ ମନ୍ଦିର ବା ଶ୍ରୀକୃଷ୍ଣ ମନ୍ଦିର । ବିଗ୍ରହ ମାନଙ୍କର ପ୍ରତିଷ୍ଠା ପରେ ମସ୍ତକରେ ଘୋର ଶୀତ କାଳରେ ଲହୁଣୀ ପିଣ୍ଡୁଳା ରଖି ପରୀକ୍ଷା କଲେ ଠାକୁରଜୀଙ୍କ ବିଗ୍ରହରେ ପ୍ରାଣ ସଞ୍ଚାର ହୋଇଛି କି ନା । କି ଆଶ୍ଚର୍ଯ୍ୟ । ଲହୁଣୀ ତରଳି ବୋହିଗଲା ଶୀତ କାକର ବେଳାରେ । ବିଗ୍ରହଙ୍କ ନାସିକାରେ ସେ ତୂଳା ରଖି ପରୀକ୍ଷା କଲେ ଶ୍ୱାସ ଚାଲୁଛି କି ନାହିଁ । ବିଗ୍ରହମାନେ ସେ ପରୀକ୍ଷାରେ ମଧ ପାସ କଲେ । ଜୟ ଜୟ ଧ୍ୱନିରେ କମ୍ପମାନ ହେଲା ବୃନ୍ଦାବନର ଗଗନ ପବନ ।

ଠାକୁରଙ୍କ ନିର୍ଦ୍ଦେଶରେ ଲାଲାବାବୁ ଗୋବର୍ଦ୍ଧନ ଚାଲିଲେ । ଏକ ଗୁମ୍ଫାରେ ରହି ସାଧନ ଭଜନ ଚାଲୁ ରଖିଲେ । ଦିନେ ଠାକୁରଜୀ ସ୍ୱୟଂ ପାଖ ମନ୍ଦିରର ପୂଜାରୀ ବେଶରେ ଭୋଗଥାଳୀ ପରଷିଥିଲେ । ସ୍ୱୟଂ ଭଗବାନ ଥରେ ଦର୍ଶନ ଦେଇ ଆଉ ଗୋଟିଏ ମନ୍ଦିର ନିର୍ମାଣ କରିବାକୁ ଆଦେଶ ଦେଲେ । କାଣି କଉଡ଼ି ଶୂନ୍ୟ ଲାଲା ବାବୁ ଚମକି ଉଠିଲେ । ଠାକୁରଜୀ କିନ୍ତୁ ଅହଂକାର ଶୂନ୍ୟ ହୃଦୟ ମନ୍ଦିର ନିର୍ମାଣ କଥା କହୁଥାନ୍ତି । ବୁଝିଗଲା ପରେ ଭିକାରୀ ବେଶରେ ନିଜର ଶତ୍ରୁ ଭାବୁଥିବା ରଙ୍ଗଜୀ ମନ୍ଦିରର ନିର୍ମାଣ କର୍ତ୍ତାଙ୍କ ପାଖକୁ ଯାଇ ପୂର୍ବକୃତ ଦୁର୍ବ୍ୟବହାର ପାଇଁ କ୍ଷମା ଭିକ୍ଷା ଲାଗି କାନି ପାତିଲେ । ଭଗବାନଙ୍କ କଠୋର ପରୀକ୍ଷାର ପରିସମାପ୍ତି ଘଟିଲା । ଥରେ ତାଙ୍କ ଗୋଡ଼ରେ ଭୟଙ୍କର କଷ୍ଟପ୍ରଦ ଘାଆଟିଏ ହେଲା । ବୃନ୍ଦାବନବାସୀ ଦୁଃଖ କଲେ ବାବାଙ୍କ ଅବସ୍ଥା ଦେଖି । ସେ କିନ୍ତୁ କହୁଥାନ୍ତି, "ତୁମେ କେବଳ ଏ ଜଡ଼ଦେହର ଘାଆ ଦେଖି ବ୍ୟାକୁଳ ହେଉଛ ! ! ! ମୋ ହୃଦୟ ମନ୍ଦିରରେ ପ୍ରେମ ଓ କୃପାର ଯେଉଁ ଅଥଳ ସମୁଦ୍ର ଲହଡ଼ି ମାରୁଛି ତାକୁ ଟିକିଏ ଦେଖିବାକୁ ଚେଷ୍ଟା କରନ୍ତ ନାହିଁ !"

ଶ୍ରୀବୃନ୍ଦାବନ ବସଷ୍ଟାଣ୍ଡ ନିକଟରେ ଏହି **କୃଷ୍ଣଚନ୍ଦ୍ରମା ଲାଲା ବାବୁ** ମନ୍ଦିରକୁ ପ୍ରବେଶ କରିବାବେଳେ ଦର୍ଶନୀୟ ଏହି ମହାପୁରୁଷଙ୍କ ମହାସମାଧି ସ୍ଥଳୀ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ୮. କୃଷ୍ଣଦାସ ବାବାଜୀ (ରଣ ବାଡ଼ି)

ପ୍ରଶ୍ନ-୧୦୪: ଆଗ୍ରା-ଦିଲ୍ଲୀ ମୁଖ୍ୟ ରାସ୍ତାରେ ଛଟିକରାଠାରୁ ୨୧କିମି ଗଲେ ଆସିବ ଛାତା ଛକ । ଏହି ଛାତାର ପୂର୍ବନାମ ଛତ୍ରବନ । ନିକଟରେ ଏକ ଅଲୌକିକ ବୈଷ୍ଣବ ସମାଧି ସ୍ଥଳ ଦର୍ଶନୀୟ । ସିଦ୍ଧ ବୈଷ୍ଣବମାନଙ୍କୁ ଜଳରେ ଭସାଇ ଜଳ ସମାଧି ଦିଆଯାଏ କିମ୍ବା ଭୂଗର୍ଭରେ ମୃତ୍ତିକା ଖୋଳି ସମାଧି ଦିଆଯାଏ । ସେମାନଙ୍କୁ ପ୍ରାୟତଃ ଅଗ୍ନି ସମାଧି ଦିଆଯାଇନଥାଏ । କାରଣ ଅଖଣ୍ଡ ଚିନ୍ମୟ ନାମ ଜପରେ ସେମାନଙ୍କର ମୃଣ୍ମୟ ଶରୀର ମଧ ଚିନ୍ମୟ ହୋଇଯାଇଥାଏ । ଅଗ୍ନିଦେବତାଙ୍କର ଶକ୍ତି ନଥାଏ ସେଭଳି ଶରୀରକୁ ଦହନ କରିବା ନିମିତ୍ତ । ରଣବାଡ଼ିରେ କିନ୍ତୁ ସିଦ୍ଧ ମହାପୁରୁଷ କୃଷ୍ଣଦାସ ବାବାଜୀଙ୍କର ଅନଳ ଦାହ ସମାଧି ହେଲା କିପରି ?

ଉ: ବୈଷ୍ଣବ ବାବାଙ୍କର ଭୌତିକ ଅଗ୍ନି ସଂସ୍କାର ହୋଇନଥିଲା । କୃଷ୍ଣପ୍ରେମ ବିରହ ଅନଳରେ ତାଙ୍କର ଶରୀର ଦହନ ହୋଇଗଲା । ସେହି ଅଗ୍ନି କେହି ତାଙ୍କର ଦେହରେ ସଂଯୋଗ କରିନଥିଲେ । ଶ୍ରୀରାଧା ରାଣୀଙ୍କର କୃପାରେ ସେହି ଦୈବ ଅଗ୍ନି ସ୍ୱତଃ ପ୍ରଜ୍ୱଳିତ ହୋଇଥିଲା ।

ବାବାଙ୍କର ପୂର୍ବାଶ୍ରମ ନାମ ଥିଲା କୃଷ୍ଣପ୍ରସାଦ ଚଟ୍ଟୋପାଧ୍ୟାୟ । ବଙ୍ଗଦେଶର ଯଶୋହର ଜିଲାରେ ୧୮୦୨ ମସିହାରେ ତାଙ୍କର ଜନ୍ମ । ସେ ଆଜନ୍ମ ବୈରାଗୀ । ବିବାହ ପ୍ରସ୍ତାବ ଆସନ୍ତେ ସେ ଘରୁ ଚାଲି ଚାଲି ବୃନ୍ଦାବନ ପହଞ୍ଚିଲେ । ଶ୍ରୀଯମୁନା କୂଳରେ ମଦନ ମୋହନ ମନ୍ଦିରରେ ରହି କିଛିଦିନ ଭଜନ କଲେ । ଗୁରୁଦୀକ୍ଷା ନେଇ ବୃନ୍ଦାବନର ବିଭିନ୍ନ ଲୀଳାସ୍ଥଳୀ ଭ୍ରମଣ କରି ବାଛିଲେ ଏହି ଘନ ଜଙ୍ଗଲ ଭୟଙ୍କର ପଶୁ ପକ୍ଷୀ ସେବିତ ରଣବାଡ଼ିକୁ । ଦୀର୍ଘ ୫୦ ବର୍ଷ କଠୋର ଭଜନ କରନ୍ତି । ମଧୁକରି ବୃତ୍ତିରେ ଚଳନ୍ତି । ଭିକ୍ଷାରୁ ଯାହା ମିଳେ ନିଜର ଆବଶ୍ୟକ ତଣ୍ଡୁଳ ରଖି ବାକିତକ ଆଶ୍ରମକୁ ଫେରିବା ବାଟରେ ପଶୁପକ୍ଷୀଙ୍କୁ ଖୋଇ ଦେଇ ଆସନ୍ତି ।

ଜୀବନର ଅପରାହ୍ଣରେ ଭାରତର କିଛି ତୀର୍ଥ ଭ୍ରମଣ କରିବାକୁ ଇଚ୍ଛା ହେଲା । ରାଧାକୃଷ୍ଣ ବିଗ୍ରହ ପୂଜନ ଛାଡ଼ି ସେ ତୀର୍ଥ ଭ୍ରମଣରେ ବାହାରିଲେ । ଶ୍ରୀରାଧାରାଣୀ କିନ୍ତୁ ଅନ୍ୟ ତୀର୍ଥ ଯିବାକୁ ସ୍ୱପ୍ନରେ [illegible] ମନା କରିଦେଲେ । କହିଲେ, 'କୃଷ୍ଣଦାସ, ତୁମେ ମୋ ପାଖରେ ବ୍ରଜ ଧାମରେ ରହିଛ । ଆମକୁ ଆଶ୍ରୟ କରିଥିବା ଲୋକ ଅନ୍ୟ ତୀର୍ଥ ଯିବା ସମ୍ପୂର୍ଣ୍ଣ ଅନାବଶ୍ୟକ ।'' ବାବା କିନ୍ତୁ ସ୍ୱପ୍ନକୁ ଗୁରୁତ୍ୱ ଦେଲେନାହିଁ । ଭ୍ରମଣରେ ବାହାରିଗଲେ । ଅନେକ ତୀର୍ଥ ଭ୍ରମଣ କରି ଦ୍ୱାରକା

ଧାମରେ ପହଞ୍ଚିଲେ । ସେଠାକାର ପ୍ରଥା ଅନୁସାରେ ସତ୍ୟଭାମାଙ୍କର ଆଶ୍ରିତ ସାଧୁଙ୍କ ଦ୍ୱାରା ନିଜ ଅଙ୍ଗରେ ତପ୍ତମୁଦ୍ରା ଧାରଣ କଲେ । ପରେ ତାଙ୍କର ତୀର୍ଥଯାତ୍ରାରେ ମଧ ଅରୁଚି ହେଲା । ଫେରିଆସିଲେ ରଣବାଡ଼ି ।

ସେଇଦିନ ରାତ୍ରିରେ ଶ୍ରୀରାଧାରାଣୀ ପୁଣି ସ୍ୱପ୍ନରେ କହିଲେ, ''କୃଷ୍ଣଦାସ, ତୁମେ ଦ୍ୱାରକାଧାମରେ ସତ୍ୟଭାମାଙ୍କ ଐଶ୍ୱର୍ଯ୍ୟ ଲୋଭୀ ସଂପ୍ରଦାୟର ତପ୍ତମୁଦ୍ରା ଧାରଣ କରିଛ । ମାଧୁର୍ଯ୍ୟ ସାଧନା କରିବାରେ ତୁମର ଅଧିକାର ନାହିଁ । ତୁମେ ଶୀଘ୍ର ଏ ବ୍ରଜଧାମ ତ୍ୟାଗ କରି ଅନ୍ୟତ୍ର ଚାଲିଯାଅ ।'' ଏଥର ବାବା କିନ୍ତୁ ସ୍ୱପ୍ନକୁ ଅସାର ମାନି ପାରିଲେନି । ବୁଲି ବୁଲି ବୃନ୍ଦାବନର ସିଦ୍ଧ ସାଧକମାନଙ୍କୁ ପ୍ରତିକାର ପଚାରିଲେ । ସମସ୍ତେ ରାଧାରାଣୀଙ୍କ ଆଦେଶ ଉପରେ କିଛି କହିବାର ଅନଧିକାରୀ ବୋଲି କହିଲେ ।

ଶେଷରେ ବାବା ରଣବାଡ଼ି ଆଶ୍ରମରେ ଭିତରୁ କବାଟ କିଳି ବ୍ୟାକୁଳ କ୍ରନ୍ଦନ କଲେ । ତୀବ୍ର ବିରହ ଭାବନା ତାଙ୍କର ବିରହ ଅନଳକୁ ଜନ୍ମ ଦେଲା । ତିନିଦିନ ଧରି ତାଙ୍କ ଦେହ ଜଳିବା ପରେ ପାଖ ଆଶ୍ରମରୁ ସାଧୁ, ସନ୍ଥ, ଗ୍ରାମବାସୀ ସମସ୍ତେ ଧାଇଁ ଆସିଲେ । କବାଟ ଭାଙ୍ଗି ବାବାଙ୍କ ଅବସ୍ଥା ଦେଖିଲେ । ଦୁଃଖିତ ହେଲେ ଯେତିକି ଆଶ୍ଚର୍ଯ୍ୟ ହେଲେ ସେତିକି । ବାବା କିନ୍ତୁ ନିଜ ଜଳନ୍ତା ହାତ ଦୁଇଟି ଟେକି ସମସ୍ତଙ୍କୁ ଆଶୀର୍ବାଦ କଲେ । ଏ ସମାଧିସ୍ଥାନ କାଳକାଳକୁ ଏ ଘଟଣାର ସାକ୍ଷୀ ହୋଇ ରହୁ । କୃଷ୍ଣଭକ୍ତମାନେ ଏଣିକି ଏ ଧାମକୁ ଆସିବା ପରେ ଏବଂ ଏହାର ଶରଣ ଯିବା ପରେ ଆଉ ଅନ୍ୟସ୍ଥାନକୁ ନ ଯାଆନ୍ତୁ ।

ଘଟଣା ଘଟିଲା ୧୮୫୭ ମସିହାରେ । ଆଜକୁ ପ୍ରାୟ ଦେଢ଼ଶହ ବର୍ଷ ହେଲାଣି । ଯେହେତୁ ବାବାଙ୍କର ସମାଧି ପୌଷମାସ ଅମାବାସ୍ୟା ଦିନ ଘଟିଥିଲା ଆଜି ମଧ ରଣବାଡ଼ିର ବ୍ରଜବାସୀମାନେ ସେଦିନ ଏକ ମହା ଆଡ଼ମ୍ବର ପୂର୍ଣ୍ଣ ଉତ୍ସବ ପାଳନ କରନ୍ତି । ବ୍ରଜ ଚୌରାଶି କ୍ରୋଶ ପରିକ୍ରମାକାରୀମାନଙ୍କୁ ଭରପେଟ ଭୋଜନ ଦିଅନ୍ତି । ଭଗବତ ଲୀଳା ଅଭିନୟ, ନାମ ସଂକୀର୍ତ୍ତନ ଆଦି କରି କୃଷ୍ଣଦାସ ବାବାଜୀଙ୍କର ଅଲୌକିକ ଲୀଳାର ସ୍ମରଣ କରନ୍ତି । ଧନ୍ୟ ତୁମେ କୃଷ୍ଣଦାସ ବାବା । ଧନ୍ୟ ତୁମର ବିରହ ଅନଳ ସମାଧି । ଭକ୍ତ ଭଗବାନ ଭକ୍ତିଦେବୀଙ୍କର ଜୟ ହେଉ ।

**୯. ଶ୍ରୀ ଓଡ଼ିଆ ବାବା:**

ପ୍ରଶ୍ନ-୧୦୫: ୧୫୧୦ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କର ଭକ୍ତି ଧର୍ମର ଯେଉଁ ପ୍ରଚାର ପ୍ରସାର ନବଦ୍ୱୀପ ଧାମଠାରୁ ଶୁଭ ଆରମ୍ଭ ହୋଇ ଶ୍ରୀଧାମ

ପୁରୀ, ସୀମାଞ୍ଚଳ, ଶ୍ରୀରଙ୍ଗନାଥ ଧାମ, ପଣ୍ଢରପୁର, ପ୍ରୟାଗ ଇତ୍ୟାଦି ପାର ହୋଇ ଶ୍ରୀ ବୃନ୍ଦାବନ ଧାମ ସହିତ ସମଗ୍ର ବ୍ରଜମଣ୍ଡଳ ପର୍ଯ୍ୟନ୍ତ ପାବନ କରିଥିଲା ତାଙ୍କ ପରେ ପରେ ଓଡ଼ିଶା ଭୂମିରେ ତାହା କ'ଣ ଶିଥିଳ ପଡ଼ିଗଲା କି ?

ଉ. ନା ନା ତାହା ବିଲକୁଲ ସତ୍ୟ ନୁହେଁ । ପୁରୀ ଧାମର ଯେଉଁ ଶ୍ରୀ କାଶି ମିଶ୍ର ଆଳୟରେ ଶ୍ରୀ ମହାପ୍ରଭୁ ଅଠର ବର୍ଷ ଲୀଳା କରିଥିଲେ ସେହି ସୌଭାଗ୍ୟବାନ କାଶି ମିଶ୍ରଙ୍କ ବଂଶରେ ଜଣେ ଏଭଳି ସ୍ୱନାମଧନ୍ୟ ମହାପୁରୁଷଙ୍କ ପ୍ରାକଟ୍ୟ ହେଲା ଯାହାଙ୍କ ଜୀବନୀ ଚରିତ ସମଗ୍ର ବ୍ରଜମଣ୍ଡଳକୁ ଆଜି ବି ପ୍ରେମରସ ବିତରଣ କରୁଛି । ନାମ ତାଙ୍କର ଶ୍ରୀ ଓଡ଼ିଆ ବାବା ।

ଶ୍ରୀ ପ୍ରୟାଗ ଧାମରେ ଝୁସି ଆଶ୍ରମରେ ପ୍ରଭୁଦତ୍ତ ବ୍ରହ୍ମଚାରୀ ଶ୍ରୀମଦ୍ଭାଗବତ ପ୍ରବଚନ କରାଉଥାନ୍ତି । ବକ୍ତା ଶ୍ରୀ ଅଖଣ୍ଡାନନ୍ଦ ସରସ୍ୱତୀ ଯାହାଙ୍କ ବାଲ୍ୟ କୈଶୋର ଜୀବନ କଥା ଏହି ଗ୍ରନ୍ଥରେ ଶ୍ରୀ ଶାନ୍ତନୁ ସରୋବର ପ୍ରସଙ୍ଗରେ ବର୍ଣ୍ଣନା କରାଯାଇଛି । ଏହି ଭାଗବତ ପ୍ରବଚନ ସ୍ଥଳୀରେ ଅଖଣ୍ଡାନନ୍ଦ ସରସ୍ୱତୀଙ୍କର ବେଦାନ୍ତ ଜ୍ଞାନ ସହିତ ଓଡ଼ିଆ ବାବାଙ୍କର ଭାଗବତ ପ୍ରେମର ମଧୁର ମିଳନ ହୋଇଥିଲା । ଆଜି ମଧ ପ୍ରତ୍ୟେକ ଓଡ଼ିଆ ବୃନ୍ଦାବନ ଧାମତୀର୍ଥ ଯାତ୍ରୀ ଲାଗି ମୋତି ଝିଲଠାରେ ଉଭୟଙ୍କର ଆଶ୍ରମ ସାମନା ସାମନି ଥିବାରୁ ଅବଶ୍ୟ ଦର୍ଶନୀୟ ।

୧୮୭୫ ମସିହାରେ ଏହି ଓଡ଼ିଆ ବାବାଙ୍କର ଶୁଭ ପ୍ରାକଟ୍ୟ ହୋଇଥିଲା । ପୁରୀ ସହରରେ କାଶୀ ମିଶ୍ରଙ୍କ ବଂଶରେ ଯେଉଁ ବଂଶର ବ୍ରାହ୍ମଣମାନେ ଆଜି ମଧ ପୁରୀ ଗଜପତିଙ୍କର ପୁରୋହିତଗିରି କାର୍ଯ୍ୟ କରିଆସିଛନ୍ତି । ପିତାଙ୍କ ନାମ ବୈଦ୍ୟନାଥ ମିଶ୍ର । ଜନ୍ମବେଳେ ପିତା ତାଙ୍କ ନାମ ରଖିଲେ ଆର୍ତ୍ତତ୍ରାଣ । ପ୍ରକଟ ତିଥି ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ । ସେ ଥିଲେ ଆଜନ୍ମ ସଂସାର ଆସକ୍ତି ଉଦାସୀନ । ଇଂରେଜୀ ପାଠ ପଢ଼ା, ଘର ସଂସାର କାହିଁରେ ତାଙ୍କ ମନ ଲାଗିଲା ନାହିଁ । କାହାକୁ କିଛି ନ ଜଣାଇ ପହଞ୍ଚିଲେ ବାଲେଶ୍ୱର । ପଢ଼ିଲେ ସଂସ୍କୃତ ସାହିତ୍ୟ । ରଙ୍ଗ ମଞ୍ଚରେ ଦିନେ କୃଷ୍ଣଲୀଳା ନାଟକ ଦର୍ଶନ କରୁ କରୁ ଭାବାବିଷ୍ଟ ହୋଇଗଲେ । ଶ୍ରୀ ନନ୍ଦନନ୍ଦନଙ୍କର ବଣଭୋଜି ଲୀଳା, ଗୋଚାରଣ ଲୀଳା ଓ କାଳୀୟ ଦଳନ ଲୀଳା ଦର୍ଶନ କରୁ କରୁ ତିନି ଦିନ ତିନି ରାତି ଭାବ ସମାଧିରେ ରହିଗଲେ ।

ଘରକୁ ଫେରି ଆର୍ତ୍ତତ୍ରାଣ ଦେଖିଲେ ଓଡ଼ିଶାରେ ଦୁର୍ଭିକ୍ଷ, ଖାଦ୍ୟାଭାବର ଉତ୍କଟ ସମସ୍ୟା । ବିଗଳିତ ହେଲା ହୃଦୟ । ଭାବିଲେ ଦ୍ରୌପଦୀଙ୍କ ଭଳି ଏକ ଅକ୍ଷୟ

ପାତ୍ର ଯୋଗାଡ଼ କରିବେ । ଜନତା ଜନାର୍ଦ୍ଦନଙ୍କ ଦୁଃଖ ହରଣ କରିବେ । ପହଞ୍ଚିଲେ ସୁଦୂର ଆସାମର କାମାକ୍ଷା ମନ୍ଦିର । କଠୋର ସାଧନାରେ ଲାଗିଗଲେ । ଦିନେ ଶୁଣିଲେ ଆଦି ଶଙ୍କର ଆଚାର୍ଯ୍ୟଙ୍କ ଲିଖିତ ବିବେକ ଚୂଡ଼ାମଣି ଗ୍ରନ୍ଥର ବ୍ୟାଖ୍ୟା । ଏବେ ମନ ଦୌଡ଼ିଲା ବେଦ ବେଦାନ୍ତର ଜ୍ଞାନ ପ୍ରାପ୍ତି ଉଦ୍ଦେଶ୍ୟରେ । ପହଞ୍ଚିଲେ କାଶୀ ବିଶ୍ୱନାଥ କ୍ଷେତ୍ର ବାରଣାସୀ । ଜ୍ଞାନର କୋଥଳି ଧରି ଫେରି ଆସିଲେ ପୁରୀଧାମ । ଥରେ ବାବା ରେଳଯାତ୍ରା କରିବାବେଳେ ଟିକେଟ ଚେକ୍ ହେଲା । ତାଙ୍କ ପାଖରେ ପଇସା କିମ୍ବା ଟିକେଟ୍ ନଥାଏ । ଗାଳି ଖାଇଲେ । ସଂକଳ୍ପ କଲେ ଆଉ କେବେ ରେଳଗାଡ଼ିରେ ବସିବେ ନାହିଁ । ୭୩ ବର୍ଷରେ ଆୟୁଷ ଶେଷ ହେବାଯାଏ କେବେ ବି ସେ ରେଳଗାଡ଼ିରେ ବସିନାହାନ୍ତି । ହରିଦ୍ୱାରରୁ ଏଲାହାବାଦ ଯାଏଁ ଶହ ଶହ କି.ମି. ବାଟ ବିଂଶ ଶତାବ୍ଦୀ କାଳରେ ମଧ୍ୟ ସେ ପାଦରେ ଚାଲିଛନ୍ତି । ଥକାନ୍ କ'ଣ ଜାଣିନାହାନ୍ତି ଜୀବନରେ ।

କର, କୋଷ୍ଠି, କପାଳରୁ ଜ୍ୟୋତିଷମାନେ ଜଣାଇଦେଲେ ତାଙ୍କର ଆୟୁଷ ମାତ୍ର ୩୨ ବର୍ଷ । ପହଞ୍ଚିଲେ ଗୋବର୍ଦ୍ଧନ ମଠ । ଶରଣ ପଶିଲେ ଶଙ୍କରାଚାର୍ଯ୍ୟଙ୍କର । ତାଙ୍କୁ ଗୁରୁ ବରଣ କଲେ । ନାମ ହେଲା ବାସୁଦେବ ସ୍ୱରୂପ । ଜ୍ଞାନ ସାଧନାରେ ଯେତେ ଜ୍ଞାନ ଅର୍ଜନ କଲେ ସେତେ ସେତେ ଅହଂକାର ବୃଦ୍ଧି ହେବାର ଅନୁଭବ କଲେ ସେ । ଅଶାନ୍ତି କବଳରେ ପଡ଼ି ଖୋଜିଲେ ପ୍ରେମ ମାର୍ଗର ଜଣେ ସିଦ୍ଧ ଗୁରୁ(ସଦ୍‌ଗୁରୁ) । ପୁଣି ଦୌଡ଼ିଲେ କାଶୀ ଠାରୁ, କନ୍ୟା କୁମାରୀ ଏବଂ କାମାକ୍ଷା ପର୍ଯ୍ୟନ୍ତ । ମିଳିଲା ବାକ୍ ସିଦ୍ଧି ଓ ଟେଲିପାଥି(ଯେଉଁଥିରେ ଅନ୍ୟର ଭାବନାକୁ ଜାଣିହୁଏ) । ତଥାପି ସେ ଅଶାନ୍ତ । ବୁଲିଲେ ପୁନା, ପଣ୍ଢରପୁର, ହରଦ୍ୱାର, ଋଷିକେଶ ଆଦି ତୀର୍ଥ । ଭେଟିଲେ ଅନେକ ଗୁରୁ, ସାଧୁ, ସନ୍ଥ ଓ ସିଦ୍ଧ ମହାପୁରୁଷ । କିନ୍ତୁ କେହି ହେଲେ ପ୍ରେମ ସିଦ୍ଧ ମହାପୁରୁଷ ମିଳିଲେନି ।

ଶେଷରେ ପୁଣି ଆସି ପହଞ୍ଚିଲେ ଶ୍ରୀଜଗନ୍ନାଥ ଧାମ ପୁରୀ । ୧୯୦୭ମସିହାରେ ପ୍ରାପ୍ତ ହେଲେ କୃଷ୍ଣ ପ୍ରେମ ମାର୍ଗୀ ସଦ୍‌ଗୁରୁ । ନାମ ହେଲା ଶ୍ରୀପୂର୍ଣ୍ଣାନନ୍ଦ ତୀର୍ଥ । ଚାଲିଲେ ବ୍ରଜମଣ୍ଡଳ । ଆରମ୍ଭ ହେଲା ବ୍ରଜ ପ୍ରେମ ସାଧନା । ବରସାନା, ନନ୍ଦଗାଁ, ଗିରିରାଜ ଗୋବର୍ଦ୍ଧନ, ଶ୍ରୀବୃନ୍ଦାବନ, କାମ୍ୟବନ ଆଦି ବୁଲି ପ୍ରେମ ମାର୍ଗ ପ୍ରଚାର ପ୍ରସାର କରି ଜୀବନ ଧନ୍ୟ କଲେ । ପ୍ରଥମେ ସେ ଗଙ୍ଗାନଦୀ କୂଳରେ ରାମଘାଟ, କର୍ଣ୍ଣବାସ ଠାରେ ଆଶ୍ରମ ସ୍ଥାପନ କରି ଯୋଗ ଓ ପ୍ରେମ ଧର୍ମର ଶିକ୍ଷା, ପ୍ରଚାର ପ୍ରସାର ବ୍ୟବସ୍ଥା ମଧ୍ୟ କରିଥିଲେ । ଶେଷରେ ଅଖଣ୍ଡାନନ୍ଦ ସ୍ୱାମୀଙ୍କ ସଙ୍ଗ ପ୍ରାପ୍ତ ହେଲେ ।

୧୯୩୮ ମସିହାରେ ଉଭୟଙ୍କ ଆଶ୍ରମ ବୃନ୍ଦାବନର ମୋତିଝୀଲ ଓ ଦାବାନଳ କୁଣ୍ଡଠାରେ ସ୍ଥାପିତ ହେଲା ।

ଓଡ଼ିଆ ବାବାଙ୍କର ବୃନ୍ଦାବନରେ ଶ୍ରୀକୃଷ୍ଣାଶ୍ରମ ସ୍ଥାପନ ହେବାପରେ ବୃନ୍ଦାବନ ଧାମର ଜ୍ଞାନ-ଭକ୍ତି-ପ୍ରେମ ରାଜ୍ୟର ଇତିହାସ ଓ ନକ୍ସା ବଦଳିଗଲା । ପୂର୍ବରୁ ବୃନ୍ଦାବନ ଧାମରେ ଗେରୁଆ ବସ୍ତ୍ରଧାରୀ, ଏକଦଣ୍ଡ ସନ୍ନ୍ୟାସୀଙ୍କୁ ବ୍ରଜବାସୀମାନେ ଦୂର ଦୂର ମାର ମାର କରୁଥିଲେ । ବ୍ରଜମଣ୍ଡଳ କେବଳ ଗୃହସ୍ଥମାନଙ୍କ ଚରାଭୂଇଁ ବୋଲି ପରିଚିତ ଥିଲା । ପ୍ରଥମ ଥର ଲାଗି ଓଡ଼ିଆ ବାବା ଗୃହତ୍ୟାଗୀ ସନ୍ନ୍ୟାସୀମାନଙ୍କ ଥଇଥାନ ବ୍ୟବସ୍ଥା ଖଞ୍ଜିଲେ । ସେ କିନ୍ତୁ ଜ୍ଞାନ ସାଧନା ଓ ପ୍ରେମ ସାଧନାକୁ ଅଲଗା ଅଲଗା କରାଉଥିଲେ । ଦିନସାରା ଜ୍ଞାନ, ବେଦାନ୍ତ, ପ୍ରବଚନ, ପ୍ରଶ୍ନୋତ୍ତର ଚାଲୁଥାଏ । ଦ୍ୱିପ୍ରହର ପରେ ଆରମ୍ଭ ହୁଏ ପ୍ରେମ ସାଧନା ପର୍ଯ୍ୟାୟ । ଭଜନ, କୀର୍ତ୍ତନ, ଖୋଳ, କରତାଳ, ଝାଞ୍ଜର କାନଫଟା ମାଡ଼ ସହିତ ଉଦ୍ଦଣ୍ଡ ନାମ ସଂକୀର୍ତ୍ତନ ଓ କୃଷ୍ଣପ୍ରେମୀମାନଙ୍କର ନର୍ତ୍ତନ ।

ଦାବାନଳ କୁଣ୍ଡ ପାଖରେ ତାଙ୍କ ଆଶ୍ରମରେ ୧୦ବର୍ଷ (୧୯୩୮-୧୯୪୮) ବାବାଙ୍କ ମହାସମାଧି ପର୍ଯ୍ୟନ୍ତ ଜ୍ଞାନର ଗହନ ଗମ୍ଭୀର ଚର୍ଚ୍ଚା ସହିତ ପ୍ରେମର ମଧୁର ମନ୍ଦାକିନୀ ପ୍ରବାହିତ ହେଉଥାଏ । ବାବାଙ୍କର ଜୀବଦ୍ଦଶା ମଧ୍ୟରେ କୌଣସି ବିଶ୍ୱସ୍ତ ଶିଷ୍ୟ ମଧ୍ୟ ଜାଣିପାରିଲେନି (ଏପରିକି ଅଖଣ୍ଡାନନ୍ଦ ସରସ୍ୱତୀ କିମ୍ବା ହରିବାବା, ମଦନ ମୋହନ ମାଲବ୍ୟ, ଆନନ୍ଦମୟୀ ମା' ପର୍ଯ୍ୟନ୍ତ) ବାବା ଅଦ୍ୱୈତ ବେଦାନ୍ତ ଉପାସକ ନା ଦ୍ୱୈତ ବେଦାନ୍ତ ଉପାସକ । ପୁଣି ବାସ୍ତବରେ ସେ ଶୈବ, ଶାକ୍ତ ନା ବୈଷ୍ଣବ ନା ଅନ୍ୟ କିଛି । ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ପରେ ଓଡ଼ିଆ ବାବା ଥିଲେ ଜ୍ଞାନ-ପ୍ରେମ ରାଜ୍ୟରେ ଏକ ଅତି ଅବୋଧ ବିସ୍ମୟ ବା ପ୍ରଶ୍ନବାଚୀ ।

ଏହି ଅଧମ ଲେଖକ ୨୦୧୪ ମସିହାରେ ତାଙ୍କ ବୃନ୍ଦାବନ ଶ୍ରୀକୃଷ୍ଣାଶ୍ରମ ଆଶ୍ରମରେ ପହଞ୍ଚି ତାଙ୍କ ସଂରକ୍ଷିତ ପାଦୁକାକୁ ପ୍ରଣାମ କରି ନିଜକୁ ଭାଗ୍ୟବାନ ମନେ କରିଛି । ତାଙ୍କ ନିର୍ମିତ ହରିବାବା କୁଟୀର, ବିଶାଳ ପୁସ୍ତକାଳୟ, ସତ୍ସଙ୍ଗ ଭବନ ଓ ବୈଠକଖାନା ଦର୍ଶନୀୟ । ବୈଠକଖାନାର ଠିକ୍ ତଳେ ତାଙ୍କ ଭୂଗର୍ଭସ୍ଥିତ ଧ୍ୟାନ କୁଟୀର ଓ ପୁଷ୍ପସମାଧି ଅଛି ।

୧୯୪୮ ମସିହାରେ ବାବା ଜାଣିପାରିଲେ ଲୀଳା ପ୍ରବେଶ ସମୟ ଆସିଗଲା ବୋଲି । ନିଜ ଆଶ୍ରମରେ ଭାଗବତ ଶ୍ରବଣରେ ବସିଗଲେ ପଦ୍ମାସନରେ ଅନେକ ଅନେକ ଶିଷ୍ୟ ମେଳରେ । ବିଧିର ନିର୍ଦ୍ଦେଶ ସମସ୍ତେ ମାନିବାକୁ ବାଧ୍ୟ । ପଛପଟୁ କିଏ

ଜଣେ ବାରବର୍ଷ ପୂର୍ବେ ଯାହାଙ୍କୁ କାଶୀ ବିଦ୍ୱତ୍ ସଭାରେ ତର୍କରେ ହରାଇ ଦେଇଥିଲେ । ତାଙ୍କୁ ଡ଼ାକି ଆଣି ନିଜ ସେବା ସୁଯୋଗ ଦେଇଥିଲେ ତର୍କରେ ହାରିବା କ୍ରୋଧକୁ ପ୍ରଶମିତ କରିବା ପାଇଁ । ସେ ଏକ ତୀକ୍ଷ୍ଣ ହତିଆର ଧରି ଆସିଲେ । ବାବାଙ୍କ ମସ୍ତକରେ ପଡ଼ିଲା ପାହାର ପରେ ପାହାର । ଓଡ଼ିଆ ବାବା ଦେହ ଖୋଳ ତ୍ୟାଗ କରିଦେଲେ । ବ୍ରଜଲୀଳାରେ ପ୍ରବେଶ କଲେ । ଓଡ଼ିଆ ବାବାଙ୍କ ଅନ୍ତିମ ଇଛା ଅନୁସାରେ ତାଙ୍କ ପାର୍ଥିବ ଦେହକୁ ଅଗ୍ନି ସଂସ୍କାର କିମ୍ବା ଭୂମି ତଳେ ପୋତି ସଂସ୍କାର କରାଗଲା ନାହିଁ । ଶ୍ରୀ ଯମୁନା ଜଳରେ ଜଳ ସମାଧି ଦିଆଗଲା । ୧୯୬୨ମସିହାରେ ତାଙ୍କର ଅଷ୍ଟଧାତୁ ବିଗ୍ରହ ପ୍ରସ୍ତୁତ କରାଯାଇ ଏବେ ତାଙ୍କର ସେବା ପୂଜା କରାଯାଉଛି । ତାଙ୍କର ଅନୁଗତ ଆଶ୍ରମବାସୀ କୁହନ୍ତି ପ୍ରେମରସରେ ସିଦ୍ଧ ଆମ ଓଡ଼ିଆ ବାବା ସ୍ୱୟଂ ଏହି ଚିନ୍ମୟ ବିଗ୍ରହ ରୂପ ଧାରଣ କରି ଆମକୁ ରାଧାକୃଷ୍ଣ ପ୍ରେମ ବାଣ୍ଟୁଛନ୍ତି ଓ ନିଜେ ନିତି ନିତି ଲୁଟୁଛନ୍ତି । ସ୍ୱାମୀ ଅଭେଦାନନ୍ଦ ବୋଲି ଜଣେ ଓଡ଼ିଆ ମହାତ୍ମା ବାଙ୍କି ଅଞ୍ଚଳରୁ ଯାଇ ସେହି ଆଶ୍ରମରେ ଗତ ୩୮ ବର୍ଷ ହେଲା ସାଧନା କରୁଛନ୍ତି ।

ଭକ୍ତି-ଭକ୍ତ-ଭଗବାନ -ଗୁରୁଙ୍କର ଜୟ ହେଉ ।

## ୧୦. ଶ୍ରୀ ନିମ କରୋଲି ବାବା:

ପ୍ରଶ୍ନ-୧୦୬: ଶ୍ରୀ ବୃନ୍ଦାବନ ଧାମରେ ପ୍ରାୟତଃ ସମସ୍ତେ ଶ୍ରୀରାଧା କୃଷ୍ଣ ଉପାସନା କରିଥାନ୍ତି । ଚିତ୍ରକୂଟ, ଅଯୋଧାରେ ପ୍ରାୟ ଶ୍ରୀ ସୀତାରାମ ପୂଜିଥାନ୍ତି । ତେବେ ଶ୍ରୀ ବୃନ୍ଦାବନରେ ହନୁମାନ ଉପାସନା କରି ଲକ୍ଷ୍ୟ ଶ୍ରୀକୃଷ୍ଣପ୍ରେମ ପ୍ରାପ୍ତ ହେବାର ଦୃଷ୍ଟାନ୍ତ ଅଛି କି ?

ଉ. ଶ୍ରୀବୃନ୍ଦାବନର ଇସ୍‌କନ ମନ୍ଦିର ନିକଟରେ ବୃନ୍ଦାବନ ପରିକ୍ରମା ମାର୍ଗରେ ନିମ କରୋଲି ବାବାଙ୍କ ଆଶ୍ରମରେ ଶ୍ରୀ ହନୁମାନଜୀଙ୍କର ଏକ ସୁନ୍ଦର ମନ୍ଦିର ବିଦ୍ୟମାନ । ତାଙ୍କ ଭକ୍ତ ଶ୍ରୀନିମ କରୋଲି ବାବା ବ୍ରଜମଣ୍ଡଳର କାହିଁକି ଭାରତଭୂମି ତଥା ସୁଦୂର ଆମେରିକାର ସିଦ୍ଧିକାମୀ ଭକ୍ତମାନଙ୍କ ମଧ୍ୟରେ ସର୍ବୋଚ୍ଚ ଚମତ୍କାରୀ ବାବା ବୋଲି ସେ ବିଖ୍ୟାତ ହୋଇଥିଲେ । ଜନ୍ମ ତାଙ୍କର ଉତ୍ତର ପ୍ରଦେଶର ଆକବର ପୁରରେ । ମସିହା ଅଜଣା । ରୀତିମତ ଗୃହସ୍ଥ । ଦେଖିବାକୁ ପୁଣି ପକ୍କା ସଂସାରୀ । ଏକାଧିକ ପୁତ୍ର, କନ୍ୟାଙ୍କର ଜନକ । ୧୭ବର୍ଷରେ ପୂର୍ବ ଜନ୍ମର ପ୍ରାପ୍ତ ସିଦ୍ଧିର ମାଲିକ ହେଲେ ସେ । ତ୍ରିକାଳଜ୍ଞ ସିଦ୍ଧି, ପର ମନ କଥା ଜାଣିବା ଆଦି ଅନେକ ସିଦ୍ଧିର ମାଲିକ ବୋଲାଇଲେ । ୧୯୫୮ମସିହାରେ ଗୃହତ୍ୟାଗ କଲେ କୃଷ୍ଣପ୍ରେମ ପ୍ରାପ୍ତି ଲକ୍ଷ୍ୟରେ ।

ସାରା ଉତ୍ତର ଭାରତର ଅନେକ ସ୍ଥାନ ଭ୍ରମଣ କରି ଶ୍ରୀହନୁମାନ ଉପାସନା ପ୍ରଚାର ପ୍ରସାର କରାଇଥିଲେ ୧୦୮ହନୁମାନ ମନ୍ଦିର ସ୍ଥାପନ କରି । ଥରେ ବାବା ରେଳଗାଡ଼ିରେ ବସି ଯାଉଥିଲେ । ପାଖରେ ପଇସା କିମ୍ବା ରେଳ ଟିକେଟ ନଥାଏ । ଟିକେଟ ଚେକିଂରେ ପଡ଼ିଲେ । ଘଟଣା ୧୯୪୭ ପୂର୍ବର । ଦେଶ ପରାଧୀନ ଥାଏ । ଟିକେଟ କଲେକ୍ଟର ଇଂରେଜ ବାବୁ । ଏହି ଭାରତୀୟ ଯାତ୍ରୀଙ୍କୁ ଅପମାନ ଦେଇ ରେଳରୁ ଓହ୍ଲାଇ ଦେଲେ । ହୁଇସିଲ ବାଜିଲା । ସବୁଜ ପତାକା ଦେଖାଗଲା । ଇଞ୍ଜିନ୍ ଷ୍ଟାର୍ଟ ହେଲା । ରେଳ ଚାଲିଲା ନାହିଁ । ଚକଗୁଡ଼ିକ କେବଳ ସେଇଠି ବୁଲୁଥାଏ । ବାରମ୍ବାର ଚେଷ୍ଟା ଚାଲିଲା । ସବୁ ଚେଷ୍ଟା ଅସଫଳ । ପାଖ ଷ୍ଟେସନରୁ ଆଉ ଗୋଟେ ଇଞ୍ଜିନ ଅଣାଗଲା । ଦୁଇ ଇଞ୍ଜିନ ଲାଗିଲେ ଟାଣିବାକୁ । କି ଆଶ୍ଚର୍ଯ୍ୟ । ଗାଡ଼ି ଆଦୌ ଟସ୍ କି ମସ୍ ହେଉନି ।

ଶେଷରେ କଥାଟି ଜଣା ପଡ଼ିଲା ଏ କାଣ୍ଡ ସେଇ ଅପମାନିତ ନିମ କରୋଲୀ ବାବାଙ୍କର । ଭାରତୀୟ ଫକୀର ସାଧୁ । ଶରଣ ପଶିଲେ ଇଂରେଜ ବାବୁ । ବାବା କିନ୍ତୁ ସହଜରେ ଛାଡ଼ିବା ଲୋକ ନୁହନ୍ତି । ବାବା କହିଲେ, ''ଏ ଷ୍ଟେସନର ନାମ ବଦଳା ଯାଉ । ଇଂରେଜମାନେ ସାଧୁମାନଙ୍କୁ ରେଳରେ ଯାତ୍ରାବେଳେ ଟିକେଟ ନ ମାଗନ୍ତୁ ।'' ସବୁ କଥା ତାଙ୍କର ରହିଲା । ସେଇ ଦିନରୁ ସେ ରେଳଷ୍ଟେସନ ନାମ ନିମ କରୋଲି ରଖାଯାଇଛି ।

ବାବା ତାଙ୍କ ଜୀବନରେ ଅନେକ ଧନୀ ଲୋକଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିଛନ୍ତି । ଲକ୍ଷ ଲକ୍ଷ ଲୋକଙ୍କୁ ନାମ ଭଜନ କରାଇଛନ୍ତି । ପ୍ରସାଦ ସେବନ ଆଦି ସହିତ ନାମ ସେବା କାର୍ଯ୍ୟ ସାରା ଜୀବନଯାକ କରିଯାଇଛନ୍ତି ।

ଆପ୍‌ଲ କମ୍ପ୍ୟୁଟର କମ୍ପାନୀର ପ୍ରତିଷ୍ଠାତା ଷ୍ଟିଭ ଜବ୍‌ସ ତାଙ୍କର ଶିଷ୍ୟ । ସେ ନେପାଳ, ଭାରତ, ପାକିସ୍ଥାନ, ଶ୍ରୀଲଙ୍କା ଓ କାମ୍ବୋଡ଼ିଆରେ ୩୫ଲକ୍ଷ ଲୋକଙ୍କର ମାଗଣା କାଟାରାକ୍‌ଟ ଚକ୍ଷୁ ଅପରେସନ କରାଇଛନ୍ତି । ଶ୍ରୀ ବାବା କିନ୍ତୁ ତାଙ୍କର ଚମତ୍କାରର କସ୍ମିନ୍ କାଳେ ଅପବ୍ୟବହାର କରୁନଥିଲେ । ତାଙ୍କର ହୃଦୟ କିନ୍ତୁ ଦୀନ, ଦୁଃଖୀ, ବ୍ୟାଧି ପୀଡ଼ିତଙ୍କ ପ୍ରତି ସଦା ଦୟାଦ୍ର ରହୁଥିଲା । ତାଙ୍କର ଅଗଣିତ ଭକ୍ତ ଦୀନ ଦୁଃଖୀ ସେବା କରିବା ଲାଗି ତାଙ୍କଠାରୁ ଅସୀମ ପ୍ରେରଣା ପାଇଛନ୍ତି ।

ଏକ ସମୟରେ ଦୁଇ ସ୍ଥାନରେ ସେ ପ୍ରକଟ ହୋଇପାରୁଥିଲେ । ଦେଖୁ ଦେଖୁ ସେ ଅଦୃଶ୍ୟ ହେବା ଓ ଶୂନ୍ୟରୁ ପ୍ରକଟ ହୋଇଯିବା ଆଦି ସିଦ୍ଧି ଅର୍ଜନ କରି

ଦେଶ ବିଦେଶରୁ ଅନେକ ସାଧକ ବୈଜ୍ଞାନିକ ତାଙ୍କ ଦର୍ଶନ, କୃପା ଲାଗି ଧାଡ଼ି ବାନ୍ଧୁଥିଲେ । ଶ୍ରୀହନୁମାନଜୀଙ୍କ କୃପାପ୍ରାପ୍ତ ଶ୍ରୀ ନିମକରୋଲି ବାବା ୧୯୭୩ମସିହାରେ ବୃନ୍ଦାବନଧାମରେ ସମାଧି ନେଇଛନ୍ତି ।

ଇସ୍କନ୍ ମନ୍ଦିରଠାରୁ ଟେମ୍ପୋଟିଏ କରି ଏହି ବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଚମତ୍କାରୀ ଭାରତୀୟ ଅଧ୍ୟାତ୍ମ ଜଗତର ଚରମ ବିସ୍ମୟକାରୀ ବାବାଙ୍କ ଆଶ୍ରମ ଲେଖକ ନିଜ ପୁତ୍ର ଓ ପତ୍ନୀଙ୍କ ସହିତ ଦର୍ଶନ କରି ତାଙ୍କ ପାଦ ପୂଜା କରି ନିଜକୁ ଧନ୍ୟ ମନେ କରିଛି ।

## ୧୧. ଶ୍ରୀ ଅଭୟ ଚରଣ ଭକ୍ତି ବେଦାନ୍ତ ସ୍ୱାମୀ:

ପ୍ରଶ୍ନ-୧୦୭: ପୃଥିବୀର ସବୁଠାରୁ ବଡ଼ ହିନ୍ଦୁ ସମାଧି ମନ୍ଦିର କେଉଁ ମହାପୁରୁଷଙ୍କର କେଉଁଠାରେ ବିଦ୍ୟମାନ ?

ଉ. ଭାରତ ଋଷି, ମୁନି, ସାଧୁ, ସନ୍ଥ ଓ ମହାପୁରୁଷଙ୍କ ଦେଶ । ଆଜି ଇସ୍କନ ନାମରେ ଯେଉଁ ଶ୍ରୀକୃଷ୍ଣ ଚୈତନ୍ୟ ପ୍ରେମର ପ୍ରଚାରକ ସଂସ୍ଥା ସାରା ପୃଥିବୀର ଛଅ ମହାଦେଶରେ କ୍ରିୟାଶୀଳ ତାର ପ୍ରତିଷ୍ଠାତା ଆଚାର୍ଯ୍ୟ ଅଭୟ ଚରଣ ଦେ ବା ଅଭୟ ଚରଣାରବିନ୍ଦ ଭକ୍ତି ବେଦାନ୍ତ ସ୍ୱାମୀ କଲିକତା ସହରର ଟଲିଗଞ୍ଜଠାରେ ପ୍ରକଟ ହେଲେ ସନ ୧୮୯୬ମସିହାରେ । ଅନେକ ଜନ୍ମରେ ଅର୍ଜିତ ପୁଣ୍ୟର ଫଳରୂପେ ସେ ଏକ ପବିତ୍ର ବୈଷ୍ଣବ ପରିବାରରେ ଜନ୍ମନେଲେ । ତିଥି ଥିଲା ଶ୍ରୀକୃଷ୍ଣ ଜନ୍ମାଷ୍ଟମୀର ପର ଦିନ ନନ୍ଦ ଉତ୍ସବ । ବିବାହ କଲେ ୧୯୧୮ରେ ବଙ୍ଗାଳୀ ସୁନ୍ଦରୀ ରାଧାରାଣୀଙ୍କୁ ଯାହାଙ୍କର ବୟସ ସେତେବେଳେ ମାତ୍ର ୧୧ବର୍ଷ । ତିନି ବର୍ଷ ପରେ ପୁତ୍ର ସନ୍ତାନ ପ୍ରାପ୍ତ ହେଲେ ଅଭୟଚରଣ ।

୧୯୩୨ରେ ବୈଷ୍ଣବ ଦୀକ୍ଷା, ୧୯୫୦ରେ ବାନପ୍ରସ୍ଥ ଆଦରି ନେଲେ । ପତ୍ନୀ ରାଧାରାଣୀ ତାଙ୍କର ଭାଗବତ ପଠନ, ବୈଷ୍ଣବ ଜୀବନ ଯାପନର ଖିଲ୍ଲି ଉଡ଼ାଉଥିଲେ । ଦିନେ ତାଙ୍କର ପ୍ରିୟ ଭାଗବତ ବହି ଖଣ୍ଡିକ ରଦି ଖବରକାଗଜ ବାଲାକୁ ଓଜନରେ ବିକି ଦେଲେ । ବଦଳରେ ପ୍ୟାକେଟ୍‌ଟିଏ ବିସ୍କୁଟ କିଣି ପତିଙ୍କୁ ଦେଲେ । ଶ୍ରୀକୃଷ୍ଣଙ୍କ ତତ୍‌କାଳ କୃପା ବର୍ଷା ହେଲା । ସେଇ ମୁହୂର୍ତ୍ତରେ ସେ ସନ୍ନ୍ୟାସ ଆଦରି ନେଲେ । ୧୯୫୯ରେ ସଦ୍‌ଗୁରୁ ଶ୍ରୀଭକ୍ତି ସିଦ୍ଧାନ୍ତ ସରସ୍ୱତୀଙ୍କୁ ଆଶ୍ରୟ କଲେ । ତାଙ୍କ ନିର୍ଦ୍ଦେଶରେ ଦେଶ ଓ ବିଦେଶରେ ଭାଗବତ ଧର୍ମ ଓ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ସଂକୀର୍ତ୍ତନ ଲୀଳା ପ୍ରଚାରର ଶୁଭ ଆରମ୍ଭ କରିଦେଲେ ।

୧୯୬୫ମସିହାରେ ଅର୍ଥ ଅଭାବରୁ ମାଲବୁହା ପାଣି ଜାହାଜରେ ଯାଇ ସୁଦୂର ଆମେରିକାରେ ପହଞ୍ଚିଥିଲେ । ପରିଣତ ବୟସ । ତଥାପି ହଲେ ଗିନି ଧରି ମହାମନ୍ତ୍ର ଗାଇ ବୁଲିଲେ ଗଳି କନ୍ଦିରେ, ସର୍ବସାଧାରଣ ପାର୍କ, ଉଦ୍ୟାନ ଆଦିରେ । ମହାମନ୍ତ୍ରର ସ୍ପନ୍ଦନ ଆକର୍ଷଣ କଲା ତତ୍‌କାଳୀନ ହିପିମାନଙ୍କୁ । ଚରସ, ନିଶାଗ୍ରସ୍ତ ଜୀବନ ଲକ୍ଷ୍ୟ ଭୁଲି ଥିବା ଯୁବକ ଯୁବତୀମାନେ ତାଙ୍କ ସହ ସଂକୀର୍ତ୍ତନରେ ଯୋଗଦେଲେ । କାଳକ୍ରମେ ସଂଖ୍ୟା ବୃଦ୍ଧି ପ୍ରାପ୍ତ ହେଲା । ୧୯୬୬ମସିହାରେ ଇସ୍‌କନ ସଂସ୍ଥା ଆରମ୍ଭ ହେଲା ।

ଯେଉଁ ଶ୍ରୀମଦ୍ ଭାଗବତର ସେ ଇଂରେଜୀ ଅନୁବାଦ ଶ୍ରୀବୃନ୍ଦାବନ ଧାମର ଶ୍ରୀରାଧା ଦାମୋଦର ମନ୍ଦିରରେ ଆରମ୍ଭ କରିଥିଲେ ତାର ଅନୁବାଦରେ ଲାଗିଗଲେ । ସଂପୂର୍ଣ୍ଣ କଲେ । ଭକ୍ତି ଉପରେ ଅନେକ ଗ୍ରନ୍ଥ ରଚନା କଲେ । ଶ୍ରୀମଦ୍ ଭାଗବତ ଓ ଶ୍ରୀ ଚୈତନ୍ୟ ଚରିତାମୃତର ଇଂରେଜୀ ଅନୁବାଦ ଆମେରିକାରେ ପ୍ରକାଶିତ ହେଲା । ପାଶ୍ଚାତ୍ୟ ଜଗତ କ୍ରମେ ସେ ଦୁଇ ମହାଗ୍ରନ୍ଥଙ୍କର ରସ ଆସ୍ୱାଦନ କଲା । ନାମ ସଂକୀର୍ତ୍ତନ ଆନ୍ଦୋଳନ ବୀଜରୁ, ଅଙ୍କୁର ହୋଇ ଶେଷରେ ଏକ ମହାଦ୍ରୁମରେ ପରିଣତ ହେଲାଣି ।

ଶ୍ରୀମାୟାପୁର ଓ ଶ୍ରୀଧାମ ବୃନ୍ଦାବନ ସହିତ ୧୦୮ ସ୍ଥାନରେ ମହାର୍ଘ ମନ୍ଦିରମାନ ମୁଣ୍ଡ ଟେକିଲା । ବାରବର୍ଷ ମଧ୍ୟରେ ସେ ୧୪ଥର ପରିକ୍ରମା କଲେ ଛଅ ମହାଦେଶ ମଧ୍ୟରେ । ଆଜିର ବିଶାଳ ଅକ୍ଷୟ ପାତ୍ର ଯୋଜନା ଯାହା ଲକ୍ଷ ଲକ୍ଷ ସ୍କୁଲ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ଯୋଗାଉଛି ତାହା ତାଙ୍କ ଉନ୍ନତ ମସ୍ତିଷ୍କର ଏକ ଅବିସ୍ମରଣୀୟ ଅବଦାନ । ବୈଧିମାର୍ଗରେ ଶ୍ରୀରାଧାକୃଷ୍ଣ ଯୁଗଳ ଉପାସନା କରି କରାଇ ୧୯୭୭ମସିହାରେ ଶ୍ରୀବୃନ୍ଦାବନରେ ରମଣରେତିଠାରେ ମହାସମାଧିରେ ପ୍ରବେଶ କଲେ । ତାଙ୍କ ପାର୍ଥିବ ଶରୀରକୁ ଆଜିର ଶ୍ରୀ ବୃନ୍ଦାବନ ଇସ୍‌କନ(ଇଂରେଜ) ମନ୍ଦିରରେ ବହୁ ଆଡ଼ମ୍ବର ସହକାରେ ସମାଧି ଦିଆଯାଇଛି । ଶ୍ରୀମାୟାପୁର ଧାମରେ କିନ୍ତୁ ତାଙ୍କର ଦେହାବଶେଷକୁ ରଖାଯାଇ (ବୋଧ ହୁଏ) ପୃଥିବୀ ଗ୍ରହର ସର୍ବବୃହତ୍ ସମାଧି ମନ୍ଦିର, ତାଙ୍କ ଜନ୍ମ ଶତବାର୍ଷିକୀ ୧୯୯୬ମସିହାରେ ସ୍ଥାପିତ ହୋଇଛି ।

**୧୨. ଶ୍ରୀ ଅଖଣ୍ଡାନନ୍ଦ ସରସ୍ୱତୀ:**

ପ୍ରଶ୍ନ-୧୦୮: ଶ୍ରୀମଭଗବତ ଗୀତାରେ ଭଗବାନ ଭକ୍ତ ଅର୍ଜୁନଙ୍କୁ କର୍ମ, ଜ୍ଞାନ, ଧ୍ୟାନ ଓ ଭକ୍ତିଙ୍କୁ ଚାରିଯୋଗ କହିଲେ । କର୍ମ, ଜ୍ଞାନ ଓ ଭକ୍ତିଙ୍କୁ ତିନି ମାର୍ଗ

ବୋଲି କହିଲେ । ଜ୍ଞାନ ଏବଂ ଭକ୍ତିକୁ ଦୁଇଟି ନିଷ୍ଠା ବୋଲି ପ୍ରତିପାଦନ କଲେ । ଅନେକ ଆଧ୍ୟାତ୍ମ ମାର୍ଗୀ ସାଧକ ଏହି ଦୁଇ ନିଷ୍ଠାରୁ ଗୋଟିଏ ଧରି ଅନ୍ୟଟିର ଖଣ୍ଡନ କରିବା ଏକ ସାଧାରଣ କଥା । ବିଂଶ ଶତାବ୍ଦୀରେ କେଉଁ ଆଧ୍ୟାତ୍ମ ସାଧକ ଜ୍ଞାନ ନିଷ୍ଠା ଓ ଭକ୍ତି ନିଷ୍ଠାର ସମନ୍ୱୟ ପ୍ରଥମେ କରି ଆମ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି ?

ଉ. ବିଂଶ ଶତାବ୍ଦୀର ଆଧ୍ୟାତ୍ମ୍ୟଜଗତର ଏକ ଅତି ଉଜ୍ଜ୍ୱଳ ତାରକା ଋଷିପ୍ରତିମ ଶ୍ରୀ ଅଖଣ୍ଡାନନ୍ଦ ସରସ୍ୱତୀଙ୍କର ପୂର୍ବାଶ୍ରମ ନାମ ଥିଲା ଶାନ୍ତନୁ ବିହାରୀ ଦ୍ୱିବେଦୀ । କାଶୀ ବନାରସ ସହର ନିକଟସ୍ଥ ମହରାଇ ଗ୍ରାମରେ ସନ ୧୯୧୧ ମସିହାରେ ସେ ପ୍ରକଟ ହୋଇଥିଲେ । ଶୈଶବ କାଳରେ ତାଙ୍କ ଜାତକ ଗଣନା କରି ଦେଖାଗଲା ଯେ ତାଙ୍କର ଆୟୁଷ ମାତ୍ର ୧୯ବର୍ଷ । ଏକଥା ଜାଣିବା ପରେ ତାଙ୍କ ପିତାମାତାଙ୍କର ଚିନ୍ତା ବଢ଼ିଗଲା । ଦଶବର୍ଷ ବୟସ ବେଳୁ ନିଜ ପିତାମହଙ୍କ ଠାରୁ ସେ ମୂଳ ସଂସ୍କୃତ ଭାଗବତ ଗ୍ରନ୍ଥଙ୍କର ପାରାୟଣ, ଅଧ୍ୟୟନ ପ୍ରବଚନ ଆଦି ଶିକ୍ଷା କରି ଚାଲୁଥାଆନ୍ତି । ୧୯ବର୍ଷ ପାଖେଇ ଆସୁଥାଏ । ପିତାମାତା ତରବରରେ ପୁତ୍ରର ବିବାହ କାର୍ଯ୍ୟ କରିଦେଲେ । ହେଲେ ଚିନ୍ତା ଆହୁରି ବଢ଼ିଗଲା । ପୁତ୍ରର ବୟସ ୧୯ବର୍ଷ ଯେତିକି ପାଖେଇ ଆସିଲା ପିତାମାତା ପୁତ୍ରର ଆସନ୍ନ ମୃତ୍ୟୁ ଆଶଙ୍କାରେ ଶୋକ ସାଗରରେ ବୁଡ଼ିଗଲେ । କାରଣ ସେମାନେ ଏବେ କେବଳ ସ୍ୱପୁତ୍ର ହରାଇବେ ନାହିଁ ବରଂ ନବ ବିବାହିତା ବଧୂର ସାରା ଜୀବନର ବୈଧବ୍ୟ ଯନ୍ତ୍ରଣା ନିଜ ଆଖି ଆଗରେ ଦେଖିବେ । ତାଙ୍କର ପୁତ୍ର ଏକଥା ଜାଣିପାରିଲେ । ଶୁଦ୍ଧ ବ୍ରାହ୍ମଣ କୁଳରେ ପ୍ରକଟିତ ଶାନ୍ତନୁଙ୍କର ପୂର୍ବ ଶୁଭ ସଂସ୍କାର ହେତୁ ତୀବ୍ର ସଂସାର ବୈରାଗ୍ୟ ଜାତ ହେଲା ।

ଶାନ୍ତନୁ ବିହାରୀ ଅନେକ ସାଧୁ ସନ୍ଥଙ୍କର ସେବା କରିଚାଲିଲେ । ଶେଷରେ ଜଣେ ବାକ୍‌ସିଦ୍ଧ ସନ୍ଥଙ୍କର ଆଶୀର୍ବାଦ ପ୍ରାପ୍ତ ହେଲେ । ମହାତ୍ମା ତାଙ୍କୁ ଆଶୀର୍ବାଦ ଦେଲେ ଯେ ସେ ଯଦି ତାଙ୍କର ସାରା ଜୀବନ କେବଳ ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣ ଭକ୍ତଙ୍କର ସେବାରେ ଉତ୍ସର୍ଗ କରିବେ ତେବେ ତାଙ୍କର ଆୟୁଷ ୧୯ବର୍ଷରୁ ବୃଦ୍ଧି ହୋଇ ୪ଗୁଣ (୭୬) ବର୍ଷ ହୋଇଯିବ । ସେଇ ସନ୍ଥ ବଚନକୁ ବିଶ୍ୱାସ କରି ପିତା, ମାତା, ନବବିବାହିତା ପତ୍ନୀ ଓ ଗୃହ ତ୍ୟାଗ କରି ସେହି ମହାତ୍ମାଙ୍କ ସଙ୍ଗରେ ବୃନ୍ଦାବନ ପହଞ୍ଚିଲେ । ଆରମ୍ଭ ହେଲା କଠୋର ତପସ୍ୟା ଓ ବ୍ରହ୍ମବିଦ୍ୟା ସହିତ ଶ୍ରୀକୃଷ୍ଣ ଉପାସନା ।

ଶାନ୍ତନୁଙ୍କର ଅତି ଅସାଧାରଣ ଉପନିଷଦ ଜ୍ଞାନ, ବେଦାନ୍ତ ଅଧ୍ୟୟନ, ଗୀତା ପ୍ରବେଶ ସହିତ ବିଲକ୍ଷଣ ଭାଗବତ ବିଶ୍ଳେଷଣାତ୍ମକ ପ୍ରବଚନରେ ମୁଗ୍ଧ ହୋଇ

ଗୋରଖପୁର ଗୀତା ପ୍ରେସ କର୍ତ୍ତୃପକ୍ଷ ତାଙ୍କୁ ସଂପାଦକ ଭାବରେ ନିଯୁକ୍ତି ଦେଲେ । ଶ୍ରୀମଦ୍ଭାଗବତଙ୍କର ଯେଉଁ ହିନ୍ଦୀ ଅନୁବାଦ ଗୀତା ପ୍ରେସ ଛାପିଲେ ତାହା ଶାନ୍ତନୁଙ୍କୁ ଅକ୍ଳାନ୍ତ ପରିଶ୍ରମ, କୁଶାଗ୍ର ବୁଦ୍ଧି ଓ ଅଗାଧ ପାଣ୍ଡିତ୍ୟ ଯୋଗୁଁ ସମ୍ଭବ ହୋଇପାରିଲା । ୧୯୩୪ ମସିହାଠାରୁ ୧୯୪୨ ମସିହା ପର୍ଯ୍ୟନ୍ତ ସେ ଗୀତାପ୍ରେସର ଦାୟିତ୍ୱ ନିର୍ବାହ କଲେ ।

ତୀର୍ଥରାଜ ପ୍ରୟାଗର ଝୁସୀ ଆଶ୍ରମରେ ଶ୍ରୀ ପ୍ରଭୁ ଦତ୍ତ ବ୍ରହ୍ମଚାରୀ ସେତେବେଳେ ଭାଗବତ କଥା ଗଦ୍ୟ ଆକାରରେ ଲେଖୁଥାଆନ୍ତି । ବ୍ରହ୍ମଚାରୀଜୀଙ୍କ ନିମନ୍ତ୍ରଣ ପାଇ ସେ ବର୍ଷକୁ ବର୍ଷ ଭାଗବତ ପ୍ରବଚନ କରୁଥାନ୍ତି । ତାଙ୍କ ଭାଗବତ ପ୍ରବଚନର ବିରଳ ବିଦଗ୍ଧତା ଓ ପ୍ରବଳ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ପଣ୍ଡିତ ମଦନ ମୋହନ ମାଲବ୍ୟ, ହରିବାବା ଓ ଆନନ୍ଦମୟୀ ମା'ଙ୍କ ଭଳି ଅନେକ ଦିଗ୍‌ଗଜ ଭାଗବତ ରସ ପିପାସୁ ଶ୍ରୋତାମାନେ ବମ୍ବେ, ଦିଲ୍ଲୀ, ବନାରସ ଓ ବୃନ୍ଦାବନ ଆଦି କ୍ଷେତ୍ରରେ ପ୍ରବଚନମାନ ଅନୁଷ୍ଠାନ କରାଇଲେ । ଥରେ ଓଡ଼ିଆ ବାବା ତାଙ୍କ ପ୍ରବଚନ ଶୁଣିବାକୁ ଝୁସୀରେ ପହଞ୍ଚିଲେ । ବାବାଙ୍କ ଅସାମାନ୍ୟ ବ୍ରହ୍ମଜ୍ଞାନ ଓ ଅଦ୍ୱୈତ ବେଦାନ୍ତକୁ ସରଳ କରି ବୁଝାଇବା ସାମର୍ଥ୍ୟ ସହିତ ଶ୍ରୀଚୈତନ୍ୟ ଦେବଙ୍କ ହରିନାମ ସଂକୀର୍ତ୍ତନ ପ୍ରେମର ନିଷ୍ଠା ଦର୍ଶନ କରି ଅଭିଭୂତ ହୋଇ ପଡ଼ିଲେ । ଜୀବନର ଅବଶିଷ୍ଟ ସମୟତକ ତାଙ୍କ ଅନୁଗତ ଶିଷ୍ୟ ହୋଇ ରହିଗଲେ । ଏପରିକି ଓଡ଼ିଆ ବାବାଙ୍କ ବୃନ୍ଦାବନ ଧାମର ଶ୍ରୀକୃଷ୍ଣାଶ୍ରମ ନିକଟରେ ନିଜର ଆନନ୍ଦ ବୃନ୍ଦାବନ ଆଶ୍ରମ ସ୍ଥାପନ କରି ସର୍ବଦା ତାଙ୍କ ସାନ୍ନିଧ୍ୟରେ ରହିବାକୁ ବ୍ୟବସ୍ଥା କଲେ । ପୂର୍ବରୁ ସେ ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିସାରିଥାଆନ୍ତି । ଗୁରୁଦେବ ତାଙ୍କ ସନ୍ନ୍ୟାସ ନାମ ଅଖଣ୍ଡ ଆନନ୍ଦ ସରସ୍ୱତୀ ରଖି ସାରିଥାଆନ୍ତି ।

ଜୀବନରେ ଗୀତା, ଭାଗବତ, ରାମଚରିତ ମାନସ, ବେଦାନ୍ତ ସହିତ ଅନେକ ଉପନିଷଦମାନଙ୍କର ପ୍ରବଚନ, ସ୍ୱାଧ୍ୟାୟ ସହିତ ଅତ୍ୟନ୍ତ ସରଳ ଟୀକା ଅନୁବାଦ ଆଦି ୨୦୦ ଗ୍ରନ୍ଥ ରଚନା କରି ସେ ଭାରତର ବ୍ରହ୍ମଜ୍ଞାନ ସାହିତ୍ୟର ସମୃଦ୍ଧି ସାଧନ କରିଯାଇଛନ୍ତି । ପ୍ରେମପୁରୀ ଅଧ୍ୟାତ୍ମ ଭବନ (ମୁମ୍ବାଇ), ବିରଳା ଭବନ (କଲିକତା), ବିରଳା ମନ୍ଦିର (ଦିଲ୍ଲୀ), କେ.କେ. ମନ୍ଦିର (କାନପୁର) ଇତ୍ୟାଦି ସତ୍‌ସଙ୍ଗ କେନ୍ଦ୍ରମାନ ତାଙ୍କ ଦୁର୍ଲ୍ଲଭ ଭାଗବତ ପ୍ରବଚନମାନ ଆୟୋଜନ କରି ଧନ୍ୟ ହୋଇଯାଇଛନ୍ତି ।

ସ୍ୱାମୀଜୀ ତାଙ୍କ ନିଜ ଆଶ୍ରମରେ ପ୍ରବଚନ ହଲରେ ସକାଳେ ଜ୍ଞାନୀମାନଙ୍କ କଲ୍ୟାଣ ନିମିତ୍ତ ବେଦାନ୍ତ, ବେଦ ବା ବୈଦିକ ସାହିତ୍ୟର ଜ୍ଞାନ ପରକ ବ୍ୟାଖ୍ୟା

କରନ୍ତି । ପ୍ରବଚନ୍ ଆରମ୍ଭ ହେବା ପୂର୍ବରୁ କିନ୍ତୁ ଗୋଟି ଗୋଟି କରି ସମସ୍ତ ଭକ୍ତିମାର୍ଗୀ ସାଧକଙ୍କୁ ସେ ହଲରୁ ବାହାର କରିଦେଇ ଦ୍ୱାରରୁଦ୍ଧ କରୁଥିଲେ । ପରେ ପ୍ରବଚନ ଚାଲୁଥିଲା । ଠିକ୍ ସେହିପରି ସଂଧ୍ୟା ସମୟରେ ଭାଗବତ ପ୍ରବଚନ କରି ଭକ୍ତିମାର୍ଗୀ ସାଧକଙ୍କୁ ମାର୍ଗ ଦର୍ଶନ କରିବା ବେଳେ ଗୋଟି ଗୋଟି କରି ଜ୍ଞାନମାର୍ଗୀ ସାଧକମାନଙ୍କୁ ବାହାର କରିଦେଉଥିଲେ ।

ସ୍ୱାମୀଜୀ ବୁଝାଉଥିଲେ ଯେ ଆରମ୍ଭ ବେଳେ ଜ୍ଞାନମାର୍ଗ ଓ ଭକ୍ତିମାର୍ଗ ପରସ୍ପର ବିରୋଧୀ । ଅନ୍ତିମ ଫଳ ଦେବା ବେଳକୁ ପରସ୍ପର ପରିପୂରକ । ବିନା ଭକ୍ତିରେ ଜ୍ଞାନ କେବଳ ଉତ୍ପାତ । ବିନା ଜ୍ଞାନ ବୈରାଗ୍ୟରେ ଭକ୍ତି ମଧ୍ୟ ଦୁଃଖିତା(ଗୋକର୍ଣ୍ଣ ଧୁନ୍ଧୁକାରୀ ଉପାଖ୍ୟାନ) ଏବଂ ଅସଂପୂର୍ଣ୍ଣ । ଜ୍ଞାନ ସର୍ବଦା ଭକ୍ତିଙ୍କୁ ଆଗେ ଆଗେ ଚଲାନ୍ତି । ଭକ୍ତି କିନ୍ତୁ ଜ୍ଞାନ ବୈରାଗ୍ୟଙ୍କୁ ଗୋପନ କରି ରଖନ୍ତି ।

ଶ୍ରୀ ବୃନ୍ଦାବନରେ ସ୍ୱାମୀଜୀଙ୍କ ଆଶ୍ରମରେ ଏବେ ମଧ୍ୟ ପ୍ରତ୍ୟହ ହୋମ କରାଯାଏ । ଘୃତ ଯଜ୍ଞ ହୁଏ । ବେଦ ମନ୍ତ୍ର ଉଚ୍ଚାରିତ ହୁଏ । ବହୁତ ବଡ଼ ଗୋଶାଳା କରି ଗୋସେବାର ବ୍ୟବସ୍ଥା ସ୍ୱାମୀ କରିଯାଇଛନ୍ତି । ତାଙ୍କ ଆଶ୍ରମର ପ୍ରତ୍ୟେକ ସାଧକ ଜଣେ ଜଣେ ସ୍ୱତନ୍ତ୍ର ମହାପୁରୁଷ ଅଟନ୍ତି । ସ୍ୱାମୀଜୀ ବ୍ୟବସ୍ଥା କରି ଯାଇଛନ୍ତି ଯଦି କୌଣସି ଓଡ଼ିଶାବାସୀ ଆଶ୍ରମରେ କେବେ ବି ଆସି ଅସ୍ଥାୟୀ କିମ୍ବା ସାରାଜୀବନ ରହିବାକୁ କୁହନ୍ତି ତେବେ ଆଶ୍ରମର ଯେତେ ଅସୁବିଧା ହେଲେ ହେବ ପଛକେ ତାଙ୍କୁ କିନ୍ତୁ ଆଶ୍ରମରେ ସ୍ଥାନ ଦେବାକୁ ହେବ । ଏହା ସମ୍ଭବତଃ ତାଙ୍କର କୃଷ୍ଣପ୍ରେମୀ ଗୁରୁ ଓଡ଼ିଆ ବାବାଙ୍କ ମାତୃଭୂମିଙ୍କ ପ୍ରତି କୃତଜ୍ଞତା ଜ୍ଞାପନର ଏକ ସୁନ୍ଦର ବ୍ୟବସ୍ଥା । ସନ୍ଥ ବାକ୍ୟ ସତ୍ୟ ପ୍ରମାଣିତ ହୋଇଛି ଯେତେବେଳେ ସେ ଠିକ୍ ୭୬ ବର୍ଷ ବୟସରେ ବୃନ୍ଦାବନ ଧାମରେ ମୃଣ୍ମୟ ଦେହତ୍ୟାଗ କରି ୧୯୮୭ ମସିହାରେ ଚିନ୍ମୟ ଲୀଳାରେ ପ୍ରବେଶ କରିଛନ୍ତି । ତାଙ୍କ ଇଚ୍ଛା ଅନୁଯାୟୀ ତାଙ୍କ ପାର୍ଥିବ ଦେହକୁ ଦାହ ସଂସ୍କାର ନ କରି କିମ୍ବା ଭୂଗର୍ଭରେ ସମାଧି ମଧ୍ୟରେ ଆବଦ୍ଧ କରାନଯାଇ ପବିତ୍ର ଯମୁନା ନଦୀ ବାଲିରେ ସମାଧିସ୍ଥ କରାଯାଇଛି । ଅତ୍ୟନ୍ତ ଶୃଙ୍ଖଳିତ ଭାବରେ ଶ୍ରୀବୃନ୍ଦାବନର ଏହି ମହାନ (ଆକାର ଦୃଷ୍ଟିରୁ ଏବଂ ମହାତ୍ମ୍ୟ ଉଭୟ ଦୃଷ୍ଟିରୁ) ଆଶ୍ରମଟି ଶ୍ରୀ ଅଖଣ୍ଡାନନ୍ଦ ସରସ୍ୱତୀ ସ୍ୱାମୀ ଓ ଓଡ଼ିଆ ବାବାଙ୍କର କୃଷ୍ଣପ୍ରେମର ବିଜୟ ପତାକା ଏବେ ବି ସଗର୍ବରେ ଉଡ଼ାଉଅଛି ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

# ଦ୍ୱାଦଶ ଅତି ବିଶିଷ୍ଟ ସମାଧିପୀଠ

| କ୍ରମସଂଖ୍ୟା | ମହାପୁରୁଷ | ପ୍ରକଟ ସମୟ (ଖ୍ରୀଷ୍ଟାବ୍ଦ) | ଲୀଳା ସମାପ୍ତି (ଖ୍ରୀଷ୍ଟାବ୍ଦ) | ଲୀଳସମୟ (ବର୍ଷ) | ସମାଧିସ୍ଥଳ |
|---|---|---|---|---|---|
| ୧ | ବିଲ୍ୱମଙ୍ଗଳ ଠାକୁର | ଦଶମ | ଶତାବ୍ଦୀ | - | କେଶୀ ଘାଟ |
| ୨. | ପ୍ରବୋଧାନନ୍ଦ ସରସ୍ୱତୀ | ପଞ୍ଚଦଶ | ଶତାବ୍ଦୀ | - | କାଳିଦହ |
| ୩. | ଭକ୍ତ ସୂରଦାସ | ୧୪୭୮ | ୧୫୮୪ | ୧୦୬ | ଆଗ୍ରା ଓ ମଥୁରା |
| ୪. | ସ୍ୱାମୀ ହରିଦାସ | ୧୫୧୨ | ୧୬୦୭ | ୯୫ | ନିଧୁବନ |
| ୫. | ରସ ଖାନ୍ | ୧୫୪୮ | ୧୬୨୮ | ୮୦ | ମହାବନ (ରମଣରେତି) |
| ୬. | ବଳଦେବ ବିଦ୍ୟାଭୂଷଣ | ୧୭୦୦ | ୧୭୬୮ | ୬୮ | ଶ୍ରୀଗୋକୁଳାନନ୍ଦ ମନ୍ଦିର ଓ ଶ୍ରୀ ଶ୍ୟାମସୁନ୍ଦର ମନ୍ଦିର |
| ୭. | ଲାଲା ବାବୁ | ୧୭୭୫ | ୧୮୫୫ | ୮୦ | ଯମୁନା ଜଳ ଓ ଲାଲାବାବୁ ମନ୍ଦିର |
| ୮. | କୃଷ୍ଣଦାସ ବାବାଜୀ (ରଣବାଡ଼ି) | ୧୮୦୨ | ୧୮୮୦ | ୭୮ | ଦିବ୍ୟ ଅଗ୍ନିଶିଖା |
| ୯. | ଓଡ଼ିଆ ବାବା | ୧୮୭୫ | ୧୯୪୯ | ୭୪ | ଯମୁନା ବାଲି (ଦାବାନଳ କୁଣ୍ଡ ମଠ) |
| ୧୦. | ନିମକରୋଲି ବାବା | ୧୮୮୧ | ୧୯୭୩ | ୯୨ | ପରିକ୍ରମା ମାର୍ଗ ଦାଉଜୀ ମନ୍ଦିର ନିକଟ ମଠ |
| ୧୧. | ଏ.ସି.ଭକ୍ତି ବେଦାନ୍ତସ୍ୱାମୀ | ୧୮୯୬ | ୧୯୭୭ | ୮୧ | ଇସ୍କନ୍ ମନ୍ଦିର |
| ୧୨. | ଅଖଣ୍ଡ ଆନନ୍ଦ ସରସ୍ୱତୀ | ୧୯୧୧ | ୧୯୮୭ | ୭୬ | ଯମୁନାକୂଳ |

–

# ଦ୍ୱିତୀୟ ଭାଗ
# ଶ୍ରୀମଦ୍ଭାଗବତ ମାହାତ୍ମ୍ୟମ୍
## (ସ୍କନ୍ଦ ପୁରାଣ ବୈଷ୍ଣବ ଖଣ୍ଡ)
## ଅଥ ପ୍ରଥମ ଅଧ୍ୟାୟଃ
### (ଶାଣ୍ଡିଲ୍ୟ ମୁନିଙ୍କ ମୁଖରେ ବ୍ରଜଭୂମିରେ ମାହାତ୍ମ୍ୟ ବର୍ଣ୍ଣନ)

ବ୍ୟାସ ଉବାଚ

ପ୍ରଶ୍ନ-୧. ଶ୍ରୀମନ୍ ନାରାୟଣଙ୍କର ଜ୍ଞାନ ଅବତାର ସତ୍ୟବତୀ ନନ୍ଦନ ବ୍ୟାସଦେବଙ୍କ ନାମ ସାରା ଅଧ୍ୟାତ୍ମ ସାହିତ୍ୟରେ ସୁପରିଚିତ । ତେଣୁ ବାସ୍ତବରେ କୁହାଯାଏ ବ୍ୟାସ ଉଚ୍ଛିଷ୍ଟଂ ଇଦଂ ଜଗତ୍ । କବିକୁଳ ତିଳକ କାଳିଦାସ, ଭବଭୂତି, କମ୍ବନ, ସୁରଦାସ, ଉପେନ୍ଦ୍ର ଭଞ୍ଜ, ଗଙ୍ଗାଧର ମେହେର ଇତ୍ୟାଦି ପ୍ରାୟ ସମସ୍ତେ ବ୍ୟାସଦେବଙ୍କ ଅମର ଅଧ୍ୟାତ୍ମ ରଚନାମାନଙ୍କରୁ ଖାଦ୍ୟ ଗ୍ରହଣ କରି ମଧ୍ୟ ସମସ୍ତେ ଆଜି ଅମର ହୋଇଯାଇଛନ୍ତି । ବ୍ୟାସଦେବ ଚାରିବେଦ ସଂହିତାଙ୍କୁ ବିଭାଜନ କରିବା ସହିତ, ଅଠର ପୁରାଣ, ଅଧ୍ୟାତ୍ମ ରାମାୟଣ, ବେଦାନ୍ତ ସୂତ୍ର, ମହର୍ଷି ପତଞ୍ଜଳିଙ୍କ ଯୋଗସୂତ୍ରର ଭାଷ୍ୟ ଇତ୍ୟାଦିଙ୍କ ସହିତ ସଂସ୍କୃତ ଭାରତୀଙ୍କ ଗଳାରେ ଶୋଭିତ ଏକ ଲକ୍ଷ ଶ୍ଳୋକ ବିଶିଷ୍ଟ ମହାଭାରତ ମଧ୍ୟ ରଚନା କଲେ । ସେ ସବୁର ସାର ଶ୍ରୀମଦ୍ଭଗବତ ଗୀତାକୁ ତନ୍ମଧ୍ୟରେ ଖଞ୍ଜିଦେଲେ । ତଥାପି ସେ ନିଜ ମନରେ ଅଶାନ୍ତି ଜନିତ ପୀଡ଼ାର ଅନୁଭବ କଲେ । କାରଣ ସେ ସ୍ପଷ୍ଟ ଜାଣିପାରିଲେ ଯେ କଳିଯୁଗରେ ଏ ବେଦ ବେଦାନ୍ତ, ପୁରାଣ, ମହାଭାରତ କିଛି କାମରେ ଆସିବନି ଲୋକମାନଙ୍କର । ସେମାନେ ବିଷୟ ଭୋଗ ଆସକ୍ତିରେ ମାତିବେ । ସଂସାର ବୈରାଗ୍ୟ ସେମାନଙ୍କ ଲାଗି କାଠିକର ପାଠ ହେବ । ତେଣୁ ଶେଷରେ ସେ ଦେବର୍ଷି ନାରଦଙ୍କ ପ୍ରେରଣାରେ ଶ୍ରୀମଦ୍ଭାଗବତ ମହାପୁରାଣ ଲେଖି ନିଜ ଲେଖନୀକୁ ବିଶ୍ରାମ ଦେଲେ । ଗଣେଶଜୀଙ୍କୁ ଛୁଟି ମିଳିଲା । ତାଙ୍କର ଅନ୍ତିମ ଓ ଶ୍ରେଷ୍ଠ ରଚନାର ମାହାତ୍ମ୍ୟ ଭାଗବତ ଗ୍ରନ୍ଥ ମଧ୍ୟରେ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ପଦ୍ମପୁରାଣ ଓ ସ୍କନ୍ଦ ପୁରାଣ ଆଦି ମାନଙ୍କରେ ମଧ୍ୟ ବିସ୍ତାରିତ ଭାବରେ ଶ୍ରୋତାମାନଙ୍କୁ ବୁଝାଇବାକୁ କୁହାଯାଇଛି । ଦୀର୍ଘ ଚାରି ଅଧ୍ୟାୟ ଓ ଏକଶତ ଅନେଶ୍ୱତ ଶ୍ଳୋକର ପଦ୍ମପୁରାଣରେ ଯେଉଁ ଭାଗବତ ମାହତ୍ମ୍ୟ ବର୍ଣ୍ଣିତ ତାଙ୍କର ମଙ୍ଗଳାଚରଣ ଶ୍ଳୋକରେ କେଉଁ ଦେବତାଙ୍କୁ ବନ୍ଦନା କରି ଓ କାହିଁକି ବିଷୟଟିର ଶୁଭାରମ୍ଭ କରାଯାଇଛି ?

**ଶ୍ରୀସତ୍ ଚିତ୍ ଆନନ୍ଦ ଘନ ସ୍ୱରୂପିଣେ**
**କୃଷ୍ଣାୟ ଚ-ଅନନ୍ତ ସୁଖ-ଅଭିବର୍ଷିଣେ ।**
**ବିଶ୍ୱ-ଉଭବ ସ୍ଥାନ ନିରୋଧ ହେତବେ**
**ନୁମୋ ବୟଂ ଭକ୍ତିରସ-ଆପ୍ତୟେଽନିଶମ୍ ॥୧॥**

ଉ. ତେତିଶିକୋଟି ଦେବତାମାନଙ୍କର ଯେ ମୂଳ ଦେବତା ଶ୍ରୀକୃଷ୍ଣଙ୍କୁ (କୃଷ୍ଣାୟ) ବନ୍ଦନା କରାଯାଇଛି । କାରଣ ହେଲା ସେ ସ୍ୱୟଂ ସତ୍ ଚିତ୍ ଆନନ୍ଦ ଘନ ସ୍ୱରୂପ ଅଟନ୍ତି । ସେ ହିଁ ସଂସାରରେ ଅନନ୍ତ ଓ ଅଖଣ୍ଡ ଆନନ୍ଦର ବର୍ଷା କରିବା ବାଲା ମୂଳସ୍ରୋତ ବା ଆଧାର । ସେ କେବଳ ଏ ନିଖିଳ ବିଶ୍ୱର ସୃଷ୍ଟି, ପାଳନ ଓ ସଂହାର କରୁଥିବା ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ଇତ୍ୟାଦିଙ୍କୁ ନିଜ ଅଚିନ୍ତ୍ୟ ଯୋଗମାୟା ଓ ମହାମାୟା ଶକ୍ତିରୁ ସୃଷ୍ଟି କରାଇ ସେମାନଙ୍କୁ ସ୍ୱ ସ୍ୱ ଧର୍ମ ପାଳନରେ ନିଯୁକ୍ତିଦାତା । କଳିଯୁଗରେ ଅନ୍ୟ ଅଗଣିତ ଭକ୍ତ ସାଧୁ, ସନ୍ଥ, ମୁନି, ଋଷିଙ୍କ ସହିତ ଉପରୋକ୍ତ ତିନି ଦେବଙ୍କୁ ମଧ ଲୋକମାନେ କୃଷ୍ଣ ଜ୍ଞାନରେ ଭକ୍ତି କଲେ କୃଷ୍ଣ ପ୍ରେମରସ ଆସ୍ୱାଦନ କରିପାରିବେ । ନାରାୟଣଙ୍କ ମହାମାୟାରୁ ମୁକ୍ତ ରହିପାରିବା ଭଳି ବ୍ୟବସ୍ଥା ସେଇ ସଚ୍ଚିଦାନନ୍ଦ ଶ୍ରୀକୃଷ୍ଣ ହିଁ କରିଛନ୍ତି । ଏହି କଥାଟିର ଗୁଢ଼ ମର୍ମ ଓ ସତ୍ୟତା ପରବର୍ତ୍ତୀ ତୃତୀୟ ଅଧ୍ୟାୟରେ ଖୋଲି କୁହାଯିବ ।

ପ୍ରଶ୍ନ- ୨ : ବ୍ୟାସଙ୍କ ରଚିତ ପୁରାଣଗୁଡ଼ିକ ପ୍ରଥମେ ଲେଖାଯାଇ ପରେ ସୂତ-ଶୌନକ ସମ୍ବାଦ, ଶୁକ-ପରୀକ୍ଷିତ ସମ୍ବାଦ ବା ଜନ୍ମେଜୟ- ବୈଶମ୍ପାୟନ ସମ୍ବାଦରେ ପ୍ରକାଶ ପାଇଛନ୍ତି ନା ପ୍ରଥମେ ବିଷୟ ବସ୍ତୁର ପ୍ରବଚନ କରାଯାଇ ପରେ ଲେଖାଯାଇଛନ୍ତି କେହି କେହି ସଂଶୟ କରିଥାନ୍ତି । ସମାଧାନଟି ହେଲା ପ୍ରଥମେ ବେଦବ୍ୟାସଜୀ ବ୍ରହ୍ମଜ୍ଞାନ ବିଷୟକୁ ଲିପିବଦ୍ଧ କରାଇଛନ୍ତି । ପରେ ଉପଯୁକ୍ତ ଶିଷ୍ୟମାନଙ୍କୁ ପଠନ ପାଠନ କରାଇ ହୃଦୟଙ୍ଗମ କରାଇଛନ୍ତି । ସେମାନେ ପ୍ରବଚନ କରିସାରିବା ପରେ ଲେଖା ଗୁଡ଼ିକ ବିଧିବଦ୍ଧ ଭାବେ ଲିଖନ, ସଂଶୋଧନ, ଏଡ଼ିଟିଂ ଇତ୍ୟାଦି କରାଯାଇ ଆମ ପାଖରେ ଲିଖିତ ଗ୍ରନ୍ଥ ଆକାରରେ ପହଞ୍ଚିଛନ୍ତି । ତେବେ ଏହି ଚାରି ଅଧ୍ୟାୟ ବିଶିଷ୍ଟ ଭାଗବତ ମାହାତ୍ମ୍ୟ ପ୍ରଥମେ କିଏ କାହାକୁ କେଉଁଠାରେ କାହିଁକି କହିଥିଲେ ?

**ନୈମିଷେ ସୂତଂ ଆସୀନଂ ଅଭିବାଦ୍ୟ ମହାମତିମ୍ ।**
**କଥା-ଅମୃତ ରସ-ଆସ୍ୱାଦ କୁଶଳା ଋଷୟୋଽବ୍ରୁବନ୍ ॥୨॥**

ଉ. ଉତ୍ତର ପ୍ରଦେଶର ଲକ୍ଷ୍ନୌ ସହରଠାରୁ ୧୦୩କି.ମି. ଦୂରରେ ଗୋମତୀ ନଦୀ କୂଳରେ ଚକ୍ରତୀର୍ଥ ନାମକ ସ୍ଥାନ ନୈମିଷ ଅରଣ୍ୟରେ ଏହା ସର୍ବପ୍ରଥମେ ପ୍ରବଚନ କରାଯାଇଥିଲା । ଶ୍ରୋତା ମଣ୍ଡଳୀ ୮୮,୦୦୦ରଷି ମୁନିଙ୍କ ମଧ୍ୟରେ ମୁଖ୍ୟ ଶ୍ରୋତା ଶ୍ରୀଶୌନକଜୀ । ରୋମହର୍ଷଣ ସୂତଙ୍କ ସୁପୁତ୍ର ଉଗ୍ରଶ୍ରବା ସୂତ ବକ୍ତା ଆସନ ଅଳଙ୍କୃତ କରିଥାଆନ୍ତି । ସେ ଅତ୍ୟନ୍ତ ପ୍ରଖର ବୁଦ୍ଧିମାନ(ମହାମତିମ୍) । ତାଙ୍କୁ ବକ୍ତା ଭାବରେ ପ୍ରାପ୍ତ ହୋଇ ଶୌନକ ଆଦି ମୁନି ରଷିମାନେ ସମୁଚିତ ଯଥାଯୋଗ୍ୟ ସ୍ୱାଗତ ସତ୍କାର (ଅଭିବାଦନ) ଆଦି କରିଛନ୍ତି । ଶ୍ରୋତାମାନେ ମଧ୍ୟ କୌଣସି ଗୁଣରେ ଊଣା ନୁହନ୍ତି । ସେମାନେ ସମସ୍ତେ କୃଷ୍ଣପ୍ରେମ ରସ ପିପାସୁ ରସିକ ଶ୍ରୋତା ଭାବରେ ସର୍ବତ୍ର ସୁପରିଚିତ ଓ ସମ୍ମାନିତ ହେଉ ଥାଆନ୍ତି ।

ପ୍ରଶ୍ନ-୩: କୃଷ୍ଣପ୍ରେମ ସତ୍‌ସଙ୍ଗର ଏହି ମହା ଅଧିବେଶନରେ କେଉଁ ରସାଳ କଥା ଶ୍ରବଣ ଲାଗି ଅତ୍ୟଧିକ ଉତ୍ସାହିତ ହୋଇ ରଷିମାନେ ପ୍ରଶ୍ନର ଶୁଭାରମ୍ଭ କଲେ ?

**ରଷୟ ଊଚୁଃ**

**ବଜ୍ରଂ ଶ୍ରୀମାଥୁରେ ଦେଶେ ସ୍ୱପୌତ୍ରଂ ହସ୍ତିନାପୁରେ ।**
**ଅଭିଷିଚ୍ୟ ଗତେ ରାଜ୍ଞ ତୌ କଥାଂ କିଂ ଚ ଚକ୍ରତୁଃ ॥୩॥**

ଉ. ଧର୍ମରାଜ ଯୁଧିଷ୍ଠିର ଚକ୍ରବର୍ତ୍ତୀ ସମ୍ରାଟ ଭାବରେ ଦୀର୍ଘ ୩୬ବର୍ଷ ୮ ମାସ କାଳ ସମଗ୍ର ପୃଥିବୀ ମଣ୍ଡଳକୁ ଶାସନ କଲେ । ଶ୍ରୀକୃଷ୍ଣଙ୍କ ଦ୍ୱାପର ଯୁଗ ଲୀଳା ଶେଷ ହେଲା । ଭଗବାନ ଶ୍ରୀକୃଷ୍ଣ ସଶରୀରେ ସ୍ୱଧାମ ଗମନ କଲେ ୧୨୫ବର୍ଷ ବୟସରେ । ବ୍ରହ୍ମା, ବିଷ୍ଣୁ, ଶଙ୍କର ଓ ଇନ୍ଦ୍ରାଦି ଦେବତାମାନେ ତାଙ୍କୁ ସହର୍ଷ ବିଦାୟ ଦେଲେ । ଏକଥା ମହାବୀର ଅର୍ଜୁନଙ୍କ ଠାରୁ ଶୁଣିଲେ ରାଜା ଯୁଧିଷ୍ଠିର । ନିଜର ପୌତ୍ର ଅଭିମନ୍ୟୁ ପୁତ୍ର ପରୀକ୍ଷିତଙ୍କୁ ହସ୍ତିନାର ସିଂହାସନରେ ଓ ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର ଅନିରୁଦ୍ଧ ନନ୍ଦନ ବଜ୍ରନାଭଙ୍କୁ ମଥୁରା ସିଂହାସନରେ ଅଭିଷେକ କରାଇ ମହାରାଣୀ ଦ୍ରୌପଦୀଙ୍କ ସହିତ ଅନ୍ୟ ଚାରି ଭାଇଙ୍କୁ ସଙ୍ଗରେ ଧରି ଉତ୍ତରାପଥେ ମହାପ୍ରସ୍ଥାନରେ ଚାଲିଗଲେ । ସେତେବେଳେ ଏ ଦୁଇ ଜଣ ରାଜା(ତୌ) ପରୀକ୍ଷିତ ଓ ବଜ୍ରନାଭ କି କି କାର୍ଯ୍ୟ କରିବାରେ ଉତ୍ସାହିତ ହେଲେ ବୋଲି ପ୍ରଶ୍ନଟିଏ ଉପସ୍ଥାପନ କଲେ ।

**ସୂତ ଉବାଚ**

ପ୍ରଶ୍ନ-୪: ଶୌନକଜୀଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀସୂତଜୀ ତାଙ୍କ ମଙ୍ଗଳାଚରଣ ଶ୍ଳୋକରେ କେଉଁ କେଉଁ ଦେବୀ ଦେବତାଙ୍କୁ ନମସ୍କାର କଲେ ?

**ନାରାୟଣଂ ନମସ୍କୃତ୍ୟ ନରଂ ଚ-ଏବ ନର-ଉତ୍ତମମ୍ ।**
**ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟଂ ଉଦୀରୟେତ୍ ॥୪॥**

ଉ. ଶ୍ରୀ ସୂତଜୀ ପ୍ରଥମେ ଭଗବାନ ନର ନାରାୟଣ, ଶ୍ରୀକୃଷ୍ଣ(ନର-ଉତ୍ତମମ୍), ଶ୍ରୀରାଧା(ଦେବୀଂ), ଦେବୀ ସରସ୍ୱତୀ ଓ ସକଳ ବ୍ରହ୍ମଜ୍ଞାନର ଗୁରୁ ଶ୍ରେଷ୍ଠ ବ୍ୟାସଦେବଙ୍କୁ ନମସ୍କାର କରି ଜୟକାବ୍ୟ(ରାମାୟଣ, ମହାଭାରତ, ୧୮ ପୁରାଣ, ଶ୍ରୀମତ୍‌ଭାଗବତ ଇତ୍ୟାଦି) ଗାନ କରାଯିବା ଉଚିତ ବୋଲି କହିଛନ୍ତି । ସେଥିଯୋଗୁ ଆଜି କାଲି ମଧ୍ୟ ସତ୍‌ସଙ୍ଗ, ପ୍ରବଚନ ପାରାୟଣ ପୂର୍ବରୁ ସେଇ ଛଅ ଜଣଙ୍କର ଜୟ ଧ୍ୱନି ସହିତ ଅନ୍ୟ ଦେବୀ ଦେବତା ଯଥା ହନୁମାନଜୀ, ଗଣେଶଜୀ, ଶିବ, ପାର୍ବତୀ, ଶୁକ, ପରୀକ୍ଷିତ ଓ ଜଗନ୍ନାଥ ଇତ୍ୟାଦି ଠାକୁରଙ୍କ ଜୟଧ୍ୱନି ଆରମ୍ଭରେ, ମଧ୍ୟରେ ଓ ଶେଷରେ କରାଯିବା ବିଧି ପ୍ରଚଳିତ ହୋଇଛି ।

ପ୍ରଶ୍ନ-୫: ଦିନକର କଥା । ହସ୍ତିନାପୁରର ରାଜା ପରୀକ୍ଷିତ ମଥୁରାର ରାଜା ବଜ୍ରନାଭଙ୍କୁ ଭେଟିବା ଉଦ୍ଦେଶ୍ୟରେ ମଥୁରା ଯାତ୍ରା କଲେ । ଏହି ସୁସମ୍ବାଦ ପାଉ ପାଉ ବଜ୍ରନାଭ ତାଙ୍କର ପିତୃବ୍ୟ ସ୍ଥାନୀୟ ରାଜା ପରୀକ୍ଷିତଙ୍କୁ ସ୍ୱାଗତ କରିବା ନିମିତ୍ତ କିଛି ବାଟ ଆଗେଇ ଆସିଲେ । ସମ୍ମାନର ସହିତ ପରୀକ୍ଷିତଙ୍କୁ ପାଛୋଟି ନେଲେ । ରାଜା ପରୀକ୍ଷିତ ସେତେବେଳର ରାଜ ଚକ୍ରବର୍ତ୍ତୀ ମହାମହିମ ସମ୍ରାଟ୍ ଥାଆନ୍ତି । ସେ କିଭଳି ଶବ୍ଦରେ ମଥୁରାବାସୀମାନଙ୍କୁ ଅଭିନନ୍ଦନ ଜଣାଇଲେ ?

**ପରୀଷ୍ୱଜ୍ୟ ସ ଚ ତଂ ବୀରଃ କୃଷ୍ଣ-ଏକ ଗତ ମାନସଃ ।**
**ରୋହିଣୀ ଆଦ୍ୟା ହରେଃ ପତ୍ନୀଃ ବବନ୍ଦ-ଆୟତନ-ଆଗତଃ ॥୭॥**

ଉ. ବୀର ପରୀକ୍ଷିତ ନିଜେ ଜଣେ ମହାନ କୃଷ୍ଣଭକ୍ତ(କୃଷ୍ଣ-ଏକ ଗତି ମାନସଃ) ଥିଲେ । ସୁତରାଂ କୃଷ୍ଣ ପତ୍ନୀ, କୃଷ୍ଣ ପରିବାର ଓ ଆତ୍ମୀୟ ସ୍ୱଜନମାନଙ୍କୁ ଦର୍ଶନ କରି ସେ ଅତ୍ୟନ୍ତ ଭାବ ଗଦ୍ ଗଦ୍ ହୋଇଯିବା ସ୍ୱାଭାବିକ । ସେ ପ୍ରଥମେ ଦେଖୁ ଦେଖୁ ବଜ୍ରନାଭଙ୍କୁ ଦୃଢ଼ ଆଲିଙ୍ଗନ (ପରୀଷ୍ୱଜ୍ୟ) କଲେ । ରୋହିଣୀ ଇତ୍ୟାଦି କୃଷ୍ଣ ପତ୍ନୀମାନଙ୍କୁ ମଥାନତ କରି ସେ ଭୂମିଷ୍ଠ ପ୍ରଣାମ (ବବନ୍ଦ) କରିଛନ୍ତି । ସେତେବେଳେକୁ

ଅଷ୍ଟ ପାଟବଂଶୀମାନଙ୍କ ମଧ୍ୟରୁ କେବଳ ମାଆ କାଳିନ୍ଦୀ ସତୀ ନ ହୋଇ ମଥୁରା ରାଜମହଲରେ ଥାଆନ୍ତି । ଷୋଳହଜାର ଏକଶହ କୃଷ୍ଣ ପତ୍ନୀ(ରାଣୀ) ମାନଙ୍କ ମଧ୍ୟରେ ରୋହିଣୀ ମୁଖ୍ୟ ଭାବରେ ଅବସ୍ଥାନ କରୁଥାଆନ୍ତି ।

ପ୍ରଶ୍ନ-୬: ଦୁଇଜଣ ଯାକ ରାଜା ଆସନ ଗ୍ରହଣ କଲାପରେ ରାଜା ପରୀକ୍ଷିତ କଥାବାର୍ତ୍ତା ଆରମ୍ଭ କଲେ । ଭଗବାନ ଶ୍ରୀକୃଷ୍ଣ ତାଙ୍କ ପିତା ବୀର ଅଭିମନ୍ୟୁଙ୍କର ମାତୁଳ ଓ ଗୁରୁ ଥିଲେ । ପୁଣି ପିତାମହ ଅର୍ଜୁନ, ଭୀମସେନ, ଯୁଧିଷ୍ଠିର ଇତ୍ୟାଦିଙ୍କୁ ମହା ମହା ସଂକଟରୁ ରକ୍ଷା କରି ମହାଭାରତ ଯୁଦ୍ଧରେ ଅନେକ ଅଲୌକିକ କୌଶଳ ପ୍ରୟୋଗ କରି କରାଇ ବିଜୟୀ କରାଇଥିଲେ । ଯୁଧିଷ୍ଠିରଙ୍କୁ ସମଗ୍ର ଆର୍ଯ୍ୟାବର୍ତ୍ତର ସମ୍ରାଟ ଆସନରେ ଅଭିଷେକ କରାଇ ପରୀକ୍ଷିତଙ୍କ ସହିତ ହସ୍ତିନାପୁରୀର ଅନ୍ୟ ସମସ୍ତଙ୍କୁ ଋଣୀ କରିଯାଇଛନ୍ତି । ସେ ଅସୀମ ପରୋପକାର ଓ ଋଣ ଇତ୍ୟାଦିରୁ ନିଜକୁ ମୁକ୍ତ କରିବା ପାଇଁ ସେ ବଜ୍ରନାଭଙ୍କ ପାଖରେ କି ପ୍ରସ୍ତାବଟିଏ ରଖିଲେ ?

**ନ ପାରୟାମି-ଅହଂ ତାତ ସାଧୁ କୃତ୍ୟ-ଉପକାରତଃ ।**
**ତ୍ୱାଂ ଅତଃ ପ୍ରାର୍ଥୟାମି-ଅଙ୍ଗ ସୁଖଂ ରାଜ୍ୟେଽନୁଯୁଜ୍ୟତାମ୍ ॥୧୦॥**

ଉ. ରାଜା ପରୀକ୍ଷିତ କହିଲେ, ''ହେ ବଜ୍ରନାଭ(ତାତ), ମୁଁ କଦାପି ସେ ଅନନ୍ତ ଉପକାର ଓ ଋଣ ଶୁଝି ପାରିବି ନାହିଁ(ନ ପାରୟାମି) । ସୁତରାଂ ପ୍ରାର୍ଥନା କରି କହୁଛି ଯେ ତୁମେ ରାଜ୍ୟର ରାଜକୋଷ, ସୈନ୍ୟ ପରିଚାଳନା ଓ ଶତ୍ରୁଦମନ ଇତ୍ୟାଦିର ପରବାୟ ନକରି କିମ୍ବା ଚିନ୍ତା ନକରି ରାଜ୍ୟ ଶାସନ କରିଯାଅ । ସେ ସବୁର ଦାୟିତ୍ୱ ଏଣିକି ମୁଁ ନିର୍ବାହ କରିବି । ତୁମେ କେବଳ ରାଣୀ ଉଆସର ଅନ୍ତେବାସୀମାନଙ୍କ ସହିତ ଅନ୍ୟାନ୍ୟ କୃଷ୍ଣଭକ୍ତମାନଙ୍କର ସେବା କରି ନିଜକୁ ଧନ୍ୟ କର । ଆମ ଦୁଇ ରାଜ୍ୟ ହସ୍ତିନା ଓ ମଥୁରାର ଦୂରତା ମାତ୍ର ୧୫୦କିଲୋମିଟର । ଅତଏବ ବହିଃଶତ୍ରୁ ଆକ୍ରମଣର ଆଦୌ ଭୟ ରଖ ନାହିଁ ।''

ପ୍ରଶ୍ନ-୭: ପରୀକ୍ଷିତଙ୍କ ପ୍ରସ୍ତାବକୁ କଅଣ ରାଜା ବଜ୍ରନାଭ ସିଧା ସଳଖ ମାନିନେଇପାରିଲେ ?

ବଜ୍ରନାଭ ଉବାଚ

**ରାଜନ୍ ଉଚିତଂ ଏତତ୍ ତେ ଯତ୍ ଅସ୍ମାସୁ ପ୍ରଭାଷସେ ।**
**ତ୍ୱତ୍ ପିତୃ-ଉପକୃତଃ ତ-ଅହଂ ଧନୁଃ ବିଦ୍ୟା ପ୍ରଦାନତଃ ॥୧୩॥**

ଉ. ବଜ୍ରନାଭ କହିଲେ, ''ହେ ରାଜନ୍, ଆପଣଙ୍କ ସୁନ୍ଦର ଶୋଭନୀୟ ପରାମର୍ଶକୁ ନମ୍ରତାର ସହିତ ମୁଁ ଗ୍ରହଣ କରିନେଉଛି । ତଥାପି ଆପଣଙ୍କ ପିତା, ପିତାମହ ମୋତେ ଧନୁର୍ବିଦ୍ୟା କୌଶଳ ଶିକ୍ଷା ଦେଇ ମୋର କିଛି କମ୍ ଉପକାର କରିନାହାନ୍ତି । ମୁଁ ମଧ୍ୟ ସେମାନଙ୍କ ପାଖରେ ସମ ପରିମାଣରେ ଋଣୀ । ମୋ ରାଜ୍ୟରେ ଧନ ସମ୍ପତ୍ତିର ଅଭାବ ନାହିଁ । ମୁଁ କୌଣସି ଶତ୍ରୁ ପ୍ରତି ଆଦୌ ଭୟଭୀତ ନୁହେଁ ।

ପ୍ରଶ୍ନ-୮: ରାଜା ବଜ୍ରନାଭ ରାଜ୍ୟ ଶାସନରେ ନିଶ୍ଚିନ୍ତ ବୋଲି ସ୍ପଷ୍ଟ ପ୍ରକାଶ କରି ପୁଣି କେଉଁ ବିଷୟରେ ସେ ଚିନ୍ତାଗ୍ରସ୍ତ ବୋଲି ଖୋଲି କହିଲେ ?

**ମାଥୁରେ ତୁ-ଅଭିଷିକ୍ତୋଽପି ସ୍ଥିତୋଽହଂ ନିର୍ଜନେ ବନେ ।**
**କ୍ୱ ଗତା ବୈ ପ୍ରଜା-ଅତ୍ରତ୍ୟା ଯତ୍ର ରାଜ୍ୟଂ ପ୍ରରୋଚତେ ॥୧୫॥**

ଉ. ବଜ୍ରନାଭ କହିଲେ, ''ହେ ରାଜନ, ମୁଁ ଅବଶ୍ୟ ମଥୁରା ରାଜସିଂହାସନରେ ଅଭିଷିକ୍ତ ହୋଇଛି । ହେଲେ ମଥୁରା ରାଜ୍ୟ ସିନା ଅଛି । ଏହା ତ ଏକ ନିର୍ଜନ ବଣ ରୂପେ ଅଛି । ମଥୁରାର ପ୍ରଜାମାନେ କାହାନ୍ତି ? ବିନା ପ୍ରଜାରେ ରାଜା ଓ ରାଜ୍ୟର ମୂଲ୍ୟ କଅଣ ? ମୁଁ କାହୁଁ ପାଇବି ସେ ପ୍ରିୟ ପ୍ରଜାଗଣଙ୍କୁ ?''

ପ୍ରଶ୍ନ-୯: ରାଜା ପରୀକ୍ଷିତ ଜାଣିଥିଲେ ଯେ ଶ୍ରୀଶାଣ୍ଡିଲ୍ୟ ଆଚାର୍ଯ୍ୟଦେବ ପୂର୍ବେ ନନ୍ଦ ଆଦି ଗୋପାଳମାନଙ୍କର ବଂଶାନୁକ୍ରମିକ କୁଳ ପୁରୋହିତ ଥିଲେ । ମଥୁରାର ଅନତି ଦୂରରେ ତାଙ୍କର ଆଶ୍ରମ କୁଟୀର ବିଦ୍ୟମାନ । ବଜ୍ରନାଭଙ୍କ ସନ୍ଦେହ ମୋଚନ ଲାଗି ସେ ମୁନିଶ୍ରୀଙ୍କୁ ଜଣେ ସନ୍ଦେଶବାହକ ହସ୍ତରେ ଖବର ଦେଲେ । ଖବର ପାଇ ଶାଣ୍ଡିଲ୍ୟମୁନି ତୁରନ୍ତ ଆସି ପହଞ୍ଚିଗଲେ । ଦୁଇଜଣ ଯାକ ରାଜା ତାଙ୍କୁ ପାଛୋଟି ନେଲେ । ସାଦର ସତ୍କାର କରି ଉଚ୍ଚ ଆସନରେ ବସାଇ ମଥୁରା ରାଜ୍ୟର ପ୍ରଜାମାନଙ୍କର ଅବସ୍ଥିତି ବିଷୟ ପଚାରିଲେ । ଶାଣ୍ଡିଲ୍ୟ ମୁନି ଉତ୍ତରରେ ସେମାନଙ୍କୁ କ'ଣ ସବୁ ବୁଝାଇ ବସିଲେ ?

**ଶାଣ୍ଡିଲ୍ୟ ଉବାଚ**

**ଶୃଣୁତଂ ଦତ୍ତଚିତ୍ତୌ ମେ ରହସ୍ୟଂ ବ୍ରଜଭୂମିଜମ୍ ।**
**ବ୍ରଜନଂ ବ୍ୟାପ୍ତି-ଇତି-ଉକ୍ତ୍ୟା ବ୍ୟାପନାତ୍ ବ୍ରଜ ଉଚ୍ୟତେ ॥୧୯॥**

ଉ. ଶାଣ୍ଡିଲ୍ୟ କହିଲେ, ''ହେ, ରାଜା ପରୀକ୍ଷିତ ଓ ରାଜା ବଜ୍ରନାଭ, ମନ ବୁଦ୍ଧି ଏକାଗ୍ର କରି ଶୁଣ ଏହି ଦିବ୍ୟ ବ୍ରଜଭୂମି ଓ ବ୍ରଜବାସୀମାନଙ୍କ ଲୀଳାର ଗୁପ୍ତ

ରହସ୍ୟ । ସଂସ୍କୃତ ଭାଷାରେ ବ୍ରଜ ଶବ୍ଦର ଅର୍ଥ ବ୍ୟାପକ । ସଂସାର ଓ ସଂସାରର ସମସ୍ତ ବସ୍ତୁ ହୁଅନ୍ତୁ ପଛକେ ସେ ସୂର୍ଯ୍ୟ, ତାରା, ଗ୍ରହ, ସୌରମଣ୍ଡଳ ଇତ୍ୟାଦି ଯାହା କିଛି ସେମାନେ ସର୍ବଦା ସୀମିତ ପର୍ଯ୍ୟାୟର । କାରଣ ସେ ସମସ୍ତେ ମାୟିକ ସତ୍ତ୍ୱ, ରଜ କିମ୍ବା ତମୋଗୁଣୀ ମାୟାଧୀନ ବସ୍ତୁ କିମ୍ବା ବ୍ୟକ୍ତି, ପ୍ରକୃତି କିମ୍ବା ପୁରୁଷ ।''

ପ୍ରଶ୍ନ-୧୦: ଯଦି ସବୁ ଦୃଶ୍ୟମାନ ବସ୍ତୁ ବ୍ୟକ୍ତି ସୀମିତ ତେବେ ସମଗ୍ର ସୃଷ୍ଟି ଭିତରେ କିମ୍ବା ଦୃଶ୍ୟମାନ ସୃଷ୍ଟି ବାହାରେ କଅଣ କିଛି ଅସୀମ ଅନନ୍ତ ସର୍ବବ୍ୟାପକ ବସ୍ତୁ କିମ୍ବା ବ୍ୟକ୍ତି ରହିବା ଅସମ୍ଭବ କି ?

**ଗୁଣାତୀତାଂ ପରଂବ୍ରହ୍ମ ବ୍ୟାପକଂ ବ୍ରଜ ଉଚ୍ୟତେ ।**
**ସଦାନନ୍ଦଂ ପରଂଜ୍ୟୋତିଃ ମୁକ୍ତାନାଂ ପଦଂ ଅବ୍ୟୟମ୍ ॥୨୦॥**

ଉ. ଆଦୌ ଅସମ୍ଭବ ନୁହେଁ । ସତ୍ତ୍ୱ ଆଦି ତିନି ଗୁଣରୁ ଅତୀତ ପରଂବ୍ରହ୍ମ କେବଳ ଅନନ୍ତ, ଅସୀମ ଓ ସର୍ବବ୍ୟାପକ । ସେ ସଦାସର୍ବଦା ଆନନ୍ଦମୟ, ଜ୍ୟୋତିର୍ମୟ ମାୟାଧୀଶ(ମୁକ୍ତାନାଂ ପଦଂ) ପରମାତ୍ମା(ଅବ୍ୟୟ) ନାମରେ ବେଦ ଓ ବୈଦିକ ସାହିତ୍ୟରେ ବର୍ଣ୍ଣିତ । ନାମ ତାଙ୍କର ବ୍ରହ୍ମ, ପରମାତ୍ମା ବା ଭଗବାନ । କାମ ତିନୋଟି ନାମ ତିନୋଟି ।

ପ୍ରଶ୍ନ-୧୧: ସେ ସବୁ ସିନା ପରଂବ୍ରହ୍ମ ଓ ପରମାତ୍ମାଙ୍କ ସ୍ୱରୂପ କଥା । ବ୍ରଜଭୂମି, ବ୍ରଜ ମଣ୍ଡଳ, ବୃନ୍ଦାବନ ଧାମ ସହିତ ତାର ସମ୍ପର୍କ କଅଣ ?

**ତସ୍ମିନ୍ ନନ୍ଦ-ଆତ୍ମଜଃ କୃଷ୍ଣଃ ସଦା-ଆନନ୍ଦ ଅଙ୍ଗ ବିଗ୍ରହଃ ।**
**ଆତ୍ମାରାମଃ ଚ ଆପ୍ତକାମଃ ପ୍ରେମାକ୍ତୈଃ ଅନୁଭୂୟତେ ॥୨୧॥**

ଉ. ସେଇ ଗୋଟିକ ତ ଅସଲି ରହସ୍ୟ କଥା । ମନୁଷ୍ୟ ଜାଣେ ଯେ ନନ୍ଦ ନନ୍ଦନ କୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହ ଆନନ୍ଦ କନ୍ଦ ଜ୍ଞାନୀମାନଙ୍କ ପାଇଁ ଆତ୍ମାରାମ ପରମାତ୍ମା ଓ ଭକ୍ତମାନଙ୍କ ପାଇଁ ଆପ୍ତକାମ ଭଗବାନ । ସେ ଆଦୌ ଜାଣିପାରେନାହିଁ ସହଜରେ ଯେ ବୃନ୍ଦାବନ ବା ବ୍ରଜଧାମ କେବେ ବି ଜଡ଼ ଗୋଡ଼ି, ମାଟି, ପବନ, ଜଳ ପାହାଡ଼ ପର୍ବତ କଣ୍ଟକାକୀର୍ଣ୍ଣ ଜଡ଼ଭୂମି ନୁହେଁ ବରଂ ଚିନ୍ମୟ ଗୋଲୋକଧାମ ରାଇଜର ଅଂଶ । ସେ ଦୃଷ୍ଟିରୁ ସମଗ୍ର ବଜ୍ରମଣ୍ଡଳ ଚିନ୍ମୟ ଶ୍ରୀକୃଷ୍ଣଙ୍କ ଅଭିନ୍ନ ଅଙ୍ଗ ସ୍ୱରୂପ । କେବଳ ସେଇଥିପାଇଁ ବ୍ରହ୍ମ ବୈବର୍ତ୍ତ ପୁରାଣରେ ବର୍ଣ୍ଣନା ମିଳେ ଯେ ଶ୍ରୀରାଧା କୃଷ୍ଣପ୍ରେମ ଲୀଳାରେ ଭାଗ ନେବାକୁ ପ୍ରଥମେ ଅମଙ୍ଗ ହେଉଥିଲେ । ଯେଉଁଠାରେ ଯମୁନା ନଦୀ,

ଗୋବର୍ଦ୍ଧନ ପର୍ବତ, ଗୋପୀ ଗୋପାଳ, ଧେନୁ ପଲ ନାହାନ୍ତି ସେଠାରେ କୃଷ୍ଣପ୍ରେମ ଲୀଳା ଅଭିନୟ ହେବ କେମିତି ? ସେତେବେଳେ ଯୋଗମାୟା ତତ୍‌କ୍ଷଣାତ ଗୋଲୋକ ବୃନ୍ଦାବନରୁ ଏହି ଚିନ୍ମୟ ଅଂଶକୁ ଜଡ଼ ପୃଥିବୀରେ ସ୍ଥାପନ କରି ରାଧାକୃଷ୍ଣ ଲୀଳା ପ୍ରକଟର ଶୁଭାରମ୍ଭ କରିଥିଲେ ।

ସେ ସମୟରେ ଦ୍ୱାପର ଯୁଗରେ ମଧ୍ୟ ଏହି କଳିଯୁଗୀ ଲୋକମାନଙ୍କ ନବୁଝିପାରିବା ଭଳି ବ୍ରଜ ମଣ୍ଡଳରେ ଚିନ୍ମୟ ଗୁଣ ଅନୁଭବ ହେଉ ନଥିଲା । ତଥାପି ଏବେ ବି ଶ୍ରୀରାମକୃଷ୍ଣ ପରମହଂସ, ଶ୍ରୀମନ୍ ମହାପ୍ରଭୁ, ନିତ୍ୟାନନ୍ଦ ପ୍ରଭୁ, ପଞ୍ଚତତ୍ତ୍ୱ, ଷଡ଼ଗୋସ୍ୱାମୀ, ବଲ୍ଲଭ ଆଚାର୍ଯ୍ୟ ଇତ୍ୟାଦି ଅଗଣିତ ଭାଗ୍ୟବାନ କୃଷ୍ଣପ୍ରେମୀ (ପ୍ରେମାକ୍ତୈଃ) ସେହି ଦିବ୍ୟଧାମର ଚିନ୍ମୟଗୁଣ ଅନୁଭବ କରିପାରୁଛନ୍ତି(ଅନୁଭୂୟତେ) । ସଂସାର ଆସକ୍ତ ମନ ଓ ଜଡ଼ ବୁଦ୍ଧି ବାଲା ଅନଧିକାରୀଙ୍କର ଏହା ଅନୁଭବ ଗମ୍ୟ ନୁହେଁ ।

ପ୍ରଶ୍ନ-୧୨ : ମନକୁ ସଂସାରରେ ନ ଲଗାଇ ଆତ୍ମାରେ ଲଗାଉଥିବାରୁ ମୁନି, ଋଷି, ତତ୍ତ୍ୱ ଜ୍ଞାନୀ ଲୋକଙ୍କୁ ଆତ୍ମାରମଣକାରୀ ବା ଆତ୍ମାରାମ କୁହାଯାଏ । ତେବେ ତ୍ରିଲୋକୀନାଥ ଭଗବାନ ଶ୍ରୀକୃଷ୍ଣଙ୍କୁ କାହିଁକି ଆତ୍ମାରାମ ବୋଲି କୁହାଯାଏ ?

**ଆତ୍ମା ତୁ ରାଧିକା ତସ୍ୟ ତୟା-ଏବ ରମଣାତ୍ ଅସୌ ।**
**ଆତ୍ମାରାମତୟା ପ୍ରାଜ୍ଞୈଃ ପ୍ରୋଚ୍ୟତେ ଗୂଢ଼ବେଦିଭିଃ ॥୨୨॥**

ଉ. ବୈଦିକ ସାହିତ୍ୟର ଗୂଢ଼ତତ୍ତ୍ୱ(ଗୂଢ଼ ବେଦିଭିଃ) ଜାଣିଥିବା ଲୋକଙ୍କ ମତରେ ରାଧିକାଙ୍କ ପାଇଁ ଆତ୍ମା ଶବ୍ଦ ପ୍ରୟୋଗ ହୋଇଛି । ଶ୍ରୀରାଧା ହେଉଛନ୍ତି ଶ୍ରୀକୃଷ୍ଣଙ୍କର ଆତ୍ମା ସ୍ୱରୂପ । କୃଷ୍ଣଭକ୍ତମାନଙ୍କ ପାଇଁ ଯେଉଁ ଶ୍ରୀକୃଷ୍ଣ ସର୍ବଦା ନିଜ ଚିନ୍ମୟ ଆତ୍ମାରେ ରମଣ କରନ୍ତି (ରମଣାତ୍ ଅସୌ) ତାଙ୍କ ନାମ ଆତ୍ମାରାମ ।

ପ୍ରଶ୍ନ-୧୩: ଯେଉଁ ପ୍ରସ୍ତର ଜୀବର କାମନା ପୂରଣ କରେ ସେ ଚିନ୍ତାମଣି ପ୍ରସ୍ତର । ଯେଉଁ ଗାଈ ବା ଧେନୁ ଜୀବର କାମନା ପୂରଣ କରେ ସେ କାମଧେନୁ । ଭକ୍ତର କଳ୍ପିତ ବସ୍ତୁ, ବ୍ୟକ୍ତି, ପ୍ରେମ ଇଚ୍ଛା ପୂରଣ କରୁଥିବାରୁ ଶ୍ରୀକୃଷ୍ଣ ଭଗବାନଙ୍କୁ ବାଞ୍ଛା କଳ୍ପତରୁ କୁହାଯାଏ । ସେ ନିଜେ କିନ୍ତୁ ଆପ୍ତକାମ କାରଣ କେବେ ବି ତାଙ୍କର କାମନା ଅପୂରଣୀୟ ରହି ନଥାଏ । ତା'ହେଲେ ଶ୍ରୀକୃଷ୍ଣଲୀଳା ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ଜର୍ମାନୀ ବା ଇଟାଲୀ ଇତ୍ୟାଦି ଦେଶରେ ନ ହୋଇପାରିବାର କାରଣ କିସ ?

**କାମାଃ ତୁ ବାଞ୍ଛିତାଃ ତସ୍ୟ          ଗାବୋ ଗୋପାଃ ଚ ଗୋପିକାଃ ।**
**ନିତ୍ୟାଃ ସର୍ବେ ବିହାର-ଆଦ୍ୟା          ଆପ୍ତକାମଃ ତତଃସ୍ୱୟମ୍ ।।୨୩।।**

ଉ. ଅସଲି ରସହ୍ୟଟି ହେଲା ସେ ସବୁ ଦେଶ ସିନା ଧନ କୁବେର ଅଳକାପୁରୀ, ଐଶ୍ୱର୍ଯ୍ୟ ପୂରିତ, ଅଭାବ ନଥିବା ଦେଶ ହେଲେ ସେ ଦେଶ ଜନ୍ମିତ ଲୋକମାନଙ୍କ ହୃଦୟରେ ଆତ୍ମା ଭାବ କାହିଁ ? ସେମାନଙ୍କ ଉର୍ବର ମସ୍ତିଷ୍କରେ ଅନେକ ବୁଦ୍ଧି ସିନା ଅଛି ହେଲେ ହୃଦୟରେ କୋମଳତା, ବସୁଧୈବ କୁଟୁମ୍ବକଂ ଭାବନା କାହିଁ ? ଗୋପୀ, ଗୋପାଳ, ଗୋଧନ ପାଇଁ ପ୍ରେମ ଥିବା ଲୋକ ସେସବୁ ଦେଶରେ ଜନ୍ମନେଲେ ବିଚରା ଅଣନିଶ୍ୱାସୀ ହୋଇଯାଏ । ଅନ୍ୟ ପକ୍ଷରେ କୃଷ୍ଣ ଓ କୃଷ୍ଣଭକ୍ତଗଣ ବ୍ରଜମଣ୍ଡଳରେ ପ୍ରକଟ ହେଲେ ଅଳ୍ପ ଖାଇ କିମ୍ବା କିଛି ନଖାଇ ଦାମୀ ବସ୍ତ୍ର ନ ପିନ୍ଧି, ରାଜ ପ୍ରାସାଦରେ ନ ରହିଲେ ମଧ କୌଣସି ଭୋଗ୍ୟ ପଦାର୍ଥ ନଥାଇ ସେମାନେ ପରମ ଆନନ୍ଦରେ ନିଜେ ଖେଳି ଅନ୍ୟଙ୍କୁ ଖେଳାଇ ଲୀଳାବିହାର କରିପାରନ୍ତି । ଏହା କଅଣ ବ୍ରଜଭୂମିରେ କମ୍ ଚମତ୍କାରିତା ! ! ! ଜଡ଼ ଶରୀର ଓ ଜଡ଼ ସଂସାରରେ ରହି ଚିନ୍ମୟ କୃଷ୍ଣପ୍ରେମ ପ୍ରାପ୍ତି ସଫଳ ଜୀବନର ଚାବିକାଠି ନୁହେଁ ତ ଆଉ କଅଣ ? ସେଥିପାଇଁ ସିନା ଭାରତଭୂମିକୁ କର୍ମଭୂମି ଓ ଇଉରୋପ, ଆଫ୍ରିକା, ଆମେରିକା ଆଦି ଦେଶ ସବୁକୁ ଭୋଗ ଭୂମି କୁହାଯାଇଛି ।

ପ୍ରଶ୍ନ-୧୪: ଭକ୍ତି ସାହିତ୍ୟ କୁହନ୍ତି ଭଗବାନଙ୍କର ନାମ, ରୂପ, ଲୀଳା, ଗୁଣ, ଧାମ(ବ୍ରଜ ମଣ୍ଡଳ) ଓ ଭକ୍ତ ଏ ଛଅ ଚିଜ ସର୍ବଦା ଚିନ୍ମୟ । ପ୍ରତ୍ୟେକଟି ଭିତରେ ଅନ୍ୟ ପାଞ୍ଚ କଥା ବିଦ୍ୟମାନ । କେବଳ କୃଷ୍ଣଭକ୍ତମାନେ ବୁଝିପାରନ୍ତି ଏହାର ସତ୍ୟତା । ସେମାନଙ୍କର ଇଷ୍ଟ ଶ୍ରୀରାଧା କୃଷ୍ଣ ଦୁଇ ଚିନ୍ମୟ ପ୍ରତିମା । ଜଣେ ପ୍ରକୃତି ହେଲେ ଅନ୍ୟ ଜଣକ ପୁରୁଷ । ସେମାନଙ୍କ ଖେଳକୁ କେବଳ ଜଣେ କୃଷ୍ଣ ଭକ୍ତ ବୁଝିପାରେ । ଅନ୍ୟମାନେ ଏହାର ଟେର ପାଇବା ଅସମ୍ଭବ । ତେବେ ଭୌତିକ ଜଗତରେ ଚିନ୍ମୟ ଲୀଳା ଅଭିନୟ ସମ୍ଭବ ହୁଏ କିପରି ?

**ସର୍ବ ସ୍ଥିତି-ଅପ୍ୟୟା ଯତ୍ର          ରଜଃ ସତ୍ତ୍ୱ ତମୋ ଗୁଣୈଃ ।**
**ଲୀଳା-ଏବଂ ଦ୍ୱିବିଧା ତସ୍ୟ          ବାସ୍ତବୀ ବ୍ୟାବହାରିକୀ ।।୨୫।।**

ଉ. ଭଗବାନଙ୍କର ମାୟା ଦ୍ୱିବିଧ । ସଂସାର ଭୋଗ ସଂଗ୍ରହ ଆଡ଼କୁ ଆସକ୍ତ କରାଉଥିବା ମାୟାଙ୍କ ନାମ ମହାମାୟା । ସେ ସର୍ବଦା ସତ୍ତ୍ୱ, ରଜ ଓ ତମୋଗୁଣ ଦ୍ୱାରା

ସଂସାରର ସୃଷ୍ଟି(ସ୍ୱର୍ଗ), ପାଳନ (ସ୍ଥିତି) ଓ ସଂହାର(ଅପ୍ୟୟା) କରୁଥାଆନ୍ତି । ଜୀବ ଜନ୍ମ ଜନ୍ମାନ୍ତର ଧରି ଶୁଭ ଅଶୁଭ କର୍ମ କରି ଫଳ ରୂପରେ ସୁଖ ଦୁଃଖ ଭୋଗେ । ସଂସାର ମୋହ, ଆସକ୍ତି ଓ ଅହଂକାର ଜାଲରେ ପଡ଼ି ଛଟପଟ ହୁଏ । ଅନ୍ୟମାୟାର ନାମ ଯୋଗମାୟା । ତାହାଦ୍ୱାରା ଜୀବକୁ ମାର୍ଗ ଦର୍ଶନ କରାଇବା ଲାଗି ଭଗବାନଙ୍କର ବ୍ୟାବହାରିକ ଏବଂ ବାସ୍ତବୀ ଦୁଇ ପ୍ରକାର ଲୀଳା ହୁଏ । ଅଜନ୍ମା ଭଗବନଙ୍କର ଜନ୍ମ ହେବା, କର୍ମଫଳ ଆଶା ନ କରି ସଦା ସର୍ବଦା ଆଦର୍ଶ କର୍ମ କରି ବିରଳ ଦୃଷ୍ଟାନ୍ତ ସ୍ଥାପନ କରିବା, ଭଗବାନ ସେବ୍ୟ ହୋଇ ମଧ୍ୟ ସେବକ ଭୂମିକାର ଅଭିନୟ କରି ଭକ୍ତର ସେବା କରିଯିବା, ଭୟହାରୀ ହୋଇ ମଧ୍ୟ ଶତ୍ରୁ ଭୟରେ ରାଇଜ ଛାଡ଼ି ନୂତନ ଦୁର୍ଗ ନିର୍ମାଣ କରି ଲୁଚି ରହିବା, ସଦା ଅଜେୟ ଅଜିତ ହୋଇ ମଧ୍ୟ ଯୁଦ୍ଧରେ ହାରିବା ଭଳି ଅନିଭୟ କରିବା, ମା' ହାତରେ ଛାଟିଆ ଦେଖି କାନ୍ଦି ପକାଇବା ଇତ୍ୟାଦି ଅଗଣିତ ଲୀଳା ଏହି ବ୍ୟବହାରିକୀ ଲୀଳାର ଅନ୍ତର୍ଗତ । ଏ ସବୁ ମାୟାଧୀନ ଜୀବମାନଙ୍କୁ ମାର୍ଗଦର୍ଶନ କରି ଦୁର୍ଜୟା ମାୟା କବଳରୁ ଛଡ଼େଇବା ପାଇଁ ଉଦ୍ଦିଷ୍ଟ । ସେଥିପାଇଁ ସିନା ଭଗବାନଙ୍କୁ ଏତେ ସେତେ ଅବତାର ନେବାକୁ ପଡ଼େ । ଏତେ କଷ୍ଟ ସହିବାକୁ ହୁଏ । ଏ ଲୀଳାର ନାମ ବ୍ୟାବହାରିକୀ ଲୀଳା ।

ଏତଦ୍ ଭିନ୍ନ ଅନ୍ୟ ଲୀଳାଟିର ନାମ ବାସ୍ତବୀ । ଭଗବାନଙ୍କ ଭକ୍ତମାନଙ୍କୁ ଆନନ୍ଦ ଦେବା ନିମିତ୍ତ ଏହା ସଦା ସର୍ବଦା ଚିନ୍ମୟ ଗୋଲୋକ ଧାମରେ ତ ହୁଏ । ତଥାପି ବେଳେବେଳେ ଏହି ମୃତ୍ୟୁଲୋକରେ ମଧ୍ୟ ହୁଏ । ସେତେବେଳେ ନିତ୍ୟ ଗୋଲକଧାମରୁ କିଛି ନିତ୍ୟ ପାର୍ଷଦ (ଅଷ୍ଟ ସଖୀ) ଏବଂ ମହାବୈକୁଣ୍ଠ ଲୋକରୁ କିଛି ଅଧିକାରୀ ମୁକ୍ତ ଜୀବ ପାର୍ଷଦ ରୂପରେ ଆସିଥାନ୍ତି । ପୁଣି ସ୍ୱର୍ଗ ଆଦି ସପ୍ତସ୍ୱର୍ଗ ଓ ସପ୍ତ ପାତାଳରୁ ମଧ୍ୟ ସାଧନ ସିଦ୍ଧ ଭକ୍ତମାନେ ଏହି ଲୀଳାରେ ଅଭିନୟ କରନ୍ତି । କାରଣ ସେମାନେ ସମସ୍ତ କୃଷ୍ଣପ୍ରେମଲୀଳାର ଦିବ୍ୟ ପ୍ରେମାନନ୍ଦ ପ୍ରାପ୍ତ ହୋଇ ଯୁଗ ଯୁଗାନ୍ତର ଧରି ଚିନ୍ମୟ ଦେହରେ ଏହି ଲୀଳା କରିବା ଲାଗି ମନନ କରୁଥାଆନ୍ତି ।

ପ୍ରଶ୍ନ-୧୫: ବାସ୍ତବୀ ଓ ବ୍ୟାବହାରିକୀ ଉଭୟ ଲୀଳା ଶ୍ରୀକୃଷ୍ଣଙ୍କ ଲୀଳା । ଦୁଇ ଲୀଳା ମଧ୍ୟରେ ପାର୍ଥକ୍ୟ ତେବେ କଅଣ ?

**ବାସ୍ତବୀ ତତ୍ ସ୍ୱୟଂ ସଂବେଦ୍ୟା ଜୀବାନାଂ ବ୍ୟାବହାରିକୀ ।**
**ଆଦ୍ୟାଂ ବିନା ଦ୍ୱିତୀୟା ନ ଦ୍ୱିତୀୟା ନ-ଅଦ୍ୟଗା କ୍ୱଚିତ୍ ।।୨୬।।**

ଉ. ଅତ୍ୟନ୍ତ ରହସ୍ୟମୟ ଏ ଲୀଳା ଜନିତ ପାର୍ଥକ୍ୟ । ବାସ୍ତବୀ ଲୀଳା ବିନା ବ୍ୟବହାରିକୀ ଲୀଳା ହୋଇପାରେ ନାହିଁ । ବ୍ୟବହାରିକୀ ଲୀଳା ବିନା କିନ୍ତୁ ବାସ୍ତବୀ ଲୀଳା ହୋଇପାରେ । ଚିନ୍ମୟ ଧର୍ମୀ ପ୍ରଥମଟିକୁ କେବଳ କୃଷ୍ଣ ଓ କୃଷ୍ଣଭକ୍ତମାନେ ବୁଝନ୍ତି ଏବଂ ପରମ ଆନନ୍ଦପ୍ରାପ୍ତ ହୁଅନ୍ତି । ସେମାନେ ଦ୍ୱିତୀୟ ମାୟିକ ଲୀଳାଟିକୁ ଦେଖି ମଧ୍ୟ ଅଣଦେଖା କରନ୍ତି । କାରଣ ସେ ସବୁ କେବଳ ସୁଖ ଦୁଃଖ, ଶୋକ ମୋହ, ଜନ୍ମମରଣ ପ୍ରଦ ମାୟିକ ଜଗତରେ ଲୀଳା ।

ପ୍ରଶ୍ନ-୧୬: ବ୍ୟାବହାରିକୀ ଲୀଳା ରହସ୍ୟକୁ ଆହୁରି ପ୍ରାଞ୍ଜଳ କରିବାକୁ ଯାଇ ମହର୍ଷି ଶାଣ୍ଡିଲ୍ୟ କେଉଁ ଦୃଷ୍ଟାନ୍ତଟିଏ ଉପସ୍ଥାପନ କଲେ ?

**ଯୁବୟୋଃ ଗୋଚର-ଇୟଂ ତୁ ତତ୍ ଲୀଳା ବ୍ୟାବହାରିକୀ ।**
**ଯତ୍ର ଭୂଃ ଆଦୟୋ ଲୋକା ଭୁବି ମାଥୁର ମଣ୍ଡଳମ୍ ॥୨୭॥**

ଉ. ମହର୍ଷି କହିଲେ, ''ତୁମେ ଦୁଇ ରାଜା(ଯୁବୟୋଃ) ଏବେ ମଥୁରା ମଣ୍ଡଳରେ ଯେଉଁ ଜଡ଼ ପାହାଡ଼, ପର୍ବତ, ନଦୀ, ବୃକ୍ଷଲତା ଆଦି ଦେଖୁଛ ସେ ସବୁ ଭଗବାନ କୃଷ୍ଣଙ୍କର ବ୍ୟାବହାରିକୀ ଲୀଳାର(ତତ୍‌ଲୀଳା) ଅନ୍ତର୍ଗତ । ଏ ଲୀଳା ଅନ୍ୟ ପ୍ରକାରେ ସପ୍ତ ସ୍ୱର୍ଗ ଓ ସପ୍ତ ପାତାଳରେ (ଭୂଃଆଦୟୋଃ) ମଧ୍ୟ ଚାଲୁ ରହିଛି । ଏହାର ରହସ୍ୟ କେବଳ କୃଷ୍ଣ ଓ କୃଷ୍ଣ ଭକ୍ତଙ୍କୁ ଭଲଭାବରେ ଜଣା । ନାରାୟଣଙ୍କର ଶକ୍ତି ଜଡ଼ମାୟାଙ୍କର ପ୍ରବେଶ ବ୍ରହ୍ମଲୋକ ପର୍ଯ୍ୟନ୍ତ ସଦାକାଳେ ଥାଏ । ସେଥିପାଇଁ ସିନା ବ୍ରହ୍ମା ବିଷ୍ଣୁ ଓ ଶଙ୍କର ଆଦି ଦେବୀ ଦେବତା ଶ୍ରୀମନ୍ ନାରାୟଣଙ୍କ ହାତରେ କାଠ କଣ୍ଢେଇ ।''

ପ୍ରଶ୍ନ-୧୭: ବାସ୍ତବୀ ଲୀଳାର କେଉଁ ଦୃଷ୍ଟାନ୍ତଟିଏ ମହର୍ଷି ଦେଲେ ସେତେବେଳେ ?

**ଅତ୍ର-ଏବ ବ୍ରଜଭୂମିଃ ସା ଯତ୍ର ତତ୍ତ୍ୱଂ ସୁଗୋପିତମ୍ ।**
**ଭାସତେ ପ୍ରେମ ପୂର୍ଣ୍ଣାନାଂ କଦାଚିତ୍ ଅପି ସର୍ବତଃ ॥୨୮॥**

ଉ. ସେତେବଳର ବ୍ରଜଭୂମି କୁଆଡ଼େ ହେଲେ ପଳାଇ ଯାଇନାହିଁ । ସେଇ ଚିନ୍ମୟ ଭୂମି ଅଭକ୍ତମାନଙ୍କୁ ଆଜି ମୃଣ୍ମୟ ଭଳି ବୋଧ ହେଉଛି । ସେହି ଚିନ୍ମୟ କୃଷ୍ଣପ୍ରେମ ଲୀଳା ଗୋପନରେ ଏବେ ବି (ସୁଗୋପିତଂ) ଚାଲୁଛି । ଜଣେ କୃଷ୍ଣଭକ୍ତର ହୃଦୟ ଗୁରୁ ଗୋବିନ୍ଦଙ୍କ କୃପାରୁ ପ୍ରେମାପ୍ଲୁତ ହୋଇଗଲେ ସେ ଲୀଳାସବୁ ଏବେ ମଧ୍ୟ ତା ହୃଦୟ କମଳର ଗୋପନ କନ୍ଦରାରେ ଉଦ୍ଭାସିତ(ଭାସତେ) ହେବ ହିଁ ହେବ ।

ଶ୍ରୀରାମକୃଷ୍ଣ ପରମହଂସ ସନ୍ଥ ହରିଦାସ, ସୁରଦାସ, ମୀରାବାଈ, ଜୟଦେବ ଗୋସ୍ୱାମୀ, ପରମାନନ୍ଦ ପୁରୀ, ବିଠଲନାଥ, ନରସିଂ ମେହେଟ୍ଟା ଆଦି ଅଗଣିତ କୃଷ୍ଣପ୍ରେମୀ ଭଗବତ ଭକ୍ତ ଏ ଲୀଳା ଦର୍ଶନର ସାକ୍ଷୀ ।

ପ୍ରଶ୍ନ-୧୮ : ଏଭଳି ସୁବିରଳ ଅଲୌକିକ କୃଷ୍ଣପ୍ରେମ ଲୀଳା ବ୍ରଜଭୂମିରେ କେତେବେଳେ କେତେବେଳେ ପୁଣି କାହାକୁ କାହାକୁ ନେଇ ଅଭିନୀତ ହୋଇଥାଏ ?

**କଦାଚିତ୍ ଦ୍ୱାପରସ୍ୟ-ଅନ୍ତେ ରହୋ ଲୀଳା-ଅଧିକାରିଣଃ ।**
**ସମବେତା ଯଦା-ଅତ୍ର ସ୍ୟୁଃ ଯଥା ଇଦାନୀଂ ତଦା ହରିଃ ॥୨୯॥**

ଉ. ଲୀଳାସ୍ଥଳୀ ହେଲା ବ୍ରଜଧାମ । ସମୟ ହେଲା ଏକ କଳ୍ପ(୪୩୨ କୋଟି ବର୍ଷ)ରେ, ସପ୍ତମ ମନ୍ୱନ୍ତର ମଧ୍ୟସ୍ଥିତ ଅଠେଇଶତମ ଚତୁର୍ଯୁଗର ଦ୍ୱାପରଯୁଗ ଶେଷ । ଏହି ବାସ୍ତବିକୀ ଗୁପ୍ତ ଲୀଳା(ରହୋ) କେବଳ ଅଧିକାରୀ ଜୀବ(ଗୁରୁ ଗୋବିନ୍ଦଙ୍କ ସଂପୂର୍ଣ୍ଣ ଶରଣାଗତ ନିଷ୍କାମ) କୃଷ୍ଣ ଭକ୍ତମାନଙ୍କୁ ନେଇ କରାନ୍ତି ଯୋଗମାୟା । ଯାହାଙ୍କର ଅନ୍ୟ ଏକ ନାମ ବ୍ରଜରେ ପୌର୍ଣ୍ଣମାସୀ ଦେବୀ । ସେ ଅନେକ ଦେବୀ ଦେବତା, ମୁନି, ଋଷି ଓ ଅଧିକାରୀ ଜୀବମାନଙ୍କୁ ଏକତ୍ର କରାଇଥାନ୍ତି ଏହି ଦିବ୍ୟ ପ୍ରେମରସର ଆସ୍ୱାଦନ ଲାଗି ।

ପ୍ରଶ୍ନ-୧୯ : ଦ୍ୱାପର ଯୁଗଶେଷରେ କୃଷ୍ଣ ଅବତାର କାଳରେ କେତେ ପ୍ରକାରର ଭକ୍ତ ତାଙ୍କ ସହିତ ଲୀଳା କରିବାର ସୁଯୋଗ ପାଆନ୍ତି ?

**ସର୍ବେଷାଂ ବାଞ୍ଛିତଂ କୃତ୍ୱା ହରିଃ ଅନ୍ତର୍ହିତୋଽଭବତ୍ ।**
**ତେନ-ଅତ୍ର ତ୍ରିବିଧା ଲୋକାଃ ସ୍ଥିତାଃ ପୂର୍ବଂ ନ ସଂଶୟଃ ॥୩୧॥**

ଉ. କୃଷ୍ଣଲୀଳାରେ ତିନି ପ୍ରକାର (ତ୍ରିବିଧା ଲୋକାଃ) କୃଷ୍ଣଭକ୍ତ ଦେଖାଯାଆନ୍ତି । ଗୋଲୋକ ବୃନ୍ଦାବନର କିଛି ନିତ୍ୟପାର୍ଷଦଗଣ । ବୈକୁଣ୍ଠ ଓ ମହାବୈକୁଣ୍ଠର କିଛି ସାଧନ ସିଦ୍ଧ ନିଷ୍କାମ ଭକ୍ତଗଣ । ପୁଣି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଲୋକର ଐଶ୍ୱର୍ଯ୍ୟ ଅଭିଳାଷୀ ନାରାୟଣ ଆଶ୍ରିତ ଭକ୍ତଗଣ । ଏହି ତିନି ପ୍ରକାର ସାଧକ ମଧ୍ୟରୁ ଉପର ଦୁଇ ପ୍ରକାରର ଭକ୍ତ ନିଷ୍କାମ । ଲୀଳା ଶେଷରେ ଏମାନଙ୍କୁ କେଉଁଠାକୁ ପଠାଇବା ଦରକାର ପଡ଼େନା । ତୃତୀୟ ଶ୍ରେଣୀର ଲୀଳାର ସକାମ ଭକ୍ତମାନଙ୍କର ବାଞ୍ଛିତ ଫଳ ପ୍ରଦାନ କରିଦେଇ ଭକ୍ତବାଞ୍ଛାକଳ୍ପତରୁ ଭଗବାନ ବ୍ରହ୍ମାଙ୍କ ଲୀଳାଶେଷ ହେବା ସୂଚନାରେ ସ୍ୱଧାମ ଗମନ କରିଗଲେ(ଅନ୍ତର୍ହିତୋ)ସ୍ୱଦେହରେ । କୃଷ୍ଣଙ୍କ ମରିବା କଥା ମିଛ । ତାଙ୍କ ମୃତ ଶରୀର ସଂସ୍କାର ହେବା କଥା ଭାଗବତରେ ଆଦୌ ବର୍ଣ୍ଣିତ କରି ନାହାନ୍ତି ବ୍ୟାସଦେବ । କୃଷ୍ଣଙ୍କ ଦେହ ମୃଣ୍ମୟ ନଥିଲା । ଥିଲା ବିଲକୁଲ ଚିନ୍ମୟ ।

ପ୍ରଶ୍ନ-୨୦: ସକାମ ଭକ୍ତମାନେ କୃଷ୍ଣଲୀଳା ଅନ୍ତେ କିଭଳି ଥଇଥାନ ହେଲେ ?

**ନିତ୍ୟାଃ ତତ୍‌ଲିପ୍‌ସବଃ ଚ-ଏବ ଦେବାଦ୍ୟାଃ ଚ-ଇତି ଭେଦତଃ ।**
**ଦେବାଦ୍ୟାଃ ତେଷୁ କୃଷ୍ଣେନ ଦ୍ୱାରକାଂ ପ୍ରାପିତଃ ପୁରା ॥୩୨॥**

ଉ. ମର୍ତ୍ତ୍ୟଲୋକ ଓ ପାତାଳ ଆଦି ଲୋକରୁ ଆନୀତ ଭକ୍ତମାନଙ୍କୁ ସେମାନଙ୍କ ଇଚ୍ଛିତ ଲୋକମାନଙ୍କୁ ପଠାଇ ଦିଆଗଲା । କେବଳ ସ୍ୱର୍ଗଲୋକରୁ ଅଣାଯାଇଥିବା କଳାକାରମାନଙ୍କୁ(ଐଶ୍ୱର୍ଯ୍ୟ କାମୀଙ୍କୁ) ଭଗବାନ ମଥୁରାରୁ ନେଇ ଦ୍ୱାରକାରେ ସ୍ୱର୍ଣ୍ଣମୟୀ ରାଜ ମହଲ ନିର୍ମାଣ କରି ରଖାଇଥିଲେ । ତନ୍ମଧ୍ୟରୁ ଅନେକ ଠାକୁରଜୀଙ୍କ ଲୀଳା ଅନ୍ତେ ସତୀ ହୋଇଗଲେ । ଅନ୍ୟମାନଙ୍କୁ ମହାବୀର ଅର୍ଜୁନ ଦ୍ୱାରକାରୁ ମଥୁରା ଆଣିବାବେଳେ କେତେକ ଗୋପାଳ ଅନେକ କୃଷ୍ଣପତ୍ନୀଙ୍କୁ ବାଟରେ ହରଣ କରିନେଲେ । ବାକୀ ତକ ଦ୍ୱାରକାବାସୀ ଏବେ ମଥୁରାରେ ନିବାସ କରୁଛନ୍ତି ।

ପ୍ରଶ୍ନ-୨୧: ଯେଉଁ ପୁତ୍ର, ନାତି, ଅଣନାତି, ସଂପର୍କୀୟ କୃଷ୍ଣ ଭକ୍ତମାନେ ମୂଷଳଲୀଳା ବେଳେ(ମୌଷଳମାର୍ଗେଣ) ମୈରେୟ ମଦ୍ୟପାନ କରି ମୂଷଳଚୂର୍ଣ୍ଣରୁ ଉତ୍ପନ୍ନ ଏରକା ଦଣ୍ଡ ପିଟା ପିଟି ହୋଇ ଦେହ ଛାଡ଼ିଲେ ସେମାନଙ୍କର କି ଗତି ହେଲା ?

**ପୁନଃ ମୌଷଳ ମାର୍ଗେଣ ସ୍ୱ-ଅଧିକାରେଷୁ ଚ-ଅର୍ପିତାଃ ।**
**ତତ୍‌ଲିପ୍‌ସୂଂନ୍ ଚ ସଦା କୃଷ୍ଣଃ ପ୍ରେମ-ଆନନ୍ଦ-ଏକ ରୂପିଣଃ ॥୩୩॥**

ଉ. ଦେହ ତ୍ୟାଗ ପରେ ସ୍ୱର୍ଗର ଦେବତାମାନେ ସ୍ୱର୍ଗକୁ ଫେରିଗଲେ ପୁଣି ନିଜ ନିଜ ଅଧିକାରଭୁକ୍ତ ପଦ ପଦବୀ ଭୋଗ ଐଶ୍ୱର୍ଯ୍ୟ ପ୍ରାପ୍ତ ହେଲେ । କାରଣ ସେମାନେ ଶ୍ରୀମନ୍ ନାରାୟଣଙ୍କ ଭକ୍ତ । ସେମାନେ ତ ଆଉ ନିଷ୍କାମ କୃଷ୍ଣ ଭକ୍ତ ନୁହନ୍ତି । ସେମାନେ ସ୍ୱର୍ଗରେ ରହି ଦୀର୍ଘକାଳ ଧରି(ସଦା) ସେଇ ଐଶ୍ୱର୍ଯ୍ୟ ଚାହୁଁଛନ୍ତି (ତତ୍‌ଲିପ୍‌ସୂଂନ୍ ଚ) । ହଁ ସେମାନେ କୃଷ୍ଣପ୍ରେମ(ପ୍ରେମ ଆନନ୍ଦ)ଆସ୍ୱଦନର କିଛିଟା ଲାଭ ଉଠାଇପାରିଲେ । ଏଥିପାଇଁ ସେମାନେ ଗର୍ବ, ଗୌରବ ଓ ଧନ୍ୟବାଦର ପାତ୍ର ଅନ୍ୟ ଦେବୀଦେବତା ଏବଂ ଭକ୍ତମାନଙ୍କ ପାଖରେ ।

ପ୍ରଶ୍ନ-୨୨: ଭକ୍ତମାନଙ୍କର ଯୋଗ୍ୟତା ଅଯୋଗ୍ୟତା ବିଚାର କରି(ବିଧାୟ) ଶ୍ରୀକୃଷ୍ଣ ଲୀଳା ଶେଷରେ ନିଜ (ସ୍ୱୀୟ) ନିତ୍ୟପାର୍ଷଦମାନଙ୍କ ସହିତ(ନିତ୍ୟେଷୁ) ନିଷ୍କାମ ଭକ୍ତମାନଙ୍କ ସହିତ ସମ୍ମିଳିତ କରିଦେଲେ(ସମାବେଶିତବାନ୍) । ସେହି ଉଭୟ ପ୍ରକାର

କୃଷ୍ଣଭକ୍ତଙ୍କୁ ଅନ୍ୟ କେଉଁ ଲୋକକୁ ଯିବାକୁ ପଡ଼ିଲା ନାହିଁ । ସେମାନେ ଯଦି ସେଇ ବ୍ରଜମଣ୍ଡଳରେ ବା ବୃନ୍ଦାବନ ଧାମରେ ରହିଲେ ବଜ୍ରନାଭ, ପରୀକ୍ଷିତ, ଅନ୍ୟାନ୍ୟ କୃଷ୍ଣପତ୍ନୀମାନଙ୍କୁ ଦେଖାଯାଇ ନଥିଲେ (ଦର୍ଶନ ଅଭାବତାଂ) କାହିଁକି ?

**ବିଧାୟ ସ୍ୱୀୟ ନିତ୍ୟେଷୁ ସମାବେଶିତବାନ୍ ତଥା ।**
**ନିତ୍ୟାଃ ସର୍ବେଽପି-ଅଯୋଗ୍ୟେଷୁ ଦର୍ଶନ-ଅଭାବତାଂ ଗତାଃ ॥୩୪॥**

ଉ. ବାସ୍ତବୀ ଓ ବ୍ୟାବହାରିକୀ ଲୀଳାର ପାର୍ଥକ୍ୟ ବୁଝି ନ ପାରିବାରୁ ଏଭଳି ବୁଦ୍ଧି ବିପର୍ଯ୍ୟୟ ଘଟିଥିଲା ସେମାନଙ୍କର ଅନୁର୍ବର ମସ୍ତିଷ୍କ କ୍ଷେତ୍ରରେ ।

ପ୍ରଶ୍ନ-୨୩: ଯୋଗମାୟାଙ୍କ ବିଧାନ ଅନୁସାରେ ବାସ୍ତବୀ ଲୀଳାରେ ଅଂଶଗ୍ରହଣ କରିଥିବା ସାଧକ ଓ ସିଦ୍ଧଗଣ ସମସ୍ତେ ବ୍ୟାବହାରିକୀ ଲୀଳାସ୍ଥିତ ଜୀବମାନଙ୍କୁ ସର୍ବଦା ଦର୍ଶନ କରିପାରିବେ (ପଶ୍ୟନ୍ତି-ଅତ୍ର-ଆଗତଃ) । କିନ୍ତୁ ୨ୟ ପ୍ରକାର ଜୀବ ୧ମ ପ୍ରକାର ଲୀଳା ଦର୍ଶନ କରିପାରନ୍ତି ନାହିଁ । ଏହା ଏକ ଅକାଟ୍ୟ ଅଧିକାରୀ ଭେଦ । ବୃନ୍ଦାବନରେ ଏବେ କ'ଣ ବାସ୍ତବୀ ଲୀଳା ସଂପୂର୍ଣ୍ଣ ବନ୍ଦ ହୋଇଯାଇଛି କି ?

**ବ୍ୟାବହାରିକ ଲୀଳାସ୍ଥ ତତ୍ର ଯତ୍ ନ-ଅଧିକାରିଣଃ ।**
**ପଶ୍ୟନ୍ତି-ଅତ୍ର-ଆଗତଃ ତସ୍ମାତ୍ ନିର୍ଜନତ୍ୱଂ ସମନ୍ତତଃ ॥୩୫॥**

ଉ. ନା ନା ତାହା ଆଦୌ ସମ୍ଭବ ନୁହେଁ । ସେହି ଚିନ୍ମୟ ଲୀଳା ଏବେ ମଧ୍ୟ ଏହି ଭୌମବୃନ୍ଦାବନର ଛତ୍ରେ ଛତ୍ରେ ପତ୍ରେ ପତ୍ରେ ଅଭିନୀତ ହେଉଛି । ମାତ୍ର ଯେଉଁମାନେ ନିଜର ମନବୁଦ୍ଧିକୁ ଭୌତିକ ଜଗତର ଆସକ୍ତିରୁ ମୁକ୍ତ କରିପାରିନାହାନ୍ତି ସେମାନେ ସମସ୍ତେ ସେ ଲୀଳାଦର୍ଶନରେ ଅନଧିକାରୀ । ତେଣୁ ସିନା ସେମାନଙ୍କୁ ଦ୍ୱାଦଶବନ ବିଶିଷ୍ଟ ବ୍ରଜମଣ୍ଡଳରେ(ସମନ୍ତତଃ) ଚତୁର୍ଦ୍ଦିଗରେ ସେ ଲୀଳାମଗ୍ନ ନିତ୍ୟପାର୍ଷଦଗଣ ଦୃଶ୍ୟମାନ ହେଉ ନାହାନ୍ତି । ବରଂ ଦିନ ରାତି କୁକୁର, ମାଙ୍କଡ଼, ଘୁଷୁରି ପଲ, କଙ୍କଡ଼, ପଥର, ଗଛ ପତ୍ର ଭୌତିକ ମନେ ହେଉଛନ୍ତି ଯାହାକୁ ପରୀକ୍ଷିତ ନିର୍ଜନତ୍ୱଂ ବୋଲି ଏଠାରେ ଶାଣ୍ଡିଲ୍ୟମୁନିଙ୍କୁ କହିଛନ୍ତି ।

ପ୍ରଶ୍ନ-୨୪: ମୁନିଶ୍ରୀଙ୍କଠାରୁ ନିଜ ନିଜର ଅଯୋଗ୍ୟତା ଜାଣିବା ପରେ ଉପସ୍ଥିତ ଶ୍ରୋତାମାନେ କଅଣ ଦୁଃଖରେ ଭାଙ୍ଗିପଡ଼ିଲେ କି ?

**ତସ୍ମାତ୍ ଚିନ୍ତା ନ ତେ କାର୍ଯ୍ୟା ବଜ୍ରନାଭ ମତ୍-ଆଜ୍ଞୟା ।**
**ବାସୟ-ଅତ୍ର ବହୂନ୍ ଗ୍ରାମାନ୍ ସଂସିଦ୍ଧିଃ ତେ ଭବିଷ୍ୟତି ॥୩୬॥**

ଉ. ଶାଣ୍ଡିଲ୍ୟ ମୁନି ବ୍ରଜନାଭଙ୍କ ବଂଶର କୁଳପୁରୋହିତ । ଜନ୍ମ ଜନ୍ମାନ୍ତର ତାଙ୍କର କଲ୍ୟାଣ କଳାବାଲା । ସେ ସୁନ୍ଦର ଆଶ୍ୱାସନା ବାଣୀ ଶୁଣାଇ କହିଛନ୍ତି, ''ହେ ରାଜନ୍(ବ୍ରଜନାଭ), ତୁମେମାନେ କୃଷ୍ଣଲୀଳା ବୁଝିବାରେ ଏକାନ୍ତ ଅଯୋଗ୍ୟ ଏହା କହିବା ମୋର ଅଭିପ୍ରାୟ ନୁହେଁ । ସେ ବିଷୟରେ ନିଶ୍ଚିନ୍ତ ହୁଅ । ମୋ କଥା ମାନି ପାଖ ରାଜ୍ୟ ମାନଙ୍କରୁ କିଛି ପ୍ରଜା( ଚାରି ବର୍ଣ୍ଣର ମନୁଷ୍ୟ, ପଶୁ ଆଦି) ଆଣି ଏହି ୮୪କୋଶ ବ୍ରଜମଣ୍ଡଳରେ କେତେ ଗୁଡ଼ିଏ ନୂତନ ଗ୍ରାମ୍ୟ ବସତି ସ୍ଥାପନ କରାଅ । ସେମାନଙ୍କ ଦ୍ୱାରା କୃଷ୍ଣଲୀଳା ପଠନ, ପାଠନ, ଶ୍ରବଣ, କୀର୍ତ୍ତନ, ମନନ, ଲୀଳା ଅଭିନୟ ଆଦି କରି ଚାଲ । ଦେଖିବ ତୁମେ ନିଶ୍ଚିତ ଚିନ୍ମୟ ଲୀଳା ଦର୍ଶନର ଅଧିକାରୀ ବନିଯିବ (ସଂସିଦ୍ଧିଃ ତେ ଭବିଷ୍ୟତି) ।''

ଶାଣ୍ଡିଲ୍ୟ ମୁନି ବଜ୍ରନାଭଙ୍କୁ ଗୋବର୍ଦ୍ଧନ, ଦୀର୍ଘପୁର(ଆଧୁନିକ ଡ଼ୀଗ୍), ମହାବନ, ନନ୍ଦିଗ୍ରାମ, ବରସାନା (ବୃହତ୍‌ସାନୁ) ଇତ୍ୟାଦି ଗ୍ରାମକୁ ପ୍ରାଥମିକତା ଦେବାକୁ କହିଲେ । ହୋଇଥିବା ଲୀଳା ଅନୁସାରେ ପର୍ବତର ଗୁମ୍ଫା, ନଦୀର ଘାଟ, ସରୋବର, କୁଣ୍ଡ ତଥା କୁଞ୍ଜବନ ଇତ୍ୟାଦି ପୂଜାସ୍ଥଳୀର ବିକାଶ କରିବାକୁ ଉପଦେଶ ଦେଲେ । ତାଙ୍କ କୃପାରୁ ଭଗବାନଙ୍କ ଆଶିର୍ବାଦରୁ ଭିନ୍ନ ଭିନ୍ନ ଲୀଳା ସ୍ଥଳୀ ଗୁଡ଼ିକୁ ଚିହ୍ନଟ କରିବାରେ ତାଙ୍କୁ କିଛି ଅସୁବିଧା ହେବନି ବୋଲି ଜଣେଇଦେଲେ ।

ପ୍ରଶ୍ନ-୨୫: ଶ୍ରୀକୃଷ୍ଣଙ୍କ ନାମ, ରୂପ, ଲୀଳା, ଗୁଣ ଓ ଭକ୍ତ ଯେମିତି ସମସ୍ତେ ସଚ୍ଚିଦାନନ୍ଦମୟ ଠିକ୍ ସେଇମିତି ତାଙ୍କର ସମଗ୍ର ବ୍ରଜମଣ୍ଡଳ ଧାମ କାଳେ କାଳେ ସଚ୍ଚିଦାନନ୍ଦମୟ ବୋଲି ଜଣାଇ ତାର ସେବାରେ ନିଜର ତନ୍ ମନ୍ ଧନ୍ ସଦୁପଯୋଗ କରିବାକୁ ଶାଣ୍ଡିଲ୍ୟ ମୁନି ରାଜାଙ୍କୁ କହିଲେ । ଏସବୁ (ସଂସେବନାତ୍) କଲେ କାହାର ଓ କେଉଁ ମହାପୁରୁଷଙ୍କ ଅଲୌକିକ ଦର୍ଶନ ମିଳିବ ବୋଲି ସଙ୍କେତ ଦେଲେ ?

**ବଜ୍ର ସଂସେବନାତ୍ ଅସ୍ୟ　　　ଉଦ୍ଧବ ତ୍ୱାଂ ମିଳିଷ୍ୟତି ।**
**ତତୋ ରହସ୍ୟଂ ଏତସ୍ମାତ୍　　　ପ୍ରାପ୍ସ୍ୟସି ତ୍ୱଂ ସମାତୃକଃ ॥୪୧॥**

ଉ. ମୁନିକୁଳ ତିଳକ ଶାଣ୍ଡିଲ୍ୟ ରାଜାଙ୍କୁ ବଢ଼ିଆ ଆଶ୍ୱାସନା ଦେଇ କହିଲେ ଯେ ତାଙ୍କୁ କୃଷ୍ଣଲୀଳାର ସର୍ବୋଚ୍ଚ ଆଶିର୍ବାଦ ପ୍ରାପ୍ତ ଜ୍ଞାନୀପୁଙ୍ଗବ ଓ ଭକ୍ତଶ୍ରେଷ୍ଠ ଉଦ୍ଧବଜୀଙ୍କ ଦର୍ଶନ ମିଳିବ । ସେତେବେଳେ କୃଷ୍ଣଲୀଳାର ଗୂଢ଼ ରହସ୍ୟ କେବଳ ସେ ନୁହନ୍ତି ତାଙ୍କର ମାତୃମଣ୍ଡଳୀଙ୍କ(ସମାତୃକଃ) ସମେତ ଅନ୍ୟ ସମସ୍ତେ ବୁଝିପାରିବେ ।

ଏଭଳି ଶୁଭ ଆଶିର୍ବାଦ ଦେଇ ଶାଣ୍ଡିଲ୍ୟ ମୁନି ଶ୍ରୀକୃଷ୍ଣ ସ୍ମରଣ କରି ବିଦାୟ ନେଲେ । ନିଜ ଆଶ୍ରମ କୂଟୀର ଅଭିମୁଖେ ଚାଲିଲେ । ରାଜା ପରୀକ୍ଷିତ ଓ ବଜ୍ରନାଭ ଦୁହେଁ କୁଟୀର ଅଭିମୁଖେ ଚାଲିଲେ । ରାଜା ପରୀକ୍ଷିତ ଓ ବଜ୍ରନାଭ ଦୁହେଁ କୃଷ୍ଣଲୀଳା ଚିନ୍ତନ କରି ଅତ୍ୟନ୍ତ ଆନନ୍ଦ ଅନୁଭବ କଲେ ।

## ଅଥ ଦ୍ୱିତୀୟ ଅଧ୍ୟାୟଃ

### (କୁସୁମ ସରୋବରଠାରେ ଉଦ୍ଧବଜୀଙ୍କ ପ୍ରାକଟ୍ୟ)

ପ୍ରଶ୍ନ-୨୬. ଶୌନକ ଆଦି ମୁନିମାନେ ଶାଣ୍ଡିଲ୍ୟ ମୁନିଙ୍କ ଉପଦେଶ ମାନି ମହାରାଜା ପରୀକ୍ଷିତ ଓ ରାଜା ବଜ୍ରନାଭ ଦୁହେଁ କ'ଣ ସବୁ କଲେ ବୋଲି ପ୍ରଶ୍ନ କରନ୍ତେ ବକ୍ତା ଶ୍ରେଷ୍ଠ ସୂତମୁନି ସେତେବେଳେ କି ଉତ୍ତର ଦେଲେ ?

ସୂତ ଉବାଚ

**ତତଃ ତୁ ବିଷ୍ଣୁରାତେନ ଶ୍ରେଣୀମୁଖ୍ୟାଃ ସହସ୍ରଶଃ ।**
**ଇନ୍ଦ୍ରପ୍ରସ୍ଥାତ୍ ସମାନାୟ୍ୟ ମଥୁରା ସ୍ଥାନ-ଆପିତାଃ ।।୨।।**

ଉ. ତାପରେ(ତତଃ) ପରୀକ୍ଷିତଜୀ(ବିଷ୍ଣୁରାତେନ) ହଜାର ହଜାର ଧନୀ ଶେଠମାନଙ୍କୁ (ଶ୍ରେଣୀମୁଖ୍ୟାଃ) ଓ ଚାରି ବର୍ଣ୍ଣର ପ୍ରଜା, ଗୋଧନ, ଗୋପାଳମାନଙ୍କୁ ସସମ୍ମାନ ନିଜ ରାଜଧାନୀ ଇନ୍ଦ୍ରପ୍ରସ୍ଥରୁ ଅଣାଇ ମଥୁରାରେ ରଖାଇଲେ । ପୁଣି ଭଗବାନ କୃଷ୍ଣଙ୍କର ଅତିପ୍ରିୟ ଅନେକ ବ୍ରାହ୍ମଣ ଓ ବାନରମାନଙ୍କୁ ସେଠାରେ ଥଇଥାନ କରାଇଲେ ।

ପ୍ରଶ୍ନ-୨୭: ରାଜା ବଜ୍ରନାଭ ନିଜ ତରଫରୁ ମଥୁରା ଲାଗି କି କି ବ୍ୟବସ୍ଥା ସବୁ କଲେ ?

**ବ୍ରଜଃ ତୁ ତତ୍ ସହାୟେନ୍ ଶାଣ୍ଡିଲ୍ୟସ୍ୟ-ଅପି-ଅନୁଗ୍ରହାତ୍ ।**
**ଗୋବିନ୍ଦ ଗୋପ ଗୋପୀନାଂ ଲୀଳା ସ୍ଥାନାନି-ଅନୁକ୍ରମାତ୍ ।।୪।।**

ଉ. ପରୀକ୍ଷିତଙ୍କ ସହାୟତା ଓ ଶାଣ୍ଡିଲ୍ୟ ଋଷିଙ୍କ କୃପାପ୍ରାପ୍ତ ହୋଇ ବଜ୍ରନାଭ ଗୋପୀ ଗୋପାଳ ଓ ଗୋବିନ୍ଦଙ୍କ ବ୍ରଜମଣ୍ଡଳରେ ଲୀଳାସ୍ଥଳୀମାନଙ୍କର ଚିହ୍ନଟ କଲେ । ଭିନ୍ନ ଭିନ୍ନ ଲୀଳା ଅନୁସାରେ ସେଇ ସେଇ ନାମରେ ଅନେକ ଗ୍ରାମ, କୁଣ୍ଡ, କୂପ, କୁଞ୍ଜ, ବନ, ବଗିଚା ଆଦି ସ୍ଥାପନ ଓ ନିର୍ମାଣ କଲେ । ସେମାନଙ୍କ ମଧ୍ୟରେ ବରସାନା, ନନ୍ଦଗାଁ, ରାଓଲ, ମହାବନ, ଦାଉଜୀ କୁଣ୍ଡ, ବିମଳ କୁଣ୍ଡ, ଗୋପ କୂଅ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ଭୋଜନଥାଳି, ଖିସଲାନି ଶିଳା, ବ୍ୟୋମାସୁର ଗୁମ୍ଫା, ଗରୁଡ଼ ଗୋବିନ୍ଦ,

ବସ୍ତାବନ, ବେହୁଲା ବନ, ଦାବାନଳ କୁଣ୍ଡ, ବିଶ୍ରାମ ଘାଟ, ଚୀର ଘାଟ, କେଶୀଘାଟ, ବଂଶୀବଟ, ଅକ୍ଷୟ ବଟ, ମହାବନ, ଭାଣ୍ଡୀର ବନ, ବୃନ୍ଦାବନ, ଗୋକୁଳ, ଟେର୍‌କଦମ୍ବ, ପାବନ ସରୋବର, ମାନସରୋବର, ଅପ୍‌ସରା କୁଣ୍ଡ, ନାରଦ କୁଣ୍ଡ, ଉଦ୍ଧବ କୁଣ୍ଡ, ଲୁକ୍‌ଲୁକି କୁଣ୍ଡ, କୋକିଳା ବନ, ପ୍ରେମ ସରୋବର, କୁସୁମ ସରୋବର ଇତ୍ୟାଦି ଅତ୍ୟନ୍ତ ବିଖ୍ୟାତ ଲୀଳାସ୍ଥଳୀ ରୂପେ ଆଜି ମଧ୍ୟ ପ୍ରସିଦ୍ଧି ଲାଭ କରିଛି ।

ପ୍ରଶ୍ନ-୨୮ : ମନ୍ଦିରମାନଙ୍କ ମଧ୍ୟରେ ଗୋବିନ୍ଦଦେବ, ହରିଦେବ, ଗୋପେଶ୍ୱର ମହାଦେବ, ଆଶେଶ୍ୱର ଶିବ, ଦାଉଜୀ ମନ୍ଦିର ଓ ସର୍ବୋପରି ଶ୍ରୀଜୀ ମନ୍ଦିର ସ୍ଥାପନ ଦ୍ୱାରା ଐକାନ୍ତିକ ଶୁଦ୍ଧ ଶ୍ରୀକୃଷ୍ଣ ଭକ୍ତିର ପ୍ରଚାର ପ୍ରସାର ହେଲା । ଏ ସକଳ ଶୁଭ କର୍ମ କରି ରାଜା ବଜ୍ରନାଭ ଅତ୍ୟନ୍ତ ଆନନ୍ଦିତ ହେଲେ । ମଥୁରା ମଣ୍ଡଳର ପ୍ରଜାମାନେ ଏ ସବୁରେ କି ଅଲୌକିକ ଫଳ ପ୍ରାପ୍ତ ହେଲେ ?

**ପ୍ରଜାଃ ତୁ ମୁଦିତାଃ ତସ୍ୟ          କୃଷ୍ଣ କୀର୍ତ୍ତନ ତତ୍‌ପରାଃ ।**
**ପରମ-ଆନନ୍ଦ ସଂପନ୍ନା          ରାଜ୍ୟଂ ତସ୍ୟ-ଏକ ତୁଷ୍ଟୁବୁଃ ॥୭॥**

ଉ. ମଥୁରାର ପ୍ରଜାଗଣ(ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ, ତରୁଲତା ମାନେ ମଧ୍ୟ) ସମସ୍ତେ କୃଷ୍ଣଲୀଳା ପଠନ, ପାଠନ, ସ୍ମରଣ, ଶ୍ରବଣ ଓ କୀର୍ତ୍ତନ ଆଦି କରି କରାଇ ପରମ ଆନନ୍ଦରେ ଜୀବନର ସର୍ବୋଚ୍ଚ ଲାଭ ଲୁଟିନେବାରେ ଲାଗିଲେ । ସମସ୍ତେ ରାଜା ବଜ୍ରନାଭଙ୍କର ଭୂରି ଭୂରି ପ୍ରଶଂସା କରିବାରେ ଲାଗିଲେ(ତୁଷ୍ଟୁବଃ) ।

ପ୍ରଶ୍ନ-୨୯ : ମଥୁରାର ରାଜା ପ୍ରଜା ସମସ୍ତେ ଆନନ୍ଦରେ ଦିନ କାଟୁଥିବା ବେଳେ ରାଜମହଲରେ ରହୁଥିବା କୃଷ୍ଣପତ୍ନୀମାନେ ଦିନେ(ଏକଦା) ନିଜକୁ କାହିଁକି ଦୁଃଖିନୀ (ଦୁଃଖାର୍ତ୍ତାଃ) ମନେ କରୁଥିଲେ ?

**ଏକଦା କୃଷ୍ଣପତ୍ନ୍ୟଃ ତୁ          ଶ୍ରୀକୃଷ୍ଣ ବିରହ-ଆତୁରାଃ ।**
**କାଳିନ୍ଦୀଂ ମୁଦିତାଂ ବୀକ୍ଷ୍ୟ          ପପ୍ରଚ୍ଛୁଃ ଗତ ମତ୍ସରାଃ ॥୮॥**

ଉ. ସେମାନେ ସମସ୍ତେ କୃଷ୍ଣ ବିରହ ବ୍ୟାକୁଳା ଥିଲେ କିନ୍ତୁ ଧନ ସଂପତ୍ତିର ଅଭାବ ବା ସ୍ୱାସ୍ଥ୍ୟ ସମସ୍ୟା ପୀଡ଼ିତା ନଥିଲେ । ସେମାନେ ଈର୍ଷା ଶୂନ୍ୟା ହୋଇ ଦେଖିଲେ ଯେ ଶ୍ରୀକୃଷ୍ଣଙ୍କର ଅଷ୍ଟପାଟବଂଶୀମାନଙ୍କ ମଧ୍ୟରୁ କେବଳ କାଳିନ୍ଦୀଙ୍କ ବ୍ୟତୀତ ଅନ୍ୟମାନେ ଦେହ ତ୍ୟାଗ କରି ସତୀ ହୋଇସାରିଛନ୍ତି । କାଳିନ୍ଦୀ ସେମାନଙ୍କ ସଙ୍ଗରେ ଥାଇ ମଧ୍ୟ ଦୁଃଖିନୀ ନ ହୋଇ ମହା ଆନନ୍ଦରେ ଅଛନ୍ତି ।

ପ୍ରଶ୍ନ-୩୦: ଷୋଳ ହଜାର ଏକଶତ କୃଷ୍ଣପତ୍ନୀଙ୍କ ମଧ୍ୟରେ ରୋହିଣୀ ମୁଖ୍ୟା ଥିଲେ । ସେମାନେ ଈର୍ଷା ବଶତଃ କାଳିନ୍ଦୀଙ୍କୁ ଏକଥା ନ ପଚାରି ବରଂ ସଶ୍ରଦ୍ଧ ପଚାରିଥିଲେ । ସେମାନେ ବିନମ୍ରତାର ସହିତ କହିଲେ, ‘‘ଗୋ କାଳିନ୍ଦୀ ନାନୀ, ଆମ ସମସ୍ତଙ୍କ ଭଳି ତୁମେ ମଧ୍ୟ ଶ୍ରୀକୃଷ୍ଣଙ୍କ ବିବାହିତା ପତ୍ନୀ । ତାଙ୍କ ବିୟୋଗ ଦୁଃଖ ଆମକୁ ଏତେ ବାଧୁଥିବା ବେଳେ ତୁମେ କିଭଳି ଆନନ୍ଦରେ ରହିପାରୁଛ ? ତୁମରି ଅନ୍ତରଙ୍ଗା ସଖୀ ରୁକ୍ମିଣୀ, ସତ୍ୟଭାମା, ମିତ୍ରବିନ୍ଦା ଆଦି ସାତଜଣ ପାଟମହିଷୀ ଏହି କୃଷ୍ଣ ବିୟୋଗ ଦୁଃଖ ସହି ନପାରି ତ ପୁଣି ଦେହତ୍ୟାଗ କରି ସତୀ ହୋଇଗଲେ । ଏ ଅବସ୍ଥାରେ କେଉଁ ଅଲୌକିକ ବିଦ୍ୟା ବୁଦ୍ଧି ବଳରେ ତୁମେ କୃଷ୍ଣ ବିୟୋଗ କଷ୍ଟରୁ ମୁକ୍ତ ରହିପାରିଛ ?’’ ଏଭଳି ଗମ୍ଭୀର ପ୍ରଶ୍ନର କି ଉତ୍ତର ଦେଲେ କାଳିନ୍ଦୀ ?

**ତତ୍ ଶ୍ରୁତ୍ୱା ସ୍ମୟମାନା ସା କାଳିନ୍ଦୀ ବାକ୍ୟଂ ଅବ୍ରବୀତ୍ ।**
**ସାପତ୍ନ୍ୟଂ ବୀକ୍ଷ ତତ୍ତାସାଂ କରୁଣାପର ମାନସା ॥୧୦॥**

ଉ. କାଳିନ୍ଦୀ ଏହା ଏକ ସମୟୋଚିତ ଗମ୍ଭୀର ପ୍ରଶ୍ନ ବୋଲି ମନେ ମନେ ଭାବିଲେ । ସପତ୍ନୀମାନଙ୍କର ବିରହ ଦଶା ଅବସ୍ଥା ଦେଖି (ବୀକ୍ଷ) ତାଙ୍କ ହୃଦୟରେ କରୁଣାର ଉଦ୍ରେକ ହେଲା । ସେ ଅଳ୍ପ ହସି କଥାଟିର ରହସ୍ୟ ଖୋଲି ବସିଲେ ।

ପ୍ରଶ୍ନ-୩୧ : ମୁନି ଋଷିମାନେ ଶରୀର ସଂସାରରେ ନିଜ ମନକୁ ରମଣ ନ କରାଇ ସର୍ବଦା ଆତ୍ମାରେ ରମଣ କରାନ୍ତି ବୋଲି ସେମାନେ ସିନା ଆତ୍ମାରାମ । କାଳିନ୍ଦୀ କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କୁ କାହିଁକି ଆତ୍ମାରାମ ବୋଲି କହିଲେ ?

କାଳିନ୍ଦୀ ଉବାଚ

**ଆତ୍ମାରାମସ୍ୟ କୃଷ୍ଣସ୍ୟ ଧ୍ରୁବଂ ଆତ୍ମା-ଅସ୍ତି ରାଧିକା ।**
**ତସ୍ୟା ଦାସ୍ୟ ପ୍ରଭାବେଣ ବିରହୋଽସ୍ମାନ୍ ନ ସଂସ୍ପୃଶେତ୍ ॥୧୧॥**

ଉ. କାଳିନ୍ଦୀ ଖୋଲି କହିଲେ, ‘‘ହେ ସଖିଗଣ, ରାଧିକାଙ୍କର ଅନେକ ନାମ ଅଛି । ବୈଦିକ ସାହିତ୍ୟରେ ତାଙ୍କର ଏକ ନାମ ଆତ୍ମା । ଶ୍ରୀକୃଷ୍ଣ ରାଧାରମଣ । ସେ ସର୍ବଦା ଆତ୍ମା(ରାଧା) ରେ ରମଣ କରନ୍ତି ବୋଲି ସେ ମଧ୍ୟ ଆତ୍ମାରାମ । ଆମେ ଅନ୍ୟ ସମସ୍ତେ ଶ୍ରୀରାଧାଙ୍କ ଅଂଶ ଅଟୁ । ଯେ ଶ୍ରୀରାଧାଙ୍କ ସେବିକା ହେବ ତାଙ୍କ ଦାସତ୍ୱ ପ୍ରଭାବରେ ତାକୁ ମଧ୍ୟ କଦାପି କୃଷ୍ଣ ବିରହ ଦଶା ଭୋଗିବାକୁ ପଡ଼ିବ ନାହିଁ । ମୁଁ ଏବେ ମଧ୍ୟ ଏହି ଚିନ୍ମୟ ବୃନ୍ଦାବନ ଧାମରେ ବାସ କରି ଚିନ୍ମୟୀ ରାଧାଙ୍କ ନିତ୍ୟ ଦର୍ଶନ, ସ୍ପର୍ଶ,

ସ୍ମରଣ, କୀର୍ତ୍ତନ କରୁଥିବାରୁ ମୁଁ କୃଷ୍ଣପ୍ରେମର ସ୍ୱାଦ ନିତ୍ୟ ନିରନ୍ତର ଅନୁଭବ କରୁଛି । ମୋତେ କୃଷ୍ଣ ବିରହ ଦୁଃଖ ସ୍ପର୍ଶ କରିବା ଅସମ୍ଭବ । ଇହଲୋକ ବା ସଂସାରର ପୁଣି ଦିବ୍ୟ ଲୋକର ସକଳ ଶ୍ରୀକୃଷ୍ଣ ପ୍ରେମିକା ଓ ଶ୍ରୀରାଧା ସେବିକା ନିତ୍ୟ ସମ୍ଭୋଗସୁଖ ଭୋଗୀ । ବିପ୍ରଲମ୍ଭ କେବେ କେବେ ଆସିଲେ ମଧ୍ୟ ତାହା ମିଳନ ସୁଖଠାରୁ କୋଟିଗୁଣ ଅଧିକ ସ୍ୱାଦୁଯୁକ୍ତ ବୋଲି ଆମେ ଶ୍ରୀକୃଷ୍ଣ କୃପା ଓ ଶ୍ରୀରାଧାଙ୍କ ଆଶିର୍ବାଦରୁ ଅଫୁରନ୍ତ ଆନନ୍ଦ ନିଶ୍ଚୟ ଅନୁଭବ କରିପାରିବା ।''

ପ୍ରଶ୍ନ-୩୨ : ଶ୍ରୀରାଧା ଓ ଶ୍ରୀକୃଷ୍ଣ ତତ୍ତ୍ୱତଃ ଏକ ହେଲେ ମଧ୍ୟ ପ୍ରେମ ଲୀଳା ଅଭିନୟବେଳେ ଅବଶ୍ୟ ଭିନ୍ନ ଭଳି ପ୍ରତୀୟମାନ ହୁଅନ୍ତି । ଶ୍ରୀରାଧାକୃଷ୍ଣ ଲୀଳାରେ ମୋହନବଂଶୀ ଓ ଚନ୍ଦ୍ରାବଳୀଙ୍କ ଭୂମିକା ତେବେ କିସ ?

**ସ ଏବ ସା ସ ସା-ଏବ-ଅସ୍ତି ବଂଶୀ ତତ୍ ପ୍ରେମ ରୂପିକା ।**
**ଶ୍ରୀକୃଷ୍ଣ ନଖ ଚନ୍ଦ୍ର-ଅଳି ସଙ୍ଗାତ୍ ଚନ୍ଦ୍ରାବଳୀ ସ୍ମୃତା ॥୧୩॥**

ଉ. ଶ୍ରୀକୃଷ୍ଣ ସ୍ୱୟଂ ରାଧା ଓ ଶ୍ରୀରାଧା ସ୍ୱୟଂ କୃଷ୍ଣ । ଦୁହିଁଙ୍କୁ ସର୍ବଦା ଯୋଡ଼ି ରଖେ ଯେ ସେଇ ପ୍ରେମ ତ ମୋହନ ବଂଶୀ । ମୁରଲୀ । ଶ୍ରୀକୃଷ୍ଣ ଚରଣ କମଳର ଦଶ ଦିବ୍ୟ ନଖରୁ ଯେଉଁ ଦିବ୍ୟ ଜ୍ୟୋତି ନିର୍ଗତ ହୁଏ ତାର ନିତ୍ୟ ସ୍ମରଣ କରନ୍ତି ବୋଲି (ଶ୍ରୀରାଧାଙ୍କ କୃପାପ୍ରାପ୍ତ ହୋଇ ଓ ତାଙ୍କ ଅନୁମତି ନେଇ) ଶ୍ରୀରାଧା ତାଙ୍କୁ ଚନ୍ଦ୍ରାବଳୀ ବୋଲି (ସ୍ମୃତା) ନାମ ଦେଇଛନ୍ତି ।

ପ୍ରଶ୍ନ-୩୩: ସାତଜଣ ମହିଷୀ ସତୀ ହେଲାବେଳେ କାଳିନ୍ଦୀ କାହିଁକି ସତୀ ହୋଇ ନଥିଲେ ତାର କାରଣ ଏବେ ଖୋଲି କହିଦେଲେ । ଜଗତ ଓ ଜଗନ୍ନାଥ ପ୍ରକୃତି ଓ ପୁରୁଷ । ଉଭୟଙ୍କର କେବଳ ଅଦ୍ୱୈତ ଦେଖିବା ଜ୍ଞାନ ଅଟେ । ପୁଣି ଉଭୟ ମଧ୍ୟରେ କେବଳ ଦ୍ୱୈତ ଦର୍ଶନ କରିବା ଭକ୍ତି ଅଟେ । ଏ ଦୁଇ ସିଦ୍ଧାନ୍ତର ପ୍ରତୀକ ସ୍ୱୟଂ ବୃନ୍ଦାବନର ଗୋପଲଳନା ଗଣ ଓ ଉଦ୍ଧବଜୀ । ଜ୍ଞାନ ପ୍ରାପ୍ତି ଓ ଭକ୍ତି ପ୍ରାପ୍ତି ଉଭୟ ଅବସ୍ଥା କୃଷ୍ଣପ୍ରେମ ପ୍ରାପ୍ତି ଲାଗି ଅତ୍ୟାବଶ୍ୟକ କାରଣ ଦୁହେଁ ଅସଂପୂର୍ଣ୍ଣ ଜ୍ଞାନର ଜଗତ ଉର୍ବର ମସ୍ତିଷ୍କ ଓ ପ୍ରେମର ଜଗତ କୋମଳ ହୃଦୟ । ଭୌତିକ ଓ ଚିନ୍ମୟଜଗତ ଉଭୟ ଜଗତ କଥା ସାଧକର ମନରେ ଓ ହୃଦୟରେ ଅନୁଭୂତ ନ ହେଲାଯାଏଁ ଅସଲି କୃଷ୍ଣପ୍ରେମ ରସର ସ୍ୱାଦୁ ପାଇ ହୁଏନା । ଥରେ ଏ କଥା ଅନୁଭବ ହୋଇଗଲେ ଆଉ ଦେହ ବଦଳାଇବାକୁ ଜୀବ ବ୍ୟାକୁଳ ହୋଇନଥାଏ । କାଳିନ୍ଦୀ ଏବେ ମଧ୍ୟ ଚିନ୍ମୟ ବୃନ୍ଦାବନ ଲୀଳା ଧ୍ୟାନ କଲାବେଳେ ସପ୍ତପାଟ ମହିଷୀଙ୍କୁ ନିଜେ ନିତ୍ୟ ଦର୍ଶନ କରୁଛନ୍ତି ।

କେବଳ ସେତିକି ନୁହେଁ ରୋହିଣୀ ଆଦି ଅନ୍ୟମାନେ ଏ ରହସ୍ୟ ବୁଝିଗଲେ ବିରହ ବେଦନାରୁ ମୁକ୍ତ ହୋଇପାରିବେ ବୋଲି ସେ କହିଲେ । ଏଭଳି କଥା ପୂର୍ବେ ମଧ୍ୟ ଘଟିସାରିଥିବାର କେଉଁ ଦୃଷ୍ଟାନ୍ତଟି କାଳିନ୍ଦୀ ଉପସ୍ଥାପନ କଲେ ?

**ଏବଂ ଏବ-ଅତ୍ର ଗୋପୀନାଂ ଅକ୍ରୂର-ଅବସରେ ପୂରା ।**
**ବିରହ-ଆଭାସ ଏବ-ଆସୀତ୍ ଉଦ୍ଧବେନ ସମାହିତଃ ॥୧॥**

ଉ. ପୂର୍ବରୁ ଏ କଥାଟି ବୃନ୍ଦାବନ ଲୀଳାରେ ଅଭିନୟ ହୋଇ ସାରିଛି । କଂସ ଉଦ୍ଧାର ଲାଗି ଭଗବାନ ନନ୍ଦ ଗାଁଉ ତ୍ୟାଗ କରି ମଥୁରା ଚାଲି ଯାଉଛନ୍ତି ବା ଯାଇଛନ୍ତି ବୋଲି ଭାବନା କରି ଗୋପାଙ୍ଗନା ଗଣ କେବଳ ଦ୍ୱୈତ ମାର୍ଗରେ ଭକ୍ତି ସାଧନା କରି କୃଷ୍ଣ ବିୟୋଗ ଦୁଃଖ ପାଉଥିବା ନାଟକ କରୁଥିଲେ(ବିରହ ଆଭାସ) । ତେଣେ ଉଦ୍ଧବ ମଧ୍ୟ ଜ୍ଞାନ ମାର୍ଗରେ ସାଧନା କରି ଅଦ୍ୱୈତ ପଣ୍ଡିତ ସାଜିଥିଲେ । ଦ୍ୱୈତ ସିଦ୍ଧାନ୍ତକୁ ଆଦୌ ସ୍ୱୀକାର କରୁନଥିଲେ । ଠାକୁରଜୀ ଗୋଟିଏ ଶରମାରି ଦୁଇଟି ଚଢ଼େଇ ଶିକାର କଲେ ଏହି ଲୀଳା ମାଧ୍ୟମରେ । ନଅଟି ଶ୍ଳୋକରେ(ଉଦ୍ଧବ ସଂଦେଶ) ପତ୍ର ଲିଖିତ ହେଉ ବା ମୌଖିକ ହେଉ ଏହାର ସମାଧାନ ସୂତ୍ର ପ୍ରଦାନ କଲେ ଜ୍ଞାନୀ ଉଦ୍ଧବଙ୍କୁ ଭକ୍ତ ଗୋପୀକାମାନଙ୍କ ପାଖକୁ ପଠାଇ ଆଜିର ବୃନ୍ଦାବନର ଜ୍ଞାନ ଗୁଦଡ଼ି (ତୁଳସୀଙ୍କ ରାମ ଦର୍ଶନ ସ୍ଥଳ) ଠାରେ ଯେଉଁ ପବିତ୍ର ସ୍ଥାନରେ ଗୋପୀମାନଙ୍କ ସହ ଉଦ୍ଧବଙ୍କ ମହା ସତ୍‌ସଙ୍ଗ ଅନୁଷ୍ଠିତ ହୋଇଥିଲା ।

ଏହି ସତ୍‌ସଙ୍ଗର ଫଳ ଉଭୟ ପକ୍ଷଙ୍କ ଅସମ୍ପୂର୍ଣ୍ଣ ସାଧନାକୁ ସ୍ୱୟଂ ସଂପୂର୍ଣ୍ଣ କଲା । ଭଗବାନ ତାଙ୍କ ନଅ ଭାଗବତ ଶ୍ଳୋକରେ ବୁଝାଇ ଦେଇଥିଲେ ଯେ ଗୋପୀମାନେ ଯେ ଭଳି ଜଣେ ମାତ୍ର ଏଗାର ବର୍ଷର ଗୋପାଳ ବାଳକଙ୍କୁ କେବଳ କୃଷ୍ଣ ବୋଲି ଭାବି ନ ବସନ୍ତି । ବୃନ୍ଦାବନ, ବ୍ରଜମଣ୍ଡଳର ରେଣୁ ରେଣୁ, ବୃକ୍ଷଲତା, ନଦୀ ପର୍ବତ, ଧେନୁପଲ ଚରାଭୂଇଁ ଜଳ ଆକାଶ ସବୁ କିଛି ସେଇ ଚିନ୍ମୟ କୃଷ୍ଣଙ୍କ ଗୋଟାକ ଯାକ ଚିନ୍ମୟ ଦେହ । ଉଦ୍ଧବ ସନ୍ଦେଶ ଦ୍ୱାରା ଗୋପୀମାନେ ଏବେ ବୁଝିଗଲେ କୃଷ୍ଣଙ୍କ ମଥୁରା ଯିବା କଥା ବିଲକୁଲ ମିଛ । ସେତ ଗୋଟାସୁଦ୍ଧା ବୃନ୍ଦାବନ ଧାମ ରୂପରେ ତାଙ୍କ ପାଖରେ ବିଦ୍ୟମାନ ଅଛନ୍ତି । ସୁତରାଂ ତାଙ୍କର ଅଦ୍ୱୈତ ଅନୁଭବ ହେଲା । ଏଣେ ଗୋପୀମାନଙ୍କ ମିଥ୍ୟା ବିରହ ଅବସ୍ଥା ଦର୍ଶନ କରି ସେମାନଙ୍କ ସତ୍‌ସଙ୍ଗ ହେତୁ ମହାଜ୍ଞାନୀ ଉଦ୍ଧବଜୀ ପ୍ରେମ ବୋଲି ଯେଉଁ ଅଢ଼େଇ ଅକ୍ଷର; ତାକୁ ନିଜ ମସ୍ତିଷ୍କ, ମନ, ବୁଦ୍ଧି ଓ ହୃଦୟରେ ହାଡ଼େ ହାଡ଼େ ଅନୁଭବ କଲେ । ଯେ ଗୋପର

ନନ୍ଦନନନ୍ଦନ ଗୋପୀନାଥ ସେହିଁ ଗୋଲୋକ ବିହାରୀ କୃଷ୍ଣ ଓ ମହାବୈକୁଣ୍ଠ ବିହାରୀ ନାରାୟଣ ରୂପରେ ବିଦ୍ୟମାନ ସେ ହିଁ ଏବେ ଦେବକୀ ନନ୍ଦନ କୃଷ୍ଣ ରୂପରେ ମଥୁରାରେ ବିରାଜମାନ କରିଛନ୍ତି । ଏଗାର ବର୍ଷରେ ବୃନ୍ଦାବନର ମଧୁର ଲୀଳା ସମାପନ ଅନ୍ତେ ଏବେ ମଧୁର -ଐଶ୍ୱର୍ଯ୍ୟ ମିଶ୍ରିତ ଲୀଳା ମଥୁରାରେ କରୁଛନ୍ତି । ୧୪ବର୍ଷ ପରେ ପୁଣି ସେଇ ଶ୍ରୀକୃଷ୍ଣ ଦ୍ୱାରକାରେ କେବଳ ଐଶ୍ୱର୍ଯ୍ୟ ଲୀଳା କରିବେ । ସୁତରାଂ ଉଦ୍ଧବଙ୍କର ମଧ୍ୟ ଦ୍ୱୈତ ଅନୁଭବ ହୋଇଗଲା ।

ପ୍ରଶ୍ନ-୩୪: କାଳିନ୍ଦୀ ଯେତେବେଳେ ଆଶ୍ୱାସନା ବାଣୀ ଶୁଣାଇ କହିଲେ ଯେ ସେମାନେ ସମସ୍ତେ ମଧ୍ୟ ଉଦ୍ଧବଙ୍କୁ ପ୍ରସନ୍ନ କରିପାରିଲେ କୃଷ୍ଣ ବିରହ ଦୁଃଖ ମୁକ୍ତ ହୋଇପାରିବେ ସେତେବେଳେ କୃଷ୍ଣପତ୍ନୀମାନଙ୍କର କିଭଳି କ୍ରିୟା ପ୍ରତିକ୍ରିୟା ହେଲା ?

ଶ୍ରୀକୃଷ୍ଣପତ୍ନ୍ୟ ଉଚୁଃ

**ଧନ୍ୟ-ଅସି ସଖି କାନ୍ତେନ ଯସ୍ୟା ନ-ଏବ-ଅସ୍ତି ବିଚ୍ୟୁତିଃ ।**
**ଯତଃ ତେ ସ୍ୱାର୍ଥ ସଂସିଦ୍ଧିଃ ତସ୍ୟା ଦାସ୍ୟୋ ବଭୁବିମ ॥୧୯॥**

ଉ. ସେମାନେ ଅତ୍ୟନ୍ତ ଖୁସିରେ କାଳିନ୍ଦୀଙ୍କୁ ଧନ୍ୟ ଧନ୍ୟ ବୋଲି କହିଲେ । କାରଣ ଏ ଗୂଢ଼ କୃଷ୍ଣପ୍ରେମ ପ୍ରାପ୍ତିର ରହସ୍ୟ ବୁଝିପାରିଥିବାରୁ ଓ ସେମାନଙ୍କୁ ଜଣାଇ ଦେଇଥିବାରୁ ତାଙ୍କଠାରେ ଅଶେଷ କୃତଜ୍ଞତା ପ୍ରକାଶ କଲେ । ଯେଉଁ ରାଧାରାଣୀଙ୍କର ଦାସୀ ହୋଇ ସେ ତାଙ୍କର ନିତ୍ୟ ସେବା ମଗ୍ନ ରହିଛନ୍ତି ସେଇ ରାଧା ରାଣୀଙ୍କ ଦାସୀ ହେବାକୁ ତାଙ୍କ ସେବା କରିବାକୁ ସେମାନେ ସମସ୍ତେ କଟୀବଦ୍ଧ ବୋଲି ଦୃଢ଼ ଇଛା ପ୍ରକଟ କରିଛନ୍ତି । ସେଥିପାଇଁ ସେମାନେ ସମସ୍ତେ ଉଦ୍ଧବଜୀଙ୍କ ଦର୍ଶନ ଓ କୃପା ପ୍ରାପ୍ତିର ମାର୍ଗଦର୍ଶନ କରାଇବାକୁ ଅନୁରୋଧ କରିଛନ୍ତି ।

ପ୍ରଶ୍ନ-୩୫: ରାଣୀମାନଙ୍କର କୃଷ୍ଣପ୍ରେମ ପ୍ରାପ୍ତି ଲାଗି ଅଦମ୍ୟ ଉତ୍ସାହ ଦେଖି ମା'କାଳିନ୍ଦୀ ଉଦ୍ଧବଜୀଙ୍କର କେଉଁ ଠିକଣା ବତାଇଦେଲେ ?

କାଳିନ୍ଦୀ ଉବାଚ

**ସାଧନ ଭୂମିଃ ବଦରୀ ବ୍ରଜତା କୃଷ୍ଣେନ ମନ୍ତ୍ରିଣେ ପ୍ରୋକ୍ତା ।**
**ତତ୍ର-ଆସ୍ତେ ସ ତୁ ସାକ୍ଷାତ୍ ତଦ୍ ବୟୁନଂ ଗ୍ରାହୟନ୍ ଲୋକାନ୍ ॥୨୨॥**

ଉ. କାଳିନ୍ଦୀ କହିଲେ, ''ଦ୍ୱାରକା ଲୀଳାରେ ଉଦ୍ଧବଜୀ ଶ୍ରୀକୃଷ୍ଣଙ୍କର ଜଣେ ଅତି ବିଶ୍ୱାସନୀୟ ମନ୍ତ୍ରୀ ଥିଲେ । ଲୀଳା ଶେଷରେ ଠାକୁରଜୀ ତାଙ୍କୁ ତପ ଓ ଜ୍ଞାନ ସାଧନାର ଭୂମି ବଦ୍ରିକାରେ ନିଯୁକ୍ତି ଦେଇଛନ୍ତି । ସେ ସେଠାରେ ଏବେ ମଧ୍ୟ ସାକ୍ଷାତ୍

ବିଦ୍ୟମାନ ଅଛନ୍ତି । ସାଲୋକ୍ୟାଦି ପାଞ୍ଚ ପ୍ରକାର ମୁକ୍ତି ଚାହୁଁଥିବା ନାରାୟଣଙ୍କ ମହାବୈକୁଣ୍ଠ ଲୋକକୁ ଯିବାକୁ ଚାହୁଁଥିବା ସାଧକ ମାନଙ୍କ ତ୍ୟାଗ, ତପସ୍ୟା, ଜ୍ଞାନ ଓ ସମର୍ପଣର ମାର୍ଗ ଦର୍ଶନ କରାଉଛନ୍ତି ।''

ପ୍ରଶ୍ନ-୩୬: ଉଦ୍ଧବଙ୍କ ବଦରୀ ବନର ଅବସ୍ଥିତିର ଠିକଣା ଓ ସୂଚନା ସବୁ ରାଣୀମାନଙ୍କର କାମରେ ଆସିବ ନାହିଁ । କାରଣ ସେମାନଙ୍କର ସମସ୍ୟା ତ ମହାବୈକୁଣ୍ଠ ମୁକ୍ତି ଲକ୍ଷ୍ୟ ପ୍ରାପ୍ତି ନୁହେଁ । ସେମାନଙ୍କୁ କୃଷ୍ଣ ପ୍ରେମ ପ୍ରାପ୍ତି ଓ କୃଷ୍ଣ ବିରହ ପୀଡ଼ାରୁ ମୁକ୍ତି ଲୋଡ଼ା ଥିଲା । ବଦରୀ ବନକୁ ଯାଇ ଜ୍ଞାନ ସାଧନା କରିବା ସେମାନଙ୍କୁ ଅଦରକାରୀ ମନେ ହେଲା । କାଳିନ୍ଦୀ ସେମାନଙ୍କ ମନୋଭାବ ଜାଣିପାରି ଉଦ୍ଧବଜୀଙ୍କର ଅନ୍ୟ କେଉଁ ଠିକଣାର ସନ୍ଧାନ ଦେଲେ ?

**ଫଳଭୂମି ବ୍ରଜଭୂମିଃ ଦତ୍ତା**
**ତସ୍ମୈ ପୁରା-ଏବ ସ ରହସ୍ୟମ୍ ।**
**ଫଳଂ ଇହ ତିରୋହିତଂ ସତ୍‌ତତ୍**
**ଇହ-ଇଦାନୀଂ ସ ଉଦ୍ଧବୋଽଲକ୍ଷ୍ୟଃ ॥୨୩॥**

ଉ. ବଦରୀ ଧାମ ସାଧନ ଭୂମି ବୃନ୍ଦାବନ ସିଦ୍ଧ ଫଳ ଭୂମି । ଏହି କାରଣରୁ ପ୍ରଭୁ ଶ୍ରୀକୃଷ୍ଣ ଉଦ୍ଧବଜୀଙ୍କ ଜ୍ଞାନ ଅଂଶ ଠାରୁ ପୃଥକ୍ କରି ଶୁଦ୍ଧପ୍ରେମ ଅଂଶରୂପରେ ଚିନ୍ମୟ ବୃନ୍ଦାବନର ରହସ୍ୟ ତାଙ୍କୁ ବତେଇ ଦେଇଛନ୍ତି । ସେହି କୃଷ୍ଣପ୍ରେମ ରସରୂପକ ଫଳ ଘୋର କଳିଯୁଗ ଆସି ଯାଇଥିବାରୁ ଚିନ୍ମୟ ରୂପ ମାୟା ଆବୃତ୍ତ ହୋଇ ମୃଣ୍ମୟ ରୂପ ଧାରଣ କରିଛି(ତିରୋହିତଂ) । ବୃନ୍ଦାବନରେ ଲୋକେ କଣ୍ଟାଗଛ, ଘୁଷୁରୀ ମର୍କଟ, କଙ୍କଡ଼ ପଥର ନାଳ ଭୌତିକ ଚିଜ ଦେଖୁଛନ୍ତି ନିଜ ନିଜ ଭୌତିକ ଦୃଷ୍ଟିରେ । ସେଇ ବୃନ୍ଦାବନରେ ଚିନ୍ମୟ ଦେହ ଧାରୀ ଉଦ୍ଧବ ମଧ ବର୍ତ୍ତମାନ (ଇଦାନୀଂ) ଅଦୃଶ୍ୟ (ଅଲକ୍ଷ୍ୟଃ) ହୋଇଯାଇଛନ୍ତି ।

ପ୍ରଶ୍ନ-୩୭: ଅଦୃଶ୍ୟ ଚିନ୍ମୟରୂପଧାରୀ ଉଦ୍ଧବ ବୃନ୍ଦାବନର କେଉଁଠାରେ କିପରି ଦୃଶ୍ୟମାନ ହୋଇପାରିବେ ବୋଲି ରାଣୀମାନଙ୍କୁ କାଳିନ୍ଦୀ ବାଟ ବତେଇଦେଲେ ?

**ଗୋବର୍ଦ୍ଧନ ଗିରି ନିକଟେ ସଖୀସ୍ଥଳେ ତତ୍ ରଜ କାମଃ ।**
**ତତ୍ରତ୍ୟ-ଅଙ୍କୁର ବଲ୍ଲୀ ରୂପେଣ ଆସ୍ତେ ସ ଉଦ୍ଧବୋ ନୂନମ୍ ॥୨୪॥**

ଉ. କାଳିନ୍ଦୀ କହିଲେ, ''ବ୍ରଜ ମଣ୍ଡଳରେ ପ୍ରସିଦ୍ଧ କୃଷ୍ଣ ଓ କୃଷ୍ଣ ଭକ୍ତ ସେବକ ଗୋବର୍ଦ୍ଧନ ଗିରି ଅବସ୍ଥିତ । ତାଙ୍କର ତଳ ହଟିରେ ସଖୀ ଥରା(ସଖୀ ସ୍ଥଳେ) ଠାରେ କ୍ଷୁଦ୍ର ଲତାଟିଏ ରୂପରେ ସେ ଅବସ୍ଥାନ କରିଛନ୍ତି(ସ ଆସ୍ତେ) ନିଶ୍ଚିତ ରୂପେ(ନୂନମ୍) । ଏଥିରେ ତୁମେମାନେ ଆଦୌ ସଂଶୟ କର ନାହିଁ । ଯେହେତୁ ଠାକୁରଜୀଙ୍କୁ ସେ ଲୀଳା କାଳରେ ପ୍ରାର୍ଥନା କରିଥିଲେ ଯେ ତାଙ୍କର ପାଞ୍ଚ ମହାବୈକୁଣ୍ଠ ମୁକ୍ତି ଲୋଡ଼ା ନାହିଁ । ବୃନ୍ଦାବନରେ କୌଣସି କ୍ଷୁଦ୍ର ଲତା ଗୁଳ୍ମଟିଏ ରୂପେ ଜନ୍ମ ପାଇଲେ ସେ ବୃନ୍ଦାବନର ଗୋପୀମାନଙ୍କ ଚରଣ ରଜ ପ୍ରାପ୍ତ ହୋଇପାରନ୍ତେ(ତତ୍ ରଜ କାମଃ) । ତାଙ୍କର ସେଇ ସତ୍‌ଇଚ୍ଛାକୁ ଆମ ଠାକୁରଜୀ ପୂରଣ କରିଦେଇଛନ୍ତି ।'' କୃଷ୍ଣପ୍ରେମର ବିରହରୂପ ଶ୍ରୀରାଧା ଓ ତାଙ୍କର ଅଷ୍ଟ ମହାସଖୀ । ତାଙ୍କର ଉତ୍ସବ ରୂପ ହେଉଛନ୍ତି ଉଦ୍ଧବଜୀ । ସେଇ ସଖିଥରା ଲୀଳାସ୍ଥଳୀ ବର୍ତ୍ତମାନ ଗୋଟିଏ ପାର୍ଶ୍ୱ କୁସୁମ ସରୋବର ଓ ଅନ୍ୟ ପାର୍ଶ୍ୱଟି ଉଦ୍ଧବ ମନ୍ଦିର ଓ ଉଦ୍ଧବ କୁଣ୍ଡ ରୂପରେ ଦର୍ଶନୀୟ । ଶ୍ରୀ ଗୋବର୍ଦ୍ଧନ ଗିରି ପରିକ୍ରମା କରିବା ବେଳେ ଏ ଦୁଇ ସ୍ଥାନ ଅବଶ୍ୟ ଦର୍ଶନୀୟ ।

ପ୍ରଶ୍ନ-୩୮ : କୁସୁମ ସରୋବରଠାରେ ବୀଣା, ବେଣୁ, ମୃଦଙ୍ଗ, ଝାଞ୍ଜ ବଂଶୀ ଆଦି ବାଦନ କରି କୃଷ୍ଣ ଲୀଳା, କୃଷ୍ଣ ନାମ, ରୂପ, ଧାମ, ଭକ୍ତ ଆଦିଙ୍କର ମାହାତ୍ମ୍ୟ ଯଦି ରାଜା ପରୀକ୍ଷିତ ଓ ବ୍ରଜନାଭ ନିଜେ କରନ୍ତି ଓ ଅନ୍ୟ ମାନଙ୍କୁ କରାନ୍ତି ତେବେ ସମସ୍ତ କୀର୍ତ୍ତନ କାରୀଗଣ କି ଫଳ ପ୍ରାପ୍ତ ହେବେ ବୋଲି କାଳିନ୍ଦୀ ଦୃଢ଼ ସ୍ୱରରେ ଘୋଷଣା କଲେ ?

**ତତ୍ର-ଉଦ୍ଧବ-ଅବଲୋକୋ ଭବିତା**

**ନିୟତଂ ମହା-ଉତ୍ସବେ ବିତତେ ।**

**ଯୌଷ୍ମାକୀଣାଂ ଅଭିମତ ସିଦ୍ଧିଂ**

**ସବିତା ସ ଏବ ସବିତାନାମ୍ ॥୨୭॥**

ଉ. ଶ୍ରୀକୃଷ୍ଣଙ୍କର ଉତ୍ସବ ରୂପ ଉଦ୍ଧବ ବୋଲି ପୂର୍ବରୁ କୁହାଯାଇଛି । ସୁତରାଂ ସେଠାରେ କୃଷ୍ଣ ଭକ୍ତମାନଙ୍କର ସମାବେଶ ହେଲେ କୃଷ୍ଣଲୀଳା ମାହାତ୍ମ୍ୟ କୀର୍ତ୍ତନ ହେଲେ(ବିତତେ) ଜ୍ଞାନ ସୂର୍ଯ୍ୟ(ସବିତାନାଂ) ମାନଙ୍କର ମହାସୂର୍ଯ୍ୟ କୃଷ୍ଣ ପ୍ରେମୀ ଉଦ୍ଧବଙ୍କର ନିଶ୍ଚିତ (ନିୟତଂ) ପ୍ରାକଟ୍ୟ ହେବ । କୃଷ୍ଣପ୍ରେମ ଲାଳସୀ ରାଣୀମାନଙ୍କର (ଯୌଷ୍ମାକୀଣାଂ) ସାଧନା ସିଦ୍ଧି ପ୍ରାପ୍ତ ହେବ .(ଅଭିମତଂ ସିଦ୍ଧିଂ) ଏବଂ କୃଷ୍ଣ ବିରହ ପୀଡ଼ାର ପରିସମାପ୍ତି ଘଟିବ ହିଁ ଘଟିବ ।

ପ୍ରଶ୍ନ-୩୯ : ଭକ୍ତଶ୍ରେଷ୍ଠ ଉଦ୍ଧବଙ୍କ ସାକ୍ଷାତ୍ ଦର୍ଶନର ଉପାୟଟି ଜାଣି ଯିବା ପରେ ସେମାନେ ସମସ୍ତେ ମିଳିମିଶି ହସ୍ତିନାର ମହାରାଜା ପରୀକ୍ଷିତ ଓ ମଥୁରାର ରାଜା ବଜ୍ରନାଭଙ୍କ ପାଖରେ କୁସୁମ ସରୋବରଠାରେ ସଂକୀର୍ତ୍ତନ ଉତ୍ସବ କରାଇବା ଲାଗି ନିବେଦନ କଲେ । ପରୀକ୍ଷିତ(ବିଷ୍ଣୁରାତଃ) ଏଭଳି ଶୁଭ କର୍ମରେ କିଭଳି ଯୋଗଦାନ ଦେଲେ ?

ସୂତଉବାଚ

**ବିଷ୍ଣୁରାତଃ ତୁ ତତ୍ଶ୍ରୁତ୍ୱା ପ୍ରସନ୍ନଃ ତତ୍ ଉଦ୍ୟତଃ ତଦା ।**
**ତତ୍ର-ଏବ ଆଗତ୍ୟ ତତ୍ ସର୍ବଂ କାରୟାମାସ ସତ୍ୱରମ୍ ॥୨୯॥**

ଉ. ଆଦୌ ବିଳମ୍ବ ନକରି (ସତ୍ୱରମ୍) ମହା ଆନନ୍ଦରେ (ପ୍ରସନ୍ନଃ) ସଖୀସ୍ଥଳରେ ପହଞ୍ଚିଗଲେ । ମା'କାଳିନ୍ଦୀଙ୍କ ଉପଦେଶ ଅନୁଯାୟୀ ସତ୍‌ସଙ୍ଗର ମହାଆଡ଼ମ୍ବରପୂର୍ଣ୍ଣ ଆୟୋଜନରେ ଲାଗିଗଲେ । ମୃଦଙ୍ଗ,. ଝାଞ୍ଜ, ବେଣୁ, ମଞ୍ଜିରା ଆଦି ସେଠାକୁ ଅଣାଇ ସଂକୀର୍ତ୍ତନ ସହିତ ଗାଉଣା ଗାଜଣାର ସକଳ ବନ୍ଦୋବସ୍ତ କରିଦେଲେ ।

ପ୍ରଶ୍ନ-୪୦: ଦିନ ରାତି ଅବିରାମ ଭାବରେ କୁସୁମ ସରୋବରଠାରେ ସଂକୀର୍ତ୍ତନ ଉତ୍ସବ ଚାଲିଲା । ମଥୁରା ଓ ହସ୍ତିନା ସହିତ ସମସ୍ତ ବ୍ରଜମଣ୍ଡଳର କୃଷ୍ଣ ଭକ୍ତଗଣ ତନ୍ ମନ୍ ଧନ୍ ଦେଇ ସଂକୀର୍ତ୍ତନରେ ମାତିଯିବାରୁ ସେ କୀର୍ତ୍ତନ ସ୍ଥଳୀଟି କିଭଳି ଶୋଭାୟମାନ ହେଲା ସେତେବେଳେ ?

**ବୃଷଭାନୁ ସୁତା କାନ୍ତ ବିହାରେ କୀର୍ତ୍ତନ ଶ୍ରିୟା ।**
**ସାକ୍ଷାତ୍ ଇବ ସମାବୃତ୍ତେ ସର୍ବେଽନନ୍ୟ ଦୃଶୋଽଭବନ୍ ॥୩୧॥**

ଉ. ଦୀର୍ଘକାଳ ଧରି ଅହୋରାତ୍ରଂ ସଂକୀର୍ତ୍ତନ ଫଳରେ ସେ ସାଧକ ସାଧିକା ମାନଙ୍କର ମନରୁ ଭୌତିକ କାମନା, ବାସନା, କାମକ୍ରୋଧ ଆଦି ଷଟ୍‌ରିପୁ କ୍ରମଶଃ ଲୁପ୍ତ ହୋଇ ସେମାନଙ୍କର ମନ, ବୁଦ୍ଧି, ଚିତ୍ତ, ଅହଂକାର ଆଦି ଶୁଦ୍ଧ ହୋଇଗଲେ । ମସ୍ତିଷ୍କ ଓ ହୃଦୟରେ ଦିବ୍ୟ ଚେତନାର ଜାଗରଣ ହେଲା । ସେମାନଙ୍କ ମନରେ ଜଗତ ଲୁଚିଗଲା । ଅତ୍ର ତତ୍ର ସର୍ବତ୍ର ଜଗନ୍ନାଥ ଜଗତରୂପୀ ରାଧା ଓ କୃଷ୍ଣରୂପୀ ନାଥ ସାକ୍ଷାତ ଦିଶିଲେ । ରାଧା କୃଷ୍ଣଙ୍କ ମିଳିତ ବିଗ୍ରହ ବ୍ୟତୀତ ଅନ୍ୟ କିଛି ଭୌତିକ ଚିଜ (ଅନନ୍ୟ ଦୃଶୋ) ସେମାନଙ୍କର ଦୃଷ୍ଟିଗୋଚର ହେଲା ନାହିଁ । ସେଇ ସୃଷ୍ଟି ସିନା

ଅନ୍ୟମାନଙ୍କ ପାଇଁ ଭୌତିକ ରହିଲା । ହେଲେ ସେମାନଙ୍କ ପାଇଁ ଦୃଷ୍ଟି ବଦଳି ମୃଣ୍ମୟ ଦୃଷ୍ଟି ଚିନ୍ମୟ ଦୃଷ୍ଟି ବା ଦିବ୍ୟ ଦୃଷ୍ଟି ହୋଇ ଯିବାରୁ ସୃଷ୍ଟି ମଧ୍ୟ ଚିନ୍ମୟ ହୋଇଗଲା ।

ପ୍ରଶ୍ନ-୪୧ : ସଂକୀର୍ତ୍ତନ ମହୋତ୍ସବରେ ଉପସ୍ଥିତ କୃଷ୍ଣଭକ୍ତମାନଙ୍କ ଚିନ୍ମୟ ଦୃଷ୍ଟିରେ ସେମାନେ କି ଅଦ୍ଭୁତ ଅଲୌକିକ ଦୃଶ୍ୟ ଦର୍ଶନ କଲେ ସେତେବେଳେ ?

**ତତଃ ପଶ୍ୟତ୍ସୁ ସର୍ବେଷୁ ତୃଣଗୁଳ୍ମ ଲତାଚୟାତ୍ ।**
**ଆଜଗାମ-ଉଦ୍ଧବଃ ସ୍ରକ୍‌ବୀ ଶ୍ୟାମଃ ପୀତାମ୍ବର-ଆବୃତଃ ॥୩୨॥**

ଉ. ସମସ୍ତଙ୍କ ଚକ୍ଷୁ ସମ୍ମୁଖରେ(ପଶ୍ୟତ୍ସୁ ସର୍ବେଷୁ) ବୃନ୍ଦାବନର ସେଇ ଲତା କୁଞ୍ଜ(ତୃଣ ଗୁଳ୍ମ ଲତାଚୟାତ୍) ମଧ୍ୟରୁ ତାଙ୍କର ଇପ୍‌ସିତ ଭକ୍ତଶ୍ରେଷ୍ଠ ଉଦ୍ଧବଜୀ ପ୍ରକଟ ହେଲେ (ଆଜଗାମ) । ଗଳାରେ ତାଙ୍କର ଗୁଞ୍ଜାମାଳା ସହିତ ଦିବ୍ୟ ପୁଷ୍ପମାଲ୍ୟ । ତାଙ୍କ ଶ୍ୟାମବର୍ଣ୍ଣ ଦିବ୍ୟ ଦେହରେ ପାଟପୀତାମ୍ବର ଶୋଭାୟମାନ ହେଉଥାଏ । କଣ୍ଠରେ ତାଙ୍କର ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣଙ୍କର ସୁମଧୁର ଲୀଳାଗାନ । ତାଙ୍କ ଆବିର୍ଭାବରେ ଏଭଳି ସ୍ନିଗ୍ଧ ଦିବ୍ୟ ଆଲୋକର ଆବିର୍ଭାବ ହେଲା ଯେ ସୂତଗୋସ୍ୱାମୀ ବର୍ଣ୍ଣନା କରୁଛନ୍ତି ଯେ ମନେ ହେଉଥିଲା ସତେ ଯେପରି ଏକ ସ୍ଫଟିକ ମଣି ନିର୍ମିତ ରାଜ ପ୍ରସାଦ ଉପରେ ଶରଦପୂର୍ଣ୍ଣିମାର ଚନ୍ଦ୍ର କିରଣ ବିଚ୍ଛୁରଣ ଘଟି ସେହି ସଂକୀର୍ତ୍ତନକାରୀମାନଙ୍କ ସହିତ ସମଗ୍ର ଲୀଳାସ୍ଥଳୀଟିର ଶୋଭା ବହୁଗୁଣିତ ହୋଇଗଲା କି ଆଉ ! !

ପ୍ରଶ୍ନ-୪୨ : ଉଦ୍ଧବଜୀଙ୍କ ଦିବ୍ୟ ଆବିର୍ଭାବ ଫଳରେ ଉପସ୍ଥିତ ସମସ୍ତ ସତ୍‌ସଙ୍ଗୀ ନିଜ ନିଜର ଭୌତିକ ଶରୀର ଏବଂ ସଂସାର ବିସ୍ମରଣ ହୋଇଗଲେ ଦିବ୍ୟ କୃଷ୍ଣ ପ୍ରେମର ଆଭାସ ପ୍ରାପ୍ତ ହେଉ ହେଉ । ସେ ପରିସ୍ଥିତିରେ ସେମାନେ କ'ଣ ଆଉ ସେମାନଙ୍କର ଭୌତିକ ଚେତନା ସବୁଦିନ ଲାଗି ହରାଇ ବସିଲେ କି ?

**କ୍ଷଣେନ-ଆଗତ ବିଜ୍ଞାନା ଦୃଷ୍ଟ୍ୱା ଶ୍ରୀକୃଷ୍ଣ ରୂପିଣମ୍ ।**
**ଉଦ୍ଧବଂ ପୂଜୟାନ୍ ଚକ୍ରୁଃ ପ୍ରତିଲବ୍‌ଧ ମନୋରଥାଃ ॥୩୫॥**

ଉ. କ୍ଷଣକ ଲାଗି ଚେତନା ହରାଇ ଭଗବାନଙ୍କ କୃପାରୁ ସେମାନେ ପୁନଃ ଚେତନା ପ୍ରାପ୍ତ ହେଲେ(ଆଗତ ବିଜ୍ଞାନା) । ସେମାନେ ଦେଖିଲେ ତାଙ୍କର ଉଦ୍ଧବ ଦର୍ଶନ ଲାଳସା ଅଭୀଷ୍ଟ (ମନୋରଥାଃ) ଶ୍ରୀରାଧାରାଣୀ ପୂରଣ କରିଦେଇଛନ୍ତି (ପ୍ରତିଲବ୍‌ଧ) । ସୁତରାଂ ସେମାନେ ତତ୍‌କ୍ଷଣାତ୍ ଉଦ୍ଧବଜୀଙ୍କୁ ଲାଗି ପଢ଼ି ପିଢ଼ା, ପାଣି, ଦୁର୍ବା, ଅରୁଆ ଚାଉଳ, ଧୂପ, ଦୀପ, ନୈବେଦ୍ୟ ଆଦି ଷୋଡ଼ଶ ଉପଚାରରେ

ପୂଜନ କଲେ(ପୂଜୟାନ୍ ଚକ୍ରୁଃ) । ସେମାନେ ପାଟମହିଷୀ କାଳିନ୍ଦୀଙ୍କଠାରୁ ବୁଝିସାରିଥିଲେ ଯେ ଭକ୍ତି-ଭକ୍ତ-ଭଗବାନ-ଗୁରୁ ନାମ ସିନା ଚାରୋଟି ଚିଜ କିନ୍ତୁ ଗୋଟିଏ । ସୁତରାଂ ସେମାନେ ଉଦ୍ଧବଙ୍କୁ ସାକ୍ଷାତ୍ ଭଗବାନ କୃଷ୍ଣ ବୋଲି ସମ୍ମାନୀତ କରିବାରେ ନିଜ ନିଜ ମସ୍ତିଷ୍କ ଓ ହୃଦୟ ଉଭୟର ବିନିଯୋଗ କରିଥିଲେ ।

## ଅଥ ତୃତୀୟ ଅଧ୍ୟାୟଃ

### (ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କୁ ମଧ୍ୟ ଶ୍ରୀମଦ୍ଭାଗବତ ଆଶ୍ରୟ ଲୋଡ଼ା ଭାଗବତ ଶ୍ରବଣରେ ଶ୍ରୋତାମାନଙ୍କର ଭଗବତ ଧାମ ପ୍ରାପ୍ତି)

ପ୍ରଶ୍ନ-୪୩. ଉଦ୍ଧବଙ୍କ ଦର୍ଶନରେ ରାଜା ପରୀକ୍ଷିତ ବଜ୍ରନାଭଙ୍କ ଅନ୍ୟ ପ୍ରଜାଗଣ ଯେତିକି ଆନନ୍ଦିତ ହେଲେ ତାହା ତୁଳନାରେ ବରଂ ସେଭଳି କୃଷ୍ଣପ୍ରେମରସ ପିପାସୁମାନଙ୍କୁ ପାଇ ସ୍ୱୟଂ ଉଦ୍ଧବଜୀ ଅତ୍ୟନ୍ତ ପ୍ରସନ୍ନ ହେଲେ । ମହାରାଜ ପରୀକ୍ଷିତଙ୍କୁ ଦୃଢ଼ ଆଲିଙ୍ଗନ କରି ତାଙ୍କୁ ଧନ୍ୟ ଧନ୍ୟ ବୋଲି କହିଲେ କାହିଁକି ?

ଉଦ୍ଧବ ଉବାଚ

**ଧନ୍ୟୋଽସି ରାଜନ୍ କୃଷ୍ଣ-ଏକ ଭକ୍ତ୍ୟା ପୂର୍ଣ୍ଣୋଽସି ନିତ୍ୟଦା ।**
**ଯଃ ତ୍ୱୟଂ ନିମଗ୍ନଚିତ୍ତୋଽସି କୃଷ୍ଣ ସଂକୀର୍ତ୍ତନ-ଉତ୍ସବେ ॥୨॥**

ଉ. ସଂସାରରେ ଉଦ୍ଧବଜୀ ଜୀବନକୁ ଶହେ ପଚିଶବର୍ଷର ଅନୁଭବରେ ଜାଣିଛନ୍ତି । କେହି ଦେବୀ, ଦେବତାଙ୍କ ଭକ୍ତ ସ୍ୱର୍ଗ ଯିବାକୁ, ଶିବଙ୍କ ଭକ୍ତ ସିଦ୍ଧି ପ୍ରାପ୍ତି ଲାଗି ପୁଣି କେହି ଭଗବାନ ନାରାୟଣଙ୍କ ଭକ୍ତ ପାଞ୍ଚମୁକ୍ତିରୁ ଗୋଟିଏ ହାତେଇବା ପାଇଁ । ସେମାନେ ସମସ୍ତେ କେବଳ ସକାମ ଭକ୍ତି କରନ୍ତି । ଏହାକୁ ବୈଷ୍ଣବ ଧର୍ମରେ କପଟ ଭକ୍ତି ଆଖ୍ୟା ଦିଆଯାଏ । ସେ ରାଜା ପରୀକ୍ଷିତଙ୍କଠାରେ କିନ୍ତୁ ଦେଖିଲେ ଐକାନ୍ତିକ କୃଷ୍ଣ ଭକ୍ତି(କୃଷ୍ଣ ଏକ ଭକ୍ତ୍ୟା) । ପୁଣି ଶ୍ରୀକୃଷ୍ଣ ସଂକୀର୍ତ୍ତନ ମହାଉତ୍ସବ କରି କରାଇ ନିଜର ମନ, ବୁଦ୍ଧି, ଚିତ୍ତ ସହିତ ନିଜର ଅହଂକାର ଟିକକ ମଧ୍ୟ ସେଇ ଦିବ୍ୟପ୍ରେମ ଲାଳସାରେ ନିଜ ଭକ୍ତିରେ ବୁଡ଼ାଇ ଦେଇ ସାରିଛନ୍ତି ।

ପ୍ରଶ୍ନ-୪୪: ସମସ୍ତ ବ୍ରଜବାସୀମାନଙ୍କୁ କୃଷ୍ଣପ୍ରେମର ଲାଳସା ରୂପୀ ସଂକୀର୍ତ୍ତନ ସାଧନାରେ ନିମଜ୍ଜିତ କରାଇବା ତାଙ୍କ ପକ୍ଷରେ କିପରି ଓ କାହିଁକି ସମ୍ଭବ ହୋଇପାରିଲା ବୋଲି ଉଦ୍ଧବଜୀ କାରଣ ନିର୍ଦ୍ଦେଶ କଲେ ?

**କୃଷ୍ଣ ପତ୍ନୀଷୁ ବ୍ରଜେ ଚ ଦିଷ୍ଟ୍ୟା ପ୍ରୀତି ପ୍ରବର୍ତ୍ତିତା ।**
**ତବ-ଉଚିତଂ ଇଦଂ ତାତ କୃଷ୍ଣ ଦତ୍ତ-ଅଙ୍ଗ ବୈଭବ ॥୩॥**

ଉ. ଉଦ୍ଧବ କହିଲେ, ''ହେ ବାପା ପରୀକ୍ଷିତ(ତାତ), କୃଷ୍ଣ ପତ୍ନୀ ମାନଙ୍କୁ କୃଷ୍ଣ ପ୍ରେମ ସନ୍ଦେଶ ଦେବା ପାଇଁ ଅଣ୍ଟା ଭିଡ଼ିବା ତୁମ ଲାଗି ଓ ତୁମ ରାଜ୍ୟର ସକଳ ପ୍ରଜାଗଣଙ୍କ ଲାଗି ଅତ୍ୟନ୍ତ ଭାଗ୍ୟର କଥା(ଦିଷ୍ଟ୍ୟା) । ତୁମ ଜୀବନର ଚରମ ସାର୍ଥକତା (ଉଚିତଂ ଇଦଂ) । ତୁମର ଭୌତିକ ଦେହଟି ପାଇଁ ମଧ ତୁମେ ପ୍ରଭୁ କୃଷ୍ଣଙ୍କ ପାଖରେ ଋଣୀ । ତୁମେ ମାତୃଗର୍ଭରେ ଥିବା ବେଳେ ଅଶ୍ୱତ୍ଥାମାଙ୍କର ବ୍ରହ୍ମାସ୍ତ୍ରରେ ତୁମ ଦେହ ଦଗ୍ଧ ହୋଇସାରିଥିଲା । ତୁମ ମାତା ଉତ୍ତରାବାଳୀ କୃଷ୍ଣଙ୍କ ଶରଣପଶନ୍ତେ ଭଗବାନ ତୁମର ଏ ଦେହଟି ତୁମ ଆତ୍ମାଙ୍କୁ କୃପାକରି ଦେଇଥିଲେ(କୃଷ୍ଣ ଦତ୍ତ ଅଙ୍ଗ) । ପୁଣି ତାଙ୍କରି କୃପାରୁ କୌରବମାନଙ୍କ ହଡ଼ପ କରିଥିବା ସିଂହାସନ, ଧନ ସଂପତ୍ତିକୁ ମହାଭାରତ ଯୁଦ୍ଧ କରାଇ ତାଙ୍କଠାରୁ ଛଡ଼ାଇ ଆଣି ସେ ପାଣ୍ଡବମାନଙ୍କ ହସ୍ତରେ ଅର୍ପଣ କରିଥିଲେ । ଏବେ ତୁମେ ସେଇ ଧନ ସଂପତ୍ତି (ବୈଭବ)ର ଅଧିକାରୀ ହୋଇଛ ।''

ପ୍ରଶ୍ନ-୪୫: ଉଦ୍ଧବଜୀ ପୁଣି କହି ଚାଲିଲେ ଯେ ଶ୍ରୀକୃଷ୍ଣ ସେତେବେଳର ସମସ୍ତ ଦ୍ୱାରକାବାସୀଙ୍କୁ ଅର୍ଜୁନଙ୍କ ଦ୍ୱାରା(ପାର୍ଥଂ) ପ୍ରଥମେ ବ୍ରଜମଣ୍ଡଳକୁ ଓ ପରେ ମଥୁରାକୁ ଅଣାଇ ଏ ସଂକୀର୍ତ୍ତନ କରିବା ସ୍ଥିତିରେ ପହୁଞ୍ଚାଇଛନ୍ତି । ନିଃସନ୍ଦେହରେ ଏମାନେ ସମସ୍ତେ ଧନ୍ୟ । ତେବେ ବୃନ୍ଦାବନର ମାହାତ୍ମ୍ୟ ବୃଦ୍ଧି ବିଷୟରେ ଉଦ୍ଧବଜୀ ସେମାନଙ୍କୁ କି ସୂଚନା ଦେଲେ ?

**ଶ୍ରୀକୃଷ୍ଣସ୍ୟ ମନଃଚନ୍ଦ୍ରୋ ରାଧା-ଅସ୍ୟ ପ୍ରଭୟା-ଅନ୍ୱିତଃ ।**
**ତଦ୍‌ବିହାର ବନଂ ଗୋଭିଃ ମଣ୍ଡୟନ ରୋଚତେ ସଦା ॥୫॥**

ଉ. ଦେଖାଯାଏ ଆକାଶରେ ଭୌତିକ ଜଗତର ଚନ୍ଦ୍ର ଭୌତିକ କିରଣ ବିକିରଣ କରି ଭୌତିକବାଦୀ ଲୋକଙ୍କୁ ଆହ୍ଲାଦିତ କରେ । ଏହି ବୃନ୍ଦାବନରେ କିନ୍ତୁ ଶ୍ରୀକୃଷ୍ଣଙ୍କର ଆଧାତ୍ମିକ ଚନ୍ଦ୍ର ଉଦିତ ହୋଇଛନ୍ତି । ତାହା ପୁଣି ଚିନ୍ମୟ ଜଗତରେ ରାଜରାଜେଶ୍ୱରୀ ଶ୍ରୀରାଧାଜୀଙ୍କ ଦିବ୍ୟ କିରଣ(ଗୋଭିଃ) ସଂଯୁତ(ଅନ୍ୱିତ) ହୋଇ ସମଗ୍ର ବ୍ରଜ ୮୪କୋଶ ସହିତ ସମଗ୍ର ବୃନ୍ଦାବନର ଅଧିବାସୀ(ଭକ୍ତ, ମଣିଷ, ଅଭକ୍ତ ମଣିଷ, ମୟୂର, କୋକିଳ ଆଦି ପକ୍ଷୀ ସମାଜ, ହରିଣ, ଅନ୍ୟାନ୍ୟ ବନ୍ୟ ପଶୁ ସହିତ କୀଟ ପତଙ୍ଗ ଓ ବୃକ୍ଷ, ଲତା ତରୁ ଗୁଳ୍ମ ଜଗତ ରୂପୀ ପ୍ରଜା(ସନ୍ତାନ) ମାନଙ୍କୁ କାଳ

କାଳ ଲାଗି ପ୍ରମୁଦିତ କରୁଛନ୍ତି । ବ୍ରଜଧାମରେ ଦ୍ୱାଦଶ ବନ ଅପୂର୍ବ ଶୋଭାମଣ୍ଡିତ(ରୋଚତେ) ହୋଇଛନ୍ତି ।

ପ୍ରଶ୍ନ-୪୬: ଭୌତିକ ଚନ୍ଦ୍ର କୃଷ୍ଣ ପକ୍ଷ ଓ ଶୁକ୍ଳ ପକ୍ଷରେ ଦିନକୁ ଦିନ କ୍ଷୟ ବୃଦ୍ଧି ହୁଅନ୍ତି । କୃଷ୍ଣଚନ୍ଦ୍ର କିନ୍ତୁ ସର୍ବଦା ଷୋଳକଳା ଯୁକ୍ତ । ଶ୍ରୀରାଧାଙ୍କ ପ୍ରେମ ରୂପୀ କିରଣ ସଦା ନିତ୍ୟ ବର୍ଦ୍ଧନଶୀଳ ଓ ନିତ୍ୟନବାୟମାନ । ଉଦ୍ଧବଜୀ ଠାକୁରଜୀଙ୍କ ଅଣନାତି ବଜ୍ରନାଭଙ୍କ ଅଧ୍ୟାତ୍ମ୍ୟ ଜଗତର ଅବସ୍ଥିତି ବିଷୟରେ କି ସଙ୍କେତ ପ୍ରଦାନ କଲେ ?

**ଏବଂ ବ୍ରଜଃ ତୁ ରାଜେନ୍ଦ୍ର ପ୍ରପନ୍ନ ଭୟ ଭଞ୍ଜକଃ ।**
**ଶ୍ରୀକୃଷ୍ଣ ଦକ୍ଷିଣ ପାଦେ ସ୍ଥାନଂ ଏତସ୍ୟ ବର୍ତ୍ତତେ ॥୭॥**

ଉ. ଉଦ୍ଧବଜୀ କହିଲେ, ‘‘ହେ ପରୀକ୍ଷିତ(ରାଜେନ୍ଦ୍ର), ପରମ ପ୍ରେମମୟ କୃଷ୍ଣ ଶରଣାଗତ(ପ୍ରପନ୍ନ) ଭକ୍ତର ସଂସାର ଦୁଃଖ ଓ ମୃତ୍ୟୁଭୟ ନାଶକ(ଭୟ ଭଞ୍ଜକଃ) । ଭଗବାନଙ୍କ ଦିବ୍ୟ ଦେହର ଅନ୍ୟାନ୍ୟ ଅଙ୍ଗ ଠାରୁ ଚରଣକମଳର ଦିବ୍ୟତା ପୁଣି ସ୍ୱତନ୍ତ୍ର । ଏହି ବଜ୍ରନାଭଙ୍କୁ ତୁମେ ଦର୍ଶନ କର ସେ (ଏତସ୍ୟ) ଠାକୁରଜୀଙ୍କ ଦକ୍ଷିଣ ପାଦ କମଳରେ ସ୍ଥାନ ପାଇଛନ୍ତି(ସ୍ଥାନଂ ବର୍ତ୍ତତେ) ।

ପ୍ରଶ୍ନ-୪୭: ଯୁଗେ ଯୁଗେ ମତ୍ସ୍ୟ, କୂର୍ମ, ବରାହ, ବାମନ, ନୃସିଂହ ଆଦି ଅବତାର ହୁଏ ଶ୍ରୀକୃଷ୍ଣଙ୍କର । ସେତେବେଳେ ମନୁଷ୍ୟମାନଙ୍କର କର୍ମ, ଜ୍ଞାନ, ଭକ୍ତି ମାର୍ଗ ଦର୍ଶନ କରନ୍ତି । କେତେବେଳେ ସାଧୁସନ୍ଥଙ୍କୁ ପଠାଇ ପୁଣି କେତେବେଳେ ସ୍ୱୟଂ ଅଂଶ କଳା ଅବତାର ନେଇ । ଶ୍ରୀବିଷ୍ଣୁ, ବାମନ, ରାମ ଓ କୃଷ୍ଣ ରୂପରେ ଆସନ୍ତି ସତୁରିଟି ଚତୁର୍ଯୁଗରେ । ଗୋଟିଏ ଚତୁର୍ଯୁର୍ଗରେ ମହାବିଷ୍ଣୁ ସେଇ ତିନି ଅବତାରରେ ଓହ୍ଲେଇ ଆସନ୍ତି ମର୍ତ୍ତ୍ୟଧାମକୁ ଐଶ୍ୱର୍ଯ୍ୟର ପରିପୂର୍ଣ୍ଣ ପରିପ୍ରକାଶ କରି ପାଞ୍ଚମୁକ୍ତି ଦେବା ପାଇଁ । ପୁଣି ଏହିପରି ୧୩ମନ୍ୱନ୍ତର ଲୀଳା ଚାଲୁ ରହେ । ଗୋଟିଏ କଳ୍ପରେ ଚଉଦ ମନ୍ୱନ୍ତର କାଳ ଭୋଗହୁଏ । ଗୋଟିଏ କଳ୍ପରେ ଥରେ ମାତ୍ର ଗୋଲୋକ ବିହାରୀକୃଷ୍ଣ ସ୍ୱୟଂ କୃଷ୍ଣ ଲୀଳା କରିବାକୁ ଓହ୍ଲାଇ ଆସିବା କାରଣ କ’ଣ ହୋଇପାରେ ?

**ରୁତେ କୃଷ୍ଣ ପ୍ରକାଶଂ ତୁ ସ୍ୱ-ଆତ୍ମବୋଧ ନ କସ୍ୟଚିତ୍ ।**
**ତତ୍ ପ୍ରକାଶଃ ତୁ ଜୀବାନାଂ ମାୟୟା ପିହିତଂ ସଦା ॥୯॥**

ଉ. ଅନ୍ୟାନ୍ୟ ଅବତାରରେ ଅସଂଖ୍ୟଲୋକ ମୁକ୍ତିପ୍ରାପ୍ତ ସିନା ହୁଅନ୍ତି ହେଲେ ପାଞ୍ଚମୁକ୍ତି ନ ଚାହୁଁଥିବା ଲୋକେ ନିରାଶ ହୁଅନ୍ତି । ମାୟା କବଳରେ ପଡ଼ି(ପିହିତଃ)

ନିଜ ନିଜର ସ୍ୱରୂପଜ୍ଞାନ (ମୁଁ ଭଗବାନଙ୍କର ଦାସ, ସେ ସେବ୍ୟ, ମୁଁ ତାଙ୍କର ସେବକ) ବୁଝିବାରେ ଅସମର୍ଥ ହୁଅନ୍ତି । ଶ୍ରୀକୃଷ୍ଣ ପ୍ରେମ ରସ ବିନା (ଗୁଟେ କୃଷ୍ଣ ପ୍ରକାଶଂ) କୃଷ୍ଣଙ୍କର ଦୁର୍ଜୟ ମାୟାରୁ ମୁକୁଳିବା ଅସମ୍ଭବ(ନ କସ୍ୟଚିତ୍) ।

ପ୍ରଶ୍ନ-୪୮: ବ୍ରହ୍ମାଙ୍କର ଶହେ ଆଠବର୍ଷ ଆୟୁଷ ମଧ୍ୟରୁ ଗୋଟିଏ ଦିନ ଆୟୁଷକୁ ଏକ କଳ୍ପ ବା ୪୩୨କୋଟି ପୃଥିବୀ ବର୍ଷ କୁହାଯାଏ । ଚଳିତ ଶ୍ୱେତ ବରାହ କଳ୍ପ କାଳରେ କେଉ ମନ୍ୱନ୍ତର ଅନ୍ତର୍ଗତ କେଉଁ ଚତୁର୍ଯୁଗରେ ସ୍ୱୟଂ ଗୋଲୋକ ବିହାରୀ କୃଷ୍ଣ କରିଥିଲେ ?

**ଅଷ୍ଟାବିଂଶ ଦ୍ୱାପର-ଅନ୍ତେ ସ୍ୱୟଂ ଏବ ଯଦା ହରିଃ ।**
**ଉତ୍ସାରୟେତ୍ ନିଜାଂ ମାୟାଂ ତତ୍ ପ୍ରକାଶୋ ଭବେତ୍ ତଦା ॥୧୦॥**

ଉ. ଏହି କଳ୍ପର ସ୍ୱାୟମ୍ଭୁବ, ସ୍ୱାରୋଷ ଆଦି ଛଅ ମନ୍ୱନ୍ତର କାଳ ବିତି ସାରିଛି । ଏବେ ସପ୍ତମ ମନ୍ୱନ୍ତର ନାମକ ବୈବସ୍ୱତ ମନ୍ୱନ୍ତର ସମୟ ଭୋଗ ହେଉଛି । ସେଥି ମଧ୍ୟରୁ ୨୭ ଚତୁର୍ଯୁଗ ସରିଗଲାଣି । ୨୮ତମ ଚତୁର୍ଯୁଗର ସତ୍ୟଯୁଗ ପରେ ଯେଉଁ ଦ୍ୱାପର ଯୁଗ ଆସିଲା ତାର ଶେଷ ପାଦରେ ଏହି କୃଷ୍ଣଲୀଳା(ହରିଃ) ଅଭିନୟ ହୋଇଥିଲା ଯାହାର ବର୍ଣ୍ଣନା ଶ୍ରୀଲ ବ୍ୟାସଦେବ ଶ୍ରୀମଦ୍ଭାଗବତ ଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି । ଯାହାର ପଠନ ପାଠନ ଏବେ କରାଯାଉଛି ।

ପ୍ରଶ୍ନ-୪୯: ଶ୍ରୀକୃଷ୍ଣ ପ୍ରେମ ରସର ଚିନ୍ମୟ କିରଣ ପ୍ରକାଶରେ ନାରାୟଣଙ୍କ ମାୟା ପରଦା ମଧ୍ୟ ହଟିଗଲା(ଉତ୍ସାରୟେତ୍) । ଲୋକେ ମୁକ୍ତି ସୁଖର ଲୋଭ ତ୍ୟାଗ କରି ଏହି ଦେବଦୁର୍ଲ୍ଲଭ ପ୍ରେମରସ ଆସ୍ୱାଦନ ପାଇଁ ଆଗ୍ରହ ପ୍ରକାଶ କଲେ । ଏବେ ସିନା କୃଷ୍ଣଲୀଳା ଅଭିନୟ ଭୌତିକ୍ ଜଗତରେ ଅବଶ୍ୟ ହୋଇଛି ହେଲେ ସେ ଅଲୌକିକ ପ୍ରେମ ରସ ଆସ୍ୱାଦନର କି ବିକଳ୍ପ ବ୍ୟବସ୍ଥା କଳିଯୁଗୀ ଲୋକମାନଙ୍କ ଲାଗି ଭଗବାନ କରିଯାଇଛନ୍ତି ?

**ଶ୍ରୀମଦ୍ଭାଗବତ ଶାସ୍ତ୍ରଂ ଯତ୍ର ଭାଗବତୈଃ ଯଦା ।**
**କୀର୍ତ୍ତ୍ୟତେ ଶ୍ରୂୟତେ ଚ-ଅପି ଶ୍ରୀକୃଷ୍ଣଃ ତତ୍ର ନିଶ୍ଚିତମ୍ ॥୧୨॥**

ଉ. କୃଷ୍ଣଙ୍କର ବାସ୍ତବିକ ଲୀଳା ଅଦୃଶ୍ୟ ହୋଇଛି ଏବଂ ବ୍ୟାବହାରିକୀ ଲୀଳା ଚାଲୁ ରହିଛି । କୃଷ୍ଣ ଭକ୍ତଗଣ (ଭାଗବତୈଃ) ଶ୍ରୀମଦ୍ଭାଗବତ ଗ୍ରନ୍ଥରାଜଙ୍କର ଯେତେବେଳେ ଯେଉଁଠାରେ ଶ୍ରବଣ, କୀର୍ତ୍ତନ କରିବେ ସେତେବେଳେ ସେଠାରେ ସ୍ୱୟଂ ଶ୍ରୀକୃଷ୍ଣ ନିଜ ପାର୍ଷଦମାନଙ୍କ ସହିତ ବକ୍ତା, ଶ୍ରୋତାଙ୍କ ହୃଦୟରେ ନିଶ୍ଚିତ ରୂପେ

ସୂକ୍ଷ୍ମ ରୂପରେ ଅଦୃଶ୍ୟ ରହି ବିରାଜମାନ କରିବେ । ଏହା ତାଙ୍କର ଏକ ଅକାଟ୍ୟ ନିୟମ ଓ ବ୍ରତ ସ୍ୱରୂପ ବୋଲି ଉଦ୍ଧବଜୀ ସଭାରେ ଘୋଷଣା କଲେ ।

ପ୍ରଶ୍ନ-୫୦: ଯେଉଁଠାରେ ଶ୍ରୀମଦ୍ଭାଗବତ ଶାସ୍ତ୍ରଙ୍କର ଗୋଟିଏ ଶ୍ଳୋକ କିମ୍ବା ଅର୍ଦ୍ଧଶ୍ଳୋକର ଆଲୋଚନା କରାଯାଏ ସେଠାରେ ମଧ୍ୟ ଗୋପୀମାନଙ୍କ ସହିତ ଗୋପୀନାଥ ଉପସ୍ଥିତ ରହନ୍ତି । ବର୍ତ୍ତମାନ ପୃଥିବୀରେ ଥିବା ୧୯୩ଟି ଦେଶ ମଧ୍ୟରୁ ଭାରତ ଭୂମିରେ ଜନ୍ମିତ ଜଣେ ସାଧକ ପୁରୁଷ କିମ୍ବା ନାରୀ ଯଦି ଭାଗବତ ଗ୍ରନ୍ଥର ବିଷୟ ବସ୍ତୁକୁ ଅଣଦେଖା କରନ୍ତି ତେବେ ତାଙ୍କର କଅଣ କିଛି ଅଭାବନୀୟ କ୍ଷତି ଘଟିଯିବ କି ?

**ଭାରତେ ମାନବଂ ଜନ୍ମ ପ୍ରାପ୍ୟ ଭାଗବତଂ ନ ଯୈଃ ।**
**ଶ୍ରୁତଂ ପାପ ପରାଧୀନୈଃ ଆତ୍ମଘାତଃ ତୁ ତୈଃ କୃତଃ ॥୧୪॥**

ଉ. ସାମାନ୍ୟ କ୍ଷତି ନୁହେଁ ବରଂ ତାହାକୁ ଏକ ମହାନ ଅପରାଧରେ ଗଣାଯିବ । ସେଭଳି ଲୋକକୁ ଆତ୍ମହତ୍ୟାକାରୀ ବୋଲି କୁହାଯିବ । ଦେବଦୁର୍ଲ୍ଲଭ ମାନବ ଜୀବନର କି ସଦୁପଯୋଗ କଲା ସିଏ ? ''ଖାଓ ପିଓ ମଉଜ ଉଡ଼ାଓ'' ସ୍ଲୋଗାନରେ ମାତି ଅନିତ୍ୟ ମାନବ ଦେହରେ ନିତ୍ୟ ଭଗବାନଙ୍କର ପରମ ପ୍ରେମ ଆନନ୍ଦକୁ ହାତଛଡ଼ା କରିବା କେଉଁ ବିବେକର କାମ ହେଲା !!!

ପ୍ରଶ୍ନ-୫୧ : ଭକ୍ତ ପ୍ରହ୍ଲାଦଙ୍କୁ ଭଗବାନ ନୃସିଂହ କହିଛନ୍ତି ଶ୍ରଦ୍ଧା ବିଶ୍ୱାସ ସହିତ ଶ୍ରୀମଦ୍ଭାଗବତ ସେବନ କରି ଜୀବ ବୈଷ୍ଣବ ବୋଲାଏ । ସେ ନିଜ ସହିତ ନିଜ ପିତୃକୁଳର ସାତ, ମାତୃକୁଳର ସାତ ଓ ପତ୍ନୀ କୂଳର ସାତ ମିଶି ଏକୋଇଶ ପୁରୁଷଙ୍କର ଉଦ୍ଧାର କରିଥାଏ । ବୈଦିକଶାସ୍ତ୍ରରେ ଯେଉଁ ବ୍ରାହ୍ମଣାଦି ଚାରି ବର୍ଣ୍ଣଙ୍କର ବିଭାଗିକରଣ ହୋଇଛି ସେମାନଙ୍କୁ କି ଲାଭ(ଭୌତିକ ହେଉ ବା ଆଧାତ୍ମିକ ହେଉ) ମିଳିଥାଏ ?

**ବିଦ୍ୟା ପ୍ରକାଶୋ ବିପ୍ରାଣାଂ ରାଜ୍ଞାଂ ଶତ୍ରୁଜୟୋ ବିଶାମ୍ ।**
**ଧନଂ ସ୍ୱାସ୍ଥ୍ୟଂ ଚ ଶୂଦ୍ରାଣାଂ ଶ୍ରୀମଦ୍ଭାଗବତାତ୍ ଭବେତ୍ ॥୧୨॥**

ଉ. ବେଦ ଅଧ୍ୟାୟୀ ବ୍ରାହ୍ମଣମାନଙ୍କ ବୁଦ୍ଧିର ଶୁଦ୍ଧି କରଣ ହୁଏ । ଅଧ୍ୟାତ୍ମ ବିଦ୍ୟା ପାଠକକୁ ଅହଂକାର ଶୂନ୍ୟ କରାଇ ବିନୟଗୁଣ ସମ୍ପନ୍ନ କରାନ୍ତି ଭାଗବତ ଗ୍ରନ୍ଥ । ରାଜାମାନଙ୍କୁ ନିଷ୍କଣ୍ଟକ(ଶତ୍ରୁଭୟ ଶୂନ୍ୟ)ରାଜ୍ୟ ପ୍ରାପ୍ତି କରାଇପାରନ୍ତି । ପୁଣି ଏହି ଗ୍ରନ୍ଥ ବୈଶ୍ୟ ବର୍ଣ୍ଣର ଲୋକଙ୍କୁ ଧନପ୍ରାପ୍ତି ଓ ଶୂଦ୍ର ଲୋକମାନଙ୍କୁ ଉତ୍ତମ ସ୍ୱାସ୍ଥ୍ୟ ପ୍ରଦାନ କରନ୍ତି । ଶୁଦ୍ରମାନେ ଅନ୍ୟ ତିନିବର୍ଣ୍ଣ ଲୋକଙ୍କର ଧର୍ମ ସଂଗ୍ରହ କର୍ମରେ ସମୁଚିତ ସେବା କଲେ ସେମାନଙ୍କର ଅର୍ଜିତ ଧର୍ମ ସମ୍ପଦର ସହଭାଗୀ ମଧ୍ୟ ହୁଅନ୍ତି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

କେବଳ ସେତିକି ନୁହେଁ ଶିକ୍ଷାଦୀକ୍ଷା ଶୂନ୍ୟ ନାରୀସମାଜ ଓ ଅନ୍ତ୍ୟଜ(ଚାରି ବର୍ଣ୍ଣର ଅସ୍ୱୀକୃତ)ମାନେ ନିଜ ନିଜର ସଂସାରି କାମନା, ବାସନା ପୂରଣର ସୁବିଧା ସୁଯୋଗ ପ୍ରାପ୍ତ କରିପାରନ୍ତି ଏ ଭାଗବତଙ୍କୁ ଆଶ୍ରୟ କଲେ ।

ପ୍ରଶ୍ନ-୫୨: ଯଦି ଗୋଟିଏ ସୁସ୍ଥ ସମାଜର ସକଳ ବର୍ଗର ଲୋକଙ୍କର ଭାଗବତ ସେବନ ଏତେ କଲ୍ୟାଣକାରୀ ତେବେ ଆଜି କାଲି ଏତେ ଅଧିକ ଲୋକ କାହିଁକି ଏ ସୁଯୋଗ ପ୍ରାପ୍ତିରୁ ବଞ୍ଚିତ ହେଉଛନ୍ତି ?

**ଅନେକ ଜନ୍ମ ସଂସିଦ୍ଧିଃ ଶ୍ରୀମଭାଗବତଂ ଲଭେତ୍ ।**
**ପ୍ରକାଶୋ ଭଗବତ ଭକ୍ତି ଉଭବଃ ତତ୍ର ଜାୟତେ ||୧୮||**

ଉ. ଉଦ୍ଧବଜୀ କଥାଟିକୁ ବୁଝାଇ କହିଲେ, ଭାଗବତ ସେବନଲାଗି କେବଳ ଦୁଇ ଚାରି ଜନ୍ମର ପୁଣ୍ୟ ବା ସିଦ୍ଧି ଲୋଡ଼ା ପଡ଼େନା । ବରଂ ଅନେକ ଅନେକ ଜନ୍ମ ମାନଙ୍କର ପୁଣ୍ୟ ବଦଳରେ ଜୀବକୁ ଏହା ମିଳିପାରେ । ଭାଗବତ ସେବନରେ ଭକ୍ତିରୁ ପୁଣି ଗାଢ଼ତର ଭକ୍ତି ପ୍ରକଟିତ(ପ୍ରକାଶୋ) ହୁଏ ଏବଂ ଅଭକ୍ତ ହୃଦୟରେ ମଧ ଭକ୍ତିର ଉଦ୍ରେକ(ଉଭବ) ହୁଏ ।

ପ୍ରାଶ୍ନ-୫୩: ପ୍ରାକ୍ ଐତିହାସିକ କାଳରୁ ଭାଗବତ କିଭଳି ପୁରୁଷାନୁକ୍ରମିକ ଭାବେ ପ୍ରଚାରିତ ପ୍ରସାରିତ ହୋଇଛି ତାକୁ ଭାଗବତ ପରମ୍ପରା କୁହାଯାଏ । ସେ କଥାକୁ ବୁଝାଇବାକୁ ଯାଇ ଉଦ୍ଧବ ନିଜେ କେଉଁଠୁ କିଭଳି ତାକୁ ହାତେଇଲେ ବୋଲି ଶ୍ରୋତାମାନଙ୍କ ସମ୍ମୁଖରେ ଖୋଲି କହିଲେ ?

**ସାଂଖ୍ୟାୟନ ପ୍ରସାଦାତ୍ ଆପ୍ତଂ ଶ୍ରୀମଭାଗବତଂ ପୁରା ।**
**ବୃହସ୍ପତିଃ ଦତ୍ତବାନ୍ ମେ ତେନ-ଅହଂ କୃଷ୍ଣବଲ୍ଲଭଃ ||୧୯||**

ଉ. ଭାଗବତଙ୍କର ସର୍ବମୋଟ ଚାରି ପରମ୍ପରା ମଧ୍ୟରୁ ସର୍ବ ପ୍ରାଚୀନ ପରମ୍ପରା ହେଲା ସନକ ପରମ୍ପରା । ସୃଷ୍ଟି ଆଦ୍ୟରେ ଯେତେବେଳେ କି ବ୍ରହ୍ମାଣ୍ଡରେ ମାୟାଙ୍କ ସୃଷ୍ଟି ହୋଇନଥିଲା । ଏହା ବ୍ରହ୍ମାଙ୍କର ଚାରି ମାନସପୁତ୍ର ସନକ, ସନାତନ, ସନନ୍ଦନ ଓ ସନତ କୁମାର(ଚାରି କୁମାର)ବ୍ରହ୍ମାଜୀଙ୍କଠାରୁ ପ୍ରକଟିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟ ସନକ ମୁନି । ତାଙ୍କ ନାମ ଅନୁସାରେ ପରମ୍ପରାର ନାମ ସନକ ପରମ୍ପରା । ସେ ଚାରି ଭାଇଙ୍କର ଆୟୁଷ ଆଦୌ ବୃଦ୍ଧି ହୁଏ ନାହିଁ । ସେମାନେ ସଦା ସର୍ବଦା ମାୟାତୀତ ପାଞ୍ଚବର୍ଷର ନଙ୍ଗଟ୍ ଧଙ୍ଗଡ଼ ଶିଶୁ । ବୟସରେ ସେମାନେ ଶିଶୁ ।

ଜ୍ଞାନରେ କିନ୍ତୁ ସେମାନେ ଅତି ବୃଦ୍ଧ । ସେମାନେ ପାତାଳ ଲୋକରେ ସହସ୍ରଫଣା ଯୁକ୍ତ ଅନନ୍ତଙ୍କୁ ଗୁରୁ କରି ସର୍ବପ୍ରଥମେ ଏହି ଭାଗବତ ଜ୍ଞାନ ପ୍ରାପ୍ତ ହେଲେ । ସେମାନଙ୍କୁ ଗୁରୁ କରି ମହର୍ଷି ସାଂଖ୍ୟାୟନ ଭାଗବତ ହାସଲ କଲେ । ଶେଷରେ ଦେବଗୁରୁ ବୃହସ୍ପତି ଅନେକ ଜନ୍ମ ସାଧନା କରି କରି ତାଙ୍କୁ ଗୁରୁ ପଦରେ ବରଣ କରି ଭାଗବତ ଜ୍ଞାନର ଅଧିକାରୀ ହୋଇ ତାଙ୍କ ସୁଯୋଗ୍ୟ ଶିଷ୍ୟ ଉଦ୍ଧବଜୀଙ୍କୁ ପ୍ରଦାନ କରିଥିଲେ । ଏହି ଭାଗବତଙ୍କ ସେବନ କରି ଦ୍ୱାପର ଯୁଗରେ ସେ ଭଗବାନ କୃଷ୍ଣଙ୍କର ପ୍ରିୟଭକ୍ତ (କୃଷ୍ଣବଲ୍ଲଭ) ହୋଇଛନ୍ତି ।

ପ୍ରଶ୍ନ-୫୪: ଶ୍ରୋତାମାନଙ୍କର ହୃଦୟଗ୍ରାହୀ ହେବା ଭଳି ଢ଼ଙ୍ଗରେ ତାଙ୍କ ଗୁରୁଦେବ ବୃହସ୍ପତି କହିଥିବା ଅନ୍ୟ ତିନି ପରମ୍ପରା କଥା ମଧ୍ୟ ଉଦ୍ଧବ ସେଠାରେ ଖୋଲି କହିଲେ । ଦ୍ୱିତୀୟ ପରମ୍ପରାଟି ବ୍ରହ୍ମ ପରମ୍ପରା ନାମରେ ବିଖ୍ୟାତ । ସୃଷ୍ଟି କର୍ତ୍ତା ବ୍ରହ୍ମାଜୀ କେତେବେଳେ କାହା ମୁଖରୁ କାହାକୁ ଗୁରୁ କରି ଭାଗବତ ବୁଝିପାରିଲେ ?

**ବୃହସ୍ପତିଃ ଉବାଚ**

**ବ୍ରହ୍ମା ତୁ ନାଭି କମଳାତ୍ ଉତ୍ପନ୍ନଃ ତଂ ବ୍ୟଜିଜ୍ଞପତ୍ ।**

**ବ୍ରହ୍ମା ଉବାଚ**

**ନାରାୟଣ ଆଦି ପୁରୁଷ ପରମାତ୍ମନ୍ ନମୋଽସ୍ତୁତେ ।।୨୩।।**

ଉ. ସୃଷ୍ଟିର ଆଦି ଅବସ୍ଥା ଓ ଆଦି କାଳ । ନାରାୟଣଙ୍କ ନାଭି କମଳରୁ ପ୍ରଥମେ ଚତୁର୍ମୁଖୀ ବ୍ରହ୍ମାଙ୍କର ପ୍ରାକଟ୍ୟ ହେଲା । ଶ୍ରୀକୃଷ୍ଣଙ୍କ ଇଚ୍ଛାରୁ ପ୍ରକଟିତ ବିରାଟ ପୁରୁଷ ସେହି କମଳ କୋଷ ମଧ୍ୟରେ ଥାଆନ୍ତି । ସେହି ଦିବ୍ୟ ଜ୍ୟୋତିରୁ ବ୍ରହ୍ମା, ବିଷ୍ଣୁ, ଶଙ୍କର ଆଦି ତ୍ରିଦେବଙ୍କର ଆବିର୍ଭାବ ହେଲା । ସେହି ସ୍ଥାନ ଆଜି ମଧ୍ୟ ଭାରତବର୍ଷର ମହାରାଷ୍ଟ୍ର ପ୍ରଦେଶର ତ୍ରୟମ୍ବକେଶ୍ୱର କୁମ୍ଭମେଳା ସ୍ଥଳୀ ରୂପେ ଚିହ୍ନିତ ହୋଇଛି ।

ପ୍ରଶ୍ନ-୫୫: ବ୍ରହ୍ମଦେବ ଏକ ହଜାର ଦିବ୍ୟ ବର୍ଷ ତପସ୍ୟା କରି ଆଦିପୁରୁଷ ଶ୍ରୀମନ୍ ନାରାୟଣଙ୍କୁ ପ୍ରସନ୍ନ କରିଥିଲେ । ତାଙ୍କୁ ଦର୍ଶନ କରି ବ୍ରହ୍ମାଜୀ ବିନମ୍ର ନମସ୍କାର କଲେ । ସେତେବେଳକୁ ସେ ଜାଣିପାରିଥାନ୍ତି ଯେ ଗୁଣାତୀତ ଓ ଗୁଣାଶ୍ରୟୀ ନାରାୟଣଙ୍କ ରଜୋଗୁଣରୁ ସେ ଉଦ୍ଭୁତ ହୋଇଛନ୍ତି । ଯାହାକି ମହାମାୟାଙ୍କର ଏକ ଗୁଣ ଅଟେ । ନାରାୟଣ ତାଙ୍କୁ 'ସୃଷ୍ଟି ସର୍ଜନା କର' ବୋଲି ଆଦେଶ ଦେଲେ । ସେ କିନ୍ତୁ ମାୟାଙ୍କର ଆକ୍ରମଣରେ ସ୍ୱୟଂ ସୃଷ୍ଟି କରୁଛନ୍ତି ବୋଲି ଅହଂକାରରେ ପଡ଼ିଯିବା ଭୟ

କଥା ନାରାୟଣଙ୍କୁ ନିବେଦନ କଲେ । ପୁତ୍ର(ବ୍ରହ୍ମା)ଙ୍କୁ ଭୟ ଲାଗିଲେ ପିତା ନିଶ୍ଚୟ କିଛି ଉପାୟ ବତାଇବା ସ୍ୱାଭାବିକ । ଦୁର୍ଜୟା ମାୟାଙ୍କ ଭୟନାଶର କି ମାର୍ଗ ଦର୍ଶନ କରାଇଲେ ଶ୍ରୀମନ୍ ନାରାୟଣ ସୃଷ୍ଟି କର୍ତ୍ତା ବ୍ରହ୍ମାଜୀଙ୍କୁ(ତସ୍ମୈ) ?

**ବୃହସ୍ପତିଃ ଉବାଚ**

**ଯଦା ତୁ ଭଗବାନ ତସ୍ମୈ ଶ୍ରୀମତ୍ ଭାଗବତଂ ପୁରା ।**
**ଉପଦିଶ୍ୟ-ଅବ୍ରବୀତ୍ ବ୍ରହ୍ମନ୍ ସେବସ୍ୱ-ଏନ୍ତ ସ୍ୱସିଦ୍ଧୟେ ॥୨୫॥**

ଉ. ଶ୍ରୀମନ୍ ନାରାୟଣ ସ୍ୱୟଂ ବ୍ରହ୍ମାଜୀଙ୍କୁ ଶ୍ରୀମଦ୍ ଭାଗବତ ଜ୍ଞାନ ଉପଦେଶ ପ୍ରଦାନ କଲେ ଏବଂ କହିଲେ(ଅବ୍ରବୀତ୍), ''ହେ ବ୍ରହ୍ମାଜୀ(ବ୍ରହ୍ମନ୍) ଏହି ଗ୍ରନ୍ଥର(ଏନତ୍) ନିରନ୍ତର ସେବନ କର(ସେବସ୍ୱ) ତୁମର ଏହି ମହାମାୟା ଭୟ ତିରୋହିତ ହୋଇଯିବ ।''

ପ୍ରଶ୍ନ-୫୬: ବ୍ରହ୍ମାଜୀ ଠିକଣା ଉପଦେଶ, ପ୍ରାପ୍ତ ହୋଇ ଅତ୍ୟନ୍ତ ଆନନ୍ଦିତ(ପରମ ପ୍ରୀତଃ) ହେଲେ । ନିତ୍ୟ(ଅନିଶଂ) ଭାଗବତ ସେବନ କରି କୃଷ୍ଣ ପ୍ରେମ ରସ ପ୍ରାପ୍ତି ଲକ୍ଷ୍ୟରେ(କୃଷ୍ଣ-ଆପ୍ତୟେ) କି ବ୍ୟବସ୍ଥା କଲେ ?

**ବ୍ରହ୍ମା ତୁ ପରମ ପ୍ରୀତଃ ତେନ କୃଷ୍ଣ ଆପ୍ତୟେଽନିଶମ୍ ।**
**ସପ୍ତ-ଆବରଣ ଭଙ୍ଗାୟ ସପ୍ତାହଂ ସମବର୍ତ୍ତୟତ୍ ॥୨୬॥**

ଉ. ଶାସ୍ତ୍ରରେ ମାୟାଙ୍କର ସାତଟି ଆବରଣ ଥିବା କଥା କୁହାଯାଇଅଛି । ସେମାନେ ହେଲେ କାମ, କ୍ରୋଧ, ଲୋଭ, ମୋହ, ମତ୍ସରତା(ଈର୍ଷା), ମଦ(ଗର୍ବ) ଓ ଅହଂକାର(ଅବିଦ୍ୟା) । ମତାନ୍ତରେ ଦେହ ଆସକ୍ତି, ପତି/ପତ୍ନୀ ଆସକ୍ତି, ପରିବାର ଆସକ୍ତି, ଧନ ଆସକ୍ତି, ସନ୍ତାନ ଆସକ୍ତି, ସିଦ୍ଧି ଆସକ୍ତି ଓ ମୁକ୍ତି ଆସକ୍ତି । ଏଥିରୁ ରକ୍ଷା ପାଇବା ନିମନ୍ତେ ବ୍ରହ୍ମାଜୀ ଶ୍ରୀମଭାଗବତଙ୍କର ସାପ୍ତାହିକ ପାରାୟଣ କଲେ(ସମବର୍ତ୍ତୟତ୍) । ପ୍ରତ୍ୟେକ ସପ୍ତାହରେ ସେ ଭାଗବତ ପାରାୟଣ ସହିତ ନିତ୍ୟ ସୃଷ୍ଟି କାର୍ଯ୍ୟ କରି ମାୟାମୁକ୍ତ ରହିବାର ଆଦର୍ଶ ସଂସାରରେ ପ୍ରଦର୍ଶନ କଲେ । ସଂକ୍ଷେପରେ ଏହାହିଁ ବ୍ରହ୍ମପରମ୍ପରା ।

ପ୍ରଶ୍ନ-୫୭: ଭଗବାନ ବିଷ୍ଣୁ ନିଜର ସତ୍ତ୍ୱଗୁଣ ଉପରେ ବିଜୟ ପ୍ରାପ୍ତିର ଉପାୟ ପଚାରିଲେ ପ୍ରଭୁ ତ୍ରିଲୋକୀନାଥ ନାରାୟଣ ଦେବଙ୍କୁ କିଭଳି ପ୍ରାର୍ଥନା କରି ?

ବିଷ୍ଣୁଃ ଉବାଚ

**ପ୍ରଜାନାଂ ପାଳନଂ ଦେବ କରିଷ୍ୟାମି ଯଥା-ଉଚିତମ୍ ।**
**ପ୍ରବୃତ୍ତ୍ୟାଂ ଚ ନିବୃତ୍ତ୍ୟାଂ ଚ କର୍ମ ଜ୍ଞାନ ପ୍ରୟୋଜନାତ୍ ॥୨୭॥**

ଉ. ସତ୍ତ୍ୱଗୁଣୀ ଭଗବାନ ବିଷ୍ଣୁ ବିନମ୍ରତାର ସହିତ ନିର୍ଗୁଣୀ ନାରାୟଣଙ୍କୁ କହିଲେ, ''ହେ ଦେବ, ସଂସାରରେ କିଛି ଲୋକ କର୍ମ ପ୍ରବଣ ହୋଇ ପ୍ରବୃତ୍ତି ମାର୍ଗରେ ଚାଲିବେ । ଅନ୍ୟମାନେ କର୍ମକୁ ହେୟମନେ କରି ସ୍ୱର୍ଗଭୋଗ ବିମୁଖ ହୋଇ ଜ୍ଞାନ ମାର୍ଗ ବା ନିବୃତ୍ତି ମାର୍ଗର ପଥିକ ହେବେ । ଉଭୟ ପ୍ରକାରର ଲୋକ ସୁଖ ପ୍ରାପ୍ତି ଓ ମୁକ୍ତି ପ୍ରାପ୍ତି କରି ସାଧନା କଲେ ମଧ୍ୟ ବେଳେ ବେଳେ ବାଟବଣା ହୋଇ ଅନ୍ୟାୟ, ଅଧର୍ମ କାର୍ଯ୍ୟ କରି ସ୍ଖଳନର ଶିକାର ହେବେ । ସେତେବେଳେ ମୁଁ ସାଧୁ ସନ୍ଥମାନଙ୍କୁ ପ୍ରେରଣ କରି ସେମାନଙ୍କୁ ସୁଧାରି ନେବି । ଦରକାର ପଡ଼ିଲେ ନିଜେ ମଧ୍ୟ ବାମନ, ନୃସିଂହ, ମତ୍ସ୍ୟ, କୂର୍ମ ଇତ୍ୟାଦି ନାନା ଅବତାରମାନ ସ୍ୱୀକାର କରି ସୃଷ୍ଟି ପାଳନରେ ବ୍ରତୀ ହେବି । ସ୍ୱଧର୍ମ ପାଳନ ବିମୁଖୀ ମାନଙ୍କୁ ଦଣ୍ଡ ଦେଇ ନାନା ଦୁଃଖ କଷ୍ଟ ଦେଇ ଦରକାର ପଡ଼ିଲେ ଜୀବନରେ ମାରି ଯମ ଦଣ୍ଡ ଦିଆଇବି । ଅନ୍ତଃକରଣ ଶୁଦ୍ଧ ହେଲା ପରେ ପୁନର୍ବାର ନର ଜନ୍ମ ଦେଇ ସେମାନଙ୍କୁ ମୁକ୍ତି ପଥ ଦେଖାଇ ପାଳନ ଦାୟିତ୍ୱ ସମ୍ଭାଳିବି ।

ପ୍ରଶ୍ନ-୫୮ : ନିବେଦନର ଅନ୍ତିମ ଭାଗରେ ଶ୍ରୀହରି ବିଷ୍ଣୁ ନିଜ ପ୍ରଭୁଙ୍କୁ ଏଭଳି କେଉଁ ଅଡୁଆ ପ୍ରଶ୍ନ ପଚାରିଲେ ଯେ ଶ୍ରୀମନ୍ ନାରାୟଣଙ୍କୁ ସ୍ମିତ ହାସ୍ୟ ସହିତ ଉତ୍ତର ଦେବାକୁ ପଡ଼ିଲା ?

**ଯେଽପି ମୋକ୍ଷଂ ନ ବାଞ୍ଛନ୍ତି ତାନ୍ କଥଂ ପାଳୟାମି-ଅହମ୍ ।**
**ଆତ୍ମାନଂ ଚ ଶ୍ରିୟଂ ଚ-ଅପି ପାଳୟାମି କଥଂ ବଦ ॥୩୨॥**

ଉ. ଶ୍ରୀ ବିଷ୍ଣୁଜୀ କହିଲେ, ''ଯେଉଁ ଜୀବମାନେ ପାଞ୍ଚମୁକ୍ତି ନ ଚାହିଁବେ ସେମାନଙ୍କୁ କଅଣ ଦେଇ ସନ୍ତୁଷ୍ଟ କରିବି, ମୁଁ ଆପଣଙ୍କ ନାରାୟଣୀ ମାୟା ଜନିତ ସତ୍ୱଗୁଣ ଆକ୍ରମଣରୁ ନିଜକୁ ଓ ମୋ ପତ୍ନୀ ଲକ୍ଷ୍ମୀଙ୍କୁ ରକ୍ଷା କରିବି ତାର ଉପାୟ କୁହନ୍ତୁ (ବଦ) ।''

ସ୍ମିତହାସ୍ୟ ସହିତ ଭଗବାନ ସେତେବେଳେ ତାଙ୍କୁ ଅତି ରହସ୍ୟ, ଗୂଢ଼ ଭାଗବତ ସେବନ ନିଜେ କରି ନିଜକୁ ଓ ଅନ୍ୟ ଜୀବମାନଙ୍କ ଦ୍ୱାରା କରାଇ ସେମାନଙ୍କୁ

ମାୟା ଜୟ କରିବାକୁ କହିଥିଲେ । ଶ୍ରୀମଦ୍‌ଭାଗବତ ଗ୍ରନ୍ଥ ମଧ୍ୟରେ ଏଭଳି ପରମ ଆନନ୍ଦମୟ ଶ୍ରୀକୃଷ୍ଣ ପ୍ରେମରସ ଗୁମ୍ଫିତ ହୋଇ ରହିଛି ଯେ ମୁକ୍ତି ନ ଚାହୁଁଥିବା ଜୀବ ତାକୁ ଥରେ ପ୍ରାପ୍ତ ହେଲେ ଆଉ ତାର ଅନ୍ୟ କିଛି ମାଗିବାର ଇଛା ସମାପ୍ତ ହୋଇଯିବ ।

ପ୍ରଶ୍ନ-୫୯: ବ୍ରହ୍ମାଜୀ ବ୍ରହ୍ମଲୋକରେ ସାପ୍ତାହିକ ଭାଗବତ କରିବା ଭଳି ବିଷ୍ଣୁଜୀ କ'ଣ ଭାଗବତ ସେବନ କଲେ କି ?

**ତତୋ ବିଷ୍ଣୁଃ ପ୍ରସନ୍ନାତ୍ମା ପରମ-ଅର୍ଥକ ପାଳନେ ।**
**ସମର୍ଥୋଽଭୂତ ଶ୍ରିୟା ମାସି ମାସି ଭାଗବତଂ ସ୍ମରନ୍ ॥୩୪॥**

ଉ. ଶ୍ରୀ ନାରାୟଣଙ୍କ ଉପଦେଶ ଶ୍ରବଣ କରି ଶ୍ରୀହରି ବିଷ୍ଣୁ ଅତ୍ୟନ୍ତ ପ୍ରସନ୍ନ ହୋଇଗଲେ । ମାୟାଧୀନ ଜୀବର ଚରମ ପରମ ଲକ୍ଷ୍ୟ ପ୍ରାପ୍ତି ଲାଗି ସେ ନିଜେ ପ୍ରତ୍ୟେକ ମାସରେ ଥରେ ଥରେ ପାରାୟଣ କରି ସୃଷ୍ଟି ପାଳନ କରିଚାଲିଲେ । ତାଙ୍କ ଆଦେଶରେ ଅନୁପ୍ରାଣୀତ ହୋଇ ତାଙ୍କ ପତ୍ନୀ ଲକ୍ଷ୍ମୀ ଓ ଅନ୍ୟାନ୍ୟ ବୈଷ୍ଣବମାନେ ମଧ୍ୟ ମାସିକ ପାରାୟଣ କରି ମୁକ୍ତି ଲକ୍ଷ୍ୟକୁ ତୁଚ୍ଛ କରିପାରିଲେ । ଭଗବାନଙ୍କ ମୁଣ୍ଡରୁ ଚିନ୍ତାଗଲା ।

ବିଷ୍ଣୁ ଲୋକରେ ମାସିକ ପାରାୟଣ ହୁଏ ପୁଣି ଦ୍ୱିମାସିକ ପାରାୟଣ ମଧ୍ୟ ହୁଏ । ଶ୍ରୀବିଷ୍ଣୁ ବକ୍ତା ହେଲେ ମା'ଲକ୍ଷ୍ମୀ ଶ୍ରୋତା ହୁଅନ୍ତି । ପାରାୟଣ ମାସକରେ ଥରେ ସରେ । ଯେତେବେଳେ ମା'ଲକ୍ଷ୍ମୀ ଭାଗବତ ବକ୍ତା ହୁଅନ୍ତି ଓ ଶ୍ରୀହରି ବିଷ୍ଣୁ ଶ୍ରୋତା ହୁଅନ୍ତି ସେତେବେଳେ କୃଷ୍ଣପ୍ରେମ ରସର ନଦୀକୂଳ ଉଚ୍ଛୁଳି ବନ୍ୟା ଆସିଯାଏ । ପାରାୟଣ ଦୁଇ ଦୁଇ ମାସରେ ସରିଥାଏ । ଏହା ଭାଗବତଙ୍କର ଶ୍ରୀୟ ପରମ୍ପରା ବା ଶ୍ରୀ ପରମ୍ପରା ନାମରେ ଏବେ ବି ମର୍ତ୍ତ୍ୟଲୋକରେ ପ୍ରଚଳିତ ।

ପ୍ରଶ୍ନ-୬୦: ଶଙ୍କର ଭଗବାନ ତ ସହଜେ ତମୋଗୁଣ ଜାତ ଠାକୁର । ସୃଷ୍ଟି, ପାଳନ ଇତ୍ୟାଦି ବେଳେ ସେ ନିଷ୍କର୍ମା ରହୁଥାଆନ୍ତି । ତଥାପି ନିଜକୁ ଏବଂ ନିଜ ଭକ୍ତମାନଙ୍କୁ ସଂହାର କାଳରେ ତମୋଗୁଣରୁ ମୁକ୍ତ କରିବାକୁ ପୁଣି ତାଙ୍କର କେଉଁ ଶକ୍ତି ସାମର୍ଥ୍ୟ ବୃଦ୍ଧି ଲାଗି ନାରାୟଣଙ୍କୁ ପ୍ରାର୍ଥନା କଲେ ?

ରୁଦ୍ର ଉବାଚ

**ନିତ୍ୟେ ନୈମିତ୍ତିକେ ଚ-ଏବ ସଂହାରେ ପ୍ରାକୃତେ ତଥା ।**
**ଶକ୍ତୟୋ ମମ ବିଦ୍ୟନ୍ତେ ଦେବ ଦେବ ମମ ପ୍ରଭୋ ॥୩୯॥**

ଉ. ଶଙ୍କରଜୀଙ୍କ ଦ୍ୱାରା ସୃଷ୍ଟିର ଦୁଇ ପ୍ରକାର ପ୍ରଳୟ(ନୈମିତ୍ତିକ ଓ ପ୍ରାକୃତ) ହୁଏ । ଖଣ୍ଡ ପ୍ରଳୟ, ଯୁଗ, ପ୍ରଳୟ, ଚତୁର୍ଯୁଗ ବା ମହାଯୁଗ ପ୍ରଳୟ, ମନ୍ୱନ୍ତର ପ୍ରଳୟ ଓ କଳ୍ପାନ୍ତ ପ୍ରଳୟକୁ ନୈମିତ୍ତିକ ପ୍ରଳୟ କୁହାଯାଏ । ବ୍ରହ୍ମାଙ୍କର ଆୟୁଷ ଏକ ଏକ ଦିନରେ କଳ୍ପାନ୍ତ ହେଉଥାଏ । ଦିନ ଦିନ ହୋଇ ୩୬୦ଦିନରେ ଏକ ବର୍ଷ ଓ ୧୦୮ ବର୍ଷରେ ବ୍ରହ୍ମାଜୀଙ୍କର ଆୟୁଷ ସମାପ୍ତ ହୁଏ । ଶଙ୍କରଜୀ ସେତେବେଳେ ପ୍ରାକୃତ ପ୍ରଳୟ କରନ୍ତି । ପୁଣି ପ୍ରତ୍ୟେକ ଦେହ ଧାରୀ ଜୀବ ଜନ୍ମ ହେଲେ ନିଜ ଆୟୁଷ କ୍ଷୟ ପରେ ଜୀବନାନ୍ତେ ମୃତ୍ୟୁ ମୁଖରେ ପଡ଼ିଥାଏ ଯାହାର ଅନ୍ୟ ନାମ ନିତ୍ୟପ୍ରଳୟ । ଏଭଳି ନିତ୍ୟ ପ୍ରଳୟ କରିବାର ଶକ୍ତି ମଧ୍ୟ ଶଙ୍କର ଭଗବାନଙ୍କର ଯାହାକୁ ସେ ଯମରାଜାଙ୍କ ଦ୍ୱାରା କରାଇଥାନ୍ତି । କାରଣ ସେହି ଶଙ୍କର ଭଗବାନ ସ୍ୱୟଂ କାଳଙ୍କର ମଧ୍ୟ କାଳ, ମହାକାଳ ଅଟନ୍ତି ।

ପ୍ରଶ୍ନ-୬୧ : ଉପରୋକ୍ତ ତିନି ପ୍ରକାର ପ୍ରଳୟ ଶକ୍ତି ଥାଉ ଥାଉ ଭଗବାନ ଶଙ୍କର ପୁଣି ଅନ୍ୟ କେଉଁ ଶକ୍ତିର ପ୍ରାର୍ଥନା କଲେ ?

**ଆତ୍ୟନ୍ତିକେ ତୁ ସଂହାରେ ମମ ଶକ୍ତି ନ ବିଦ୍ୟତେ ।**
**ମହତ୍ ଦୁଃଖଂ ମମ ଏତତ୍ ତୁ ତେନ ତ୍ୱାଂ ପ୍ରାର୍ଥୟାମି-ଅହମ୍ ॥୪୦॥**

ଉ. ସକଳ ଜୀବ ଜଗତ ମଧ୍ୟରେ ମନୁଷ୍ୟ କେବଳ ଏକମାତ୍ର ଜୀବ ଯେ ମୃଣ୍ମୟ ଦେହରେ ଚିନ୍ମୟ ଆତ୍ମାଙ୍କର ସନ୍ଧାନ ପାଇ ନିଜକୁ ଅନୁଭବ କରିପାରେ ଯାହାକି ମହାଶକ୍ତିଶାଳୀ, ବଡ଼ ବଡ଼ ତପସ୍ୱୀ, ରାବଣ, ତାରକ, ହିରଣ୍ୟକଶିପୁ ଆଦି ରାକ୍ଷସ ବା ଦେବରାଜ ଇନ୍ଦ୍ରଙ୍କ ଦେବତା ଶରୀରରେ ମଧ୍ୟ ଅନୁଭବ କରିହୁଏ ନାହିଁ । ଏହି ସ୍ୱରୂପ ଅନୁଭବ ଅବସ୍ଥାର ଅନେକ ନାମ ଅଛି ଯଥା ଆତ୍ମଲାଭ, ଆତ୍ମାନୁଭବ, ଆତ୍ମଜ୍ଞାନ ପ୍ରାପ୍ତି, ଆତ୍ମୋଦ୍ଧାର ଓ ସ୍ୱରୂପାବଳିକା ମାୟା ବିଜୟ । ଏଠାରେ ବକ୍ତାଶ୍ରୀ ଉଦ୍ଧବଜୀ ସେହି ଅବସ୍ଥାକୁ ଆତ୍ୟନ୍ତିକ ସଂହାର ବା ଆତ୍ୟନ୍ତିକ ପ୍ରଳୟ ବୋଲି ଶବ୍ଦ ବ୍ୟବହାର କରିଛନ୍ତି । ଏଥିରେ ସାଧକ ରଜ ଓ ତମୋଗୁଣ ଜୟ କରିଥାଏ । ତଥାପି କିନ୍ତୁ ମାୟାଙ୍କର ସତ୍ତ୍ୱଗୁଣୀ ବନ୍ଧନରେ ରହେ ଯେଉଁଥିପାଇଁ ଲୋଡ଼ା ପଡ଼େ ଗୁରୁ ଗୋବିନ୍ଦଙ୍କ କୃପା ଓ ଜୀବର ସଂପୂର୍ଣ୍ଣ ଭଗବତ ଶରଣାଗତି ।

ସ୍ୱୟଂ ଶଙ୍କର ଭଗବାନଙ୍କର ମଧ୍ୟ ନାରାୟଣ ମାୟାରୁ ମୁକୁଳିବାକୁ ଏହି ଶରଣାଗତି ଦରକାର ପଡ଼େ । ପୁଣି ଶିବ ଭକ୍ତମାନଙ୍କର କଲ୍ୟାଣ ଲାଗି ଶିବଜୀଙ୍କୁ

ଏହି ଆତ୍ୟନ୍ତିକ ପ୍ରଳୟ ବା ଆତ୍ମଜ୍ଞାନ ପ୍ରାପ୍ତି ଉପାୟ ଅଧିକାର ତାଙ୍କ ପାଖରେ ନ ଥିବାରୁ ସେ ପ୍ରାର୍ଥନା କରିଛନ୍ତି ବା ନାରାୟଣଙ୍କୁ ବ୍ୟାକୁଳ ସହକାରେ ମାଗିଛନ୍ତି ।

ପ୍ରଶ୍ନ-୬୨ : ରୁଦ୍ରଦେବଙ୍କର ପ୍ରାର୍ଥନା ଶୁଣି ଶ୍ରୀମନ୍ ନାରାୟଣ ତାଙ୍କୁ କ'ଣ ଦେଇ ସନ୍ତୁଷ୍ଟ କଲେ ?

ବୃହସ୍ପତିଃ ଉବାଚ

**ଶ୍ରୀମଦ୍ଭାଗବତଂ ତସ୍ମୈ ଅପି ନାରାୟଣୋ ଦଦୌ ।**
**ସ ତୁ ସଂସେବନାତ୍ ଅସ୍ୟ ଜିଗ୍ୟେ ଚ-ଅପି ତମୋଗୁଣମ୍ ॥୪୧॥**

ଉ. ପୂର୍ବରୁ ବ୍ରହ୍ମା ଓ ବିଷ୍ଣୁଙ୍କୁ ପ୍ରଦାନ କରିଥିବା ଶ୍ରୀମଦ୍ଭାଗବତ ସେବନ ଉପଦେଶ ଶଙ୍କରଜୀଙ୍କୁ ମଧ୍ୟ ଦେଲେ(ଦଦୌ) । ସେଇ ଭାଗବତ ସେବନ ନିଜେ କରି ଅନ୍ୟକୁ କରାଇ ଶୈବଗଣଙ୍କୁ ଆତ୍ମୋଦ୍ଧାର କରାଇବା ସହିତ ଶିବଜୀ ନିଜେ ମଧ୍ୟ ତମୋଗୁଣ ଉପରେ ବିଜୟ ଲାଭ କରିପାରିଥିଲେ । ତାଙ୍କ ପାରାୟଣ ସାପ୍ତାହିକ, ମାସିକ କିମ୍ବା ଦ୍ୱିମାସିକ ନ ହୋଇ ବାର୍ଷିକ ପାରାୟଣ ହେଲା । ସେହି ଦିନଠାରୁ ପାଇଥିବା ସେଇ ଶକ୍ତି ହେତୁ ଶିବଜୀ ସଦାଶିବ ରୂପେ ପରିଚିତ ହେଲେ । ସେବେଠାରୁ ଆରମ୍ଭ ହୋଇଥିଲା ଭାଗବତଙ୍କର ଚତୁର୍ଥ ପରମ୍ପରା ଯାହାକୁ କୁହାଯାଏ ରୁଦ୍ର ପରମ୍ପରା ।

ପ୍ରଶ୍ନ-୬୩: ଶ୍ରୀମଦ୍ଭାଗବତ ମାହାତ୍ମ୍ୟ ପ୍ରସଙ୍ଗରେ ଉଦ୍ଧବଜୀ ଏ ଚାରି ପରମ୍ପରା କଥା ଗୁରୁଦେବ ବୃହସ୍ପତିଙ୍କଠାରୁ ସଶ୍ରଦ୍ଧ ଶ୍ରବଣ କରି ନିଜେ ମାସିକ ପାରାୟଣ କରିବାରେ ଲାଗିଲେ । ସେତେବେଳେ ଭାଗବତ ସେବନ କରିବାରୁ ଉଦ୍ଧବଜୀଙ୍କୁ କ'ଣ ଫଳ ମିଳିଥିଲା ?

ଉଦ୍ଧବ ଉବାଚ

**ତାବତ-ଏବ ବଭୂବ-ଅହଂ କୃଷ୍ଣସ୍ୟ ଦୟିତଃ ସଖା ।**
**କୃଷ୍ଣେନ-ଅଥ ନିଯୁକ୍ତୋଽହଂ ବ୍ରଜେ ସ୍ୱ ପ୍ରେୟସୀ ଗଣେ ॥୪୫॥**

ଉ. ଉଦ୍ଧବଜୀ ପରୀକ୍ଷିତ, ବଜ୍ରନାଭ ଆଦି ସମସ୍ତ ଶ୍ରୋତାମଣ୍ଡଳୀକୁ ସମ୍ବୋଧନ କରି କହିଲେ, ''ତାର ପ୍ରତ୍ୟକ୍ଷ ଫଳରୂପେ ମୁଁ ଠାକୁରଜୀଙ୍କର ପ୍ରିୟତମ (ଦୟିତଃ), ସଖା ହୋଇପାରିଥିଲି ତାଙ୍କ ମଥୁରାଲୀଳା ଓ ଦ୍ୱାରକାଲୀଳା ଉଭୟରେ । ବ୍ରଜଧାମକୁ ସେ ପ୍ରେମ ସନ୍ଦେଶ ଗୋପୀମାନଙ୍କ ପାଖକୁ ପଠାଇବାକୁ ମୋତେ ହିଁ ନିଯୁକ୍ତ କରିଥିଲେ । ନିଜର ଅତ୍ୟନ୍ତ ଗୂଢ଼ ବିରହ ପ୍ରେମ ଲୀଳା ସନ୍ଦେଶକୁ ମୋ ମୁଖରେ ଗୋବିନ୍ଦ ପ୍ରିୟ ଗୋପୀମାନଙ୍କୁ କୁହାଇଥିଲେ ? ପୁଣି ଏବେ ଆପଣମାନଙ୍କୁ କୁହାଉଛନ୍ତି ।''

ପ୍ରଶ୍ନ-୬୪: ଗୋପୀଜନ ବଲ୍ଲଭଙ୍କ ପ୍ରେମ ଦୂତ ଉଦ୍ଧବଙ୍କ ମୁଖରୁ ବିରହ ପ୍ରେମ ରସ ରହସ୍ୟ ପ୍ରାପ୍ତ ହୁଅନ୍ତେ (ଯଥା ମତି ଲବ୍ଧ୍ୱା) ଗୋପୀମାନଙ୍କର ବିରହ ବେଦନା ଦୂର ହୋଇଗଲା ବୋଲି (ବିରହ ବର୍ଜିତାଃ) ଶ୍ରୀମଭାଗବତରେ ବର୍ଣ୍ଣିତ ହୋଇଛି ଅବଶ୍ୟ । ତେବେ ଉଦ୍ଧବ ଜଣେ ପକ୍‌କା ଜ୍ଞାନମାର୍ଗୀ ସାଧକ ଥିଲେ । ସେ କ'ଣ ସେତେବେଳେ ବିରହ ପ୍ରେମ ରସର ଓର ଛୋର ପାଇଗଲେ କି ?

**ତଂ ଯଥାମତି ଲବ୍ଧ୍ୱା ତା ଆସନ୍ ବିରହ ବର୍ଜିତାଃ ।**
**ନାଜ୍ଞାସିଷଂ ରହସ୍ୟ ତତ୍ ଚମତ୍କାରଃ ତୁ ଲୋକିତଃ ॥୪୭॥**

ଉ. ଏ ଶ୍ଳୋକରେ ମହାଜ୍ଞାନୀ ଉଦ୍ଧବ ସିଧା ସଳଖ ସ୍ୱୀକାର କରୁଛନ୍ତି ଯେ ସେତେବେଳେ ସେ ନିଜେ ପ୍ରତ୍ୟକ୍ଷ ଭାବରେ କିଛି ରହସ୍ୟ ଅବଗତ ହୋଇପାରିନଥିଲେ(ନାଜ୍ଞାସିଷଂ) । ପରେ ସେଇ ଗୂଢ଼ ପ୍ରେମ ସନ୍ଦେଶର ଚମତ୍କାରିତାକୁ କିନ୍ତୁ ସେ ସଂପୂର୍ଣ୍ଣ ଅନୁଭବ କରିଥିଲେ । ଗୋପୀମାନଙ୍କର ସାଧନା କେବଳ ଦ୍ୱୈତ ସାଧନା ଥିଲା । ଏହି ସନ୍ଦେଶରେ ଅଦ୍ୱୈତ ରହସ୍ୟ କଥା କୁହାଯାଇଥିଲା । ଦ୍ୱୈତ ଅଦ୍ୱୈତ ଦୁଇଟିର ମିଶ୍ରଣ ହୁଅନ୍ତେ ଗୋପ ଲଳନାମାନେ କେବଳ ମିଳନ ଆନନ୍ଦ କାହିଁକି ବିରହ ଆନନ୍ଦରେ ମଧ୍ୟ ସଂପୂର୍ଣ୍ଣ ମାଲାମାଲ ହୋଇଗଲେ । ଏହାକୁ କୁହାଯାଏ କୃଷ୍ଣ ପ୍ରେମର ଚମତ୍କାର । ସେଇ ଚମତ୍କାର ଫଳପ୍ରାପ୍ତି ହେତୁ ସେ ଆଠଘଣ୍ଟା ପାଇଁ ବ୍ରଜକୁ ଯାଇ ବ୍ରଜାଙ୍ଗନାଙ୍କ ସତ୍‌ସଙ୍ଗ ଲୋଭରେ ଦୀର୍ଘ ଆଠମାସ କାଳ ରହିଥିଲେ ।

ପ୍ରଶ୍ନ-୬୫: ଜ୍ଞାନୀ ଉଦ୍ଧବଜୀଙ୍କର ଅଧା କୃଷ୍ଣପ୍ରେମ ପୁଣି କେବେ ପୂର୍ଣ୍ଣତା ପ୍ରାପ୍ତ ହେଲା ?

**ସ୍ୱଃ ବାସ୍ୟଂ ପ୍ରାର୍ଥ୍ୟ କୃଷ୍ଣଂ ଚ ବ୍ରହ୍ମା-ଆଦି-ଏଷୁ ଗତେଷୁ ମେ ।**
**ଶ୍ରୀମଭାଗବତେ କୃଷ୍ଣଃ ତତ୍ ରହସ୍ୟଂ ସ୍ୱୟଂ ଦଦୌ ॥୪୮॥**

ଉ. ସେଇତକ ରହସ୍ୟ ଜାଣିବାକୁ ଉଦ୍ଧବଙ୍କୁ ଶହେ ତେର ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା । ଦ୍ୱାପରଲୀଳା ଶେଷ ପର୍ଯ୍ୟାୟରେ ପହଞ୍ଚିଲା । ବ୍ରହ୍ମା, ଶଙ୍କର ଓ ଇନ୍ଦ୍ର ଆଦି ଦେବତାମାନେ ଠାକୁରଜୀଙ୍କୁ ଦେଖାକଲେ ଦ୍ୱାରକା ଧାମରେ । ତାଙ୍କର ଅବତାର ଉଦ୍ଦେଶ୍ୟ ପୂରଣ ହୋଇଛି ବୋଲି ଜଣାଇଦେଲେ । ତାହିଁଲେ ସେ ଗୋଲୋକ ଧାମକୁ(ସ୍ୱଃ ବାସ୍ୟଂ) ଯାଇପାରନ୍ତି ବୋଲି ନିବେଦନ କଲେ । ଭଗବାନ ତଦନୁସାରେ ବ୍ରହ୍ମଶାପ ଛଳରେ ଯଦୁବଂଶ ସଂହାର କରି ଗୋଲୋକ ପ୍ରତ୍ୟାବର୍ତ୍ତନ ଲୀଳା ଅଭିନୟ

କଲେ । ଯିବା ପୂର୍ବରୁ ସେଇ ରହସ୍ୟକୁ ଉଦ୍ଧବଙ୍କୁ ସେ ନିଜେ ପ୍ରଦାନ କଲେ (ସ୍ୱୟଂ ଦଦୌ) । ଉଦ୍ଧବଙ୍କ ଅଦ୍ୱୈତ ଜ୍ଞାନରେ ଦ୍ୱୈତ ପ୍ରେମର ପୁଟ ଚଢ଼ିଲା ।

ପ୍ରଶ୍ନ-୬୬: ଭଗବାନ କୃପା କରି ଉଦ୍ଧବଙ୍କ ଚିନ୍ମୟ ଦେହକୁ ଦୁଇ ଭାଗ କରିଦେଲେ । ଜ୍ଞାନୀମାନଙ୍କ ପାଇଁ କଠିନ ତପସ୍ୟା କରି ମୁକ୍ତି ପ୍ରାପ୍ତିର ମାର୍ଗ ଦର୍ଶାଇବାକୁ ବଦ୍ରିକା ଧାମର ନରନାରାୟଣ ପର୍ବତରେ ରଖାଇଲେ । କାରଣ ବଦ୍ରିକା ତପସ୍ୟା କ୍ଷେତ୍ର ବା ମୁକ୍ତି ସାଧନର କ୍ଷେତ୍ର । ବ୍ରଜମଣ୍ଡଳ କିନ୍ତୁ ପ୍ରେମ ଭୂମି । ସର୍ବୋଚ୍ଚ ଫଳପ୍ରାପ୍ତିର କ୍ଷେତ୍ର । ନିଷ୍କାମ କୃଷ୍ଣଭକ୍ତମାନଙ୍କ ପାଈଁ ମୁକ୍ତି ବଦଳରେ କୃଷ୍ଣପ୍ରେମ ପ୍ରାପ୍ତି ଲାଗି ଭଗବାନ କୃଷ୍ଣ ସେତେବେଳେ କି ବ୍ୟବସ୍ଥା କଲେ ?

**ତସ୍ମାତ୍ ନାରଦ କୁଣ୍ଡେଽତ୍ର ତିଷ୍ଠାମି ସ୍ୱ-ଇଚ୍ଛୟା ସଦା ।**
**କୃଷ୍ଣ ପ୍ରକାଶୋ ଭକ୍ତାନାଂ ଶ୍ରୀମଦ୍‌ଭାଗବତାତ୍ ଭବେତ୍ ।।୫୦।।**

ଉ. ଉଦ୍ଧବଙ୍କର ପ୍ରେମ ଅଂଶକୁ ଗିରିରାଜ ଗୋବର୍ଦ୍ଧନ ପର୍ବତ ତଳ ହଟିରେ ନାରଦ କୁଣ୍ଡ ଠାରେ ଅବସ୍ଥାନ କରାଇଦେଲେ । ଏଠାରେ ମଧ୍ୟ ଉଦ୍ଧବଙ୍କର ଚିନ୍ମୟ ଦେହ ତାଙ୍କ ଅନ୍ତିମ ଇଚ୍ଛାରେ ଲତା ଗୁଳ୍ମ ଆକାରରେ ସେହି ଦିନଠାରୁ ଆତ୍ମଗୋପନ କରି ନିଷ୍କାମ ଭକ୍ତ ମାନଙ୍କୁ ପ୍ରେମରସ ଦାନ କରାଇବାକୁ ସଦା ପ୍ରସ୍ତୁତ ହୋଇ ରହିଛନ୍ତି । ସତ୍‌ପାତ୍ର ଦେଖିଲେ ଦେଉଛନ୍ତି ମଧ୍ୟ ।

ପ୍ରଶ୍ନ-୬୭: କୃଷ୍ଣ ପତ୍ନୀମାନଙ୍କ ସହିତ ଦୁଇଜଣ ଯାକ ରାଜା ମଧ୍ୟ ନିଷ୍କାମ କୃଷ୍ଣ ଭକ୍ତ ଥିଲେ । ସେମାନଙ୍କୁ ଉଦ୍ଧବଜୀ ସେତେବେଳେ କିଭଳି କୃପା କଲେ ?

**ତତ୍‌ଏଷାଂ ଅପି କାର୍ଯ୍ୟ-ଅର୍ଥଂ ଶ୍ରୀମଦ୍‌ଭାଗବତଂ ତୁ-ଅହମ୍ ।**
**ପ୍ରବକ୍ଷାମି ସହାୟୋଽତ୍ର ତ୍ୱୟି-ଏବ-ଅନୁଷ୍ଠିତୋ ଭବେତ୍ ।।୫୧।।**

ଉ. ଉଦ୍ଧବଜୀ କହିଲେ, ''ହେ ରାଜା ପରୀକ୍ଷିତ, ଏଠାରେ କୃଷ୍ଣ ସଂକୀର୍ତ୍ତନ କାଳରେ ଯେତେ କୃଷ୍ଣ ଭକ୍ତ ଉପସ୍ଥିତ ଅଛନ୍ତି ସମସ୍ତଙ୍କ କୃଷ୍ଣପ୍ରେମ ଲାଳସା ସିଦ୍ଧ କରିବା ନିମିତ୍ତ ମୁଁ ଶ୍ରୀମଦ୍‌ଭାଗବତ ମାସିକ ପାରାୟଣ ସହିତ ପ୍ରବଚନ ମଧ୍ୟ କରିବି । ତୁମର ସକ୍ରିୟ ସହଯୋଗରେ ତାହା ଅନୁଷ୍ଠିତ ହୋଇପାରିବ ।''

ପ୍ରଶ୍ନ-୬୮: ଉଦ୍ଧବଜୀଙ୍କ କଥା ଶୁଣୁ ଶୁଣୁ ମହାରାଜା ପରୀକ୍ଷିତ ଯେକୌଣସି ସେବା କରିବା ଲାଗି ପ୍ରସ୍ତୁତ ବୋଲି ନିବେଦନ କଲେ । ସେତେବେଳେ ଉଦ୍ଧବଜୀ ତାଙ୍କୁ କ'ଣ କହିବାରୁ ପରୀକ୍ଷିତଙ୍କ ମନ ଦୁଃଖରେ ଭରିଗଲା ?

**ତସ୍ମାତ୍ ଦିଗ୍‌ବିଜୟଂ ଯାହି କଳି ନିଗ୍ରହଂ ଆଚର ।**
**ଅହଂ ତୁ ମାସ ମାତ୍ରେଣ ବୈଷ୍ଣବୀଂ ରୀତିଂ ଆସ୍ଥିତଃ ॥୬୬॥**

ଉ. ସେତେବେଳେ ଉଦ୍ଧବଜୀ ଖୋଲି କହିଲେ ଯେ ଭଗବାନଙ୍କ ସ୍ୱଧାମଗମନ ଦିନଠାରୁ କଳିକାଳ ସଂସାରରେ ପ୍ରବେଶ କରିସାରିଛି । କୃଷ୍ଣ କଥା କରିବାକୁ ଆରମ୍ଭ କଲେ ସେ ଅବିଳମ୍ବେ ଧାଇଁ ଆସିବ । ନାନା ବିଘ୍ନ ଘଟାଇବ । କଥା ଶ୍ରବଣ କୀର୍ତ୍ତନର ରସ ଆସ୍ୱାଦନରେ ପୂର୍ଣ୍ଣତା ଆସିବା ଅସମ୍ଭବ ହେବ । ଅତଏବ ପ୍ରତିକାର ସ୍ୱରୂପ ପରୀକ୍ଷିତଙ୍କୁ ଦିଗ୍‌ବିଜୟ ଯାତ୍ରାରେ ଯିବାକୁ ହେବ । କଳି ଛଦ୍ମ ବେଶରେ ନାନା ଉପଦ୍ରବ କରୁଛି । ତା ସମ୍ମୁଖକୁ ଯାଇ ତାକୁ ଚିହ୍ନି ତାଙ୍କୁ ଏ ସତ୍‌ସଙ୍ଗ ସ୍ଥଳକୁ ଆସିବାକୁ ପ୍ରଶ୍ରୟ ନଦେଲେ ଉଦ୍ଧବ ବୈଷ୍ଣବୀ ରୀତିରେ ମାସକ ମଧ୍ୟରେ ଶ୍ରୀଭାଗବତ ସେବନର ବ୍ୟବସ୍ଥା କରିପାରିବେ । ସମସ୍ତେ ଭାଗବତ ଶ୍ରବଣ କରିବେ ଓ ଶ୍ରୀକୃଷ୍ଣଙ୍କ ଚିନ୍ମୟ ଗୋଲକଧାମ ଦର୍ଶନ କରିବେ କେବଳ ପରୀକ୍ଷିତଙ୍କ ବ୍ୟତୀତ । ଏହା ଶ୍ରବଣ କରି ପରୀକ୍ଷିତଙ୍କ ମସ୍ତକରେ ସତେ କି ଆକାଶ ଭାଙ୍ଗି ପଡ଼ିଲା ଆଉ ।

ପ୍ରଶ୍ନ-୬୯ : ସେଭଳି ଆନନ୍ଦମୟ ଆଲୋଚନା କାଳରେ ବିଷାଦିତ ମନରେ ମହାରାଜ ପରୀକ୍ଷିତ ଉଦ୍ଧବଜୀଙ୍କୁ କି ପ୍ରଶ୍ନ କଲେ ?

ପରୀକ୍ଷିତ ଉବାଚ

**କଳିଂ ତୁ ନିଗ୍ରହିଷ୍ୟାମି ତାତ ତେ ବଚସି ସ୍ଥିତଃ ।**
**ଶ୍ରୀଭାଗବତ ସଂପ୍ରାପ୍ତିଃ କଥଂ ମମ ଭବିଷ୍ୟତି ॥୬୮॥**

ଉ. ପରୀକ୍ଷିତ ବିନମ୍ର ପ୍ରଶ୍ନ କଲେ, ''ହେ ଗୁରୁଦେବ(ତାତ), ଆପଣଙ୍କ କଥା ମାନି ମୁଁ ଅବଶ୍ୟ ଦୁଷ୍ଟ କଳିଯୁଗକୁ ଆୟତ୍ତାଧୀନ କରିବି(ନିଗ୍ରହିଷ୍ୟାମି) ତେବେ ଭାଗବତଙ୍କ ଆଶ୍ରୟ ମୁଁ କିପରି ପ୍ରାପ୍ତ ହେବି ?''

ପ୍ରଶ୍ନ-୭୦: ଭାଗବତ ଶାସ୍ତ୍ର ଶ୍ରବଣର ମୁଖ୍ୟ ଅଧିକାରୀ ପରୀକ୍ଷିତ ବୋଲି କହି ଶ୍ରୀଉଦ୍ଧବଜୀ କେଉଁ ଆଶ୍ୱାସନାମୂଳକ ଭବିଷ୍ୟବାଣୀ କଲେ ?

ଉଦ୍ଧବ ଉବାଚ

**ରାଜନ୍ ଚିନ୍ତା ତୁ ତେ କା-ଅପି ନ-ଏବ କାର୍ଯ୍ୟା କଥଞ୍ଚନ ।**
**ତବ-ଏବ ଭାଗବତ ଶାସ୍ତ୍ରେ ଯତୋ ମୁଖ୍ୟ-ଅଧିକାରିତା ॥୬୦॥**

ଉ. ଉଦ୍ଧବଜୀ କହିଲେ, ''ହେ ରାଜନ୍, ସେଥିଲାଗି ଆପଣ ଆଦୌ ଚିନ୍ତା

କରିବା ଅନୁଚିତ(ନ କାର୍ଯ୍ୟା କଥଂଚନ) । ଯେଉଁ ଭାଗବତ ଗ୍ରନ୍ଥକୁ ଅମୂଲ୍ୟ କୃଷ୍ଣପ୍ରେମ ଲୀଳା ଆଧାରରେ ମହାମୁନି ବ୍ୟାସଦେବ ରଚନା କରିଛନ୍ତି ତାହାର ଉନ୍‌ମୋଚନ ଏ ଯାବତ ହୋଇନାହିଁ । ସାରା ସଂସାର ସେ ବିଷୟରେ ଏବେ ମଧ୍ୟ ସଂପୂର୍ଣ୍ଣ ଅଜ୍ଞ । ସେହି ଭାଗବତ ଉପଦେଶ ବାଣୀ ପ୍ରଥମ ଥର ଲାଗି ଆନୁଷ୍ଠାନିକ ଭାବେ ବିରକ୍ତ ମୁନି ଶୁକଦେବ ପରମହଂସ ତୁମକୁ ହିଁ ଶ୍ରବଣ କରାଇବେ । ଆଉ ଅଳ୍ପ କେଇଦିନ ଅପେକ୍ଷା କର । ସ୍ଥାପିତ ହେବ ଭାଗବତଙ୍କର ଆହୁରି ଏକ ମହାନ ବ୍ରହ୍ମ ପରମ୍ପରା ।''

ପ୍ରଶ୍ନ-୭୧: ଶ୍ରୀଶୁକଦେବ ପରମହଂସଙ୍କୁ ଅଧ୍ୟାତ୍ମଜଗତ ଜାଣେ ସେ ଶ୍ରୀକୃଷ୍ଣଙ୍କର ଅଭିନ୍ନ ପ୍ରେମ ସ୍ୱରୂପ । ସେ ସଦା ମୌନ ରହନ୍ତି । ତାଙ୍କ ଶ୍ରୀମୁଖରୁ ଭାଗବତ ଶ୍ରବଣ କରି ରାଜା ପରୀକ୍ଷିତ କିଭଳି ଲାଭାନ୍ୱିତ ହେବେ ?

**ତେନ ପ୍ରାପ୍ସ୍ୟସି ରାଜନ୍ ତ୍ୱଂ ନିତ୍ୟଂ ଧାମ ବ୍ରଜ-ଈଶିତୁଃ ।**
**ଶ୍ରୀଭାଗବତ ସଂଚାରଃ ତତୋ ଭୁବି ଭବିଷ୍ୟତି ॥୬୪॥**

ଉ. ଉଦ୍ଧବଜୀ ପୁଣି କହିଲେ, ''ହେ ରାଜନ୍, ତାଙ୍କ ଶ୍ରୀମୁଖରୁ ଭାଗବତ ଶ୍ରବଣ କରି ଆପଣ ସେତେବେଳେ ସମସ୍ତେ ଦେଖୁ ଦେଖୁ ସେମାନଙ୍କ ସମ୍ମୁଖରେ ଏ ଭୌତିକ ମରଣଶୀଳ ଦେହ ଛାଡ଼ି ବ୍ରଜେଶ୍ୱର ଶ୍ରୀକୃଷ୍ଣଙ୍କ ଧାମପ୍ରାପ୍ତ ହେବେ(ପ୍ରାପ୍ସ୍ୟସି) । ତାହା ପରେ ପରେ ଏହି ଧରାଧାମରେ ଅନ୍ୟ ଦୁଇ ଧାରା ଶ୍ରୀ ପରମ୍ପରା ଓ ରୁଦ୍ର ପରମ୍ପରା ମାଧ୍ୟମରେ ଶ୍ରୀମଦ୍‌ଭାଗବତ ମହାପୁରାଣଙ୍କର ପ୍ରଚାର ଓ ପ୍ରସାରର(ସଂଚାର) ଶୁଭାରମ୍ଭ ହେବ ।''

ଏ କଥା ଶୁଣି ରାଜା ପରୀକ୍ଷିତ ଉଦ୍ଧବଜୀଙ୍କୁ ସଭକ୍ତିକ ପରିକ୍ରମା କରିସାରି ନମସ୍କାର କଲେ । କଳି ନିଗ୍ରହ ଉଦ୍ଦେଶ୍ୟରେ ମୃଗୟାରେ ବାହାରି ପଡ଼ିଲେ । ରାଜା ବଜ୍ରନାଭ ମଧ୍ୟ ନିଜ ପୁତ୍ର ପ୍ରତିବାହୁଙ୍କୁ ମଥୁରାର ରାଜ ସିଂହାସନରେ ବସାଇ ଦେଲେ । ପୂଜନୀୟା ମାତା, ମାତାମହୀ ଇତ୍ୟାଦିଙ୍କ ସହିତ ନିଜର କୃଷ୍ଣ ପ୍ରେମୀ ପ୍ରଜାଗଣଙ୍କୁ ନେଇ ଗିରିରାଜ ଗୋବର୍ଦ୍ଧନର କୁସୁମ ସରୋବରଠାରେ ପହଞ୍ଚିଲେ ।

ପ୍ରଶ୍ନ-୭୨: ସଂପୂର୍ଣ୍ଣ ରାଜକୀୟ ଆଡ଼ମ୍ବର ସହକାରେ ରାଜା ବଜ୍ରନାଭଙ୍କ ଆୟୋଜିତ ଭାଗବତ କଥା ସତ୍‌ସଙ୍ଗ କେତେଦିନ ଧରି ଅନୁଷ୍ଠିତ ହେଲା ?

**ଅଥ ବୃନ୍ଦାବନ ମାସଂ ଗୋବର୍ଦ୍ଧନ ସମୀପତଃ ।**
**ଶ୍ରୀଭାଗବତ-ଆସ୍ୱାଦଃ ଉଦ୍ଧବେନ ପ୍ରବର୍ତ୍ତିତଃ ॥୬୭॥**

ଉ. ଗୋବର୍ଦ୍ଧନ ପର୍ବତ ନିକଟରେ କୁସୁମ ସରୋବରଠାରେ ଏକ ମାସ ବ୍ୟାପୀ (ମାସଂ) ଏହି ଅପୂର୍ବ ରସମୟୀ କଥାକୁ ପରମ କୃଷ୍ଣଭକ୍ତ ଉଦ୍ଧବଜୀ ଆସ୍ୱାଦନ କରାଇଲେ ଉପସ୍ଥିତ ସମସ୍ତ କୃଷ୍ଣପ୍ରେମୀ ଶ୍ରୀକୃଷ୍ଣ ସ୍ୱଜନ ବର୍ଗଙ୍କୁ ।

ପ୍ରଶ୍ନ-୭୩: କୃଷ୍ଣ ନାମ, କୃଷ୍ଣରୂପ, କୃଷ୍ଣଲୀଳା, କୃଷ୍ଣଗୁଣ, କୃଷ୍ଣଧାମ, ସହିତ କୃଷ୍ଣ ଭକ୍ତି ଉତ୍ପାଦକ ଶ୍ରୀମଦ୍ଭାଗବତ ଏ ଛଅ ଚିଜ ସତ୍-ଚିତ୍-ଆନନ୍ଦମୟ ବୋଲି ବୈଦିକ ସାହିତ୍ୟ ଡିଣ୍ଡିମ ପିଟନ୍ତି । ସୁଦୀର୍ଘ ଏକ ମାସ ଧରି ଭକ୍ତ ଭାଗବତ ଉଦ୍ଧବଙ୍କ ମୁଖରେ ଗ୍ରନ୍ଥ ଭାଗବତ କୀର୍ତ୍ତନ ଫଳରେ କେଉଁ ଅଲୌକିକ ଅନୁଭବ ହେଲା ଉପସ୍ଥିତ କୃଷ୍ଣ ପ୍ରେମ ଲାଳସୀ ଶ୍ରୋତାମାନଙ୍କର ?

**ତସ୍ମିନ୍ ଆସ୍ୱାଦ୍ୟମାନେ ତୁ ସତ୍‌ଚିତ୍ ଆନନ୍ଦ ରୂପିଣୀ ।**
**ପ୍ରଚକାଶେ ହରେଃଲୀଳା ସର୍ବତଃ କୃଷ୍ଣ-ଏବ ଚ ॥୬୮॥**

ଉ. ଉପସ୍ଥିତ ସକଳ ଶ୍ରୋତାମାନଙ୍କ ମନ ଭୌତିକ ଅବସ୍ଥାରୁ ରୂପାନ୍ତରିତ ହୋଇ ଚିନ୍ମୟ ଅବସ୍ଥା ପ୍ରାପ୍ତ ହେଲା । ସମସ୍ତଙ୍କର ମନରେ ସଂସାର ଦର୍ଶନ, ଚିନ୍ତନ ବଦଳରେ କେବଳ ଚିନ୍ମୟ କୃଷ୍ଣ ଲୀଳା ଦୃଶ୍ୟମାନ ହେଲା(କୃଷ୍ଣ ଏବ-ଚ) ।

ପ୍ରଶ୍ନ-୭୪: ମନୁଷ୍ୟର ମୃଣ୍ମୟ ମନରେ ଚିନ୍ମୟ ଅନୁଭବ କ'ଣ କେବଳ ଉଦ୍ଧବଜୀଙ୍କର ହେଲା ନା ସେତେବେଳେ ଉପସ୍ଥିତ ଅନ୍ୟ କୌଣସି ଶ୍ରୋତାମାନଙ୍କ ମନରେ ମଧ୍ୟ ହେଲା ?

**ଆତ୍ମାନଂ ଚ ତତ୍ ଅନ୍ତଃସ୍ଥଂ ସର୍ବେଽପି ଦଦୃଶୁଃ ତଦା ।**
**ବଜ୍ରଃ ତୁ ଦକ୍ଷିଣ ଦୃଷ୍ଟ୍ୱା କୃଷ୍ଣପାଦ ସରୋରୁହେ ॥୬୯॥**

ଉ. ନା ନା ସେପରି ଆଦୌ ହେଲା ନାହିଁ । ସେଠାରେ ଉପସ୍ଥିତ ସମସ୍ତ(ସର୍ବେ-ଅପି) ଶ୍ରୋତାମଣ୍ଡଳୀ ନିଜ ନିଜକୁ (ଆତ୍ମାନଂ) ଠାକୁରଜୀଙ୍କ ଚିନ୍ମୟ ଦେହରେ ନିଜକୁ ଦର୍ଶନ କରି ପାରିଲେ । ରାଜା ବଜ୍ରନାଭ ନିଜକୁ ଆବିଷ୍କାର କଲେ ଶ୍ରୀକୃଷ୍ଣଙ୍କ ଦକ୍ଷିଣ ଚରଣ କମଳରେ(ପାଦ ସରୋରୁହେ) ।

ପ୍ରଶ୍ନ-୭୫: ରାଜା ବଜ୍ରନାଭଙ୍କ ମାତା ମାତାମହୀମାନେ ସବୁ ସେ ଚିନ୍ମୟ ଲୀଳାରେ କିଭଳି ନିଜ ନିଜର ଅଲୌକିକ ସ୍ଥିତି ଦର୍ଶନ କଲେ ?

**ସ୍ୱଆତ୍ମାନଂ କୃଷ୍ଣ ବୈଧୁର୍ଯ୍ୟାତ୍ ମୁକ୍ତଃତତ୍‌ଭୁବ୍ୟ ଶୋଭତେ ।**
**ତାତଃ ଚ ତତ୍‌ମାତରଃ କୃଷ୍ଣେ ରାସ ରାତ୍ରି ପ୍ରକାଶିନୀ ॥୭୦॥**

ଉ. ସକଳ କୃଷ୍ଣ ପତ୍ନୀଗଣ ସେତେବେଳେ ଦିବ୍ୟ ରାସ ରଜନୀର ରାକା(ଚନ୍ଦ୍ରକିରଣ) ମଧ୍ୟରେ (ରାତ୍ରି ପ୍ରକାଶିନୀ) ନିଜ ନିଜକୁ ଆବିଷ୍କାର କରି କୃଷ୍ଣପ୍ରେମରେ ସଂପୂର୍ଣ୍ଣ ଅଭିଭୂତ ହୋଇଗଲେ । ବଜ୍ରନାଭଙ୍କ ସହିତ ଅନ୍ୟ ସମସ୍ତ ଶ୍ରୋତାଗଣ କୃଷ୍ଣ ବିରହ ଦୁଃଖ(ବୈଧୁର୍ଯ୍ୟାତ୍)ରୁ ତତ୍‌କ୍ଷଣାତ ମୁକ୍ତ ହୋଇଗଲେ । ସମସ୍ତେ ସେହି ଚିନ୍ମୟ ଲୀଳାରେ ଶୋଭାୟମାନ ହେଲେ(ଶୋଭତେ) ।

ପ୍ରଶ୍ନ-୭୬: ସତ୍‌ସଙ୍ଗରେ ଶ୍ରୋତା ମଣ୍ଡଳୀରେ ଉପସ୍ଥିତ କୃଷ୍ଣଭକ୍ତମାନଙ୍କୁ ଗତି ମୁକ୍ତି ମଧ୍ୟରୁ କେଉଁ ଅଲୌକିକ ଚିଜ ପ୍ରାପ୍ତ ଘଟିଲା ?

**ଚନ୍ଦ୍ରେ କଳା ପ୍ରଭା ରୂପଂ ଆତ୍ମାନଂ ବୀକ୍ଷ ବିସ୍ମିତାଃ ।**
**ସ୍ୱପ୍ରେଷ୍ଠ ବିରହ ବ୍ୟାଧି ବିମୁକ୍ତା ସ୍ୱପଦଂ ଯଯୁଃ ॥୭୧॥**

ଉ. ଯେଉଁ କୃଷ୍ଣ ଭକ୍ତମାନେ କୃଷ୍ଣ ଚନ୍ଦ୍ରଙ୍କ ଦର୍ଶନ କରି(ବୀକ୍ଷ) କୃଷ୍ଣଙ୍କୁ ସଗୁଣ ସାକାର ରୂପରେ ଧ୍ୟାନ କରୁଥିଲେ ସେମାନେ ସମସ୍ତେ ପ୍ରିୟତମଙ୍କର ବିରହ ବ୍ୟାଧିରୁ ତତ୍‌କ୍ଷଣାତ ମୁକ୍ତ ହୋଇଗଲେ (ବିମୁକ୍ତାଃ) ଓ ପୁଣି ବ୍ୟାବହାରିକୀ ଲୀଳାରେ ପ୍ରବେଶ କରିଗଲେ(ସ୍ୱ ପଦଂ ଯଯୁଃ) । ଏଠାରେ ବିମୁକ୍ତ ଶବ୍ଦର ଅର୍ଥ ସାଯୁଜ୍ୟ ଆଦି ପାଞ୍ଚ ମୁକ୍ତିରୁ କୌଣସି ଗୋଟିଏକୁ ବୁଝାଏ ନାହିଁ । ସେମାନେ ସଦା ସର୍ବଦା ପାଇଁ ଜୀବନ୍ମୁକ୍ତ ହୋଇଗଲେ । ସେମାନଙ୍କର ସେଇ ସେଇ ସ୍ଥୁଳ ଦେହ ମାନ ରହିଲା ।

ପ୍ରଶ୍ନ-୭୭: ସେତେବେଳେ ଶ୍ରୀକୃଷ୍ଣଙ୍କୁ ଐଶ୍ୱର୍ଯ୍ୟମୟ ନାରାୟଣ ରୂପରେ ଧ୍ୟାନ କରୁଥିବା ଅନ୍ୟ(ଯେ ଅନ୍ୟ) ଭକ୍ତମାନଙ୍କର କି ଗତି ମୁକ୍ତି ପ୍ରାପ୍ତି ହେଲା ?

**ଯେ ଅନ୍ୟ ଚ ତତ୍ର ସର୍ବେ ନିତ୍ୟଲୀଳା-ଅନ୍ତରଂ ଗତାଃ ।**
**ବ୍ୟାବହାରିକ ଲୋକେଭ୍ୟଃ ସଦ୍ୟୋଽଦର୍ଶନଂ ଆଗତାଃ ॥୭୨॥**

ଉ. ବିପରୀତ ପକ୍ଷରେ ଯେଉଁମାନେ ଠାକୁରଜୀଙ୍କର ସଗୁଣ ନିରାକାର ପରମାତ୍ମା ରୂପରେ କିରଣ(ଆତ୍ମସ୍ୱରୂପ) ଧ୍ୟାନ କରୁଥିଲେ ସେମାନେ ତତ୍‌କ୍ଷଣାତ୍ (ସଦ୍ୟୋ) ବୃନ୍ଦାବନର ବ୍ୟାବହାରିକୀ ଲୀଳାରୁ ଅଦୃଶ୍ୟ(ଅଦର୍ଶନଂ ଆଗତାଃ) ହୋଇଗଲେ । ନିତ୍ୟ ଲୀଳାରେ ସେମାନେ ସମସ୍ତେ ସ୍ଥାନିତ ହେଲେ(ଗତଃ) । ଯୋଗମାୟାଙ୍କ ନିର୍ଦ୍ଦେଶରେ ସେମାନେ ଯେତେବେଳେ ଚାହିଁବେ ନିତ୍ୟ ଲୀଳାରୁ ଆସି ପୁଣି ବ୍ୟାବହାରିକୀ ଲୀଳାରେ ପ୍ରବେଶ କରିପାରିବେ ।

ପ୍ରଶ୍ନ-୭୮: ଶ୍ରୀ ବ୍ରଜମଣ୍ଡଳରେ ଶ୍ରୀକୃଷ୍ଣଙ୍କର ନିତ୍ୟ ଲୀଳା ଅଭକ୍ତମାନଙ୍କର ଭୌତିକ ଦୃଷ୍ଟିର ଅନ୍ତରାଳରେ ଅଦୃଶ୍ୟରେ ହୁଏ । ବ୍ୟବହାରିକ ଲୀଳା ସଦାସର୍ବଦା

ଦୃଶ୍ୟମାନ ହୋଇଥାଏ । ତେବେ ଏବେ ମଧ୍ୟ ବ୍ରଜମଣ୍ଡଳରେ ଅଦୃଶ୍ୟ ନିତ୍ୟ ଲୀଳା ହେଉଛି ବୋଲି କି ପ୍ରମାଣ ମିଳେ କି ?

**ଗୋବର୍ଦ୍ଧନ ନିକୁଞ୍ଜେଷୁ ଗୋଷ୍ଠୁ ବୃନ୍ଦାବନ-ଆଦିଷୁ ।**
**ନିତ୍ୟଂ କୃଷ୍ଣେନୁମୋଦନ୍ତେ ଦୃଶ୍ୟନ୍ତେ ପ୍ରେମ୍ ତତ୍ ପରୈଃ ॥୭୩॥**

ଉ. ଶ୍ରୀରାମକୃଷ୍ଣ ପରମହଂସ, ମୀରାବାଈ, ସନ୍ଥ ତୁକାରାମ, ଶ୍ରୀମ.ନ୍ ଗୌରାଙ୍ଗ ମହାପ୍ରଭୁ, ନିତ୍ୟାନନ୍ଦ ପ୍ରଭୁ, ଅଦ୍ୱୈତ, ଗଦାଧର ଆଦି ଷଡ଼ଗୋସ୍ୱାମୀ ଆଦି ଅନେକ ନିଷ୍କାମ କୃଷ୍ଣପ୍ରେମୀ ଭକ୍ତଗଣ (ପ୍ରେମ ତତ୍ ପରୈଃ) ସେ ନିତ୍ୟ ଲୀଳା ଦର୍ଶନ କରିଥିବାର ପ୍ରମାଣ ଦେଇଯାଉଛନ୍ତି । ଗୋବର୍ଦ୍ଧନ ପର୍ବତରେ, ଗହ୍ୱର ବନର ନିଘଞ୍ଚ ଲତା ଗହଳରେ (ନିକୁଞ୍ଜେଷୁ), କଦମ୍ବକୀ ଝାଡ଼ିରେ, ଗୋ ଗୋଷ୍ଠରେ, ବୃନ୍ଦାବନର ଅନେକାନେକ ଲୀଳାସ୍ଥଳୀ ମାନଙ୍କରେ ସେଇ ମୋହନ ମୁରଲୀର ସ୍ୱନ ଏବେ ମଧ୍ୟ ନିନାଦିତ ହେଉଛି । ସେବାକୁଂଜ ଓ ନିଧୁବନ ଇତ୍ୟାଦି ଗୁପ୍ତ ଉଦ୍ୟାନ ମାନଙ୍କୁ ଦିନବେଳେ ଖୋଲା ରଖାଯାଇ ରାତିସାରା ଏକାଧିକ ତାଲା ପକାଇ ବନ୍ଦ ରଖାଯାଉଛି କାରଣ ଅତୀତରେ ଅନେକ ଅନଧିକାରୀ କୃଷ୍ଣଦ୍ୱେଷୀ ଲୋକ ସେ ଦୃଶ୍ୟ ସବୁକୁ ଦେଖିବାକୁ ଚେଷ୍ଟା କରି ନିଜ ନିଜ ପୈତୃକ ପ୍ରାଣଟିମାନ ହରାଇଛନ୍ତି । କେବଳ ସେଇଥିପାଇଁ ମୋଗଲ ଶାସନ ଓ ଇଂରେଜ ଶାସନ କାଳରୁ ବର୍ତ୍ତମାନ ପର୍ଯ୍ୟନ୍ତ ଏହି ରାତିରେ ତାଲା ପକାଇବା ପ୍ରଥା ଚାଲୁ ରହିଛି । ଏହାଠାରୁ ଆଉ ବଡ଼ ପ୍ରମାଣ କାହାକୁ କିଏ ଅବା ଦେଇପାରିବ ?

# ଅଥ ଚତୁର୍ଥ ଅଧ୍ୟାୟଃ

## (ଶ୍ରୀମଦ୍‌ଭାଗବତଙ୍କର ସ୍ୱରୂପ, ଶ୍ରୋତା-ବକ୍ତାଙ୍କ ଲକ୍ଷଣ, ଶ୍ରବଣ ବିଧି ବର୍ଣ୍ଣନ)

ପ୍ରଶ୍ନ-୭୯. ବକ୍ତାଶ୍ରେଷ୍ଠ ଉଦ୍ଧବଜୀ ଏ ପର୍ଯ୍ୟନ୍ତ ବ୍ରଜଧାମର ମାହାତ୍ମ୍ୟ ବର୍ଣ୍ଣନ କରୁଥିଲେ । ଯେଉଁ ଅଲୌକିକ ଗ୍ରନ୍ଥ ଭାଗବତଙ୍କୁ ଶ୍ରବଣ କରାଇ ଏତେ ସଂଖ୍ୟକ କୃଷ୍ଣ ଭକ୍ତଙ୍କର ଜନ୍ମ-ଜନ୍ମାନ୍ତରର କାମନା ପୂରଣ ହେଲା । ଶୌନକାଦି ମୁନିମାନେ ସେହି ଭାଗବତ ଗ୍ରନ୍ଥଙ୍କର ସ୍ୱରୂପ ପଚାରନ୍ତେ କି ଉତ୍ତର ଦେଲେ ଉଦ୍ଧବଜୀ ସେତେବେଳେ ?

**ଶ୍ରୀକୃଷ୍ଣ-ଆସକ୍ତ ଭକ୍ତାନାଂ ତତ୍ ମାଧୁର୍ଯ୍ୟ ପ୍ରକାଶକମ୍ ।**
**ସମୁଜ୍ଜୃମ୍ଭତି ଯତ୍‌ବାକ୍ୟଂ ବିଧି ଭାଗବତଂ ତତ୍ ॥୪॥**

ଉ. ଶ୍ରୀମଦ୍ଭାଗବତଙ୍କୁ ସଚ୍ଚିଦାନନ୍ଦମୟ ଶ୍ରୀକୃଷ୍ଣଙ୍କର ଅଭିନ୍ନ ସ୍ୱରୂପ କୁହାଯାଏ । ଗୀତା ଶାସ୍ତ୍ର ଭଗବାନଙ୍କର ବାଣୀ ଅବତାର ହେଲେ ଭାଗବତ ତାଙ୍କର କଥା ଅବତାର । ସୁତରାଂ ଭାଗବତ ଗ୍ରନ୍ଥ ମଧ୍ୟ ସଚ୍ଚିଦାନନ୍ଦମୟ ଅଟନ୍ତି । ଜଣେ ରସିକ କୃଷ୍ଣଭକ୍ତ ବକ୍ତା ହିସାବରେ କୃଷ୍ଣରସ ପିପାସୁ କୃଷ୍ଣ ଭକ୍ତମାନଙ୍କୁ ଶ୍ରୀକୃଷ୍ଣଙ୍କର ରସମୟୀ କଥା ଯେଉଁ ଭାଷାରେ ପ୍ରକାଶ କରି ଯାଆନ୍ତି ତାକୁ ହିଁ ଭାଗବତ ବୋଲି କହିବା(ବିଦ୍ଧିଭାଗବତଂ ତତ୍) । ତାହା କେଉଁ ଗ୍ରନ୍ଥରେ ଲେଖା ହୋଇ ଥାଉ କି ନ ଥାଉ । ସୁତରାଂ ଭାଗବତଙ୍କୁ କେବଳ ଚତୁଃଶ୍ଳୋକୀ, ସପ୍ତଶ୍ଳୋକୀ ବା ଏକଶତ ଅଠାବନ ଶ୍ଳୋକୀ ବା ୧୪,୧୦୦ଶ୍ଳୋକୀ ଭାଗବତଙ୍କୁ କହିବା ପ୍ରମାଦପୂର୍ଣ୍ଣ ମନ୍ତବ୍ୟ ଅଟେ ।

ପ୍ରଶ୍ନ-୮୦: କଳିହତ ମାନବ ପାଇଁ ଭାଗବତ କେଉଁ ଅଲୌକିକ ଉପକାର କରିପାରନ୍ତି ?

**ଜ୍ଞାନ ବିଜ୍ଞାନ ଭକ୍ତି-ଅଙ୍ଗ ଚତୁଷ୍ଟୟ ପରଂ ବଚଃ ।**
**ମାୟା ମର୍ଦ୍ଦନ ଦକ୍ଷଂ ଚ ବିଦ୍ଧି ଭାଗବତଂ ଚ ତତ୍ ॥୫॥**

ଉ. ଅଧ୍ୟାତ୍ମ ଶାସ୍ତ୍ରରେ ଜୀବ ନିଜର ସ୍ୱରୂପ ଜାଣିବାକୁ ଜ୍ଞାନ କୁହାଯାଏ । ଜଣେ ସଦ୍‌ଗୁରୁଙ୍କ ଶରଣାଗତ ହୋଇ ପରବ୍ରହ୍ମଙ୍କ ସ୍ୱରୂପ ଜାଣିବାକୁ ବିଜ୍ଞାନ ବା ଭକ୍ତି ବୋଲି କୁହାଯାଏ । ଭକ୍ତି ମାର୍ଗରେ ୧. ଶ୍ରବଣ, ୨. କୀର୍ତ୍ତନ, ୩. ମନନ ଓ ୪.ନିଦିଧ୍ୟାସନ । ଭକ୍ତି ସାଧନର ଏହି ସୋପାନକୁ ଭକ୍ତି-ଅଙ୍ଗ ଚତୁଷ୍ଟୟ ବୋଲି କୁହାଯାଏ । ଭାଗବତ ଗ୍ରନ୍ଥ ଜ୍ଞାନ, ବିଜ୍ଞାନ, ସାଧନ ଚତୁଷ୍ଟୟ ଶିକ୍ଷାଦାନ ସହିତ ଜୀବର ମାୟା ପଟଳ ହଟାଇ ପାରନ୍ତି(ମାୟା ମର୍ଦ୍ଦନଂ ଦକ୍ଷଂ) । ଏ ଭାଗବତ କଥା ପୁଣି ଏତେ ସରଳ ସହଜ ଉପାୟ ଯେ ଅପାଠୁଆ, ସଂସ୍କାର ଶୂନ୍ୟ, ପତିତ, ସ୍ତ୍ରୀ, ଶୂଦ୍ର ଇତ୍ୟାଦିଙ୍କୁ ଭକ୍ତି, ମୁକ୍ତି ଓ ଜୀବନ୍ମୁକ୍ତିକୁ ମଧ୍ୟ କରତଳଗତ କରାଇପାରନ୍ତି ଯାହା କି ଅନ୍ୟ କୌଣସି ଶାସ୍ତ୍ର ପୁରାଣ ଆଦି ଦ୍ୱାରା ସମ୍ଭବ ହୁଏ ନାହିଁ ।

ପ୍ରଶ୍ନ-୮୧: ମହାମୁନି ବ୍ୟାସଙ୍କ ୧୪,୧୦୦ଶ୍ଳୋକ ଓ ୧୮,୦୦୦ମନ୍ତ୍ର ବିଶିଷ୍ଟ ଗ୍ରନ୍ଥକୁ କେବଳ ଶ୍ରୀମଦ୍ଭାଗବତ କୁହାଯିବ କି ?

**ପ୍ରମାଣଂ ତସ୍ୟ କୋ ବେଦ ହି-ଅନନ୍ତସ୍ୟ-ଅକ୍ଷର-ଆତ୍ମନଃ ।**
**ବ୍ରହ୍ମଣେ ହରିଣା ତତ୍ ଦିକ୍ ଚତୁଃଶ୍ଳୋକ୍ୟା ପ୍ରଦର୍ଶିତା ॥୬॥**

ଉ. ନା ନା ତାହା କଦାପି ସତ୍ୟ ନୁହେଁ । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ଅଧିକାରୀ ପୁରୁଷ ଦେଖି ସ୍ୱୟଂ ନାରାୟଣ(ହରିଣା) କେବଳ ଚାରିଗୋଟି ଶ୍ଳୋକ ଶୁଣାଇ ଦିଗ୍‌ଦର୍ଶନ

(ଦିକ୍ ପ୍ରଦର୍ଶିତା) ଦେଇଥିଲେ । ବ୍ରହ୍ମାଜୀ ନାରଦଙ୍କୁ ପୁଣି ୭ଶ୍ଳୋକରେ ଏହାକୁ କହିଥିଲେ । ନାରଦ ଆହୁରି ବିସ୍ତାର କରି ବ୍ୟାସଦେବଙ୍କୁ ୧୫୮ଶ୍ଳୋକରେ କହିଥିଲେ ଯାହାର ପ୍ରମାଣ ବ୍ୟାସଦେବ ରଚିତ ଭାଗବତରେ ଦ୍ୱିତୀୟ ସ୍କନ୍ଦରେ ଉଲ୍ଲେଖ ହୋଇଛି । ସେଇ ବ୍ୟାସଦେବ ଭାଗବତ ଗ୍ରନ୍ଥକୁ ଆହୁରି ଅଧିକ ବିସ୍ତାର କରି ଆଜି ଉପଲବ୍ଧ ଭାଗବତ ଗ୍ରନ୍ଥ ଆମ ହାତରେ ପହଞ୍ଚାଇଛନ୍ତି ।

ପ୍ରଶ୍ନ-୮୨: ଚତୁଃଶ୍ଳୋକୀ ହୁଅନ୍ତୁ ବା ସପ୍ତଶ୍ଳୋକୀ ଭାଗବତ ହୁଅନ୍ତ ସେ କେବଳ ବ୍ରହ୍ମା, ବିଷ୍ଣୁ, ଶଙ୍କରଙ୍କ ଭଳି ବହୁତ ଉଚ୍ଚ ଅଧିକାରୀ ବ୍ୟକ୍ତି ବିଶେଷଙ୍କ ପାଇଁ ଉଦ୍ଦିଷ୍ଟ । ଅଳ୍ପ ବା ସୀମିତ ବୁଦ୍ଧି(ମିତ ବୁଦ୍ଧି-ଆଦି) ମନୁଷ୍ୟ, ଅସୁର, ଦେବତାମାନଙ୍କ ଲାଗି ହିତକର(ହିତାୟ) ବା କଲ୍ୟାଣକାରୀ କେଉଁ ଭାଗବତ ?

**ମିତ ବୁଦ୍ଧି-ଆଦି ବୃତ୍ତୀନାଂ ମନୁଷ୍ୟାଣାଂ ହିତାୟ ଚ ।**
**ପରୀକ୍ଷିତ୍ ଶୁକ ସଂବାଦୋ ଯୋଽସୌ ବ୍ୟାସେନ କୀର୍ତ୍ତିତଃ ॥୮॥**

ଉ. ମହାମୁନି ବେଦବ୍ୟାସଙ୍କ ସଂକଳିତ ଶୁକପରୀକ୍ଷିତ ସମ୍ବାଦରୂପୀ ୧୪,୧୦୦ଶ୍ଳୋକ ବା ୧୮,୦୦୦ମନ୍ତ୍ରାତ୍ମକ ଭାଗବତ କିନ୍ତୁ କଳିଯୁଗରେ କାଳ କୁମ୍ଭୀରକୁ ଡରୁଥିବା (ନିଜକୁ ଆତ୍ମା ନ ଭାବି ଦେହ ଭାବୁଥିବା) ଲୋକଙ୍କ କଲ୍ୟାଣକାରୀ ଅଟେ ।

ପ୍ରଶ୍ନ-୮୩: ଏହି ମହାଗ୍ରନ୍ଥ ଶ୍ରବଣର ଉଚ୍ଚ ଅଧିକାରୀ(ପ୍ରବର) ଓ ନିମ୍ନ ଅଧିକାରୀ(ଅବର) ଶ୍ରୋତା ପୁଣି କିଏ କିଏ ?

**ପ୍ରବରାଃ ଚାତକୋ ହଂସଃ ଶୁକ ମୀନ-ଆଦୟଃ ତଥା ।**
**ଅବରା ବୃକ ଭୂରଣ୍ଡ ବୃଷୋ ଉଷ୍ଟ୍ର-ଆଦ୍ୟାଃ ପ୍ରକୀର୍ତ୍ତିତାଃ ॥୧୧॥**

ଉ. ଉଚ୍ଚ କକ୍ଷର ଶ୍ରୋତା ଚାତକ, ହଂସ, ଶୁକ ଓ ମୀନ ଜାତିର ବୋଲି କୁହାଯାଏ । ନିମ୍ନ କକ୍ଷର ଭାଗବତ ଶ୍ରୋତାରେ ବୃକ, ଭୂରଣ୍ଡ, ବୃଷ ଏବଂ ଓଟ ଜାତିର ବୋଲି ଗଣାଯାଏ ।

ପ୍ରଶ୍ନ-୮୪: ସଂସାରରେ ଦେଖାଯାଏ ପକ୍ଷୀମାନଙ୍କ ମଧ୍ୟରେ ଚାତକ ପକ୍ଷୀର ଏକ ବିଶେଷ ଗୁଣଥାଏ । ଜଳ ନଦୀ, ପୁଷ୍କରିଣୀ, କୂପ, ହ୍ରଦ ଓ ସମୁଦ୍ରରେ ମିଳୁଥିଲେ ମଧ୍ୟ ସେ ଜଳକୁ ଚାତକ ଚଢ଼େଇ ପିଇ ନଥାଏ । କେବଳ ସ୍ୱାତୀ ନକ୍ଷତ୍ରରେ ମେଘରୁ ବର୍ଷୁଥିବା ନିର୍ମଳ, ପବିତ୍ର ଜଳକୁ ପାନ କରି ତୃଷା ନିବାରଣ କରେ । ସେ ଚାତକ ପକ୍ଷୀ ସହିତ ଭାଗବତଙ୍କର କି ସମ୍ବନ୍ଧ ?

**ଅଖିଳ ଉପେକ୍ଷୟା ଯଃ ତୁ   କୃଷ୍ଣ ଶାସ୍ତ୍ର ଶ୍ରୁତୌ ବ୍ରତୀ ।**
**ସ ଚାତକୋ ଯଥା ଅମ୍ଭୋଦ   ମୁକ୍ତେ ପାଥସି ଚାତକ ॥୧୨॥**

ଉ. ସଂସାରରେ ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, କାମଶାସ୍ତ୍ର, ମୋକ୍ଷଶାସ୍ତ୍ର ନାମରେ ଅନେକ ଗ୍ରନ୍ଥ ବକ୍ତାମୁଖରୁ ଶୁଣିବାକୁ ମିଳେ ଅବଶ୍ୟ । ଯେଉଁ ଶ୍ରୋତା ଏ ସବୁ ଆଦୌ ଶ୍ରବଣ ନକରି କେବଳ କୃଷ୍ଣ, କୃଷ୍ଣଭକ୍ତି, କୃଷ୍ଣ ଲୀଳା, କୃଷ୍ଣ ଧାମ ଓ କୃଷ୍ଣ ରୂପ, ଗୁଣ ସମ୍ବନ୍ଧୀୟ କଥା ଶୁଣିବାକୁ ଆଗ୍ରହୀ ହୁଏ ଓ ଶ୍ରବଣ କରେ ସେ ଭଳି ବିଲକ୍ଷଣ ଶ୍ରୋତାଙ୍କୁ ଚାତକ ଶ୍ରୋତା ଜାତିର ବୋଲି କୁହାଯାଏ ।

ପ୍ରଶ୍ନ-୮୫: ପାଣିରେ ପହଁରୁଥିବା ପକ୍ଷୀମାନଙ୍କ ମଧ୍ୟରେ ହଂସ ଭଗବାନଙ୍କ ସୃଷ୍ଟିରେ ଏକ ଅତୀବ ବିଚିତ୍ର ପ୍ରାଣୀ । ସୃଷ୍ଟି କର୍ତ୍ତା ବ୍ରହ୍ମା ତାକୁ ଏଭଳି ଏକ ଶକ୍ତି ଦେଇଛନ୍ତି ଯେ ସେ ଜଳ ମିଶ୍ରିତ କ୍ଷୀର ମଧ୍ୟରୁ ଜଳ ତକ ତ୍ୟାଗ କରି କ୍ଷୀରତକ ପାନ କରିପାରେ । ଏହି ହଂସ ସହିତ ଭାଗବତ ଶ୍ରୋତାଙ୍କର କି ସଂପର୍କ ?

**ହଂସ ସ୍ୟାତ୍ ସାରଂ ଆଦତ୍ତେ   ଯଃ ଶ୍ରୋତା ବିବିଧାତ୍ ଶ୍ରୁତାତ୍ ।**
**ଦୁଗ୍ଧେନ-ଐକ୍ୟଂ ଗତାତ୍ ତୋୟାତ୍   ଯଥା ହଂସୋଽମଳଂ ପୟଃ ॥୧୩॥**

ଉ. କୌଣସି ପ୍ରବଚକ କୃଷ୍ଣପ୍ରେମ କଥାକୁ ଭେଜାଲ କରି ସେଥିରେ ଧର୍ମ, ଅର୍ଥ, କାମ, ମୋକ୍ଷ ଇତ୍ୟାଦି କପଟତା ମିଶ୍ରଣ କରି ପ୍ରବଚନ କରୁଥିଲେ ଯେଉଁ ବକ୍ତା ଏହା ଜାଣିପାରନ୍ତି ଏବଂ ବକ୍ତାକୁ ମୁଣ୍ଡିଆଟିଏ ମାରି ସେଠାରୁ ପଳାଇ ଆସନ୍ତି ସେ ହଂସ ଶ୍ରୋତାରେ ଗଣାଯାନ୍ତି ।

ପ୍ରଶ୍ନ-୮୬: ପକ୍ଷୀ ଜଗତରେ ଶୁଆ ଏଭଳି ଏକ ପକ୍ଷୀ ଯେ ଭଗବାନଙ୍କର ରାମ, କୃଷ୍ଣ, ରାଧା ଇତ୍ୟାଦି ସୁନ୍ଦର ଓ ମଧୁର ନାମ ଗୁଡ଼ିକ ସେ ନିଜେ ଶ୍ରବଣ କରି ବଢେଇଥିବା ଲୋକକୁ ଏବଂ ଅନ୍ୟମାନଙ୍କୁ ମଧ୍ୟ ନିଜ କଣ୍ଠରେ ଶୁଣାଇ ଦେଇପାରେ । ଏଭଳି ଶୁକପକ୍ଷୀ ସହିତ କେଉଁ ଭାଗବତ ଶ୍ରୋତାଙ୍କୁ ତୁଳନା କରାଯାଏ ?

**ଶୁକଃ ସୁଷ୍ଠୁ ମିତଂ ବକ୍ତି   ବ୍ୟାସଂ ଶ୍ରୋତୃନ୍ ଚ ହର୍ଷୟନ୍ ।**
**ସୁପାଠିତଃ ଶୁକୋ ଯଦ୍‌ବତ୍   ଶିକ୍ଷକଂ ପାର୍ଶ୍ୱଗାନ୍ ଅପି ॥୧୪॥**

ଉ. ଭାଗବତ ଶ୍ରୋତାମାନଙ୍କ ମଧ୍ୟରେ ଅନେକ ଶ୍ରୋତା ଥାଆନ୍ତି ଯେଉଁମାନେ ରହସ୍ୟ ବା ତତ୍ତ୍ୱଟିକୁ ନିଜେ ବୁଝିସାରି ବକ୍ତା କିମ୍ବା ଅନ୍ୟ ଶ୍ରୋତାମାନଙ୍କୁ ମଧ୍ୟ ବୁଝେଇ ଦେବାରେ ସମର୍ଥ । ସେମାନେ ଏହି ଶୁକପକ୍ଷୀ ଶ୍ରେଣୀୟ ଶ୍ରୋତା ।

ପ୍ରଶ୍ନ-୮୭: ମହାତ୍ମାମାନେ ଭାଗବତଙ୍କର ୫ମ ସ୍କନ୍ଧରେ ସ୍ଥୂଳ ଆଶ୍ରୟର ବର୍ଣ୍ଣନା କରି ଆମ ଦୃଶ୍ୟମାନ ଲବଣ ସମୁଦ୍ର ବ୍ୟତୀତ କ୍ଷୀର ସମୁଦ୍ର, ଦଧି ସମୁଦ୍ର, ସୁରା ସମୁଦ୍ର ଇତ୍ୟାଦି ପ୍ଲକ୍ଷ, ଶାଲ୍ମଳୀ, କ୍ରୌଞ୍ଚ ଆଦି ଦ୍ୱୀପମାନଙ୍କୁ ବେଢ଼ି ରହିଥିବା କୁହନ୍ତି । ସେ ସବୁ ଅବଶ୍ୟ ମନୁଷ୍ୟର ଚର୍ମ ଚକ୍ଷୁରେ ଅଦୃଶ୍ୟ । ସେହି କ୍ଷୀର ସମୁଦ୍ରରେ ଯେଉଁ ମୀନ-ମାଛମାନେ ବାସ କରନ୍ତି ସେମାନେ ସେହି କ୍ଷୀର ପାନ କଲାବେଳେ ଏତେ ଆନନ୍ଦିତ ହୁଅନ୍ତି ଯେ ସେମାନଙ୍କର ଚକ୍ଷୁର ପଲକପାତ(ଅନିମେଷୋ) ହୁଏ ନାହିଁ । ସେହି ମୀନ-ମାଛଙ୍କ ସହିତ କେଉଁ ଭାଗବତ ଶ୍ରୋତା ଉପମାର ଯୋଗ୍ୟ ?

**ଶଢଂ ନ-ଅନିମିଷୋ ଜାତୁ କରୋତି-ଆସ୍ୱାଦୟନ୍ ରସମ୍ ।**
**ଶ୍ରୋତା ସ୍ନିଗ୍ଧୋ ଭବେତ୍ ମୀନୋ ମୀନଃ କ୍ଷୀରନିଧୌ ଯଥା ॥୧୫॥**

ଉ. ନିଜ ମନ, ମୁନ, ଚଇତନ ଦେଇ ଶ୍ରୀମଦ୍ଭାଗବତ ପ୍ରବଚନର ରସ ଆସ୍ୱାଦନ କାଳରେ ଯେଉଁ ଶ୍ରୋତା ଆଦୌ (ଜାତୁ) କିଛି କଥା ନ କହି(ଶଢଂ ନ) ସେହି ଶ୍ରୋତା ବ୍ୟାସ ଆସନସ୍ଥିତ ବକ୍ତାଙ୍କ ମୁଖ, ଅଙ୍ଗ, ଭଙ୍ଗି, ହସ୍ତଚାଳନା, ନେତ୍ରାନ୍ତ ସଂକେତ ଇତ୍ୟାଦି ଭାବକୁ ବୁଝିବାରେ ସଂପୂର୍ଣ୍ଣ ମଗ୍ନ ହୋଇଯାଆନ୍ତି(ସ୍ନିଗ୍ଧୋ) ତାଙ୍କୁ ମୀନ ଶ୍ରେଣୀୟ ଶ୍ରୋତା କୁହାଯାଇପାରେ ।

ପ୍ରଶ୍ନ-୮୮: ଚାରି ପ୍ରକାର ପ୍ରବର ଶ୍ରୋତା ଲକ୍ଷଣ ବର୍ଣ୍ଣନା କରିସାରି ଉଦ୍ଧବଜୀ ପ୍ରଥମ ପ୍ରକାର ଅବର ଶ୍ରୋତାକୁ ବୃକ ସହିତ କାହିଁକି ତୁଳନା କଲେ ?

**ଯଃ ତୁଦନ୍ ରସିକାନ୍ ଶ୍ରୋତୃନ୍ ବିରୌତି-ଅଜ୍ଞୋ ବୃକୋ ହି ସଃ ।**
**ବେଣୁ ସ୍ୱନ ରସ-ଆସକ୍ତାନ୍ ବୃକୋଽରଣ୍ୟେ ମୃଗାନ୍ ଯଥା ॥୧॥**

ଉ. ସଂସ୍କୃତ ସାହିତ୍ୟରେ ବୃକ କହିଲେ ହେଟାବାଘକୁ ବୁଝାଏ । ଅରଣ୍ୟରେ ଶିକାରୀର ବେଣୁ ସ୍ୱନ ଶୁଣି ମୃଗ, ମଧୁର ସଙ୍ଗୀତ ପ୍ରେମରେ ଆତ୍ମହରା ହୋଇଯାଇଥାଏ । ସେତିକି ବେଳେ ହେଟା ବାଘଟିଏ ଭୟଙ୍କର ଗର୍ଜନ କଲେ ସେ ଡ଼ରିଯାଏ । ତାର ଧ୍ୟାନ ଭାଙ୍ଗିଯାଏ । ସେହିଭଳି ସତ୍‌ସଙ୍ଗ ମଧ୍ୟରେ କିଛି ଶ୍ରୋତା ଅଯଥା ଏଣୁ ତେଣୁ କଥା ବଡ଼ ପାଟିରେ କହି ଧ୍ୟାନ ମଗ୍ନ ବକ୍ତା କିମ୍ବା ଶ୍ରୋତାମାନଙ୍କର ପ୍ରେମ ରସ ଆସ୍ୱାଦନରେ ବାଧା ବା ବିଘ୍ନ ଉପୁଯାନ୍ତି ସେମାନେ ଏହି ବୃକ୍ ଶ୍ରେଣୀୟ ଶ୍ରୋତା । ସେମାନେ ନିଜେ ରସ ଆସ୍ୱାଦନ କରିପାରନ୍ତି ନାହିଁ କି ଅନ୍ୟମାନଙ୍କୁ ମଧ କରାଇ ଦିଅନ୍ତି ନାହିଁ । ଏଣୁ ଏମାନେ ନିଶ୍ଚୟ ଅବର ବା ନିକୃଷ୍ଟ ଶ୍ରୋତା ।

ପ୍ରଶ୍ନ-୮୯: ଭାଗବତ ଶୁଣନ୍ତି ଅନେକ ପ୍ରକାରର ଲୋକ । କିଛି ଶ୍ରୋତା ଉପଦେଶ ଶୁଣନ୍ତି ଅବଶ୍ୟ ବକ୍ତାଶ୍ରୀ ମୁଖରୁ ମନ ଧ୍ୟାନ ଦେଇ । ସେମାନେ ସେ ସବୁକୁ ନିଜେ ପାଳନ ନକରି କେବଳ ଅନ୍ୟକୁ ଉପଦେଶ ଦେବାରେ (ଶିକ୍ଷୟେତ୍ ଅନ୍ୟାନ୍) ଲାଗନ୍ତି । ସୁତରାଂ ସେମାନେ ଭାଗବତ ଅମୃତ ପ୍ରାପ୍ତିର କିଛି ବି ଲାଭ ଉଠାଇ ପାରନ୍ତି ନାହିଁ । ସେମାନଙ୍କୁ କେଉଁ ପଶୁ କିମ୍ବା ପକ୍ଷୀ(ବିହଙ୍ଗମଃ) ସହ ତୁଳନା କରାଯାଏ ?

**ଭୂରୁଣ୍ଡଃ ଶିକ୍ଷୟେତ୍ ଅନ୍ୟାନ୍ ଶ୍ରୁତ୍ୱା ନ ସ୍ୱୟଂ ଆଚରେତ୍ ।**
**ଯଥା ହିମବତଃ ଶୃଙ୍ଗେ ଭୁରୁଣ୍ଡ-ଆଖ୍ୟୋ ବିହଙ୍ଗମଃ ॥୧୭॥**

ଉ. ସେମାନଙ୍କ ଭାଗବତ ଶ୍ରବଣ ଭୂରଣ୍ଡ ନାମକ(ଆଖ୍ୟୋ) ପକ୍ଷୀର ଆଚରଣ ବୋଲି କୁହାଯାଇପାରେ । ଏହି ପକ୍ଷୀ ଭାରତର ହିମାଳୟ ପର୍ବତ ସ୍ଥିତ(ହିମବତଃ) ଉଚ୍ଚ ଶୃଙ୍ଗମାନଙ୍କରେ ଘଞ୍ଚ ଅରଣ୍ୟ ମଧ୍ୟରେ ବସବାସ କରନ୍ତି । ଅରଣ୍ୟ ମଧ୍ୟସ୍ଥିତ ଅନ୍ୟାନ୍ୟ ପକ୍ଷୀମାନଙ୍କ ରାବ ବା କାକଳି ନିଜେ ଶୁଣେ ପରେ ପରେ ଅନ୍ୟକୁ ମଧ୍ୟ ଶୁଣାଏ । ତାହା କେବଳ ସେ ପକ୍ଷୀର ନିଛକ ଅନୁକରଣ ମାତ୍ର କିଛି ସାର ଗ୍ରହଣର ଅଭିଳାଷ ନଥାଏ ସେଥିରେ ।

ପ୍ରଶ୍ନ-୯୦: ରାମାୟଣରେ, ମହାଭାରତ ଆଦି କଥାବସ୍ତୁ ପ୍ରସଙ୍ଗରେ ଅନେକ ପ୍ରକାର ଆଲୋଚନା ହୁଏ । ଦୃଷ୍ଟାନ୍ତରେ ଶିକ୍ଷଣୀୟ ରାମ କଥା ଓ ଉପକ୍ଷେଣୀୟ ରାବଣ କଥା ମଧ୍ୟ କୁହାଯାଏ । କିଛି ମନ୍ଦବୁଦ୍ଧି ବା ଅଳ୍ପବୁଦ୍ଧିଆ ଲୋକ ଏହାର ପାର୍ଥକ୍ୟ ବୁଝିବାରେ ଅସମର୍ଥ । ଆଜି ମଧ୍ୟ ଦକ୍ଷିଣ ଭାରତରେ ଅନେକ ତଥା କଥିତ ଶିକ୍ଷିତ ଲୋକ ମଧ୍ୟ ରାବଣର ଖୋଲାଖୋଲି ଗୁଣ ଗାନ କରନ୍ତି । ତା ସହିତ ଶ୍ରୀରାମଙ୍କ ବାଳି ମାରଣ, ସୁନା ହରିଣ ପଶ୍ଚାତ୍ ଧାବନ ଆଦିର ଦୋଷ ଦର୍ଶନ କରିଥାନ୍ତି । ସେ ଭଳି ଲୋକର ବୁଦ୍ଧି ଧର୍ମ-ଅଧର୍ମ, ଭଲ ମନ୍ଦ ବାଛିବାରେ ଅସମର୍ଥ । ତେଣୁ ସେ ସବୁ ପ୍ରକାର ଆଲୋଚନା ଶୁଣୁ ଶୁଣୁ ଅଜାଣତରେ ନିଜର କ୍ଷତି ମଧ୍ୟ କରିଥାଏ । ସେମାନଙ୍କ ସତ୍‌ସଙ୍ଗ ଶ୍ରବଣକୁ କାହିଁକି ଏବଂ କେଉଁ ପଶୁର ଆଚରଣ ସହିତ ତୁଳନା କରାଯାଏ ?

**ସର୍ବଂ ଶ୍ରୁତଂ ଉପାଦତ୍ତେ ସାର-ଅସାର-ଅନ୍ଧଧୀଃ ବୃଷଃ ।**
**ସ୍ୱାଦୁ ଦ୍ରାକ୍ଷାଂ ଖଳିଂ ଚ-ଅପି ନିର୍ବିଶେଷଂ ଯଥା ବୃଷଃ ॥୧୮॥**

ଉ. ସେଭଳି ଶ୍ରୋତାଙ୍କୁ ବଳଦ(ଷଣ୍ଢ) ସହିତ ତୁଳନା କରାଯାଏ । ଷଣ୍ଢ ତାର ମୋଟା ବୁଦ୍ଧିରେ ବିଚାର କରି ସୁସ୍ୱାଦୁ ଯୁକ୍ତ ଅଙ୍ଗୁର(ଦ୍ରାକ୍ଷା) ଏବଂ ପିଡା

ଲାଗୁଥିବା ପିଢ଼ିଆ, ଚଷ୍ଟୁ, କୁଟା ଆଦି ସବୁକିଛିକୁ ଖାଦ୍ୟ ଆକାରରେ ଆହରଣ କରିଯାଏ । କିଛି ବାଛ ବିଚାର ରଖେନା ।

ପ୍ରଶ୍ନ-୯୧ : ପଶୁ ଜଗତରେ ବୃଷ ଠାରୁ ଅଧିକ ମୋଟାବୁଦ୍ଧିଆ ପ୍ରାଣୀ କ'ଣ ଆଉ କେହି ନଥାନ୍ତି କି ?

**ସ ଉଷ୍ଟ୍ରୋ ମଧୁରଂ ମୁଞ୍ଚନ୍ ବିପରୀତେ ରମେତ ଯଃ ।**
**ଯଥା ନିମ୍ବଂ ଚରତି-ଉଷ୍ଟ୍ରୋ ହିତ୍ୱା-ଆମ୍ରଂ ଅପି ତଦ୍‌ଯୁତମ୍ ॥୧୯॥**

ଉ. ଅଛନ୍ତି ନିଶ୍ଚୟ । ଓଟ ପଶୁ ବିଚରା ଏଭଳି ଏକ ଓଲୁ ପ୍ରାଣୀ । ଯେ ତଳେ ପଡ଼ିଥିବା ପାଚିଲା ଆମ୍ବଫଳ ରସ ନ ଚାଖି ଲମ୍ବା ବେକରେ ନିମ୍ବଗଛର ଉକ୍ରଟ ପିତାଫଳ ଆଗ୍ରହରେ ଖାଇଯାଏ । ଠିକ୍ ସେହିଭଳି କେତେକ ଲୋକ ବକ୍ତା ମୁଖରୁ ସତ୍‌ସଙ୍ଗରେ ବସି ମଧୁର ହରି କଥା ନ ଶୁଣି ପାଖ ପଡ଼ୋଶୀ ମୁଖରୁ ବିଷୟ ସୁଖ ସମ୍ବନ୍ଧୀୟ ଗ୍ରାମ୍ୟ କଥା ଆଲୋଚନା କରି ଦିନ ଅତିବାହିତ କରନ୍ତି । ଦୂରଦର୍ଶନରେ ରାମ କଥା, କୃଷ୍ଣ କଥା ଶ୍ରବଣ ନକରି ମନୋରଞ୍ଜନ ଧର୍ମୀ ଟିଭି ସିରିୟଲ ଦେଖିବାକୁ ଶୁଣିବାକୁ ଆନନ୍ଦ ପାଆନ୍ତି । ସେମାନଙ୍କର ଆଦୌ ହୋସ୍ ନଥାଏ ଯେ ସେଥିରେ ମନ ଲଗାଇ ସେ ଏପିସୋଡ୍‌ଗୁଡ଼ିକ ସେମାନଙ୍କ ମନକୁ ଆହୁରି ଅଧିକ ଦୂଷିତ କରୁଛନ୍ତି । ତାଙ୍କୁ ଆଦୌ ଶ୍ରବଣ ନକରି ସେତିକି ସମୟ ଶୋଇପଡ଼ିଥିଲେ, ହେଲେ ଅଧ୍ୟାତ୍ମ୍ୟ ଦୃଷ୍ଟିରେ ମନକୁ ମଇଳା ହେବାକୁ ନ ଦେଇ ରୋକାଯାଇ ପାରିଥାନ୍ତା । ଭାଗବତ ଜ୍ଞାନୀ କୁହନ୍ତି ହାୟରେ ବିଚରା ଆଧୁନିକ ବୁଦ୍ଧିଜୀବି ଶିକ୍ଷିତ ମଣିଷ !!!

ଉପରୋକ୍ତ ପ୍ରକାରେ ଭଲ ମନ୍ଦ ସ୍ୱଭାବ ବିଚାରରେ ଭୃଙ୍ଗ(ମହୁମାଛି), ଖର(ଗଧ), ସୂତାକଟା ତାକୁଡ଼ି ଓ ଧାନ ପାଛୁଡ଼ିବା ସୂର୍ପ(କୁଲା) ଇତ୍ୟାଦି ଅନେକ ପ୍ରକାର ପ୍ରବର ଓ ଅବର ଶ୍ରୋତା ଆମେ ସତ୍‌ସଙ୍ଗ ମାନଙ୍କରେ ଦର୍ଶନ କରିଥାଉ ।

ପ୍ରଶ୍ନ-୯୨ : ସୂତ ଗୋସ୍ୱାମୀ ସେତେବେଳେ ଉତ୍ତମ ଭାଗବତ ବକ୍ତା ଲକ୍ଷଣ ବିଷୟରେ କିଛି ସୂଚନା ଦେଲେ କି ?

**ଭଗବତ୍ ମତିଃ ଅନପେକ୍ଷଃ ସୁହୃଦୋ ଦୀନେଷୁ ସ-ଅନୁକମ୍ପୋ ଯଃ ।**
**ବହୁଧା ବୋଧନ ଚତୁରୋ ବକ୍ତା ସମ୍ମାନିତୋ ମୁନିଭିଃ ॥୨୨॥**

ଉ. ଭାଗବତ ଶ୍ରବଣକାରୀମାନଙ୍କ ମତରେ ଯେଉଁ ବକ୍ତାଙ୍କର ବୁଦ୍ଧି ଓ ମନ ନିତ୍ୟ ନିରନ୍ତର ହରିପ୍ରେମରେ ମଜ୍ଜିଥାଏ, ଯେଉଁମାନେ ସଂସାରୀ ସୁଖ, ସୁବିଧା, ଦ୍ରବ୍ୟାଦି ଲୋଭକୁ ଦୂରରେ ରଖି ଥାଆନ୍ତି(ଅନପେକ୍ଷଃ), ପୁଣି ଯେ ପ୍ରାଣୀମାତ୍ରଙ୍କର

ହିତୈଷୀ(ସୁହୃଦୋ), ନିରାଶ୍ରୟ ଲୋକମାନଙ୍କ ପ୍ରତି ଦୟାର୍ଦ୍ରଚିତ୍ତ(ସ-ଅନୁକମ୍ପୋ) ତତ୍‌ସହିତ ଯେ ଗୂଢ଼ ତତ୍ତ୍ୱଟିକୁ ବୁଝାଇବା ପାଇଁ ଅନେକ ଦୃଷ୍ଟାନ୍ତମାନ ଦେଇପାରନ୍ତି ସେହିଭଳି ଗୁଣବାନ ବକ୍ତା କେବଳ ଭାଗବତଙ୍କର ସମ୍ମାନୀତ ଉତ୍ତମ ବକ୍ତା ସ୍ଥାନୀୟ ।

ପ୍ରଶ୍ନ-୯୩: କୃଷ୍ଣ, କୃଷ୍ଣଭକ୍ତ ଓ କୃଷ୍ଣଲୀଳା ହିଁ ଭାଗବତ । ଶ୍ରୀମଭାଗବତଙ୍କର ଶ୍ରବଣ, କୀର୍ତ୍ତନ, ପଠନ, ପାଠନ, ମନନ ଓ ଅଭିନୟ ଭାଗବତ ସେବନ ଭାବରେ ଜଣାଶୁଣା । ଭାଗବତଙ୍କୁ ସତ୍ତ୍ୱଗୁଣୀ, ରଜୋଗୁଣୀ, ତମୋଗୁଣୀ ଓ ନିର୍ଗୁଣ ଭାବରେ ସେବନ କରାଯାଏ । ମୁଖ୍ୟତଃ ଭାଗବତ ଗ୍ରନ୍ଥଙ୍କର ଶ୍ରବଣ, କୀର୍ତ୍ତନ ଓ ଆଲୋଚନା ସତ୍‌ସଙ୍ଗ ସମାରୋହକୁ ଆଜିକାଲି ସପ୍ତାହବ୍ୟାପୀ କରାଯାଉଥିବାରୁ ଏହାକୁ ସାତ୍ତ୍ୱିକ, ରାଜସିକ ସେବନ ନା ଅନ୍ୟ କିଛି ବୋଲି କୁହାଯିବ ?

**ସପ୍ତାହଂ ଯଜ୍ଞବତ୍ ଯତ୍ ତୁ ସଶ୍ରମଂ ସତ୍ୱରଂ ମୁଦା ।**
**ସେବିତଂ ରାଜସଂ ତତ୍ ତୁ ବହୁପୂଜା-ଆଦି ଶୋଭନମ୍ ॥୨୫॥**

ଉ. ଭାଗବତ ଆଲୋଚନା ସତ୍‌ସଙ୍ଗ ମଧ୍ୟ ଜ୍ଞାନ ଯଜ୍ଞ ପଦବାଚ୍ୟ । ଅନେକ ଶ୍ରମ ସ୍ୱୀକାର ପୂର୍ବକ ମହା ଆନନ୍ଦରେ (ମୁଦା) ଅନେକ ଆଡ଼ମ୍ବର ସହକାରେ(ବହୁ ପୂଜା-ଆଦି ଶୋଭନମ୍) ଭାଗବତ ସତ୍‌ସଙ୍ଗ ସାତଦିନ ବ୍ୟାପୀ କରାଗଲେ ତାହା ରାଜସ ସେବନ ଅଟେ ।

ପ୍ରଶ୍ନ-୯୪: କେଉଁ କେଉଁ ବିଶେଷ ଲକ୍ଷଣରୁ ଭାଗବତଙ୍କର ସାତ୍ତ୍ୱିକ ସେବନ ବୋଲି ସତ୍‌ସଙ୍ଗକୁ ଚିହ୍ନିହୁଏ ?

**ମାସେନା ଋତୁନା ବା-ଅପି ଶ୍ରବଣଂ ସ୍ୱାଦ ସଂଯୁତମ୍ ।**
**ସାତ୍ତ୍ୱିକଂ ଯତ୍ ଅନାୟାସଂ ସମସ୍ତ-ଆନନ୍ଦ ବର୍ଦ୍ଧନମ୍ ॥୨୬॥**

ଉ. ଯଦି ସତ୍‌ସଙ୍ଗ ଅନୁଷ୍ଠାନଟି ଲାଗି କାହାକୁ ହେଲେ ସେପରି ଅଯଥା ଆର୍ଥିକ, ଭୌତିକ, ମାନସିକ ବା ବୌଦ୍ଧିକ କଷ୍ଟ ଉଠାଇବାକୁ ପଡ଼େ ନାହିଁ, ସମସ୍ତଙ୍କ ପାଇଁ ଭଗବତ ସେବନ କ୍ରିୟା ଆନନ୍ଦ ପ୍ରାପ୍ତିକର ହୁଏ ଏବଂ ଏକମାସ କିମ୍ବା ଦୁଇ ମାସ ବ୍ୟାପୀ ଭାଗବତଙ୍କର ସ୍ୱାଦୁଯୁକ୍ତ ରସ ଆସ୍ୱାଦନ କରାଯାଏ ତାକୁ ସାତ୍ତ୍ୱିକ ସେବନ କୁହାଯାଏ ।

ପ୍ରଶ୍ନ-୯୫: ଭାଗବତ ଗ୍ରନ୍ଥ ଏକ ଅତ୍ୟନ୍ତ ହରି ପ୍ରେମପୂର୍ଣ୍ଣ ଅନବଦ୍ୟ ବିରଳଗ୍ରନ୍ଥ । ଭୌତିକବାଦୀ, ସଂସାରୀ ଓ ତାମସିକ ଲୋକମାନେ ପ୍ରାୟତଃ ତାଙ୍କଠାରୁ ଦୂରେଇ ରହନ୍ତି, ତାଙ୍କର ପୁଣି ତାମସିକ ସେବନ ସମ୍ଭବ ହୁଏ କେମିତି ?

**ତାମସଂ ଯତ୍ ତୁ ବର୍ଷେଣ ସ-ଅଳସଂ ଶ୍ରଦ୍ଧୟା ଯୁତମ୍ ।**
**ବିସ୍ମୃତି ସ୍ମୃତି ସଂଯୁକ୍ତଂ ସେବନଂ ତତ୍ ଚ ସୌଖ୍ୟଦମ୍ ॥୨୭॥**

ଉ. ସମାଜରେ କଳିଯୁଗରେ ସାତ୍ତ୍ୱିକ ଓ ରାଜସ ଲୋକଙ୍କ ସଂଖ୍ୟାଠାରୁ ତାମସିକ ପ୍ରବୃତ୍ତିର ଲୋକସଂଖ୍ୟା ବହୁ ଅଧିକ । ସେମାନଙ୍କର ପୁଣି ତ କଲ୍ୟାଣ କରାଯିବା ଦରକାର । ଆଦୌ ଭାଗବତ ସେବନ ନ କରିବା ଅପେକ୍ଷା ବରଂ ତାମସିକ ଭାବନାରେ ସେବନ କଲେ କିଛି ନା କିଛି ତ କଲ୍ୟାଣ ହେବ । ସେମାନେ ଆଳସ୍ୟରେ ଅଳ୍ପ ଶ୍ରଦ୍ଧାରେ, ଅଶ୍ରଦ୍ଧାରେ ଭାଗବତ ସେବନର ସଂକଳ୍ପ କରନ୍ତି । ଭାଦ୍ରବମାସ ପୂର୍ଣ୍ଣିମାରେ ଆରମ୍ଭ କରି ଦିନକୁ ଦିନ କିଛି ନା କିଛି ଶ୍ରବଣ କୀର୍ତ୍ତନ କରୁଥାନ୍ତି ନିଜ ନିଜ ଘରେ କିମ୍ବା ଗାଁ ଭାଗବତ ଟୁଙ୍ଗିମାନଙ୍କରେ । କେତେଦିନ ଶୁଣିବା ପରେ ଭୁଲିଯାଆନ୍ତି (ବିସ୍ମୃତି) । ପରେ ପରେ ପୁଣିମନେ ପଡ଼ିଯାଏ, ଆରେ ଆରେ ଭାଗବତ ସେବନ କରିବା କଥା ଯେ, ବାସ୍ ଏହିଭଳି ସେମାନେ ବର୍ଷକରେ ଦିନକୁ ଅଧ୍ୟାୟ ଲେଖାଏଁ ପଠନ ପାଠନ କରି ବର୍ଷକରେ ସେବନ କରନ୍ତି । ଭାଦ୍ରବ ମାସ ପୂର୍ଣ୍ଣିମା ଦିନ ଶେଷ ଅଧ୍ୟାୟ ପାଠ କରି ପୁଣି ପ୍ରଥମ ଅଧ୍ୟାୟ ଶୁଭାରମ୍ଭ କରି ଭାଗବତ ବଢ଼େଇବାକୁ ହୁଏ । ଭାଗବତ ସେବନର କଦାପି ସମାପ୍ତି ହୁଏ ନାହିଁ । ଏଭଳି ତାମସିକ ସେବନ ଆନନ୍ଦ ଦାୟକ ନହେଲେ ମଧ୍ୟ ସୁଖଦାୟକ(ସୌଖ୍ୟଦମ୍) ।

ପ୍ରଶ୍ନ-୯୬: ଭାଗବତ ସେବନ କରନ୍ତି କିଛି ଲୋକ **ଅଭାବରେ** । ଦୁଃଖ ଜଣାଇବାକୁ ବା ଦୁଃଖ ଦୂର କରିବାକୁ ପ୍ରାର୍ଥନା କରନ୍ତି ସେମାନେ । ଆଉ କିଛି ଲୋକ ସତ୍‌ସଙ୍ଗ ଆସନ୍ତି **ପ୍ରଭାବରେ** । ପୂର୍ବଜନ୍ମର କୃତ କୌଣସି ପୁଣ୍ୟ ଫଳରେ କେହି ତାଙ୍କୁ ସାଙ୍ଗରେ ନେଇ ଭାଗବତ ସତ୍‌ସଙ୍ଗରେ ବସାଇ ଦିଅନ୍ତି । ସେମାନଙ୍କ ଠାରୁ ଉନ୍ନତ ଉଚ୍ଚ ଅଧିକାରୀମାନେ **ଭାବରେ** ଆସନ୍ତି ଶ୍ରବଣ ଲାଗି । ସେମାନେ ଶ୍ରଦ୍ଧାଯୁକ୍ତ ହୋଇ କେହି ନ ଡ଼ାକିଲେ ମଧ୍ୟ ସ୍ୱତଃ ପ୍ରବୃତ୍ତ ହୋଇ ନିତ୍ୟ ଭାଗବତ ସେବନ କରିଥାଆନ୍ତି । ପୁଣି ଆହୁରି ଅତି ଉଚ୍ଚ ଅଧିକାରୀମାନେ ଭାଗବତ ସେବନ କରନ୍ତି ସ୍ୱଭାବରେ ସେମାନଙ୍କୁ ପୁଣି କେଉଁ ସ୍ତରରେ ସ୍ଥାନିତ କରାଯାଏ ?

**ବର୍ଷ ମାସ ଦିନ-ଆଦିନାଂ ତୁ ବିମୁଚ୍ୟ ନିୟମ-ଆଗ୍ରହମ୍ ।**
**ସର୍ବଦା ପ୍ରେମ ଭକ୍ତି-ଏବ ସେବନଂ ନିର୍ଗୁଣଂ ମତମ୍ ॥୨୮॥**

ଉ. ଏମାନଙ୍କୁ ପ୍ରକୃତିର ତିନିଗୁଣରୁ ଊର୍ଦ୍ଧ୍ୱସ୍ଥିତ ନିର୍ଗୁଣୀ ସେବନ ପର୍ଯ୍ୟାୟଭୁକ୍ତ କୁହାଯାଏ । ଏମାନଙ୍କ ପାଇଁ ସପ୍ତାହ, ମାସିକ, ଦ୍ୱିମାସିକ କିମ୍ବା ବାର୍ଷିକ ପାରାୟଣାଦି କୌଣସି ନିୟମ ଲାଗୁ ହୁଏ ନାହିଁ । ସେମାନେ ନିତ୍ୟ ନିରନ୍ତର ଆଜୀବନ କୃଷ୍ଣ ପ୍ରେମ ରସ ପିପାସୁ ଭାଗବତ ସେବନକାରୀ ଶ୍ରୋତା । ଧନ୍ୟ ସେମାନଙ୍କର ଜୀବନ । ଧନ୍ୟ ସେମାନଙ୍କର ପିତୃ ପୁରୁଷ, ସନ୍ତାନ ସନ୍ତତି ଓ ବନ୍ଧୁ ପରିଜନ ।

ପ୍ରଶ୍ନ-୯୭: ସୂତ-ଶୌନକ ସମ୍ବାଦ ଭାଗବତ ସତ୍‌ସଙ୍ଗ ଅଧିବେଶନକୁ ରଜୋଗୁଣୀ କୁହାଯାଏ । କାରଣ ସୂତମୁନି ବକ୍ତା ହିସାବରେ ସତ୍ତ୍ୱଗୁଣୀ । ଶୌନକ ଆଦି ମୁନିଗଣଙ୍କର ଘୃତ ଯଜ୍ଞ କରିବା ଇହଲୋକ ସୁଖ ସହିତ ସ୍ୱର୍ଗ ଲୋକ ସୁଖ ଭୋଗ କରିବା ମୁଖ୍ୟ ଲକ୍ଷ୍ୟ ଏବଂ ଭାଗବତ ସେବନ ଗୌଣ ଲକ୍ଷ୍ୟ ଥିଲା । ନାରଦ-ଚତୁଃସନ ଭାଗବତ ସେବନ ସତ୍‌ସଙ୍ଗ ସତ୍ତ୍ୱଗୁଣୀ ପର୍ଯ୍ୟାୟର । ଶ୍ରୋତା ନାରଦ ସତ୍ତ୍ୱଗୁଣୀ ଓ ବକ୍ତା ଚତୁଃସନ ନିର୍ଗୁଣୀ ବୋଲି । ତେବେ ଶୁକ ପରୀକ୍ଷିତ ସମ୍ବାଦ ବର୍ଣ୍ଣିତ ସତ୍‌ସଙ୍ଗ ସାତ ଦିନରେ ଶେଷ ହୋଇ ନିର୍ଗୁଣୀ ସତ୍‌ସଙ୍ଗ ପର୍ଯ୍ୟାୟଭୁକ୍ତ ହୁଏ କାହିଁକି ?

**ପାରୀକ୍ଷିତେଽପି ସମ୍ବାଦେ ନିର୍ଗୁଣଂ ତତ୍ ପ୍ରକୀର୍ତ୍ତିତମ୍ ।**
**ତତ୍ର ସପ୍ତଦିନ-ଆଖ୍ୟାନଂ ତଦ୍ ଆୟୁଃ ଦିନ ସଂଖ୍ୟୟା ॥୨୯॥**

ଉ. ସାତ ଦିନରେ ଭାଗବତ ସେବନ ସମାପ୍ତ ହେଲେ କଅଣ ହେଲା ? ବକ୍ତା ଓ ମୁଖ୍ୟ ଶ୍ରୋତା ଉଭୟେ ନିର୍ଗୁଣୀ । ସାତଦିନରେ ପ୍ରବଚନ କାର୍ଯ୍ୟକ୍ରମ ଇତି ହେବାର କାରଣ ରାଜା ପରୀକ୍ଷିତଙ୍କର ଆୟୁଷ ସେତେବେଳକୁ କେବଳ ସାତଦିନ ମାତ୍ର ଥିଲା । ସେହି କାରଣରୁ ସିନା ନିର୍ଗୁଣୀ ଭାଗବତ ସେବନ ଲାଗି ଦିନ ମାସ ଆଦି ସମୟ ଅବଧି କଡ଼ାକଡ଼ି ଭାବରେ ନିର୍ଦ୍ଧାରିତ ହୋଇନାହିଁ । ବକ୍ତା ଏବଂ ଶ୍ରୋତାଙ୍କର ଅଧିକାରୀତ୍ୱ ଉପରେ ଏ ଗୁଣ ଆଦିର ବିଚାର ନିର୍ଭର କରିଥାଏ ।

ପ୍ରଶ୍ନ-୯୮: ପୁରାଣ ତିଳକ ଭଗବତ ଗ୍ରନ୍ଥ ଏଭଳି ଏକ ରସମୟ ଚିଜ ଯାହା ବ୍ରହ୍ମା, ବିଷ୍ଣୁ, ଶଙ୍କରଙ୍କଠାରୁ ଆରମ୍ଭ କରି ସ୍ୱର୍ଗର ଦେବତା, ପାତାଳ ଲୋକବାସୀ ଓ ମର୍ତ୍ତ୍ୟଲୋକର ଯୋଗୀ, ଭୋଗୀ, ରୋଗୀ, ବିଳାସୀ, ନିର୍ଦ୍ଧନ, ଜ୍ଞାନୀ, ମୂର୍ଖ, ଚାରିବର୍ଣ୍ଣ, ଚାରି ଆଶ୍ରମର ସାଧକଙ୍କ ସହିତ ଯୋଗ୍ୟ, ଅଯୋଗ୍ୟ, ଅପଦାର୍ଥ ଅନ୍ତ୍ୟଜମାନଙ୍କର ମଧ୍ୟ କଲ୍ୟାଣକାରୀ ବୋଲି ସନ୍ଥମାନେ ଗ୍ରନ୍ଥମାନେ ସାବ୍ୟସ୍ତ କରିଛନ୍ତି । ଯେଉଁ କୃଷ୍ଣଭକ୍ତ ମାନେ ଆପ୍ତକାମ(ମୁକ୍ତୌ) ସଂସାର ସୁଖ ସହିତ ସ୍ୱର୍ଗର ଦେବୀ ଦେବତା ପଦବୀ

ପରାଙ୍ମୁଖ ଓ ଜୀବନ୍ମୁକ୍ତ ପରମହଂସ ଆତ୍ମାରାମ(ନିରାକାଙ୍କ୍ଷାଃ) ସନ୍ନ୍ୟାସୀଙ୍କୁ କ'ଣ ମିଳେ ଶ୍ରୀମଦ୍ଭାଗବତ ଗ୍ରନ୍ଥ ସେବନ କଲେ ?

**ଯେ ଶ୍ରୀକୃଷ୍ଣ ବିହାର-ଏକ ଭଜନ-ଆସ୍ୱାଦ ଲୋଲୁପାଃ ।**
**ମୁକ୍ତୌ-ଅପି ନିରାକାଙ୍କ୍ଷାଃ ତେଷାଂ ଭାଗବତଂ ଧନମ୍ ॥୩୧॥**

ଉ. ସାରା ବ୍ରହ୍ମାଣ୍ଡରେ ଅବଶ୍ୟ କୃଷ୍ଣ ଓ କୃଷ୍ଣ ପ୍ରେମ ବ୍ୟତୀତ ଅନ୍ୟ ସବୁକୁ ଧନ କୁହାଯାଏ । ତଥାପି ସେ ସବୁତକ ଧନର ମୂଲ୍ୟାଙ୍କନ କରି ଏକତ୍ର କଲେ ତାହା ମଧ୍ୟ କୃଷ୍ଣ ଓ କୃଷ୍ଣ ପ୍ରେମଠାରୁ କମ ମୂଲ୍ୟବାନ ବୋଲି ସାବ୍ୟସ୍ତ ହେବ । ସୁତରାଂ ଭାଗବତ ସେବନ କଲେ ଯେଉଁମାନେ କୃଷ୍ଣ ଓ କୃଷ୍ଣ ଭକ୍ତି ପ୍ରାପ୍ତ ହୁଅନ୍ତି ସେମାନଙ୍କୁ ଆଉ କେଉଁ ଅଧିକ ମୂଲ୍ୟବାନ ଦରବ ମିଳିପାରନ୍ତା ! ସେମାନଙ୍କୁ ପାଇଁ ଭାଗବତ ସେବନ ଏକ ଅଲୌକିକ ଆସବ ବା ମଦିରା ସ୍ୱରୂପ ।

ପ୍ରଶ୍ନ-୯୯: ସଂସାର ଦୁଃଖ, ଶୋକ, ମୋହ ଓ ମୃତ୍ୟୁ ଇତ୍ୟାଦିର ଭୟକୁ କେବଳ ଜଣେ କୃଷ୍ଣଭକ୍ତ ଜୟ କରିଥାଏ । କର୍ମମାର୍ଗୀ, ଜ୍ଞାନମାର୍ଗୀ ଓ ଧ୍ୟାନମାର୍ଗୀ ଶ୍ରୀମନ୍ ନାରାୟଣଙ୍କ ଭକ୍ତମାନେ ମଧ୍ୟ ବୈଷ୍ଣବ ପଦବାଚ୍ୟ । ସେମାନେ କିନ୍ତୁ ସଂସାରକୁ ଭୟ କରି ଗିରି, କନ୍ଦରାରେ, ଏକାନ୍ତରେ ଓଁକାର ଜପ କରି ପାଞ୍ଚ ବୈକୁଣ୍ଠ ମୁକ୍ତି ମଧ୍ୟରୁ ଗୋଟିଏକୁ ଲକ୍ଷ୍ୟ ରଖି ଆଜୀବନ ସାଧନା ଜାରି ରଖନ୍ତି । ତେବେ ଭାଗବତ ସେବନ ସେମାନଙ୍କର କ'ଣ କିଛି ଉପକାର କରିପାରନ୍ତି କି ?

**ଯେଽପି ସଂସାର ସନ୍ତାପ ନିର୍ବିଣ୍ଣା ମୋକ୍ଷ କାଙ୍କ୍ଷିଣଃ ।**
**ତେଷାଂ ଭବ-ଔଷଧଂ ଚ-ଏତତ କଳୌ ସେବ୍ୟଂ ପ୍ରଯନ୍ତତଃ ॥୩୨॥**

ଉ. ନିଶ୍ଚୟ ଉପକାର କରନ୍ତି । କଳିଯୁଗରେ କର୍ମ ସାଧନା, ଜ୍ଞାନ ସାଧନା ଓ ଧ୍ୟାନ ସାଧନା ଅତ୍ୟନ୍ତ କଷ୍ଟ ସାଧ୍ୟ । ଏଥିରେ ଚିତ୍ତମଳ ଦୂର କରିବାକୁ ଶାସ୍ତ୍ରଜ୍ଞାନ, ସଂସାର ବୈରାଗ୍ୟ, ଉପଯୁକ୍ତ ଗୁରୁଙ୍କ ଶରଣାଗତି ଆଦି କେତେ କ'ଣ ଲୋଡ଼ା ପଡ଼େ । କୃଷ୍ଣ ଭକ୍ତି ସାଧନା କରିବାକୁ କିନ୍ତୁ ଏସବୁ ଆଦୌ ଖୋଜାଯାଆନ୍ତି ନାହିଁ । ଅଳ୍ପ ବୈରାଗ୍ୟ ଅଳ୍ପ ଶାସ୍ତ୍ର ଜ୍ଞାନରେ କାମ ଚଳିଯାଏ । ମନୁଷ୍ୟର ମନ ସଂସାରର ଆପାତ ରମଣୀୟ ଚାକଚକ୍ୟରେ ସହଜରେ ଆସକ୍ତ ହୋଇଯାଏ । ସନ୍ଥମାନେ ଏହାକୁ ଭବରୋଗ ବୋଲି କହନ୍ତି । ଏଭଳି ରୋଗକୁ ଘଉଡ଼େଇବା ପାଇଁ ହରିଭଜନ ବା ଭକ୍ତି ମାର୍ଗ ହିଁ ରାମବାଣର କାମ ଦିଏ ଯାହାକୁ ଭବରୋଗର ମହୌଷଧି କୁହାଯାଇଛି ।

ଅତଏବ ମୋକ୍ଷାକାଙ୍‌କ୍ଷୀ ସାଧକ ମଧ୍ୟ ଭାଗବତ ସେବନ କରି ସର୍ବୋଚ୍ଚ ଲାଭବାନ ହୋଇପାରନ୍ତି । ସେମାନେ ବଞ୍ଚିଥିବା ବେଳେ ୨୮ ସିଦ୍ଧି ପ୍ରାପ୍ତ କରିପାରନ୍ତି ଓ ଦେହ ତ୍ୟାଗ ପରେ ମୁକ୍ତିର ଅଧିକାରୀ ହୁଅନ୍ତି । ଜ୍ଞାନୀ ମାନଙ୍କ ପାଇଁ ଭାଗବତ ସେବନ ରସାୟନ ସ୍ୱରୂପ । ଔଷଧ ସିନା ରୋଗ ଭଲ ହୋଇଗଲେ ବନ୍ଦ କରାଯାଏ ରସାୟନ ସେବନ କିନ୍ତୁ ବନ୍ଦ କରାଯାଏନାହିଁ । ବ୍ୟାଧି ଉପଶମ ହେଲା ପରେ ମଧ୍ୟ ସେବନ ଚାଲୁ ରଖାଯାଏ । ସେହି କାରଣରୁ ଅସଲି ପକ୍‌କା ଜ୍ଞାନୀମାନେ ମଧ୍ୟ ଭାଗବତ ସେବନ ନିରନ୍ତର କରିଥାଆନ୍ତି ।

ପ୍ରଶ୍ନ-୧୦୦: କଳିଯୁଗରେ ଜ୍ଞାନମାର୍ଗ ଓ ଭକ୍ତିମାର୍ଗରେ ଆଗ୍ରହ ପ୍ରକାଶ କରୁଥିବା ସଂସାର ବିଷୟ ଭୋଗ ପରାଙ୍‌ମୁଖ ଲୋକଙ୍କର ସଂଖ୍ୟା ବହୁତ ସୀମିତ । ସଂସାରୀ ସୁଖ ଚାହୁଁଥିବା ବିଷୟୀ ଲୋକମାନେ ଚଟାପଟ ଫଳ ପାଇବାକୁ କୃଷ୍ଣ ଭକ୍ତି ନ କରି ତାଙ୍କ ଅଙ୍ଗଜାତ ସାନ ବଡ଼ ଦେବୀ ଦେବତା ପୂଜାରେ ଲାଗନ୍ତି । ସେମାନଙ୍କ ଭକ୍ତି କରି ଇପ୍‌ସିତ ଫଳ ମଧ୍ୟ ତୁରନ୍ତ ପ୍ରାପ୍ତ ହୁଅନ୍ତି । ସେଭଳି ଲୋକ ଶ୍ରୀମଭାଗବତ ସେବନ ଦୈବଯୋଗରେ ସେବନ କରିପାରିଲେ କି ଫଳ ପ୍ରାପ୍ତ ହୁଅନ୍ତି ?

**ଯେ ଚ-ଅପି ବିଷୟ-ଆରାମାଃ ସାଂସାରିକ ସୁଖସ୍ପୃହାଃ ।**
**ତେଷାଂ ତୁ କର୍ମ ମାର୍ଗେଣ ଯା ସିଦ୍ଧିଃ ସାଧୁନା କଳୌ ॥୩୩॥**

ଉ. ସେହି ବିଷୟ ଭୋଗୀମାନେ ମଧ୍ୟ ଧନ, ସମ୍ପତ୍ତି, ସ୍ତ୍ରୀ, ପୁତ୍ର, ହାତୀ, ଘୋଡ଼ା ଓ ବାହନ ଆଦି ଗୃହ ସମ୍ପତ୍ତି ଏପରିକି ନିଷ୍କଣ୍ଟକ ରାଜ୍ୟ ମଧ୍ୟ ପ୍ରାପ୍ତ ହୋଇପାରନ୍ତି । କଳିଯୁଗରେ ଠିକ୍ ଠିକ୍ ବୈଦିକ ମାର୍ଗରେ ଦେବୀ ଦେବତା ପୂଜନ କରି ସେମାନଙ୍କୁ ପ୍ରସନ୍ନ କରି ସେ ସବୁ ପାଇବା ମଧ୍ୟ ଅତ୍ୟନ୍ତ କଷ୍ଟକର, ବିରଳ ଏବଂ ଅସମ୍ଭବ ମଧ୍ୟ । ବିଶେଷତଃ କଳିଯୁଗରେ ପୁରୁଷାର୍ଥଠାରୁ ହରି ଶରଣାଗତି ବରଂ ଭଲ କାମ ଦେଖାଏ(ସିଦ୍ଧିଂ ସାଧୁନା କଳୌ) । ଅତଏବ କର୍ମମାର୍ଗୀଙ୍କ ନିମିତ୍ତ ଭାଗବତ ସେବନ ଅମୃତ ସେବନ ଭଳି କାରଣ ଏହା ସେମାନଙ୍କର ମରଣ ଭୟ ମଧ୍ୟ ଦୂର କରିପାରେ ।

ପ୍ରଶ୍ନ-୧୦୧: କଷ୍ଟକର ବୈଦିକ କର୍ମକାଣ୍ଡ କରି ବା ସହଜ ସରଳ ଉପାୟରେ ହରିଭଜନ ଭାଗବତ ସେବନ କରି ଉଭୟରେ ସାଂସାରିକ ଉପଭୋଗ୍ୟ ବସ୍ତୁ, ବ୍ୟକ୍ତି, ପରିସ୍ଥିତି ମିଳୁଥିବା ବେଳେ ଭାବବତ ସେବନ ଦ୍ୱାରା କିଛି ଅଧିକ, ସ୍ୱତନ୍ତ୍ର ବା ବିଶେଷ ଫଳ ପ୍ରାପ୍ତି ହୁଏ କି ?

**ଇହଲୋକେ ବରାନ୍ ଭୁକ୍ତ୍ୱା  ଭୋଗାନ ବୈ ମନସା-ଇପ୍ସିତାନ୍ ।**

**ଶ୍ରୀ ଭାଗବତ ସଙ୍ଗେନ  ଯାତି-ଅନ୍ତେ ଶ୍ରୀହରେଃ ପଦମ୍ ॥୩୬॥**

ଉ. ନିଶ୍ଚିତ ରୂପେ ମିଳେ । ଗୃହସ୍ଥାଶ୍ରମରେ ରହି ଭାଗବତ ସେବନ ସହ ବିଷୟ ଭୋଗ କଲେ ମଧ୍ୟ (ବରାନ୍ ଭୁକ୍ତ୍ୱା ଭୋଗାନ) କ୍ରମେ କ୍ରମେ ବିଷୟ ଆସକ୍ତିର ଚେରମୂଳ ଉପୁଡିପଡ଼େ । ସନ୍ୟାସୀ ବେଶ ନ ପକାଇ ପୁତ୍ର, ପତ୍ନୀ, ଗୃହ ତ୍ୟାଗ ଆଦି ନ କରି ଗିରି କନ୍ଦରାରେ ନ ଲୁଚିଲେ ମଧ୍ୟ ଠିକ୍ ସମୟରେ ତା ଦେହ ଖୁରୁଡ଼ ନଡ଼ିଆ ଭଳି ହୋଇ ଆତ୍ମାଠାରୁ ଅଲଗା ହୋଇ ଖସିପଡ଼େ । ସେ ନିଜ ଗୁରୁ ଗୋବିନ୍ଦଙ୍କ ପାଖରେ ବୈକୁଣ୍ଠ, ମହାବୈକୁଣ୍ଠ, କିମ୍ବା ଗୋଲୋକ ଲୀଳାରେ ପ୍ରବେଶ କରିଯାଏ । ସୁତରାଂ ଯେଉଁମାନେ ଆପ୍ତକାମ ଭକ୍ତ ନୁହନ୍ତି, ଆତ୍ମାରାମ ଜ୍ଞାନୀ ନୁହନ୍ତି, ମରଣ ଭୟରୁ ମୁକ୍ତି ଚାହୁଁଥିବା କର୍ମମାର୍ଗୀ ମଧ୍ୟ ନୁହନ୍ତି ସେଭଳି ବିଷୟ ଭୋଗୀ ପାଇଁ ଭାଗବତ ସେବନ ଔଷଧ ସ୍ୱରୂପ ଅଟେ ।

ପ୍ରଶ୍ନ-୧୦୨ : ଯଦି ଜଣେ ଭାଗବତ ଶ୍ରବଣ କୀର୍ତ୍ତନ ଫଳକୁ ବିଶ୍ୱାସ କରୁଥାଏ କିନ୍ତୁ ଅବସ୍ଥା ଚକ୍ରରେ ପଡ଼ି ସେ ଭାଗବତ ସେବନ କରିପାରୁନଥାଏ । ତେବେ ସେ ଭଳି ଲୋକର ଭାଗବତ କ'ଣ କିଛି କଲ୍ୟାଣ କରିପାରିବେ ?

**ଯତ୍ର ଭାଗବତୀ ବାର୍ତ୍ତା  ଯେ ଚ ତତ୍ଶ୍ରବଣ ରତାଃ ।**

**ତେଷାଂ ସଂସେବନଂ କୁର୍ଯ୍ୟାତ୍  ଦେହେନ ଚ ଧନେନ ଚ ॥୩୭॥**

ଉ. ନିଃସନ୍ଦେହରେ ଭାଗବତ ତାଙ୍କର ମଧ୍ୟ କଲ୍ୟାଣ କରିଥାନ୍ତି । ଯେଉଁଠାରେ ଭାଗବତ ସେବନ ହେଉଥାଏ ସେ ସ୍ଥାନରେ ଉପସ୍ଥିତ ଶ୍ରୋତା ବକ୍ତାଙ୍କର ଦୈହିକ, ମାନସିକ କିମ୍ବା ଆର୍ଥିକ ସେବା କରିପାରିଲେ ଭାଗବତ ସେବନର ଫଳ ମଧ୍ୟ ମିଳେ ସେଭଳି ଭାଗବତ ଶ୍ରଦ୍ଧାଳୁଙ୍କୁ । ଏଥିରୁ ବୁଝାଯାଏ ଭାଗବତ କେବଳ କିଛି ଜଡ଼ ଶବ୍ଦ, ଅକ୍ଷର ଲିଖିତ ପୋଥି ପୁସ୍ତକ ନୁହନ୍ତି ବରଂ ଭାଗବତ ଏକ ଦିବ୍ୟ ଅଲୌକିକ ମହଶୂନ୍ୟରେ ଦୋଳାୟମାନ ସ୍ପନ୍ଦନ ଯାହା ମନୁଷ୍ୟ, ଭୂତ, ପ୍ରେତ, ପଶୁ, ପକ୍ଷୀ, ବୃକ୍ଷ ଲତା ଓ ଜଡ଼ କାଠ ପାଷାଣଙ୍କୁ ମଧ୍ୟ ତାଙ୍କର ସୂକ୍ଷ୍ମ ତରଙ୍ଗରେ ପ୍ରଭାବିତ କରିପାରନ୍ତି । ବୃନ୍ଦାବନର ଶ୍ରୀକୃଷ୍ଣଙ୍କର ଓ ଶ୍ରୀକୃଷ୍ଣ ପ୍ରେମ ଭାବିତ ପ୍ରେମୀଙ୍କର ପଦ ଚିହ୍ନର ସଂକେତ(ଠାକୁରଜୀଙ୍କ ବଂଶୀର ଚିହ୍ନ, ଭୋଜନ ଥାଳିର ଚିହ୍ନ, ଗୋଖୁରା ଚିହ୍ନ) ଆଜି ମଧ୍ୟ ଏ କଥାର ସତ୍ୟତା

ପ୍ରମାଣ କରୁଛନ୍ତି । ସେହି ଭାଗବତଙ୍କ ପ୍ରେରଣାରେ ସିନା ମନୁଷ୍ୟ ଦେହ, ମନ ସହିତ ନିଜ ଧନ ଲଗାଇ କୃଷ୍ଣ କଥା ସେବନରେ ସାହାଯ୍ୟ କରିପାରୁଛି ।

ପ୍ରଶ୍ନ-୧୦୩: ଭାଗବତଙ୍କର ଶ୍ରୋତା ଓ ବକ୍ତାଙ୍କୁ ସକାମ ଓ ନିଷ୍କାମ ଭାବରେ କାହିଁକି ଦୁଇ ଦୁଇ ଭାଗ କରାଯାଏ ?

**କୃଷ୍ଣ-ଅର୍ଥି-ଇତି ଧନ-ଅର୍ଥୀ-ଇତି ଶ୍ରୋତା ବକ୍ତା ଦ୍ୱିଧା ମତଃ ।**
**ଯଥା ବକ୍ତା ତଥା ଶ୍ରୋତା ତତ୍ର ସୌଖ୍ୟଂ ବିବର୍ଦ୍ଧତେ ॥୩୯॥**

ଉ. ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ କୃଷ୍ଣ ଓ କୃଷ୍ଣ ପ୍ରେମଦାୟକ ଚିଜ ବ୍ୟତୀତ ସବୁ କିଛି ଅସତ୍ । ସକଳ ଅସତ୍ ବସ୍ତୁ ଧନ ପଦବାଚ୍ୟ । ଭାଗବତଙ୍କର ଶ୍ରୋତା ଓ ବକ୍ତା ଉଭୟେ କେବଳ କୃଷ୍ଣ ଓ କୃଷ୍ଣ ପ୍ରେମ (ସତ୍) ଚାହୁଁଥିବାରୁ ନିଷ୍କାମ ଅଟନ୍ତି । ସାଧକ ଅନ୍ୟ ଯାହା କିଛି ଧନ, ପଦ, ପଦବୀ, ମାନ, ସତ୍କାର, ଆଦର, ଭୁକ୍ତି, ମୁକ୍ତି, ସିଦ୍ଧି ଯାହା ଚାହିଁଲେ ମଧ୍ୟ ସକାମ ଅଟନ୍ତି । କାରଣ ସେମାନେ ଅସତ୍ ।

ସୁତରାଂ ଭାଗବତଙ୍କର ବକ୍ତା ଓ ଶ୍ରୋତା ଉଭୟ ସକାମ କିମ୍ୱା ନିଷ୍କାମ ହେଲେ ସେହି କଥା ସତ୍‌ସଙ୍ଗରେ ବଢ଼ିଆ ରସ ମିଳିଥାଏ ଓ ସମସ୍ତଙ୍କୁ ସୁଖ, ସୌହାର୍ଦ୍ଦ୍ୟର ଅଜସ୍ର ଅନଭୂତି ମିଳିପାରେ । ଯଦି ଉଭୟେ ବିପରୀତ ବିଚାରର ହୋଇଥାଆନ୍ତି ତେବେ ଫଳ ପ୍ରାପ୍ତିରେ ବିଘ୍ନ ଅଟେ । ଯେଉଁ ନିଷ୍କାମ ଭକ୍ତମାନେ କୃଷ୍ଣ କିମ୍ୱା କୃଷ୍ଣପ୍ରେମ ଚାହୁଁଥାଆନ୍ତି ବକ୍ତା ଭାବରେ ହେଉ ବା ଶ୍ରୋତା ଭାବରେ ହେଉ ସେମାନଙ୍କୁ ତାହା ନିଶ୍ଚିତ ରୂପେ ମିଳେ କିନ୍ତୁ ବିଳମ୍ୱରେ ।

ପ୍ରଶ୍ନ-୧୦୪: ପୂର୍ବ ପ୍ରଶ୍ନ ବର୍ଣ୍ଣିତ ଶ୍ରୋତା ଓ ବକ୍ତା ଉଭୟେ ବିପରୀତ ଲକ୍ଷ୍ୟ ବାଲା ହୋଇଥିଲେ ସକାମ ବକ୍ତା ଓ ସକାମ ଶ୍ରୋତାଙ୍କର (ଧନ-ଅର୍ଥୀନଃ ତୁ) କଅଣ କିଛି ବି କଲ୍ୟାଣ ହୁଏନା କି ?

**ଧନ-ଅର୍ଥୀନଃ ତୁ ସଂସିଦ୍ଧିଃ ବିଧି ସଂପୂର୍ଣ୍ଣତା ବଶାତ୍ ।**
**କୃଷ୍ଣ-ଅର୍ଥୀନୋଽଗୁଣସ୍ୟ-ଅପି ପ୍ରେମ-ଏବ ବିଧିଃ ଉତ୍ତମ ॥୪୧॥**

ଉ. କଲ୍ୟାଣ(ସଂସିଦ୍ଧିଃ) ତ ନିଶ୍ଚୟ ହୁଏ ଯାଇ ସେତେବେଳେ ଯେତେବେଳେ ସେମାନଙ୍କର ଶ୍ରବଣ କୀର୍ତ୍ତନ ଠିକ୍ ଠିକ୍ ବିଧି ବିଧାନ ଅନୁସାରେ ଅନୁଷ୍ଠିତ ହୋଇଥାଏ । ନହେଲେ ବିଘ୍ନ ଘଟେ ।

ଅନ୍ୟ ପକ୍ଷରେ ନିଷ୍କାମ ବକ୍ତା ଓ ନିଷ୍କାମ ଶ୍ରୋତାମାନଙ୍କ ପାଇଁ ଏ ବିଧି ବିଧାନର କଡ଼ା ନିୟମ କାନୁନ୍ ପାଳନ କରିବା ଆଦୌ ଲୋଡ଼ା ପଡ଼େ ନାହିଁ । ସେମାନେ ସକଳ ଗୁଣହୀନ ହୋଇଥିଲେ ତ୍ରୁଟିଯୁକ୍ତ ହେଲେ ମଧ୍ୟ କେବଳ ପ୍ରେମରେ,ମସ୍ତିରେ ଭାଗବତ ସେବନ ରୂପକ ଶ୍ରବଣ କୀର୍ତ୍ତନ କରୁଥିଲେ ଫଳ ତାଙ୍କ ହାତ ପାହାନ୍ତାରେ ଥାଏ । ଅର୍ଥାତ୍ ସେମାନେ ସ୍ୱତଃ କୃଷ୍ଣପ୍ରେମ ଫଳପ୍ରାପ୍ତ ହୁଅନ୍ତି ।

ପ୍ରଶ୍ନ-୧୦୫: ସକାମ ଭାଗବତ ବକ୍ତା ଓ ଶ୍ରୋତା ଉଭୟଙ୍କୁ ପୁଣି କେଉଁ କେଉଁ କଠିନ ନିୟମ, କାଇଦା, କାନୁନ୍ ମାନିବାକୁ ହୁଏ ?

**ଆସମାପ୍ତି ସକାମେନ କର୍ତ୍ତବ୍ୟୋ ହି ବିଧିଃ ସ୍ୱୟମ୍ ।**
**ସ୍ନାତୋ ନିତ୍ୟ କ୍ରିୟାଂ କୃତ୍ୱା ପ୍ରାଶ୍ୟ ପାଦ-ଉଦକଂ ହରେଃ ।।୪୨।।**

ଉ. କଥା ଆରମ୍ଭଠାରୁ ସମାପ୍ତି ପର୍ଯ୍ୟନ୍ତ(ଆସମାପ୍ତି) ସେମାନେ ଅତ୍ୟନ୍ତ ସାବଧାନ ହୋଇ ବିଧି ମାନି ଚଳିବେ । ପ୍ରତ୍ୟେକ ଦିନ ପ୍ରତ୍ୟୁଷରୁ ଉଠି ସ୍ନାନ, ଶୌଚ, ସନ୍ଧ୍ୟା ବନ୍ଦନ ଆଦି ସାରି ଭଗବାନଙ୍କ ଚରଣାମୃତ ସେବନ କରିବେ(ପ୍ରାଶ୍ୟ ପାଦ ଉଦକଂ ହରେଃ) । ଭାଗବତ ଗ୍ରନ୍ଥ ପୂଜନ କରିବେ । ଶ୍ରୋତାମାନେ ଭାଗବତ ବ୍ୟାସଙ୍କ ପୂଜନ କରିବେ । ତେଣିକି ପ୍ରସନ୍ନତା ପୂର୍ବକ ଶ୍ରବଣ, କୀର୍ତ୍ତନ, ପାରାୟଣ ଓ ପ୍ରବଚନ କାର୍ଯ୍ୟ ଅନୁଷ୍ଠାନରେ ସକ୍ରିୟ ଭାଗନେବେ । ଯଥା ସମ୍ଭବ ମୌନ ବ୍ରତ ରଖିବେ । ବ୍ରହ୍ମଚର୍ଯ୍ୟ ରକ୍ଷା କରିବେ । ଦୁଗ୍ଧ ଆହାର, ଫଳାହାର କିମ୍ବା କ୍ଷୀରି ଇତ୍ୟାଦି ଅଳ୍ପାହାରରେ ରହିବେ । ଖଟ ପଲଙ୍କ ବ୍ୟବହାର ନକରି ଭୂଶୟନ କରିବେ । ଲେବେ ବି କ୍ରୋଧ, ଲୋଭ ଆଦି କରିବେ ନାହିଁ । ଏସବୁ ନିୟମ କାନୁନ୍ ମାନିବାକୁ ହେବ ।

ପ୍ରଶ୍ନ-୧୦୬: କଥା ସମାପ୍ତି ଦିବସରେ କିଛି ବିଶେଷ ନିୟମ ପାଳିବାକୁ ହୁଏ କି ?

**କଥା-ଅନ୍ତେ କୀର୍ତ୍ତନଂ ନିତ୍ୟ ସମାପ୍ତୌ ଜାଗରଂ ଚରେତ୍ ।**
**ବ୍ରାହ୍ମଣାନ୍ ଭୋଜୟିତ୍ୱା ତୁ ଦକ୍ଷିଣାଭିଃ ପ୍ରତୋଷୟେତ୍ ।।୪୫।।**

ଉ. ପ୍ରତ୍ୟେକ ଦିନ କଥା ଶେଷରେ ନାମ ସଂକୀର୍ତ୍ତନ କରିବାକୁ ହୁଏ । ଶେଷ ଦିନ କିନ୍ତୁ କୀର୍ତ୍ତନ ସହିତ ରାତି ପାହିବା ପର୍ଯ୍ୟନ୍ତ ଉଜାଗର ରହିବାକୁ ପଡ଼େ(ଜାଗରଂ ଚରେତ୍) । ସେଦିନ ବ୍ରାହ୍ମଣ ବୈଷ୍ଣବମାନଙ୍କୁ ସାଦର ନିମନ୍ତ୍ରଣ କରି ଭୋଜନ ସହିତ ଦକ୍ଷିଣା ଦେଇ ସନ୍ତୁଷ୍ଟ କରିବାକୁ ହେବ ।

କଥା ବ୍ୟାସ ଓ ପାରାୟଣ ବ୍ୟାସଙ୍କୁ ବସ୍ତ୍ର ଆଭୂଷଣ ଆଦି ଦକ୍ଷିଣା ପ୍ରଦାନ କରି ସନ୍ତୁଷ୍ଟ କରିବା ବିଧି ପାଳିବାକୁ ହୁଏ । ତେବେ ଯାଇ ସକାମ ଭାଗବତ ସେବନକାରୀଙ୍କୁ ବାଞ୍ଛିତ ଫଳ ପ୍ରାପ୍ତି ହୋଇଥାଏ ।

ପ୍ରଶ୍ନ-୧୦୭: ସକାମ ଭାଗବତ ସେବନରେ ଯଦି ଏତେ ଲୋଭନୀୟ ଫଳ ପ୍ରାପ୍ତି ହୁଏ(ଜୀବନ କାଳରେ ବିଷୟ ଭୋଗ ପୁଣି ଜୀବନ ଅବସାନେ ହରି ଧାମ ପ୍ରାପ୍ତି) ତେବେ ଲୋକେ ନିଷ୍କାମ ଭାଗବତ ସେବନରେ ଆଗ୍ରହୀ ହେବା ବୋକାମୀ ନୁହେଁ କି ?

**ଦାର-ଆଗାର ସୁତାନ୍ ରାଜ୍ୟଂ ଧନ-ଆଦି ଚ ଯତ୍-ଈପ୍ସିତମ୍ ।**
**ପରନ୍ତୁ ଶୋଭତେ ନ-ଅତ୍ର ସକାମତ୍ୱଂ ବିଡ଼ମ୍ବନମ୍ ॥୪୭॥**

ଉ. ସକାମ ଭାଗବତ ସେବନରେ ସୁନ୍ଦରୀ ପତ୍ନୀ, ଗୃହ ସମ୍ପଦ, ପୁତ୍ର, ଧନ ଓ ରାଜ୍ୟ ଆଦି ବିଷୟ ଭୋଗ ମିଳିବ ଅବଶ୍ୟ ଯଦି ସେ ବାଞ୍ଛା କରେ । ତ୍ରିତାପ ମୁକ୍ତ କୃଷ୍ଣପ୍ରେମ ପ୍ରାପ୍ତିରେ କିନ୍ତୁ ସାରା ଜୀବନ ତାର ମସ୍ତିରେ କଟେ । ସେ ଆନନ୍ଦ ସହିତ କଅଣ ତ୍ରିତାପ ଯୁକ୍ତ ବିଷୟ ଭୋଗ ଆନନ୍ଦ ତୁଳନୀୟ କି ? କାହିଁ ରାଣୀ କାହିଁ ଚନ୍ଦ୍ରକାଣୀ । ସୁତରାଂ ସକାମ ଭାଗବତ ସେବନ କେବେ ବି ଶୋଭନୀୟ ନୁହେଁ(ଶୋଭତେ ନ-ଅତ୍ର) କାହିଁ କେଉଁଠି ଗୋପୀମାନଙ୍କର ଅନନ୍ତ ଓ ଅଖଣ୍ଡ ଆନନ୍ଦ ଏବଂ କାହିଁ ୧୬,୧୦୮ କୃଷ୍ଣ ପତ୍ନୀ ମାନଙ୍କର ଖଣ୍ଡିତ ଓ ସୀମିତ ବିଷୟ ଆନନ୍ଦ ଭୋଗ ଲାଳସା । ଦୁହିଁଙ୍କ ମଧ୍ୟରୁ ଗୋଟିଏ ପୃଥିବୀର ଉତ୍ତର ମେରୁ ହେଲେ ଅନ୍ୟଟି ଦକ୍ଷିଣ ମେରୁ ସିନା (ବିଡ଼ମ୍ବନମ୍) । ଦିଲ୍ଲୀ ରାଜଗାଦୀର ଅଧିକାରୀ ମୟୁର ସିଂହାସନରେ ବସି ଶତ୍ରୁ ଆକ୍ରମଣ, ଜରା ମରଣ ଭୟରେ ଜୀବନସାରା ସନ୍ତାପିତ ହେବା ହିଁ ତ ବିଷୟଭୋଗ ବିଡ଼ମ୍ବନାର ପ୍ରସ୍ତାବ ।

ପ୍ରଶ୍ନ-୧୦୮: କଳିକାଳ କୁମ୍ଭୀରଗ୍ରାସ ଭୟଗ୍ରସ୍ତ ମାନବକୁ ଶ୍ରୀମଦ୍ଭାଗବତ ଗ୍ରନ୍ଥ ଶ୍ରବଣ କୀର୍ତ୍ତନର ଜୀବନର ଚରମ ପରମ ଲାଭ ଉଠାଇବାକୁ ବକ୍ତା ଶ୍ରେଷ୍ଠ ଶୁକଦେବଜୀ (କୀରେଣ) କେଉଁ ଲୋଭ ଦେଖାଇଥିଲେ ?

**କୃଷ୍ଣ ପ୍ରାପ୍ତି କରଂ ଶଶ୍ୱତ୍ ପ୍ରେମ-ଆନନ୍ଦ ଫଳପ୍ରଦମ୍ ।**
**ଶ୍ରୀମଦ୍ ଭାଗବତ ଶାସ୍ତ୍ରଂ କଲୌ କୀରେଣ ଭାଷିତମ୍ ॥୪୮॥**

ଉ. କୃଷ୍ଣ ଓ କୃଷ୍ଣପ୍ରେମ ପ୍ରାପ୍ତି ରୂପକ ଦେବ ଦୁର୍ଲ୍ଲଭ ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କର ମଧ୍ୟ କାମ୍ୟ ସେବିତ ଚିଜକୁ ସବୁଦିନ ଲାଗି(ଶଶ୍ୱତ) ହାତେଇନେବାକୁ ବେଦ, ବେଦାନ୍ତରେ ଗୁପ୍ତ ରଖାଯାଇଥିବା ଉପାୟଟି ଖୋଲି କହିଦେଇ କଥା ପ୍ରସଙ୍ଗକୁ ବିଶ୍ରାମ ଦେଇଥିଲେ । ଧନ୍ୟ ଧନ୍ୟ ସେଇ ବ୍ରଜର ବେଣୁ, ବ୍ରଜର ଧେନୁ ଓ ବ୍ରଜର ରେଣୁ !!!

**ଇତି ଶ୍ରୀସ୍କନ୍ଦେ ପୁରାଣେ ଏକାଶୀତି ସାହସ୍ର୍ୟାଂ ସଂହିତାୟାଂ ଦ୍ୱିତୀୟେ ବୈଷ୍ଣବ ଖଣ୍ଡେ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟେ ଭାଗବତ ଶ୍ରୋତୃ ବକ୍ତୃ ଲକ୍ଷଣ ଶ୍ରବଣ ବିଧି ନିରୂପଣଂ ନାମ ଚତୁର୍ଥୋଽଧ୍ୟାୟଃ ।**

ଶ୍ରୀମଭାଗବତ ମାହାତ୍ମ୍ୟଂ ସମାପ୍ତମ୍ ।

ହରିଃ ଓଁ ତତ୍ ସତ୍

ଗୁରୁ ଗୌରାଙ୍ଗୌ ଜୟତଃ

ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।

ପରିଶିଷ୍ଟ-୧

# ଶ୍ରୀବୃନ୍ଦାବନ ଲୀଳାର ପ୍ରାଚୀନ ଇତିହାସ
## (ଆର୍ଯ୍ୟଭଟ୍ଟୀୟ ଗଣନା ଅନୁଯାୟୀ)

**ଖ୍ରୀଷ୍ଟ ପୂର୍ବ:**

| | |
|---|---|
| ୩୩୦୮ | ଗୋକୁଳ ଧାମରେ ନନ୍ଦରାଜାଙ୍କ ଜନ୍ମ । |
| ୩୨୨୮ | ଲୀଳାମୟ ଶ୍ରୀକୃଷ୍ଣଙ୍କର ଗୋକୁଳରେ ଓ ମଥୁରାରେ ପ୍ରାକଟ୍ୟ । |
| ୩୨୨୭ | ପ୍ରେମମୟୀ ଶ୍ରୀରାଧାଙ୍କର ବୃନ୍ଦାବନର ରାଓଲ ଗ୍ରାମରେ ପ୍ରାକଟ୍ୟ । |
| ୩୨୨୧ | ଭଗବାନ ଶ୍ରୀକୃଷ୍ଣଙ୍କର ଶ୍ରୀଗୋବର୍ଦ୍ଧନ ଧାରଣ ଲୀଳା । |
| ୩୨୧୯ | ଶ୍ରୀ ଯମୁନା କୂଳରେ ଭଗବାନଙ୍କର ମହା ରାସଲୀଳା । |
| ୩୨୧୭ | ଠାକୁରଜୀଙ୍କର ମଥୁରା ଗମନ ଓ କଂସ ଉଦ୍ଧାର ଲୀଳା । |
| ୩୨୦୩ | ଭଗବାନଙ୍କର ଦ୍ୱାରକାଲୀଳା ଆରମ୍ଭ । |
| ୩୧୩୯ | ମହାଭାରତ ଯୁଦ୍ଧକ୍ଷେତ୍ରରେ ଗୀତା ପ୍ରବଚନ ଓ ଯୁଧିଷ୍ଠିରଙ୍କ ସିଂହାସନ ଆରୋହଣ । |
| ୩୧୦୨ | ଲୀଳାମୟଙ୍କର ଲୀଳା ସମ୍ୱରଣ, କଳିଯୁଗ ଆରମ୍ଭ, ପାଣ୍ଡବମାନଙ୍କ ସ୍ୱର୍ଗାରୋହଣ ଓ ରାଜା ପରୀକ୍ଷିତଙ୍କ ହସ୍ତିନା ସିଂହାସନ ଅଭିଷେକ । |
| ୩୦୭୨ | ଶ୍ରୀଗୋବର୍ଦ୍ଧନଧାମର କୁସୁମ ସରୋବରଠାରେ ଶ୍ରୀମଦ୍ ଭାଗବତଙ୍କ ପ୍ରାକଟ୍ୟ । (ଶ୍ରୀ ଉଦ୍ଧବ-ବଜ୍ରନାଭସମ୍ବାଦ) ଶୃଙ୍ଗୀ ମୁନିଙ୍କ ଦ୍ୱାରା ପରୀକ୍ଷିତଙ୍କୁ ବ୍ରହ୍ମଶାପ । ଶୁକତାଳ ଧାମରେ ଶ୍ରୀମଦ୍ ଭାଗବତଙ୍କ ପ୍ରାକଟ୍ୟ । (ଶୁକ -ପରୀକ୍ଷିତ ସମ୍ବାଦ) |
| ୨୮୭୨ | ଗୋକର୍ଣ୍ଣେଶ୍ୱର କ୍ଷେତ୍ରରେ ଗୋକର୍ଣ୍ଣ-ଧୁନ୍ଧୁକାରୀ ଭାଗବତ ସତ୍‌ସଙ୍ଗ । |
| ୨୮୪୨ | ଗଙ୍ଗାକୂଳରେ ଆନନ୍ଦ ଘାଟରେ ଚତୁଃସନ ନାରଦ ଭାଗବତ ସତ୍‌ସଙ୍ଗ । |
| ୬୦୦ | ଜଗଦ୍‌ଗୁରୁ ଶ୍ରୀନିମ୍ବାର୍କ ଆଚାର୍ଯ୍ୟଙ୍କ ପ୍ରକଟ । |
| ୫୦୯ | ଜ୍ଞାନମାର୍ଗୀ ଆଦିଶଙ୍କର ଆଚାର୍ଯ୍ୟଙ୍କ ଜନ୍ମ । |
| ୪୭୭ | ଜ୍ଞାନମାର୍ଗୀ ଆଦିଶଙ୍କର ଆଚାର୍ଯ୍ୟଙ୍କ ପରଲୋକଗମନ । |
| ୩୨୬ | ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ । |
| ୧୦୨ | ସମ୍ରାଟ ବିକ୍ରମାଦିତ୍ୟଙ୍କ ସିଂହାସନ ଆରୋହଣ । |
| ୫୭. | ସମ୍ରାଟ୍ ବିକ୍ରମାଦିତ୍ୟଙ୍କ ଦ୍ୱାରା ସଂବଦ୍ ବା ବିକ୍ରମ ଅବ୍ଦ ପ୍ରଚଳନ । |
| ୦ | ମହାପୁରୁଷ ଯୀଶୁଖ୍ରୀଷ୍ଟଙ୍କ ଜନ୍ମ । |

**ପରିଶିଷ୍ଟ-୨**

# ଶ୍ରୀବୃନ୍ଦାବନ ଲୀଳାର ମଧ୍ୟଯୁଗୀୟ ଇତିହାସ

**ଖ୍ରୀଷ୍ଟାବ୍ଦ:**

୦ ମହାପୁରୁଷ ଯୀଶୁଖ୍ରୀଷ୍ଟଙ୍କ ଜନ୍ମ ।

୭୮ ମହାରାଜା କନିଷ୍କଙ୍କ ଦ୍ୱାରା ଶାଳିବାହନ ଶକାବ୍ଦ ପ୍ରଚଳନ ।

୭୮୮ କେରଳରେ ଭକ୍ତ ଅଭିନବ ଶଙ୍କର ଆଚାର୍ଯ୍ୟଙ୍କ ଜନ୍ମ ।

୮୨୦ କର୍ଣ୍ଣାଟକ ଶୃଙ୍ଗେରୀ ମଠରେ ଅଭିନବ ଶଙ୍କର ଆଚାର୍ଯ୍ୟଙ୍କ ଦେହତ୍ୟାଗ ।

ନବମ ଶତାବ୍ଦୀରେ ବିଲ୍ୱମଙ୍ଗଳଙ୍କ ଶ୍ରୀବୃନ୍ଦାବନ ଆଗମନ ଓ କେଶୀଘାଟରେ ସମାଧି ।

୧୦୧୭ ଜଗଦ୍‌ଗୁରୁ ଶ୍ରୀରାମାନୁଜ ଆଚାର୍ଯ୍ୟଙ୍କ ପ୍ରାକଟ୍ୟ ।

୧୧୩୭ ଜଗତ୍‌ଗୁରୁ ଶ୍ରୀରାମାନୁ ଆଚାର୍ଯ୍ୟଙ୍କ ଲୀଳାପ୍ରବେଶ ।

ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ଭକ୍ତକବି ଜୟଦେବଙ୍କର ଶ୍ରୀବୃନ୍ଦାବନ ଆଗମନ । କେଶୀଘାଟରେ ଶ୍ରୀଯମୁନା କୂଳରେ ଯୁଗଳ କିଶୋରଜୀ ମନ୍ଦିରରେ ମାଧବ ବିଗ୍ରହ ପୂଜନ । ଗୋକୁଳାନନ୍ଦ ମନ୍ଦିରରେ ସମାଧି ।

୧୨୩୮ ଜଗଦ୍‌ଗୁରୁ ମଧ୍ୱ ଆଚାର୍ଯ୍ୟଙ୍କ ପ୍ରାକଟ୍ୟ ।

୧୩୧୭ ଜଗଦ୍‌ଗୁରୁ ମଧ୍ୱ ଆଚାର୍ଯ୍ୟଙ୍କ ଲୀଳା ପ୍ରବେଶ ।

ଚତୁର୍ଦ୍ଦଶ ଶତାବ୍ଦୀରେ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ଶ୍ରୀବୃନ୍ଦାବନ ଆଗମନ । ବଂଶୀବଟଠାରୁ ଶ୍ରୀଗୋପୀନାଥ ବିଗ୍ରହ ଓ ଗିରିରାଜ ଗୋବର୍ଦ୍ଧନଙ୍କ ଠାରୁ ଗୋପାଳଜୀ ବିଗ୍ରହ ପ୍ରାପ୍ତି । ଶ୍ରୀଗୋପୀନାଥ ଆଜି ଜୟପୁରରେ ଓ ଶ୍ରୀ ଗୋପାଳଜୀ ଶ୍ରୀନାଥ ନାମରେ ବଲ୍ଲଭ ଆଚାର୍ଯ୍ୟଙ୍କ ଦ୍ୱାରା ନାଥଦ୍ୱାରାଠାରେ ସ୍ଥାପିତ ।

୧୪୦୦ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କ ବ୍ରଜଧାମ ଆଗମନ । ମାଧବେନ୍ଦ୍ର ପୁରୀଙ୍କ ସହ ଭେଟ । ବୃନ୍ଦାବନର ଲୁପ୍ତ ଲୀଳାସ୍ଥଳୀମାନଙ୍କର ପୁନଃପ୍ରକଟ ପର୍ବର ଶୁଭାରମ୍ଭ ।

ପଞ୍ଚଦଶ ଶତାବ୍ଦୀରେ ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟ (୧୪୩୭-୧୫୫୮)ଙ୍କ ବୃନ୍ଦାବନ ଆଗମନ । ବୃନ୍ଦାବନର ଶ୍ରୀଯମୁନା କୂଳ (ଆଜିର ଅଦ୍ୱୈତବଟ)ଠାରୁ ଶ୍ରୀମଦନ ମୋହନ ବିଗ୍ରହ ପ୍ରାପ୍ତି । ପରେ ସେହି ବିଗ୍ରହ ଚୌବେଙ୍କ ଦ୍ୱାରା ମଥୁରାରେ, ଶ୍ରୀ ସନାତନ ଗୋସ୍ୱାମୀଙ୍କ ଦ୍ୱାରା ବୃନ୍ଦାବନରେ ଓ ଶେଷରେ ଜୟପୁର ବାଟ ଦେଇ ବର୍ତ୍ତମାନ ରାଜସ୍ଥାନର କରୋଲି ଧାମରେ ସ୍ଥାପିତ ହୋଇଛନ୍ତି ।

**ପରିଶିଷ୍ଟ-୩**

# ଶ୍ରୀବୃନ୍ଦାବନ ଲୀଳାର ଆଧୁନିକ ଯୁଗର ଇତିହାସ

**ଖ୍ରୀଷ୍ଟାବ୍ଦ:**

୧୪୮୬ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ମାୟାପୁରରେ ପ୍ରାକଟ୍ୟ ।

୧୫୧୦ ମହାପ୍ରଭୁଙ୍କ ନାମ ସଂକୀର୍ତ୍ତନ ସହ ନୀଳାଚଳ ଆଗମନ ।

୧୫୧୨ ମହାପ୍ରଭୁଙ୍କ ଦାକ୍ଷିଣାତ୍ୟ ଭ୍ରମଣ ଲୀଳା ।

୧୫୧୫ ମହାପ୍ରଭୁଙ୍କ ଶ୍ରୀବୃନ୍ଦାବନ ଧାମ ଆଗମନ ।

**ପଞ୍ଚତତ୍ତ୍ୱ ଲୀଳା:**

୧. ଶ୍ରୀଚୈତନ୍ୟ (ଶ୍ରୀକୃଷ୍ଣ) ୧୪୮୬-୧୫୩୪= ୪୮ ବର୍ଷ

୨. ଶ୍ରୀନିତ୍ୟାନନ୍ଦ (ଶ୍ରୀବଳରାମ) ୧୪୭୩-୧୫୩୨= ୫୯ବର୍ଷ

୩. ଶ୍ରୀଅଦ୍ୱୈତ (ଶ୍ରୀବିଷ୍ଣୁ-ଶିବ) ୧୪୩୪-୧୫୫୮= ୧୨୪ ବର୍ଷ

୪. ଶ୍ରୀଗଦାଧର (ଭକ୍ତି-ଶ୍ରୀରାଧା) ୧୪୮୭-୧୫୩୫= ୪୮ବର୍ଷ

୫. ଶ୍ରୀବାସ(ନାରଦଜୀ) - ପଞ୍ଚଦଶ ଶତାବ୍ଦୀ

**ଷଡଗୋସ୍ୱାମୀ ଲୀଳା:**

୧. ଶ୍ରୀରୂପ ଗୋସ୍ୱାମୀ - ୧୪୮୯-୧୫୬୪= ୭୫ବର୍ଷ

୨. ଶ୍ରୀସନାତନ ଗୋସ୍ୱାମୀ- ୧୪୮୮-୧୫୫୮ = ୭୦ବର୍ଷ

୩. ଶ୍ରୀରଘୁନାଥ ଦାସ ଗୋସ୍ୱାମୀ- ୧୪୯୫-୧୫୮୬= ୯୧ ବର୍ଷ

୪. ଶ୍ରୀରଘୁନାଥ ଭଟ୍ଟ ଗୋସ୍ୱାମୀ- ୧୫୦୫-୧୫୭୯= ୭୪ ବର୍ଷ

୫. ଶ୍ରୀଗୋପାଳ ଭଟ୍ଟ ଗୋସ୍ୱାମୀ- ୧୫୦୩-୧୫୭୮= ୭୫ବର୍ଷ

୬. ଶ୍ରୀ ଜୀବ ଗୋସ୍ୱାମୀ- ୧୫୧୩-୧୬୦୮= ୯୫ବର୍ଷ

**ପାଞ୍ଚମୂଳ ଜଗଦ୍‌ଗୁରୁ ଲୀଳା:**

୧. ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟ- ଖ୍ରୀଷ୍ଟପୂର୍ବ ୬୦୦

୨. (କ) ଶ୍ରୀଆଦିଶଙ୍କର ଆଚାର୍ଯ୍ୟ-ଖ୍ରୀ.ପୂ: ୫୦୯-୪୭୭= ୩୨ ବର୍ଷ

(ଖ) ଶ୍ରୀଅଭିନବଶଙ୍କର (କେରଳ)- ଖ୍ରୀ.: ୭୮୮-୮୨୦ = ୩୨ବର୍ଷ

୩. ଶ୍ରୀରାମାନୁଜ ଆଚାର୍ଯ୍ୟ- ୧୦୧୭-୧୧୩୭ = ୧୨୦ବର୍ଷ

୪. ଶ୍ରୀ ମଧ୍ୱ ଆଚାର୍ଯ୍ୟ - ୧୨୩୮-୧୩୧୭ = ୭୯ ବର୍ଷ

୫. ଶ୍ରୀକୃପାଳୁଜୀ ମହାରାଜ- ୧୯୨୨-୨୦୧୩ = ୯୧ବର୍ଷ

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

**ଖ୍ରୀଷ୍ଟାବ୍ଦ:**

୧୫୧୬ ଶ୍ରୀରୂପ ଗୋସ୍ୱାମୀ ଓ ସନାତନ ଗୋସ୍ୱାମୀଙ୍କ ବୃନ୍ଦାବନ ଆଗମନ ।

୧୫୩୧ ଶ୍ରୀରଘୁନାଥ ଭଟ୍ଟଙ୍କ ବୃନ୍ଦାବନ ଆଗମନ ।

୧୫୩୪ ନୀଳାଚଳଧାମରେ ଶ୍ରୀମନ୍ ମହାପ୍ରଭୁଙ୍କ ଲୀଳା ପ୍ରବେଶ ।

୧୫୩୫ ଶ୍ରୀଜୀବଗୋସ୍ୱାମୀଙ୍କ ବୃନ୍ଦାବନ ଆଗମନ ।

୧୫୩୮ ମୀରା ବାଈଙ୍କର ବୃନ୍ଦାବନ ଆଗମନ ।

୧୫୪୨ ଶ୍ରୀରାଧାଦାମୋଦର ଓ ଶ୍ରୀରାଧା ମଦନମୋହନଙ୍କ ସେବାପୂଜା ଆରମ୍ଭ ।
ଶ୍ରୀରାଧା ରମଣ ଶାଳଗ୍ରାମ ଶିଳାରୁ ପ୍ରକଟ ହେଲେ ।
ଶ୍ରୀଜୀବ ଗୋସ୍ୱାମୀ ରାଧାକୁଣ୍ଡ ଜମି କିଣିଲେ ।

୧୫୪୬ ମୀରା ବାଈଙ୍କ ଦ୍ୱାରକା ଧାମରେ ଲୀଳା ପ୍ରବେଶ ।

୧୫୫୮ ଶ୍ରୀଜୀବ ଗୋସ୍ୱାମୀ ସେବାକୁଞ୍ଜ ଜମି କିଣିଲେ ।

୧୫୭୦ ସମ୍ରାଟ୍ ଆକବରଙ୍କ ବୃନ୍ଦାବନ ପରିଦର୍ଶନ ।

୧୫୭୪ ଶ୍ରୀନିବାସ ଆଚାର୍ଯ୍ୟ ଓ ଭୂଗର୍ଭ ଗୋସ୍ୱାମୀଙ୍କ ବୃନ୍ଦାବନ ଆଗମନ, ବ୍ରଜମଣ୍ଡଳ ପରିକ୍ରମାର ଶୁଭାରମ୍ଭ ।

୧୫୭୮ ଶ୍ରୀଶ୍ୟାମାନନ୍ଦଙ୍କ ଦ୍ୱାରା ନିଧୁବନରୁ ଶ୍ୟାମସୁନ୍ଦର ବିଗ୍ରହ ପ୍ରକଟ ।

୧୫୮୦ ଜୟପୁରରାଜାଙ୍କ ରତ୍ନଭଣ୍ଡାରରେ ଶ୍ରୀରାଧା ପ୍ରାକଟ୍ୟ ଓ ଶ୍ୟାମସୁନ୍ଦର ମନ୍ଦିରକୁ ଆଗମନ ।

୧୫୮୧ ଶ୍ୟାମକୁଣ୍ଡଠାରେ ଚୈତନ୍ୟ ଚରିତାମୃତ ଗ୍ରନ୍ଥ ଲେଖା ସଂପୂର୍ଣ୍ଣ ।

୧୫୮୨ ନରୋତ୍ତମ, ଶ୍ୟାମାନନ୍ଦ, ଶ୍ରୀନିବାସ ଆଚାର୍ଯ୍ୟଙ୍କ ଦ୍ୱାରା ଜୀବଗୋସ୍ୱାମୀଙ୍କ ଆଦେଶରେ ନାମ ସଂକୀର୍ତ୍ତନ ପ୍ରଚାର ଆରମ୍ଭ ।

୧୫୯୦ ଶ୍ରୀଗୋବିନ୍ଦଜୀ ମନ୍ଦିର ନିର୍ମାଣ ସଂପୂର୍ଣ୍ଣ ।

୧୬୨୬ ଶ୍ରୀରାଧା ବଲ୍ଲଭଜୀ ସେବାକୁଞ୍ଜର ଲଳିତା କୁଣ୍ଡରୁ ପ୍ରକଟ ।

୧୬୨୭ ଶ୍ରୀଯୁଗଳ କିଶୋର ମନ୍ଦିରରେ ଜୟଦେବଙ୍କ ରାଧାମାଧବ ବିଗ୍ରହ ସେବା ପୂଜା ଆରମ୍ଭ ।

୧୬୩୨ ଶ୍ରୀରାଧା ଗୋପୀନାଥ ମନ୍ଦିର ନିର୍ମାଣ ସଂପୂର୍ଣ୍ଣ ।

୧୬୭୦ ଆଉରଙ୍ଗଜେବଙ୍କ ମଥୁରା ବୃନ୍ଦାବନ ମନ୍ଦିରମାନଙ୍କର ଧ୍ୱଂସଲୀଳା ।

୧୭୩୯ ଶ୍ରୀରାଧାଦାମୋଦର ବିଗ୍ରହ ଫେରିଲେ ବୃନ୍ଦାବନ ।

୧୭୬୪ ରାଧାଦାମୋଦର ଜୟପୁରରୁ ବୃନ୍ଦାବନକୁ ଫେରିଲେ ପୁଣି ଥରେ

| | |
|---|---|
| | ଜୟପୁର ଯାଇ ସେଠାରେ ରହିଗଲେ । |
| ୧୮୧୦ | ଲାଲାବାବୁଙ୍କ ଶ୍ରୀକୃଷ୍ଣଚନ୍ଦ୍ରମା ମନ୍ଦିର ନର୍ମାଣ ସଂପୂର୍ଣ୍ଣ । |
| ୧୮୧୪ | ମଥୁରାରେ ଶ୍ରୀଦ୍ୱାରକାଧୀଶ ମନ୍ଦିର ନିର୍ମାଣ ସଂପୂର୍ଣ୍ଣ । |
| ୧୮୩୫ | ବୃନ୍ଦାବନରେ ଶ୍ରୀ ଶାହଜୀ ମନ୍ଦିର ନିର୍ମାଣ ଆରମ୍ଭ । |
| ୧୮୫୧ | ଶ୍ରୀ ରଙ୍ଗଜୀ ମନ୍ଦିର ନିର୍ମାଣ ସଂପୂର୍ଣ୍ଣ । |
| ୧୮୬୪ | ଶ୍ରୀବାଙ୍କେବିହାରୀଙ୍କ ମନ୍ଦିର ନିର୍ମାଣ ସଂପୂର୍ଣ୍ଣ । |
| ୧୮୭୫ | ନୀଳଚଳ ଧାମରେ କାଶୀମିଶ୍ର ବଂଶରେ ଓଡ଼ିଆବାବାଙ୍କ ପ୍ରାକଟ୍ୟ । |
| ୧୯୧୬ | ଭୃଗୁକ୍ଷେତ୍ରରେ ଓଡ଼ିଆବାବାଙ୍କ ସହିତ ହରିବାବାଙ୍କ ମିଳନ । |
| ୧୯୧୭ | ଜୟପୁର ରାଜା ସୱାଇ ମାଧବଙ୍କ ଦ୍ୱାରା ଜୟପୁରରୁ ବୃନ୍ଦାବନକୁ ମାର୍ବଲ ପଥର ବୋହିବା ଲାଗି ରେଲଲାଇନ୍ ନିର୍ମାଣ । |
| ୧୯୧୮ | ଓଡ଼ିଆ ବାବାଙ୍କ ଶ୍ରୀବୃନ୍ଦାବନ ଆଗମନ । |
| ୧୯୨୨ | ପ୍ରୟାଗ ନିକଟରେ ମନଗଡ଼ଠାରେ ପଞ୍ଚମ ଜଗଦ୍‌ଗୁରୁ ଶ୍ରୀକୃପାଳୁଜୀଙ୍କ ପ୍ରାକଟ୍ୟ । |
| ୧୯୨୩ | ଅନୁପ ସହରଠାରେ ହରିବାବାଙ୍କ ପ୍ରେମ ସଂକୀର୍ତ୍ତନ ବନ୍ଧ ନିର୍ମାଣ ଶେଷ । |
| ୧୯୨୫ | ଓଡ଼ିଆ ବାବାଙ୍କ ସହ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ମିଳନ । |
| ୧୯୩୫ | ପ୍ରୟାଗରାଜର ଝୁସୀଠାରେ ଓଡ଼ିଆ ବାବାଙ୍କ ସହିତ ଅଖଣ୍ଡାନନ୍ଦ ସରସ୍ୱତୀଙ୍କ ମିଳନ । |
| ୧୯୩୭ | ବୃନ୍ଦାବନରେ ଓଡ଼ିଆ ବାବାଙ୍କ ଶ୍ରୀକୃଷ୍ଣାଶ୍ରମ ମଠ ନିର୍ମାଣ । ସନ୍ନ୍ୟାସୀମାନଙ୍କର ଜ୍ଞାନମାର୍ଗ ଓ ଗୃହସ୍ଥମାନଙ୍କର ପ୍ରେମମାର୍ଗ (ବୈଧୀ ଓ ରାଗାନୁଗା)ର ମଧୁର ସମନ୍ୱୟ ସ୍ଥାପନ । |
| ୧୯୪୮ | ବୃନ୍ଦାବନରେ ଓଡ଼ିଆ ବାବାଙ୍କ ଲୀଳା ପ୍ରବେଶ ଓ ଜଳସମାଧି । |
| ୧୯୭୩ | ବୃନ୍ଦାବନରେ ନିମକରୋଲି ବାବାଙ୍କ ଲୀଳା ସମ୍ବରଣ । |
| ୨୦୦୦ | ଶ୍ରୀବର୍ଷାଣା ଧାମରେ ଶ୍ରୀକୃପାଳୁଜୀଙ୍କ ରଂଗିଲୀ ମହଲ ନିର୍ମାଣ । |
| ୨୦୧୨ | ପଞ୍ଚମ ମୂଳ ଜଗଦ୍‌ଗୁରୁ ଶ୍ରୀକୃପାଳୁଙ୍କ ପ୍ରେମମନ୍ଦିର ନିର୍ମାଣ ସଂପୂର୍ଣ୍ଣ । |
| ୨୦୧୩ | ଶ୍ରୀକୃପାଳୁ ମହାରାଜଙ୍କ ଲୀଳା ପ୍ରବେଶ । |

**ବିଶେଷ ଦ୍ରଷ୍ଟବ୍ୟ : ଶ୍ରୀ ଓଡ଼ିଆ ବାବା, ହରିବାବା, ପ୍ରଭୁଦତ୍ତ ବ୍ରହ୍ମଚାରୀଜୀଙ୍କ ବିଷୟରେ ଅଧିକ ଜାଣିବାକୁ ହେଲେ ପାଠକମାନେ ଇଣ୍ଟରନେଟ୍ ୱେବ୍‌ସାଇଟ୍ ଦେଖିପାରନ୍ତି ।**

ପରିଶିଷ୍ଟ-୪

## ବ୍ରଜରସ ରସିକବୃନ୍ଦଙ୍କର ଲୀଳା କାଳ
## (ଖ୍ରୀଷ୍ଟାବ୍ଦ ଓ ବର୍ଷରେ)

**ଚତୁର୍ଦ୍ଦଶ ଶତାବ୍ଦୀ:**

| | |
|---|---|
| ଶ୍ରୀଧର ସ୍ୱାମୀ (ବାଲେଶ୍ୱର) | ୧୩୨୮-୧୪୧୪=୮୬ |
| | **ପଞ୍ଚଦଶ ଶତାବ୍ଦୀ:** |
| ପ୍ରବୋଧାନନ୍ଦ ସରସ୍ୱତୀ- | ପଞ୍ଚଦଶ ଶତାବ୍ଦୀ |
| ରାମାନନ୍ଦ ଆଚାର୍ଯ୍ୟ | ୧୪୦୦-୧୪୮୦=୮୦ |
| ସନ୍ଥ କବିର ଦାସ | ୧୪୪୦-୧୫୧୮= ୭୮ |
| ହରିଦାସ ଠାକୁର (ପୁରୀ) | ୧୪୫୦-୧୫୨୮= ୭୮ |
| ପୀପା ଜୀ | ୧୪୫୦-୧୫୪୦= ୯୦ |
| ନରୋତ୍ତମ ଦାସ | ୧୪୬୬-୧୫୭୨= ୧୦୬ |
| ସୁରଦାସ (ମଥୁରା) | ୧୪୭୮-୧୫୮୪=୧୦୬ |
| ବଲ୍ଲଭ ଆଚାର୍ଯ୍ୟ | ୧୪୭୯-୧୫୩୧= ୫୨ |
| ସ୍ୱାମୀ ହରି ଦାସ (ବୃନ୍ଦାବନ) | ୧୪୮୦-୧୫୭୫= ୯୫ |
| ତୁଳସୀ ଦାସ | ୧୪୯୭-୧୬୨୩= ୧୨୬ |
| ମୀରା ବାଈ | ୧୪୯୮-୧୫୫୭= ୫୯ |
| | **ଷୋଡ଼ଶ ଶତାବ୍ଦୀ** |
| ବୃନ୍ଦାବନ ଦାସ ଠାକୁର | ୧୫୦୭-୧୫୮୯=୮୨ |
| କନକ ଦାସ (ଉଡୁପୀ) | ୧୫୦୯-୧୬୦୯= ୧୦୦ |
| ବିଠଳନାଥ ଜୀ | ୧୫୧୬-୧୬୪୨=୧୨୬ |
| ଶ୍ରୀନିବାସ ଆଚାର୍ଯ୍ୟ | ୧୫୧୭-୧୫୯୯=୮୨ |
| କୃଷ୍ଣଦାସ କବିରାଜ | ୧୫୨୦-୧୬୧୬= ୯୬ |
| ଲୋଚନ ଦାସ ଠାକୁର | ୧୫୨୩-୧୫୮୯= ୬୬ |
| ନାଭାଜୀ ଗୋସ୍ୱାମୀ | ୧୫୩୭-୧୬୪୩= ୧୦୬ |
| ରସ ଖାଁ (ବୃନ୍ଦାବନ) | ୧୫୪୮-୧୬୨୮=୮୦ |

| | |
|---|---|
| ନାରାୟଣ ଭଟ୍ଟଥାରି | ୧୫୫୯-୧୬୬୬= ୧୦୭ |
| ମଲୁକ ଦାସ ଜୀ | ୧୫୭୪-୧୬୮୨= ୧୦୮ |
| | **ସପ୍ତଦଶ ଶତାବ୍ଦୀ** |
| ବିଶ୍ୱନାଥ ଚକ୍ରବର୍ତ୍ତୀ | ୧୬୨୬-୧୭୦୮=୮୨ |
| ସନ୍ଥ ତୁକାରାମ | ୧୬୦୮-୧୬୪୯= ୪୧ |
| | **ଅଷ୍ଟାଦଶ ଶତାବ୍ଦୀ** |
| ବଳଦେବ ବିଦ୍ୟାଭୂଷଣ | ୧୬୭୮-୧୭୬୮=୯୦ |
| | **ଊନବିଂଶ ଶତାବ୍ଦୀ** |
| ରାମକୃଷ୍ଣ ପରମହଂସ | ୧୮୩୬-୧୮୮୬=୫୦ |
| ଭକ୍ତି ବିନୋଦ ଠାକୁର | ୧୮୩୮-୧୯୧୪=୭୬ |
| ଗୱାରିଆ ବାବା | ୧୮୪୩-୧୯୩୮= ୯୫ |
| ରାଧାରମଣବାବା(ବଡ଼ବାବାଜୀ) | ୧୮୫୪-୧୯୦୬=୫୨ |
| ମାଧବଦାସ ବାବା | ୧୮୫୭-୧୯୩୩=୭୬ |
| ସ୍ୱାମୀ ବିବେକାନନ୍ଦ | ୧୮୬୩-୧୯୦୨=୩୯ |
| ଓଡ଼ିଆ ବାବା | ୧୮୭୫-୧୯୪୯=୭୪ |
| ସ୍ୱାମୀ ଶିବାନନ୍ଦ | ୧୮୮୭-୧୯୬୩=୭୬ |
| ଗୌରାଙ୍ଗ ଦାସ ବାବା | ୧୮୮୭-୧୯୫୩= ୬୬ |
| ଯୋଗାନନ୍ଦ ପରମହଂସ | ୧୮୯୩-୧୯୫୨= ୫୯ |
| ମା'ଆନନ୍ଦମୟୀ | ୧୮୯୬-୧୯୮୨=୮୬ |
| ଭକ୍ତିବେଦାନ୍ତ ସ୍ୱାମୀ | ୧୮୯୬-୧୯୭୭= ୮୧ |
| | **ବିଂଶ ଶତାବ୍ଦୀ** |
| ନିମ କରୋଲି ବାବା | - - -୧୯୭୩= ? |
| ଦେଓରିଆ ବାବା | - - -୧୯୯୦ = ? |
| କରପାତ୍ରୀ ଜୀ | ୧୯୦୭-୧୯୮୨= ୭୫ |
| ଅଖଣ୍ଡ ଆନନ୍ଦ ସରସ୍ୱତୀ | ୧୯୧୧-୧୯୮୭= ୭୬ |
| ଓଶୋ (ରଜନୀଶ) | ୧୯୩୧-୧୯୯୦= ୫୯ |

ପରିଶିଷ୍ଟ-୫

## ଚବିଶ ମହାପୁରୁଷ ଚବିଶ ବିଗ୍ରହ ଚବିଶ ଲୀଳାସ୍ଥଳୀ

| କ୍ର.ସଂ. | ମହାପୁରୁଷ | ସେବିତ ବିଗ୍ରହ | ଲୀଳାସ୍ଥଳୀ |
|---|---|---|---|
| ୧. | ବଜ୍ରନାଭ | କେଶବ ଦେଓଜୀ | ମଥୁରା (ଜନ୍ମଭୂମି) |
| ୨. | ବଜ୍ରନାଭ | ହରିଦେଓଜୀ | ଗୋବର୍ଦ୍ଧନ |
| ୩. | ମାଧବେନ୍ଦ୍ର ପୁରୀ | ଗୋପାଳଜୀ | ଗୋବର୍ଦ୍ଧନ(ଜତିପୁରା) |
| ୪. | ରୂପଗୋସ୍ୱାମୀ | ରାଧାଗୋବିନ୍ଦଦେବ | ବୃନ୍ଦାବନ, ଜୟପୁର |
| ୫. | ସନାତନ ଗୋସ୍ୱାମୀ | ରାଧା ମଦନମୋହନ | ବୃନ୍ଦାବନ, କରୋଲି |
| ୬. | ମାଧବ ପଣ୍ଡିତ | ରାଧା ଗୋପୀନାଥ | ବୃନ୍ଦାବନ, ଜୟପୁର |
| ୭. | ଗୋପାଳଭଟ୍ଟ ଗୋସ୍ୱାମୀ | ରାଧାରମଣ | ବୃନ୍ଦାବନ |
| ୮. | ସନ୍ଥ ହରିଦାସ | ବାଙ୍କେ ବିହାରୀ | ବୃନ୍ଦାବନ |
| ୯. | ଶ୍ୟାମାନନ୍ଦ ପ୍ରଭୁ | ରାଧା ଶ୍ୟାମସୁନ୍ଦର | ବୃନ୍ଦାବନ |
| ୧୦. | ଲୋକନାଥ ଗୋସ୍ୱାମୀ | ରାଧା ବିନୋଦ | ବୃନ୍ଦାବନ, ଜୟପୁର |
| ୧୧. | ଜୟଦେବ ଗୋସ୍ୱାମୀ | ରାଧା ମାଧବ | ବୃନ୍ଦାବନ, ଜୟପୁର |
| ୧୨. | ହରିବଂଶ ଗୋସ୍ୱାମୀ | ରାଧାବଲ୍ଲଭଜୀ | ବୃନ୍ଦାବନ |
| ୧୩. | ବିଶ୍ୱନାଥ ଚକ୍ରବର୍ତ୍ତୀ | ରାଧା ଗୋକୁଳାନନ୍ଦ | ବୃନ୍ଦାବନ, ଜୟପୁର |
| ୧୪. | ନରୋତ୍ତମ ଦାସ | ଶ୍ରୀଚୈତନ୍ୟ ମହାପ୍ରଭୁ | ବୃନ୍ଦାବନ |
| ୧୫. | ବଲ୍ଲଭ ଆଚାର୍ଯ୍ୟ | ଶ୍ରୀନାଥ ଜୀ | ରାଜସ୍ଥାନ, ନାଥଦ୍ୱାରା |
| ୧୬. | ଲାଲା ବାବୁ | କୃଷ୍ଣ ଚନ୍ଦ୍ରମା | ବୃନ୍ଦାବନ |
| ୧୭. | ନାରାୟଣ ଭଟ୍ଟ ଗୋସ୍ୱାମୀ | ଶ୍ରୀଜୀ ବା ରାଧାରାଣୀ | ବର୍ଷାଣା |
| ୧୮. | ଜୀବଗୋସ୍ୱାମୀ | ରାଧା ଦାମୋଦର | ବୃନ୍ଦାବନ |
| ୧୯. | ଭୂଗର୍ଭ ଗୋସ୍ୱାମୀ | ରାଧାଛୈଳଚିକ୍କଣିଆଜୀ | ବୃନ୍ଦାବନ |
| ୨୦. | ବଳଦେବ ବିଦ୍ୟାଭୂଷଣ | ରାଧା ବିଜୟ ଗୋବିନ୍ଦ | ବୃନ୍ଦାବନ |
| ୨୧. | କୃଷ୍ଣଦାସ କବିରାଜ ଗୋସ୍ୱାମୀ | ରାଧା ବୃନ୍ଦାବନଚନ୍ଦ୍ର | ବୃନ୍ଦାବନ |
| ୨୨. | ସ୍ୱାମୀ ଅଖଣ୍ଡାନନ୍ଦ ସରସ୍ୱତୀ | ନୃତ୍ୟଗୋପାଳ | ବୃନ୍ଦାବନ (ମୋତିଝିଲ) |
| ୨୩. | ଭକ୍ତିବେଦାନ୍ତ ସ୍ୱାମୀ ପ୍ରଭୁପାଦ | କୃଷ୍ଣବଳରାମ | ବୃନ୍ଦାବନ |
| ୨୪. | ଶ୍ରୀକୃପାଳୁଜୀ ମହାରାଜ | ଶ୍ୟାମା ଶ୍ୟାମ | ବୃନ୍ଦାବନ (ପ୍ରେମମନ୍ଦିର) |

**ପରିଶିଷ୍ଟ-୬**

## ଶ୍ରୀବୃନ୍ଦାବନ ମଧ୍ୟରେ ପୁଣି ଦ୍ୱାଦଶ ବନ

୧. **ଶ୍ରୀଅଟଳ ବନ:** ବୃନ୍ଦାବନର ଦକ୍ଷିଣରେ ଅବସ୍ଥିତ । ପ୍ରଥମେ ମଥୁରା ଯାଜ୍ଞିକ ବ୍ରାହ୍ମଣ ମାନେ ରାମକୃଷ୍ଣଙ୍କୁ ଭୋଜନ ଦେବାକୁ ମନା କଲେ । ତାଙ୍କର ପତ୍ନୀମାନେ କିନ୍ତୁ ଠାକୁରଜୀଙ୍କ ଠାରେ ଅଟଳ ଭକ୍ତିଥିବା ପ୍ରମାଣ କରି ଏହି ବନରେ ଦେଖାଇ ଦେଇଥିଲେ । ତେଣୁ ଏପରି ନାମ ହୋଇଛି ।

୨. **ଶ୍ରୀକେଓ୍ୱାରୀ ବନ:** ଅଟଳ ବନର ଉତ୍ତର ପଶ୍ଚିମ ଦିଗରେ ଅବସ୍ଥିତ । ଏଠାରେ ଦାବାନଳ କୁଣ୍ଡ ବିଦ୍ୟମାନ । କାଳୀୟ ଦମନ ପରେ ବ୍ରଜବାସୀମାନେ ସେଦିନ ଏହିବନରେ ରାତିରେ ବିଶ୍ରାମ ନେଲେ । ସେହି ରାତିରେ ଅଗ୍ନିଜ୍ୱାଳାରୁ ଭଗବାନ ଗୋପୀ ଗୋପାଳମାନଙ୍କୁ ଅଗ୍ନି ଭୟରୁ ନିବାରଣ (ରକ୍ଷା) କରିଥିଲେ । କେ ନିବାରିରୁ କେଓ୍ୱାରୀ ବନ ନାମ ହେଲା ।

୩. **ଶ୍ରୀ ବିହାର ବନ:** ପୂର୍ବବନର ଦକ୍ଷିଣ ପଶ୍ଚିମରେ ଏହି ବନ ଅବସ୍ଥିତ । ଏହା ଶ୍ରୀରାଧା କୃଷ୍ଣଙ୍କର ନିତ୍ୟ ବିହାରସ୍ଥଳୀ । ବୃନ୍ଦାବନ ପରିକ୍ରମା କରୁଥିବା ଯାତ୍ରୀମାନେ ଏଠାରେ ରାଧେ ରାଧେ କିମ୍ବା ରାଧେ ଶ୍ୟାମ ବୋଲି ଡ଼ାକ ପକାଇ ଆନନ୍ଦିତ ହୁଅନ୍ତି ।

୪. **ଶ୍ରୀଗୋଚାରଣ ବନ:** ବିହାର ବନର ଠିକ୍ ପଶ୍ଚିମରେ ଏହି ବନ ଅବସ୍ଥିତ । ଏହା କୃଷ୍ଣ ବଳରାମଙ୍କ ବତ୍ସାଚାରଣ ବନ । ଏଠାରେ ବରାହ ଦେବଙ୍କ ବିଗ୍ରହ ଓ ଗୌତମ ମୁନିଙ୍କ ତପସ୍ୟାସ୍ଥଳୀ ମଧ୍ୟ ବିଦ୍ୟମାନ ।

୫. **ଶ୍ରୀକାଳୀୟ ଦମନ ବନ:** ପୂର୍ବବନର ଉତ୍ତରରେ ଏହା ଅବସ୍ଥିତ । ବର୍ତ୍ତମାନ ଯମୁନାକୂଳରେ କେଳି କଦମ୍ବ ବା କାଳୀ କଦମ୍ବ ଓ ଶ୍ରୀକାଳୀୟ ମର୍ଦ୍ଦନଙ୍କ ମନ୍ଦିର ଦର୍ଶନୀୟ ।

୬. **ଶ୍ରୀ ଗୋପାଳ ବନ:** ପୂର୍ବବନର ଉତ୍ତରରେ ଏହି ଗୋପାଳ ବନ ବିଦ୍ୟମାନ । କାଳୀୟ ଦମନ ପରେ ବିପଦରୁ ଉଦ୍ଧାର ପାଇ ନନ୍ଦ ଯଶୋଦା ଏଠାରେ ବ୍ରାହ୍ମଣମାନଙ୍କୁ ଗୋଦାନ କରିଥିଲେ ।

୭. **ଶ୍ରୀ ନିକୁଞ୍ଜ ବନ (ଶ୍ରୀ ସେବାକୁଞ୍ଜ):** ଗୋପାଳବନର ଉତ୍ତର ପୂର୍ବରେ ବୃନ୍ଦାବନ ସହରର କେନ୍ଦ୍ର ସ୍ଥଳରେ ଏହା ବିଦ୍ୟମାନ । ଏଠାରେ ରାଧାକୃଷ୍ଣଙ୍କର ଏବେ ମଧ୍ୟ ନୈଶ ବିହାର ହୁଏ । ପ୍ରତ୍ୟେକ ଦିନ ରାତିସାରା ଏହି ବନର ପ୍ରାଚୀରର ତାଲା ପଡ଼ି ଫାଟକ ବନ୍ଦ ରହେ ।

୮. **ଶ୍ରୀନିଧୁବନ:** ଶ୍ରୀ ଶାହଜୀ ମନ୍ଦିର ନିକଟରେ ଥିବା ଏହା ମଧ୍ୟ ସେବାକୁଞ୍ଜ ବନ ସଦୃଶ ଏକ ନୈଶ ନିଷିଦ୍ଧ ବନ । ଏହି ବନରେ ଅତି ଗୋପନୀୟ ଶ୍ରୀରାଧାକୃଷ୍ଣଙ୍କର ରଙ୍ଗମହଲ ଅବସ୍ଥିତ । ଭକ୍ତ ହରିଦାସ ଓ ତାଙ୍କ ପରିବାରର ସମସ୍ତଙ୍କ ସମାଧି ଏହି ବନରେ ବିଦ୍ୟମାନ । ଶ୍ରୀବାଙ୍କେ ବିହାରୀଙ୍କର ପ୍ରାକଟ୍ୟ ସ୍ଥାନ ଏହି ବନସ୍ଥିତ ବିଶାଖାକୁଣ୍ଡ ଦର୍ଶନୀୟ ଅଟେ ।

୯. **ଶ୍ରୀରାଧାବନ ବା ଶ୍ରୀରାଧା ବାଗ:** ଶ୍ରୀବୃନ୍ଦାବନର ଉତ୍ତରପୂର୍ବ କୋଣରେ ଯମୁନା ତୀରରେ ଅବସ୍ଥିତ । ଏଠାରେ ଶୃଙ୍ଗାରବଟ ଓ ଗୌରନିତାଇ ମନ୍ଦିର ଦର୍ଶନୀୟ । ଶ୍ରୀ ଗୋବିନ୍ଦ ଘାଟ ଓ ରାସମଣ୍ଡଳର ଅତି ନିକଟ ।

୧୦. **ଶ୍ରୀଝୁଲଣ ବନ:** ରାଧାବନର ଦକ୍ଷିଣରେ ଏହା ଅବସ୍ଥିତ । ଶ୍ରାବଣ ମାସରେ ଏହି ବନରେ ରାଧା-ଗୋବିନ୍ଦଙ୍କୁ ଝୁଲାରେ ଝୁଲା ଯାଇଥିଲା ।

୧୧. **ଶ୍ରୀଗହ୍ୱର ବନ:** ଝୁଲଣ ବନର ଦକ୍ଷିଣରେ ଏହା ଅବସ୍ଥିତ । ଏଠାରେ ପାଣି ଘାଟ ଲୀଳାସ୍ଥଳୀ ଦର୍ଶନୀୟ । ଗୋପୀମାନେ ଏହି ସ୍ଥାନରୁ ଦୁର୍ବାସା ଆଶ୍ରମକୁ ମୁନିଙ୍କୁ ଭୋଜନ ଦେବାକୁ ଯାଇଥିଲେ ।

୧୨. **ଶ୍ରୀ ପପଡ଼ ବନ:** ଗହ୍ୱର ବନର ଦକ୍ଷିଣରେ ଏହା ଅବସ୍ଥିତ । ଠାକୁରଜୀ ଏଠାରେ ଗୋପୀମାନଙ୍କୁ ଆଦି ବଦ୍ରୀ ଦର୍ଶନ କରାଇଥିଲେ । ଏବେ ଏଠାରେ ଆଦି ବଦ୍ରୀବନ ଓ ଯମୁନାଙ୍କର ଆଦିବଦ୍ରୀ ଘାଟ ଦର୍ଶନୀୟ ।

-୦-

ପରିଶିଷ୍ଟ-୭

## ଶ୍ରୀବ୍ରଜମଣ୍ଡଳର ଦ୍ୱାଦଶ ବନ

| | |
|---|---|
| ୧. ଶ୍ରୀ ଭଦ୍ର ବନ | ୭. ଶ୍ରୀ ଖଦିର ବନ |
| ୨. ଶ୍ରୀ ବିଲ୍ୱ ବନ | ୮. ଶ୍ରୀ ବେହୁଲା ବନ |
| ୩. ଶ୍ରୀ ଲୌହ ବନ | ୯. ଶ୍ରୀ କୁମୁଦ ବନ |
| ୪. ଶ୍ରୀଭାଣ୍ଡୀର ବନ | ୧୦. ଶ୍ରୀ କାମ୍ୟ ବନ |
| ୫. ଶ୍ରୀ ମହା ବନ | ୧୧. ଶ୍ରୀ ମଧୁ ବନ |
| ୬. ଶ୍ରୀ ତାଳ ବନ | ୧୨. ଶ୍ରୀ ବୃନ୍ଦା ବନ |

## ଶ୍ରୀବ୍ରଜମଣ୍ଡଳର ଚବିଶ ଉପବନ

| | |
|---|---|
| ୧. ଗୋକୁଳ | ୧୩. ଗନ୍ଧର୍ବ ବନ |
| ୨. ଗୋବର୍ଦ୍ଧନ | ୧୪. ପାରାସୌଲି |
| ୩. ବର୍ଷାଣା | ୧୫. ବିଲଛୁ |
| ୪. ସଂକେତ | ୧୬. ବସ୍ଥ |
| ୫. ନନ୍ଦଗାଓଁ | ୧୭. ଆଦିବଦ୍ରି |
| ୬. ପରମାଦ୍ରା | ୧୮. କରହଲା |
| ୭. ଅରିଙ୍ଗ | ୧୯. ଆଞ୍ଜନୌକ |
| ୮. ସେସାଇ | ୨୦. ପିସାଇ |
| ୯. ମାଟ ବା ମାଠ | ୨୧. କୋକିଳାବନ |
| ୧୦. ଉଁଚାଗାଓଁ | ୨୨. ଦଧିଗ୍ରାମ ବନ |
| ୧୧. କେଲବନ | ୨୩. କୋଟବନ |
| ୧୨. ଶ୍ରୀକୁଣ୍ଡ | ୨୪. ରାଓଲ |

-୦-

ପରିଶିଷ୍ଟ-୮

# ଶ୍ରୀଗୌରାଙ୍ଗ ଓ ରାୟ ରାମାନନ୍ଦ ପ୍ରଶ୍ନୋତ୍ତର

| ଭକ୍ତି ପ୍ରକାର | | ସୋପାନ | ବକ୍ତା-ଶ୍ରୋତା | ପ୍ରଶ୍ନୋତ୍ତର |
|---|---|---|---|---|
| ସାଧନ ଭକ୍ତି | ୧ମ | ଶ୍ରୀଗୌରାଙ୍ଗ | - | ଜୀବର ସାଧ୍ୟ ବା ଲକ୍ଷ୍ୟ କିସ ? |
| | | ଶ୍ରୀ ରାୟ ରାମାନନ୍ଦ | - | ବେଦ ନିର୍ଦ୍ଦେଶିତ ବର୍ଣ୍ଣାଶ୍ରମ ବ୍ୟବସ୍ଥାରେ ସ୍ୱଧର୍ମ ପାଳନ କାରଣ ବିଷ୍ଣୁ ଭକ୍ତି ଉତ୍ପନ୍ନ ହେବ । |
| ,, | ୨ୟ | ଶ୍ରୀ ଗୌରାଙ୍ଗ | - | ଏହା ବାହ୍ୟ କଥା, ଆଗକୁ କହନ୍ତୁ । |
| | | ଶ୍ରୀ ରା.ରା. | - | କୃଷ୍ଣେ କର୍ମାର୍ପଣ । |
| ,, | ୩ୟ | ଶ୍ରୀ ଗୌରାଙ୍ଗ | - | ଏହା ବାହ୍ୟ କଥା, ଆଗକୁ କିଛି ଥିଲେ କହନ୍ତୁ । |
| | | ଶ୍ରୀ ରା.ରା. | - | ସ୍ୱଧର୍ମ ତ୍ୟାଗ ଓ ବ୍ରହ୍ମ ଶରଣାଗତି ଆରମ୍ଭ । |
| ସିଦ୍ଧ ଭକ୍ତି | | | | |
| ସ୍ନେହ | ୪ର୍ଥ | ଶ୍ରୀ ଗୌରାଙ୍ଗ | - | ଏହା ମଧ୍ୟ ବାହ୍ୟ କଥା, ଆଉ ଆଗକୁ କହନ୍ତୁ |
| | | ଶ୍ରୀ ରା.ରା. | - | ଜ୍ଞାନମିଶ୍ରା ଭକ୍ତି -ସାଧ୍ୟସାର ଅଟେ । |
| ମାନ | ୫ମ | ଶ୍ରୀଗୌରାଙ୍ଗ | - | ଏହା ମଧ୍ୟ ବାହ୍ୟ କଥା-ଅଧିକ କିଛି କହନ୍ତୁ । |
| | | ଶ୍ରୀ ରା.ରା. | - | ଜ୍ଞାନଶୂନ୍ୟା ଭକ୍ତି- ଶୁଦ୍ଧଭକ୍ତି । |
| ପ୍ରଣୟ | ୬ଷ୍ଠ | ଶ୍ରୀଗୌରାଙ୍ଗ | - | ବଢ଼ିଆ କଥା- ଆଗକୁ କହନ୍ତୁ । |
| | | ଶ୍ରୀ ରା.ରା. | - | ପ୍ରେମଭକ୍ତି ବା ଶାନ୍ତରସ ପ୍ରାପ୍ତି (ବୈକୁଣ୍ଠ ଲୋକର ଆନନ୍ଦ) । |

| | | | |
|---|---|---|---|
| ରାଗ | ୭ମ | ଶ୍ରୀଗୌରାଙ୍ଗ | - ସୁନ୍ଦର କଥା- ଆହୁରି ଆଗକୁ କହନ୍ତୁ । |
| | | ଶ୍ରୀ ରା.ରା. | - ଦାସ୍ୟ ପ୍ରେମ-ପ୍ରେମ ରସର ଅତ୍ୟୁଚ୍ଚ ଅବସ୍ଥା |
| ଅନୁରାଗ | ୮ମ | ଶ୍ରୀଗୌରାଙ୍ଗ | - ଅତି ସୁନ୍ଦର କଥା- ଆହୁରି କିଛି ଅଛି କି ? |
| | | ଶ୍ରୀ ରା.ରା. | - ସଖ୍ୟ ପ୍ରେମ-ଭୟଶୂନ୍ୟ ପ୍ରେମ ରସ । |
| ପ୍ରେମ | ୯ମ | ଶ୍ରୀଗୌରାଙ୍ଗ | - ଅତି ଉତ୍ତମ କଥା- ପରବର୍ତ୍ତୀ ରସ କିସ ? |
| | | ଶ୍ରୀ ରା.ରା. | - ବାତ୍ସଲ୍ୟ ପ୍ରେମ- ଭଗବାନ ସାନ-ଭକ୍ତ ବଡ଼ । |
| ଭାବ | ୧୦ମ | ଶ୍ରୀଗୌରାଙ୍ଗ | - ଦିବ୍ୟ କଥା- ଆଉ କ'ଣ କିଛି ନାହିଁ ଉପରକୁ |
| | | ଶ୍ରୀ ରା.ରା. | - ମଧୁର ପ୍ରେମ ବା କାନ୍ତା ପ୍ରେମ । |
| ମହାଭାବ | ୧୧ଶ | ଶ୍ରୀଗୌରାଙ୍ଗ | - ସାଧ୍ୟ ପ୍ରେମ ଅବଧି ଶେଷ ସୀମା- ପରପାରର ସାଧ୍ୟାତୀତ କିଛି ଅଛି ? |
| | | ଶ୍ରୀ ରା.ରା. | - ଶ୍ରୀରାଧାଙ୍କ ମହାଭାବ- ଅନ୍ୟ ଜୀବର ଅପହୁଞ୍ଚ ପ୍ରେମ । |

-୦-

ପରିଶିଷ୍ଟ-୯

## ସଦଗୁରୁ ସେବା ସହିତ ହରିନାମ ସେବା ଜୀବର ସର୍ବୋଚ୍ଚ କଲ୍ୟାଣକାରୀ

### ଭୌତିକ ଧନ (ଜମି, ବାଡ଼ି, କୋଠା ଆଦି) ସହିତ ଅଧ୍ୟାତ୍ମ ଧନ (ହରିନାମ ପ୍ରେମ)ର ତୁଳନା

| | ମାନଦଣ୍ଡ | ଭୌତିକ ଧନ | ଅଧ୍ୟାତ୍ମ ଧନ |
|---|---|---|---|
| ୧. | ଦୃଶ୍ୟମାନତା | ସଂସାରରେ ଦେଖାଯାଏ । | ଅଦୃଶ୍ୟ ରହେ । |
| ୨. | ସାଇତା ଯାଏ କି ? | ଲୁଚେଇ ରଖିବାକୁ ହୁଏ । | ଲୁଚେଇବା ଅଦରକାରୀ । |
| ୩. | ବାଣ୍ଟିବାକୁ ପଡ଼େ କି ? | ସେ ଜଡ଼ ବୋଲି ସ୍ୱୟଂ ବାଣ୍ଟି ହୋଇ ପାରେନା । | ସ୍ୱୟଂ ଚେତନ ବୋଲି ଆପେ ବାଣ୍ଟି ହୋଇଥାଏ । |
| ୪. | ବାଣ୍ଟିଲେ କ'ଣ ହୁଏ ? | କ୍ଷୟ ହୁଏ । | ବୃଦ୍ଧି ହୁଏ । |
| ୫. | ସଂଗ୍ରହ ପ୍ରକ୍ରିୟା | ସହଜ ସାଧ୍ୟ | କଷ୍ଟ ସାଧ୍ୟ |
| ୬. | ଲୁଟାଇଲେ ବା ବାଣ୍ଟିଲେ | ମନ ଦୁଃଖ ହୁଏ । | ମହା ଆନନ୍ଦ ମିଳେ । |
| ୭. | ସଂଗ୍ରହକାରୀ ବା ଦାତା | ସଂଖ୍ୟାରେ ବହୁତ | ଅତ୍ୟନ୍ତ ଅଳ୍ପ |
| ୮. | ସଂଗ୍ରହ ହୁଏ କିପରି ? | ପୁରୁଷାର୍ଥ ଦ୍ୱାରା | ହରି ଗୁରୁ ଶରଣାଗତି ଦ୍ୱାରା |

| | | |
|---|---|---|
| ୯. ସଂଗ୍ରହ କରେ ଓ ବାଣ୍ଟିପାରେ କିଏ ? | ବିଷୟୀ କରିପାରେନା ଏକଥା । | ଯେ କରେ ସେ ସନ୍ଥ ବା ସାଧୁ । |
| ୧୦. ସଂଗ୍ରହ କଲେ କିଛି ହୁଏ କି ? | ମନ ମଳିନ ହୁଏ ଓ ଅଂହକାର ବୃଦ୍ଧି ହୁଏ | ମନ, ବୁଦ୍ଧି, ଚିତ୍ତ ନିର୍ମଳ ହୁଏ ଓ ଅଂହକାର ନଷ୍ଟ ହୁଏ |
| ୧୧. ନ ବାଣ୍ଟିଲେ ଅପରାଧ ହୁଏ କି? | ହଁ ହୁଏ । | ଆଦୌ ହୁଏ ନାହିଁ । |
| ୧୨. ଆମଦାନୀ, ସଂରକ୍ଷଣ, ବୃଦ୍ଧି ବଣ୍ଟନରେ ହେବା ଅପରାଧ ଫଳ | ଅପମାନ, ଜେଲ୍, ଜୋରିମାନ ଆଦି ଦଣ୍ଡ ଭୋଗିବାକୁ ହୁଏ | ଅଧିକ ନାମ ଜପ କରି କ୍ଷୟ କରାଯାଇ ପାରେ । |
| ୧୩. ଦେବତା ବା ମାଲିକ କିଏ ? | ମହାଲକ୍ଷ୍ମୀ, ମହାମାୟା | ମହାସରସ୍ୱତୀ, ଯୋଗମାୟା |
| ୧୪. ଶ୍ରୀକୃଷ୍ଣଙ୍କ ସହିତ ସମ୍ପର୍କ | ମହାବୈକୁଣ୍ଠରେ ମହାଲକ୍ଷ୍ମୀ ଶ୍ରୀନାରାୟଣଙ୍କ ଦାସୀ ବା ସେବିକା । | ମହାଗୋଲକରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଆରାଧ୍ୟା । |

***

ପରିଶିଷ୍ଟ-୧୦

# ସମୁଦ୍ର ମନ୍ଥନରୁ ମିଳିଥିବା ୧୪ ରତ୍ନ

| | ରତ୍ନର ନାମ | କିଏ ପ୍ରାପ୍ତ ହେଲେ । |
|---|---|---|
| ୧. | କାଳକୂଟ ହଳାହଳ ବିଷ | ଶ୍ରୀ ମହାଦେବ |
| ୨. | କାମଧେନୁ ଗାଭୀ | ମୁନି ଋଷି ଗଣ |
| ୩. | ଉଚ୍ଚୈଶ୍ରବା ଅଶ୍ୱ | ଇନ୍ଦ୍ର ଦେବତା |
| ୪. | ଐରାବତ ହସ୍ତୀ | ଇନ୍ଦ୍ର ଦେବତା |
| ୫. | ଅପ୍‌ସରା ଗଣ | ସ୍ୱର୍ଗ ଦେବତାଗଣ |
| ୬. | କଳ୍ପବୃକ୍ଷ | ଇନ୍ଦ୍ର ଦେବତା |
| ୭. | ଚନ୍ଦ୍ରଦେବ | ଆକାଶ ଦେବତା |
| ୮. | ଶ୍ରୀମହାଲକ୍ଷ୍ମୀ | ଶ୍ରୀମନ୍ ନାରାୟଣ |
| ୯. | ମଦିରା | ଅସୁର ଗଣ |
| ୧୦. | ଅମ୍ଳାନ ବସ୍ତ୍ର | ଅଗସ୍ତି ଋଷି |
| ୧୧. | ପାରିଜାତ ପୁଷ୍ପ | ଇନ୍ଦ୍ର ଦେବତା |
| ୧୨. | କୌସ୍ତୁଭ ମଣି | ଶ୍ରୀମନ୍ ନାରାୟଣ |
| ୧୩. | ସ୍ୱର୍ଗବୈଦ୍ୟ ଧନ୍ୱନ୍ତରୀ | ସ୍ୱର୍ଗ ଦେବତାଗଣ |
| ୧୪. | ଅମୃତ | ସ୍ୱର୍ଗ ଦେବତାଗଣ ଏବଂ ରାହୁ - କେତୁ |

***

ପରିଶିଷ୍ଟ-୧୧

# ବୈଷ୍ଣବଙ୍କର ଦଶ ନାମ ଅପରାଧ

୧. କୌଣସି ବୈଷ୍ଣବଙ୍କ ଦୋଷ ଦର୍ଶନ ।

୨. ଶିବଙ୍କ ଦୋଷ (ବିଷ୍ଣୁ ଶିବଙ୍କ ମଧ୍ୟରେ ଭେଦ କିମ୍ବା ଅଭେଦ) ଦର୍ଶନ ।

୩. ବେଦ କିମ୍ବା ବୈଦିକ ଶାସ୍ତ୍ରରେ ଦୋଷ ଦର୍ଶନ ।

୪. ସଦ୍‌ଗୁରୁଙ୍କ ଦୋଷ ଦର୍ଶନ ତାଙ୍କୁ ମଣିଷ ମନେ କରିବା ।

୫. ହରିନାମରେ ଅର୍ଥବାଦ (ନାମଙ୍କର ଅଯଥା ପ୍ରଶଂସା କରାଯାଇଥିବା ଭାବି ବସିବା) ।

୬. ନାମ ଆଢୁଆଳରେ ପାପ କର୍ମ କରିବସିବା ।

୭. ନାମ ବଳରେ ସ୍ୱଧର୍ମ ତ୍ୟାଗ କରିବା (ଅଶରଣାଗତ ଭକ୍ତ ପାଇଁ) ।

୮. ଅପାତ୍ରରେ ନାମ କିମ୍ବା ମନ୍ତ୍ର ଦାନ କରିବା ।

୯. ନାମ ସହିତ ଯଜ୍ଞ, ଦାନ, ତପ ଆଦି ଅନ୍ୟାନ୍ୟ ପୁଣ୍ୟ କର୍ମର ତୁଳନା କରିବା ।

୧୦. ନାମଙ୍କ ଶକ୍ତିକୁ କାଳ୍ପନିକ ଭାବିବା । ଅର୍ଥ ଅର୍ଥାନ୍ତର କରି ଅବୈଷ୍ଣବଙ୍କ ସହ ତର୍କରେ ମାତିବା ।

***

ପରିଶିଷ୍ଟ-୧୨

# ବିଶ୍ୱ ବ୍ରହ୍ମାଣ୍ଡର ଦଶବିଧ ସୃଷ୍ଟିର ଗୂଢ ରହସ୍ୟ

## (କ) ଛଅ ପ୍ରକାର ପ୍ରାକୃତ ଅଦୃଶ୍ୟ ସୃଷ୍ଟି (ଶ୍ରୀମନ୍ ନାରାୟଣଙ୍କର)

୧. ପରମେଶ୍ୱରଙ୍କ ଈକ୍ଷଣରେ ଅବ୍ୟକ୍ତ ପ୍ରକୃତିରୁ ମହତତ୍ତ୍ୱର ସୃଷ୍ଟି ।

୨. ମହତତ୍ତ୍ୱରୁ ସାତ୍ତ୍ୱିକ, ରାଜସିକ ଓ ତାମସିକ ଅହଂକାର ସୃଷ୍ଟି ।

୩. ତାମସ ଅଂହକାରରୁ ପଞ୍ଚ ତନ୍ମାତ୍ର ଓ ପଞ୍ଚ ମହାଭୂତ ସୃଷ୍ଟି ।

୪. ରାଜସ ଅହଂକାରରୁ ଦଶ ଇନ୍ଦ୍ରିୟଙ୍କ ସୃଷ୍ଟି ।

୫. ସାତ୍ତ୍ୱିକ ଅହଂକାରରୁ ଇନ୍ଦ୍ରିୟମାନଙ୍କ ଦେବତା ଓ ମନର ସୃଷ୍ଟି ।

୬. ପାଞ୍ଚ ଅବିଦ୍ୟା ବା ମହାମାୟା (ତାମିସ୍ର - ମୁଁ ଦେହ, ଅନ୍ଧ ତାମିସ୍ର - ମୋର ଦେହ, ମୋହ - ରାଗ, ମହାମୋହ - ଦ୍ୱେଷ ଏବଂ ଅଭିନିବେଶ - ମୃତ୍ୟୁ ଭୟ) ସୃଷ୍ଟି ।

## (ଖ) ଚାରି ପ୍ରକାର ବିକୃତ ପଞ୍ଚଭୌତିକ ଦୃଶ୍ୟମାନ ସୃଷ୍ଟି (ଶ୍ରୀ ବ୍ରହ୍ମାଜୀଙ୍କର)

୧. ଛଅ ପ୍ରକାର ସ୍ଥାବର ବା ଅଚର ଉଦ୍ଭିଦ (ବନସ୍ପତି, ଔଷଧ, ଲତା, ବିରୁଧ, ତ୍ୱକ୍‌ସାର ଓ ବୃକ୍ଷ) ସୃଷ୍ଟି ।

୨. ଅଠେଇଶ ପ୍ରକାର ତମୋଗୁଣୀ (ସ୍ୱେଦଜ, ଅଣ୍ଡଜ ଓ ଜରାୟୁଜ) ଜଙ୍ଗମ ବା ଭୂଚର ଓ ଖେଚର ପଶୁ-ପକ୍ଷୀ (ଏକ ଖୁରା, ଦୁଇ ଖୁରା ଏବଂ ପଞ୍ଚ ନଖୀ) ସୃଷ୍ଟି ।

୩. ରଜୋଗୁଣୀ ଭୂଚର ମାନବ ସୃଷ୍ଟି ।

୪. ଆଠ ପ୍ରକାର ନଭଚର ଦେବ (ଦେବଗଣ, ପିତୃଗଣ, ଅସୁର, ଗନ୍ଧର୍ବ-ଅପ୍‌ସରାଗଣ, ଯକ୍ଷ-ରାକ୍ଷସ, ସିଦ୍ଧ-ଚାରଣ-ବିଦ୍ୟାଧର, ଭୂତ-ପ୍ରେତ-ପିଶାଚ ଓ କିନ୍ନର-କିଂପୁରୁଷ-ଅଶ୍ୱମୁଖ) ସୃଷ୍ଟି ।

## (ଗ) ପ୍ରାକୃତ ଓ ବିକୃତ ଉଭୟରେ ଗଣା ମାୟାମୁକ୍ତ ସୃଷ୍ଟି

ଚାରି ବ୍ରହ୍ମାପୁତ୍ର - ସନକ, ସନାତନ, ସନନ୍ଦନ ଓ ସନତ୍ କୁମାର ।

(ଏମାନଙ୍କର ବୟସ ସର୍ବଦା ଚାରିବର୍ଷ ଏବଂ ବସ୍ତ୍ର ରହିତ ନଙ୍ଗଡ ଧଙ୍ଗଡ ବାଳକ ।)

ପରିଶିଷ୍ଟ-୧୩

# ଭକ୍ତିର ସାମ୍ରାଜ୍ୟ କେତେ ବ୍ୟାପକ

୧. ନବଧା ଭକ୍ତି ବା ସାଧନା ଭକ୍ତି (ବାରମ୍ବାର ମନ ଭଗାଇବା ଚେଷ୍ଟା) ।

୨. ସାଧନ ଭକ୍ତି ପରିପକ୍ୱ ହେଲେ ଭାବ ଭକ୍ତି ମିଳେ (ବେଳେ ବେଳେ ମନ ଲାଗିଯିବା) ।

୩. ଭାବ ଭକ୍ତି ପରିପକ୍ୱ ହେଲେ ଗୁରୁ କୃପାରୁ ପ୍ରେମା ଭକ୍ତି ମିଳେ (ମନ ସମ୍ପୂର୍ଣ୍ଣ ଲାଗିଯିବା) ।

୪. କି ସଦାଚାରୀ କି ଦୁରାଚାରୀ ସମସ୍ତେ ଭକ୍ତି ମାର୍ଗର ଅଧିକାରୀ ।

୫. କି ଜ୍ଞାନୀ କି ଅଜ୍ଞାନ ସମସ୍ତେ ଭକ୍ତି ମାର୍ଗର ଅଧିକାରୀ ।

୬. କି ମୁକ୍ତ କି ମୁମୁକ୍ଷୁ ସମସ୍ତେ ଭକ୍ତି ମାର୍ଗର ଅଧିକାରୀ ।

୭. କି ସିଦ୍ଧ (ସମର୍ଥ) କି ସାଧକ (ଅସମର୍ଥ) ସମସ୍ତେ ଭକ୍ତି ମାର୍ଗର ଅଧିକାରୀ ।

୮. କି ପୁରୁଷ କି ନାରୀ କି ନପୁଂଷକ ସମସ୍ତେ ଭକ୍ତି ମାର୍ଗର ଅଧିକାରୀ ।

୯. ନାରଦ ସନକାଦି ଭଗବତ ପାର୍ଷଦମାନେ ମଧ୍ୟ ଭକ୍ତି ନକରି ରହିପାରନ୍ତି ନାହିଁ ।

୧୦. ସକଳ ଦ୍ରବ୍ୟରେ (ପତ୍ର, ପୁଷ୍ପ ଓ ଫଳ ଆଦିରେ) ଭକ୍ତି କରି ହୁଏ ।

୧୨. ସକଳ ଅବସ୍ଥାରେ ଭକ୍ତି କରି ହୁଏ ।

(କ) ଗର୍ଭ ଅବସ୍ଥାରେ

(ଖ) ବାଳକ ଅବସ୍ଥାରେ

(ଗ) ଯୁବା ଅବସ୍ଥାରେ

(ଘ) ବୃଦ୍ଧ ବା ବୃଦ୍ଧା ଅବସ୍ଥାରେ

(ଙ) ସୁସ୍ଥ ଅବସ୍ଥାରେ

(ଚ) ଅସୁସ୍ଥ ଅବସ୍ଥାରେ

(ଛ) ପଙ୍ଗୁ ବା ବିକଳାଙ୍ଗ ହେଲେ ମଧ୍ୟ

(ଜ) ମୃତ୍ୟୁ କାଳରେ ମଧ୍ୟ

୧୩. ପ୍ରଳୟ କାଳରେ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ମଧ୍ୟ ନାରାୟଣଙ୍କ ଭକ୍ତ କରୁଥାଆନ୍ତି ।

୧୪. ସୃଷ୍ଟି ପୂର୍ବରୁ ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କୁ ନାରାୟଣ ଭକ୍ତି ଶିକ୍ଷା ଦିଅନ୍ତି ।

୧୫. ସୃଷ୍ଟି କାଳରେ ୪ ଯୁଗରେ ଭକ୍ତି ଭିନ୍ନ ଭିନ୍ନ ରୂପରେ ବିଦ୍ୟମାନ ରହନ୍ତି ।

(କ) ସତ୍ୟ ଯୁଗରେ – ଧ୍ୟାନ ଆକାରରେ

(ଖ) ତ୍ରେତା ଯୁଗରେ – ଯଜ୍ଞ ଅନୁଷ୍ଠାନରେ

(ଗ) ଦ୍ୱାପର ଯୁଗରେ – ଅର୍ଚ୍ଚନ କ୍ରିୟାରେ

(ଘ) କଳି ଯୁଗରେ - ନାମ ସଂକୀର୍ତ୍ତନରେ

୧୬. କର୍ମ, ଜ୍ଞାନ, ଧ୍ୟାନ ମାର୍ଗରେ ଯାହା ସବୁ ମିଳେ ସେ ସବୁ ମଧ୍ୟ ଭକ୍ତିରେ ଅକ୍ଲେଶରେ ପ୍ରାପ୍ତ ହୋଇଥାଏ ।

- ୦ -

ପରିଶିଷ୍ଟ-୧୪

# ଦ୍ୱୈତ - ଅଦ୍ୱୈତ ବେଦାନ୍ତରେ ବ୍ରହ୍ମ ଓ ଜୀବ ତୁଳନା (ନିମ୍ବାର୍କ ମତ)

## ପାର୍ଥକ୍ୟ

| | ବ୍ରହ୍ମ | ଜୀବ |
|---|---|---|
| ୧. | ବିଭୁ ବା ଅସୀମ | ଅଣୁ ବା ସସୀମ |
| ୨. | ନିୟମ୍ୟ | ନିୟମାଧୀନ |
| ୩. | ସ୍ରଷ୍ଟା | ସୃଜ୍ୟ ବା ସୃଷ୍ଟି |
| ୪. | ମାୟାଧୀଶ | ମାୟାଧୀନ |
| ୫. | ଅଂଶୀ | ଅଂଶ |
| ୬. | ପିତା | ପୁତ୍ର |
| ୭. | ସେବ୍ୟ | ସେବକ |
| ୮. | ସ୍ୱାମୀ ବା ଭର୍ତ୍ତା | ଭୃତ୍ୟ ବା ଦାସ |
| ୯. | ସର୍ବ ଶକ୍ତିମାନ୍ | ଅଳ୍ପ ଶକ୍ତିମାନ୍ |
| ୧୦. | ପ୍ରେରକ | ପ୍ରେର୍ଯ୍ୟ |
| ୧୧. | ସର୍ବଜ୍ଞ | ଅଳ୍ପଜ୍ଞ |
| ୧୨. | ବିଭୁଚିତ୍ | ଅଣୁଚିତ୍ |
| ୧୩. | ପୂର୍ଣ୍ଣ ସ୍ୱତନ୍ତ୍ର | ଅଧୀନସ୍ଥ |
| ୧୪. | ଏକ | ଅନେକ |
| ୧୫. | କର୍ତ୍ତା | କାର୍ଯ୍ୟ |
| ୧୬. | ଆନନ୍ଦମୟ | ଆନନ୍ଦ ଇଚ୍ଛୁକ |

- ୦ -

## ସମାନତା

| | ବ୍ରହ୍ମ | ଜୀବ |
|---|---|---|
| ୧. | ସତ୍ | ସତ୍ |
| ୨. | ଚିତ୍ | ଚିତ୍ |
| ୩. | ଆନନ୍ଦମୟ | ଆନନ୍ଦମୟ |
| ୪. | ନିତ୍ୟ | ନିତ୍ୟ |
| ୫. | ଅନାଦି | ଅନାଦି |
| ୬. | ଅବିନାଶୀ | ଅବିନାଶୀ |

- ୦ -

ପରିଶିଷ୍ଟ-୧୫

# କେବଳ ଅଦ୍ୱୈତବାଦରେ ଅସମାହିତ ପ୍ରଶ୍ନ

* ବ୍ରହ୍ମଙ୍କୁ ଜୀବ କହିବା ନିରାପଦ ।
* ଜୀବ ନିଜକୁ ବ୍ରହ୍ମ କହି ବୁଲିବା ଅହଂକାର ସୂଚକ ଅତଏବ ବିପଦ ଜନକ ।
* ଜଳ ସିନ୍ଧୁ ବା ସମୁଦ୍ରକୁ ଜଳ କହିବା ଦୋଷାବହ ନୁହେଁ ।
* ଜଳ ବିନ୍ଦୁକୁ ସମୁଦ୍ର କହିଲେ ଲୋକେ ହସିବେ ।
* ସମୁଦ୍ର ତରଙ୍ଗ ଅଟେ କିନ୍ତୁ ତରଙ୍ଗ ସମୁଦ୍ର ନୁହେଁ -
  ଏହା ଅଦ୍ୱୈତୀ ଶଙ୍କରଙ୍କ ମତ କି ?

- ୦ -

ପରିଶିଷ୍ଟ-୧୬

# ବେଦାନ୍ତ ଦ୍ୱୈତ - ଅଦ୍ୱୈତ ବିବାଦ (ବୃଷଭ ଲଢେଇ)

୧. ଶ୍ରୀପାଦ ଆଦିଶଙ୍କରଙ୍କର ଅଦ୍ୱୈତ ବେଦାନ୍ତ ଭାଷ୍ୟ ଅତୀବ ସୁନ୍ଦର ।

୨. ଶ୍ରୀମନ୍ ମଧ୍ୱଙ୍କର ଦ୍ୱୈତ ବେଦାନ୍ତ ଭାଷ୍ୟ ବାସ୍ତବରେ ମଧୁର ।

୩. ଶ୍ରୀଯୁକ୍ତ ନିମ୍ବାର୍କଙ୍କର ଦ୍ୱୈତ - ଅଦ୍ୱୈତ ଭାଷ୍ୟ ନିଶ୍ଚୟ ହୃଦୟଗ୍ରାହୀ ।

୪. ଶ୍ରୀଳ ରାମାନୁଜଙ୍କ ବିଶିଷ୍ଟ ଅଦ୍ୱୈତ ଭାଷ୍ୟ ଅତୁଳନୀୟ ।

୫. ପଞ୍ଚମ ମୂଳ ଜଗଦ୍‌ଗୁରୁ ଶ୍ରୀକୃପାଳୁଙ୍କ ସମନ୍ୱୟବାଦ ପ୍ରଶଂସନୀୟ
ସୁତରାଂ ବୃନ୍ଦାବନ ପ୍ରେମୀ ଓ ଶ୍ରୀମଭାଗବତ ପ୍ରେମୀଙ୍କର ପ୍ରାତଃସ୍ମରଣୀୟ ।

ଅଳଂ ଅତି ବିସ୍ତରେଣ

ଶ୍ରୀ କୃଷ୍ଣାର୍ପଣଂ ଅସ୍ତୁ ।

- ୦ -

